ସାରଳା ସମ୍ମାନ ୧୯୯୦

ଜଣେ ବାସ୍ତୁବିଜ୍ଞାନୀ ହୋଇ
ମଧ୍ୟ ସାହିତ୍ୟ ସରସ୍ୱତୀଙ୍କ
ସେବାରେ ଆପଣ ନିଜକୁ
ଉତ୍ସର୍ଗ କରିଦେଇ ଯେଉଁ
ଅପୂର୍ବ ଦୃଷ୍ଟାନ୍ତ ସ୍ଥାପନ
କରିଛନ୍ତି ତାହା କାଳ କାଳକୁ
ସ୍ମରଣୀୟ ହୋଇ ରହିବ ।

ଓଡ଼ିଶାର ନବ କୋଣାର୍କ
ଗଠନରେ ଆପଣଙ୍କର କୃତିତ୍ୱ,
ଆଧୁନିକ ଭାରତ ଗଠନରେ
ଆପଣଙ୍କର ଅକ୍ଳାନ୍ତ
ସହଯୋଗ, ଜଣେ ଛାତ୍ର
ବତ୍ସଳ ଅଧ୍ୟାପକ, ଦକ୍ଷ
ପ୍ରଶାସକ ରୂପେ ଆପଣଙ୍କର
ଅନମନୀୟ ଭୂମିକାକୁ ଏ ଜାତି
କସ୍ମିନ କାଳେ ଭୁଲିବ ନାହିଁ ।

ପଞ୍ଚଦଶ ଶାରଳା ପୁରସ୍କାର
ସାରସ୍ୱତ ଉତ୍ସବ ୧୯୯୪

ଇଂଜିନିୟରିଂରେ ଆପଣଙ୍କ
ଗବେଷଣା ନିବନ୍ଧ ଗୁଡ଼ିକ ଉଚ୍ଚ
ପ୍ରଶଂସିତ । ତନ୍ମଧ୍ୟରୁ ଦୁଇଟି
ଗବେଷଣା ନିବନ୍ଧ ପାଇଁ
ଭାରତ ସରକାର ଆପଣଙ୍କୁ
ସ୍ୱର୍ଣ୍ଣପଦକରେ ଭୂଷିତ
କରିଥିଲେ ।

ବିଜ୍ଞାନ ପ୍ରତିଭା ସହିତ
ଆପଣଙ୍କଠାରେ ସାହିତ୍ୟିକ
ପ୍ରତିଭାର ଅପୂର୍ବ ସମନ୍ୱୟ
ପରିଲକ୍ଷିତ ହୁଏ ।

ନନ୍ଦିଘୋଷ ପୁରସ୍କାର
୧୯୮୯

ଆପଣ ଇଂଜିନିୟରିଂ କ୍ଷେତ୍ରରେ
ସ୍ୱକୀୟ ପ୍ରତିଭାର ପରିଚୟ
ଦେଇ ଓଡ଼ିଶାର ଯନ୍ତ୍ର ବିଜ୍ଞାନ,
ବୈଷୟିକ ଶିକ୍ଷାର ଉନ୍ନତି ଓ
ଦେଶର ସମୃଦ୍ଧି ସଂପାଦନରେ
ଏକ ବଳିଷ୍ଠ ଭୂମିକା ଗ୍ରହଣ
କରିଛନ୍ତି । ଜଣେ ଦକ୍ଷ
ପ୍ରଶାସକ ଓ ବରିଷ୍ଠ ସାହିତ୍ୟିକ

ହିସାବରେ ଆପଣ ସମାଜରେ
ଯଶ ଓ ଗୌରବ ଅର୍ଜନ କରି
ପାରିଛନ୍ତି ।

**ସାହିତ୍ୟ ସୁଧାକର**

ଆପଣ ଓଡ଼ିଶାର ଅଖ୍ୟାତ ପଲ୍ଲୀ
ଅଞ୍ଚଳରେ ଜନ୍ମଗ୍ରହଣ କରିଥିଲେ
ମଧ୍ୟ ସ୍ୱପ୍ରତିଭା ବଳରେ ଜଣେ
ଯଶସ୍ୱୀ ଇଞ୍ଜିନିୟର, ସଂଗଠକ,
ସଂସ୍କାରକ ଓ ସାହିତ୍ୟିକ
ଭାବରେ କେବଳ ଓଡ଼ିଶା
କାହିଁକି ସମଗ୍ର ଭାରତ ଏବଂ
ବିଦେଶରେ ପ୍ରତିଷ୍ଠା ଅର୍ଜନ କରି
ଉତ୍କଳର ମର୍ଯ୍ୟାଦା ବୃଦ୍ଧି
କରିଛନ୍ତି ।

**ଦି ଓଡ଼ିଶା ଇଂଜିନିୟରସ୍**
**ଫୋରମ୍, କଟକ**
**ବିଶ୍ୱେଶ୍ୱରାୟା ସମ୍ମାନ-୨୦୦୦**

ବିଂଶ ଶତାବ୍ଦୀର ଇଂଜିନିୟରିଂ
କ୍ଷେତ୍ରରେ ସମଗ୍ର ଦେଶର
ଆପଣ ଜଣେ କିମ୍ବଦନ୍ତୀ ପୁରୁଷ ।
ହୀରାକୁଦ ବନ୍ଧ ନିର୍ମାଣ
କାର୍ଯ୍ୟରେ ଆପଣଙ୍କ ଭୂମିକା
ଅବିସ୍ମରଣୀୟ । ସିଭିଲ
ଇଂଜିନିୟରିଂରେ ଉଚ୍ଚ ଶ୍ରେଣୀର
ଗବେଷଣା କରି ଆପଣ ଆମ
ରାଜ୍ୟ ପାଇଁ ଆଣି ପାରିଛନ୍ତି
ଅପୂର୍ବ ଗୌରବ ।

**ଉତ୍କଳ ସାହିତ୍ୟ ସମାଜ**
**ସତ୍ୟ ଶିବ ସୁନ୍ଦର**
**ଉତ୍କଳ ରତ୍ନ ୧୯୯୮**

ଚଳିତ ଶତାବ୍ଦୀରେ ଆପଣ ଏକ
ଶାଣିତ ସ୍ୱାକ୍ଷର । ଆଧୁନିକ
ଓଡ଼ିଶାର ଜୀବନ-ପ୍ରବାହରେ
ଆପଣ ଏକ ଦୀପ୍ତିମାନ
ଜ୍ୟୋତିଷ୍କ । ବିଗତ ପାଞ୍ଚ ଦଶନ୍ଧି
ବ୍ୟାପି ଆପଣଙ୍କ ସାଧନାରେ
ଓଡ଼ିଶାର ସାଂସ୍କୃତିକ ଦିଗ୍‌ବଳୟ
ହୋଇଉଠିଛି ସମୁଜ୍ଜ୍ୱଳ ।

ଭୁବନେଶ୍ୱର ବେହେରା
ସାହିତ୍ୟ-ସମଗ୍ର

ପ୍ରଥମ ସଂସ୍କରଣ : ମାର୍ଚ୍ଚ ୨୦୧୨
ଦ୍ୱିତୀୟ ସଂସ୍କରଣ : ଜୁଲାଇ ୨୦୧୨



**ISBN 978-93-80758-48-0**

**Bhubaneswar Behera Sahitya-Samagra**

---

1st edition : March 2012
2nd edition : July 2012

Complied & Edited by : Yashodhara Mishra

Published by **ink odisha**
115 (P) Acharya Vihar, Bhubaneswar-751013, Orissa, India
and printed at **Shovan**, Acharya Vihar, Bhubaneswar-13

**Rs. 900/-**

ଗୋଟିଏ ଜୀବନକାଳ ମଧ୍ୟରେ ଏତେ ବିବିଧ କ୍ଷେତ୍ରରେ ନିଜର ସ୍ୱକୀୟ ଅବଦାନ ଛାଡ଼ିଯାଇଥିବା ବ୍ୟକ୍ତି କେବଳ ଓଡ଼ିଶାରେ କାହିଁକି ସମଗ୍ର ବିଶ୍ୱରେ ବିରଳ ବୋଲି କୁହାଯାଇପାରେ । ନିଜ ଜୀବନ କାର୍ଯ୍ୟକାଳର ଶେଷ ଭାଗରେ ହିଁ ଇଞ୍ଜିନିୟରିଂ ତଥା ଆନୁସଙ୍ଗିକ କାର୍ଯ୍ୟକ୍ଷେତ୍ରର ପରିଧି ବାହାରେ ଏକ ବିସ୍ତୃତ ଜଗତରେ କାମ କରିବାର ସୁଯୋଗ ତାଙ୍କୁ ମିଳିଥିଲା ଯେବେ ୧୯୭୧ରେ ସେ ସମ୍ବଲପୁର ବିଶ୍ୱବିଦ୍ୟାଳୟର କୁଳପତି ଭାବରେ ଯୋଗ ଦେଇଥିଲେ । ନୂଆ କିଛି ଚିନ୍ତା କରିବା, ପୁଣି ତା'ରି ଉପରେ ନିର୍ଭର କରି ଦୁଃସାହସିକ ପଦକ୍ଷେପ ନେବା ଥିଲା ତାଙ୍କର ସ୍ୱଭାବଗତ । ଛାତ୍ର ଜୀବନ ଶେଷ ହେବା ମାତ୍ରେ ଅନ୍ୟମାନଙ୍କ ଭଳି ନିଜ ସଙ୍କୀର୍ଣ୍ଣ ସ୍ୱାର୍ଥଚିନ୍ତାରେ ମଗ୍ନ ନହୋଇ ଯୁବକ ଇଞ୍ଜିନିୟର ଭୁବନେଶ୍ୱର ତଦାନୀନ୍ତନ କଳାହାଣ୍ଡିର ଦୁର୍ଗମ ମାଳ ଅଞ୍ଚଳ ଓ ଘଞ୍ଚ ଅରଣ୍ୟ ଭିତରେ ହାତୀ ପିଠିରେ ବସି ବୁଲିଥିଲେ, ପାଦରେ ଚାଲି ନଦୀନାଳମାନଙ୍କୁ ଚିହ୍ନି ଇନ୍ଦ୍ରାବତୀ ନଦୀବନ୍ଧର କଳ୍ପନା କରିଥିଲେ । ସେହିପରି ଜୀବନର ଉତ୍ତରାର୍ଦ୍ଧରେ କୁଳପତି ଭାବେ ଛାତ୍ରମାନଙ୍କ ଭିତରେ ସାହିତ୍ୟ ପ୍ରତିଭାକୁ ପ୍ରୋତ୍ସାହନ ଦେବା ଲାଗି ସେ ସପ୍ତର୍ଷି ପତ୍ରିକାର ପରିକଳ୍ପନା କଲେ ଓ ସମ୍ପାଦକୀୟ ଲେଖିବାକୁ ଯାଇ ସତାବନ ବର୍ଷ ବୟସରେ ଆରମ୍ଭ କଲେ ତାଙ୍କର ଲେଖକୀୟ ଜୀବନ । ମାତ୍ର ଦୁଇ ଦଶକର ରଚନା କାଳରେ ତାଙ୍କୁ ପ୍ରଭୂତ ପାଠକୀୟ ସ୍ୱୀକୃତି ମିଳିଲା ତଥା ଅନେକ ସମ୍ମାନ ଓ ପୁରସ୍କାର ଦେଇ ଓଡ଼ିଆ ସାହିତ୍ୟ ତାଙ୍କୁ ବରିଷ୍ଠ ଲେଖକର ପଂକ୍ତିରେ ସ୍ଥାନ ଦେଲା ।

ଭୁବନେଶ୍ୱର ବେହେରାଙ୍କ ଅଜସ୍ର ପାଠକଙ୍କ ଆଗ୍ରହ ଓ ପ୍ରତୀକ୍ଷା ସତ୍ତ୍ୱେ ଆଜି ତାଙ୍କ ତିରୋଧାନର ବାର ବର୍ଷ ପରେ ତାଙ୍କର ସାହିତ୍ୟ-ସମଗ୍ର ପ୍ରକାଶ କରିବା ସମ୍ଭବ ହୋଇଛି । ପୁସ୍ତକଟି ଆଦୃତ ହେବ ଏବଂ ଲେଖକ ସ୍ୱୀୟ ପ୍ରତିଭା ବଳରେ ନିଜ ପାଇଁ ସାହିତ୍ୟ ଜଗତରେ ସୃଷ୍ଟି କରିଥିବା ସ୍ଥାନକୁ ବଳବତ୍ତର କରିବ ବୋଲି ବିଶ୍ୱାସ ।

ଯଶୋଧାରା ମିଶ୍ର

# ବିଶିଷ୍ଟ ତିଥି ଓ ଘଟଣାବଳୀ

| | |
|---|---|
| ୧୯୧୬, ୧ ଜାନୁୟାରୀ | ଜନ୍ମ, ଗ୍ରାମ-କାଶୀବାହାଲ, କଳାହାଣ୍ଡି |
| ୧୯୩୫ | ମାଟ୍ରିକ୍ୟୁଲେଶନ୍, ଭବାନୀପାଟଣା |
| ୧୯୩୯ | ବି.ଏସ୍.ସି. (ଫିଜିକ୍ସ ଅନର୍ସ), ରେଭେନ୍‌ସା କଲେଜ, କଟକ |
| ୧୯୪୩ | ବି.ଏସ୍.ଏ. ଇଞ୍ଜିନିୟରିଂ, ବିହାର କଲେଜ ଅଫ୍ ଇଞ୍ଜିନିୟରିଂ, ପାଟନା |
| ୧୯୪୫ | କଳାହାଣ୍ଡି ଦରବାରରେ ଆସିଷ୍ଟାଣ୍ଟ ଇଞ୍ଜିନିୟର ରୂପେ ନିଯୁକ୍ତି |
| ୧୯୪୫ | ଉମାଦେବୀଙ୍କ ସହ ବିବାହ |
| ୧୯୪୫-୪୬ | ଇନ୍ଦ୍ରାବତୀ ବନ୍ଧ ଲାଗି ଯୋଜନା ପ୍ରସ୍ତୁତି |
| ୧୯୪୬-୪୭ | ଆଇଓଆ ବିଶ୍ୱବିଦ୍ୟାଳୟ, ଆମେରିକାରେ ଶିକ୍ଷାପ୍ରାପ୍ତି |
| ୧୯୪୭ | କଳାହାଣ୍ଡି ରାଜ୍ୟରେ ଇଞ୍ଜିନିୟର ରୂପେ ଯୋଗଦାନ |
| ୧୯୪୮ | ହୀରାକୁଦ ବନ୍ଧ ଯୋଜନାରେ ନିଯୁକ୍ତି |
| ୧୯୪୮-୫୬ | ଆସିଷ୍ଟାଣ୍ଟ ଇଞ୍ଜିନିୟର ତଥା ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର ରୂପେ କାର୍ଯ୍ୟ |
| ୧୯୫୬ | ବୁର୍ଲା ଇଞ୍ଜିନିୟରିଂ କଲେଜରେ ଯୋଗଦାନ |
| ୧୯୫୮ | ବୁର୍ଲା ଇଞ୍ଜିନିୟରିଂ କଲେଜରେ ପ୍ରଫେସର ରୂପେ ନିଯୁକ୍ତି |
| ୧୯୬୧ | ବୁର୍ଲା ଇଞ୍ଜିନିୟରିଂ କଲେଜରେ ଅଧକ୍ଷ ରୂପେ ନିଯୁକ୍ତି |
| ୧୯୬୨ | ରିଜିଓନାଲ ଇଞ୍ଜିନିୟରିଂ କଲେଜ, ରାଉରକେଲାରେ ଅଧକ୍ଷ ରୂପେ ଯୋଗଦାନ |

| | |
|---|---|
| ୧୯୭୧-୭୬ | ସମ୍ବଲପୁର ବିଶ୍ୱବିଦ୍ୟାଳୟର କୁଳପତି |
| | ସପ୍ତର୍ଷି ପତ୍ରିକାର ସ୍ଥାପନା ଓ ସମ୍ପାଦନା |
| ୧୯୭୭ | ଲାଇବେରିଆ ରିପବ୍ଲିକ୍‌କୁ ଗମନ |
| ୧୯୭୮ | ମେମ୍ବର, ୟୁ.ପି.ଏସ୍.ସି. ରୂପେ ମନୋନୀତ ଏବଂ ଦିଲ୍ଲୀରେ ଅବସ୍ଥାନ |
| ୧୯୮୧ | ଅବସର ଗ୍ରହଣ ଓ କଳାହାଣ୍ଡିରେ ଅବସ୍ଥାନ |
| ୧୯୮୪, ମାର୍ଚ୍ଚ ୨୫ | ସାହିତ୍ୟ ସୁଧାକର ସମ୍ମାନ |
| ୧୯୮୯, ଏପ୍ରିଲ ୪ | ନନ୍ଦିଘୋଷ ପୁରସ୍କାର |
| ୧୯୯୩, ନଭେମ୍ବର ୯ | ଓଡ଼ିଶା ସାହିତ୍ୟ ଏକାଡ଼େମୀ ପକ୍ଷରୁ ସାରସ୍ୱତ ସମ୍ବର୍ଦ୍ଧନା |
| | ପତ୍ନୀ ଉମାଦେବୀଙ୍କ ତିରୋଧାନ |
| ୧୯୯୪ | ଇଣ୍ଡିଆନ୍ ମେଟାଲସ୍ ପବ୍ଲିକ୍ ଚାରିଟେବଲ ଟ୍ରଷ୍ଟ ପକ୍ଷରୁ ପଞ୍ଚଦଶ ଶାରଳା ପୁରସ୍କାର |
| ୧୯୯୮, ଜୁନ୍ ୨୦ | ଉତ୍କଳ ସାହିତ୍ୟ ସମାଜ ପକ୍ଷରୁ ଉତ୍କଳ ରତ୍ନ |
| ୧୯୯୮, ଅଗଷ୍ଟ ୨୪ | ସାରଳା ସମ୍ମାନ ୧୯୯୦ |
| ୨୦୦୦, ସେପ୍ଟେମ୍ବର ୯ | ବିଶ୍ୱେଶ୍ୱରାୟା ସମ୍ମାନ-୨୦୦୦ |
| ୨୦୦୧, ଏପ୍ରିଲ ୧୭ | ତିରୋଧାନ |

# ସୂଚୀ



ଇଞ୍ଜିନିୟର
ଭୁବନେଶ୍ୱର ବେହେରା



ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର
ଛାତ୍ରୀ ଉମା



ଉମା ଓ ଭୁବନେଶ୍ୱର, ୧୯୪୫ଆର୍.ଇ.ସି. ରାଉରକେଲାର ଅଧ୍ୟକ୍ଷ ପ୍ରଫେସର ବେହେରା



ନବବିବାହିତା **ଉମା ଦେବୀ**



**ଆଇଓଆ, ଆମେରିକାରେ ସମାବର୍ତ୍ତନ ଉତ୍ସବ**



ପଛଧାଡ଼ି : ଯୋଜନଗନ୍ଧା, ଅଦୀତି, ଦେବକୀ, ଚମ୍ପା (ଭଉଣୀମାନେ)
ଚଉକୀରେ : ମନୋରମା ଦେବୀ (ମା), ଲକ୍ଷ୍ମଣ ପ୍ରସାଦ ବେହେରା (ବାପା)
ତଳେ : ଭୁବନେଶ୍ୱର, ଯୋଗେଶ୍ୱର (ବଡ଼ ଭାଇ)
ପୃଷ୍ଠଭୂମିରେ : ଯଶୋଧାରା ଓ ମଳୟ



ଚଉକୀରେ : ଭୁବନେଶ୍ୱର ବେହେରା, ଉମା ଦେବୀ
ପଛରେ : ବିନୟ, ଯଶୋଧାରା, ଅଜୟ, ମଳୟ



ପ୍ରଫେସର ଭୁବନେଶ୍ୱର ବେହେରା



ଶ୍ରୀମତୀ ଉମା ଦେବୀ



ବିଶ୍ୱେଶ୍ୱରାୟା ସମ୍ମାନ, ଓଡ଼ିଶା ଇନ୍‌ଷ୍ଟିଚ୍ୟୁସନ୍ ଅଫ୍ ଇଞ୍ଜିନିୟରସ୍, ୨୦୦୦



ଶାରଳା ପୁରସ୍କାର, ଶ୍ରୀ ସଚ୍ଚି ରାଉତରାୟଙ୍କ ହାତରୁ ୧୯୯୪



ବିଶ୍ୱେଶ୍ୱରାୟା ସମ୍ମାନ, ଓଡ଼ିଶା ଇନ୍‌ଷ୍ଟିଚ୍ୟୁସନ୍ ଅଫ୍ ଇଞ୍ଜିନିୟରସ୍, ୨୦୦୦



ଶାରଳା ପୁରସ୍କାର, ଶ୍ରୀ ସଚ୍ଚି ରାଉତରାୟଙ୍କ ହାତରୁ ୧୯୯୪

୧୯୮୦ରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ପ୍ରାପ୍ତ

# ଶୁଣ ପରୀକ୍ଷା

## ଶ୍ରୀ ଭୁବନେଶ୍ୱର ବେହେରା

ପ୍ରକାଶକ :

କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର, କଟକ - ୭୫୩୦୦୨

ପ୍ରଥମ ସଂସ୍କରଣ : ସେପ୍ଟେମ୍ବର, ୧୯୭୬ ସାଲ

# ଶୁଣ ପରୀକ୍ଷ

ଯୌବନ ସାଧାରଣତଃ ଅତି ଚଞ୍ଚଳ ଅସ୍ଥିର ଓ ମାଦକତା ଭରା - ନିଜ ରୂପ ରସ ଓ ଗନ୍ଧରେ ନିଜେ ମତୁଆଳ । ଏହି ଯୌବନର ସ୍ପର୍ଶପାଇ ବଣର ମର୍କଟୀ ମଧ୍ୟ ଆପଣାକୁ ରମ୍ଭା ଅପ୍‌ସରୀ ଅଥବା ବିଶ୍ୱ ସୁନ୍ଦରୀ ବୋଲି ଜ୍ଞାନକରି ନିଜର ରୂପଛଟା ଦେଖାଇ ବୁଲେ, ଆଉ ମଉହସ୍ତୀ ହୁଏ ଉନ୍ମତ୍ତ ।

ସେହି ଯୌବନର ପ୍ରଭାବ ମଣିଷ ଉପରେ ମଧ୍ୟ ପଡ଼େ । ତେଣୁ ଯୁବକ ହୁଏ ବେଳେବେଳେ ଉଦ୍‌ଭ୍ରାନ୍ତ-ଦିକ୍‌ଭ୍ରଷ୍ଟ ।

ଯୌବନ ସଙ୍ଗରେ ଧନସମ୍ପତ୍ତି, ପ୍ରଭୁତ୍ୱ ତଥା ଅବିବେକୀତା ପ୍ରଭୃତି ଅନର୍ଥର କାରଣ ସମୂହ ଯେତେବେଳେ ପୁଞ୍ଜୀଭୂତ ହୋଇ ପଡ଼ନ୍ତି ସେ ସମସ୍ତର ଅଧିକାରୀ ଅନେକ ସମୟରେ ଧରାକୁ ସରା ଜ୍ଞାନ କରେ ।

ମନେହୁଏ ପାଣ୍ଡବକୁଳର ମହାରାଜା ପରୀକ୍ଷିତଙ୍କ ଏହି ଦଶା ଘଟିଥିଲା । ପାରିଧିରେ ଶ୍ରାନ୍ତ ଏହି ଯୁବକ ରାଜା ଦିନେ ତାଙ୍କର ପିପାସା ମେଣ୍ଟାଇବା ଆଶାରେ କିଛି ସମୟ ଆଶ୍ରମ ଦ୍ୱାରରେ ଅପେକ୍ଷା କଲା ପରେ ଯେତେବେଳେ ଦେଖିଲେ ଯେ ବୃଦ୍ଧଋଷି ଆଖି ବି ଖୋଲୁ ନାହାନ୍ତି, ସେ ଧୈର୍ଯ୍ୟ ହରାଇ ବସିଲେ ଆଉ ପାଖରେ ପଡ଼ିଥିବା ଗୋଟିଏ ମଲା ସାପକୁ ଋଷିଙ୍କ ଗଳାରେ ଲମ୍ୱାଇଦେଇ ସେଠାରୁ ଚାଲିଗଲେ । ଋଷିଙ୍କ କିଶୋର ପୁଅ ଯେତେବେଳେ ଆଶ୍ରମକୁ ଫେରିଲେ, ଧ୍ୟାନମଗ୍ନ ନିଜ ବାପାଙ୍କ ଗଳାରେ ମଲା ସାପଟିଏ ଝୁଲୁଥିବା ଦେଖି ତାଙ୍କର ମଧ୍ୟ ଧୈର୍ଯ୍ୟଚ୍ୟୁତି ଘଟିଲା । ସେ ରାଗରେ ଅଭିଶାପ ଦେଲେ ଯେ ଯିଏ ଏମିତି ମଲା ସାପ ଝୁଲାଇଛି ସାତଦିନ ଭିତରେ ସର୍ପ ଦଂଶନରେ ତା'ର ମୃତ୍ୟୁ ହେବ ।

ହସ୍ତିନାପୁରରେ ଏ ଅଭିଶାପ କଥା ଜଣା ପଡ଼ିଗଲା । ଦଳେ ଯୁବକ ଅଭିଶାପଟିକୁ ହସରେ ଉଡ଼ାଇ ଦେଇ ତାଚ୍ଛଲ୍ୟ କରି କହିଲେ, 'ରାଜପ୍ରାସାଦର ଏପରି ଏକ କକ୍ଷରେ ମହାରାଜା ଅବସ୍ଥାନ କରନ୍ତୁ ଯାହା ଭିତରକୁ ସାପ କାହିଁକି ପିମ୍ପୁଡ଼ିଟିଏ ବି ଗଳିଯାଇ ପାରିବନି ।'

ଆଉ ଦଳେ ଟିପ୍ପଣୀ କାଟିଲେ, 'ଆଚ୍ଛା, ଧରି ନିଆଯାଉ ସାପଟିଏ କୌଣସି ମତେ ରୁଦ୍ଧକକ୍ଷ ଭିତରକୁ ଗଳିଯାଇ ରାଜାଙ୍କୁ କାମୁଡ଼ି ଦେଲା । ତେବେ କ'ଣ ଏଇ ସାମାନ୍ୟ ସାପ କାମୁଡ଼ାକୁ ଭଲ କରିଦେବା ପାଇଁ ଆମ ରାଜ୍ୟରେ ବଇଦ ନାହାନ୍ତି ! ମଲା ଲୋକକୁ ଜିଆଁଇ ପାରୁଥିବା ଧନ୍ୱନ୍ତରୀ ନିଜେ ପରୀକ୍ଷିତ ରାଜାଙ୍କୁ ଭଲ କରି ଦେବାପାଇଁ ଅର୍ଥଲୋଭରେ ସ୍ୱର୍ଗରୁ ଓହ୍ଲାଇ ଆସିବେ । ତେଣୁ ଏତେ ଚିନ୍ତା କାହିଁକି ?'

ଅନ୍ୟ କେହି କେହି ମନ୍ତବ୍ୟ ଦେଲେ, 'ଆପଦ ଉପସ୍ଥିତ ହେଲେ ବୁଢ଼ାମାନଙ୍କୁ ଟିକିଏ ପଚାରି ଦେବା ଭଲ ।'

ଶେଷରେ ବୁଢ଼ାଙ୍କୁ ପଚରା ଗଲା । ସେମାନେ ପରାମର୍ଶ ଦେଲେ, 'ପ୍ରତିଷେଧ ବ୍ୟବସ୍ଥା ଅବଶ୍ୟ ଗ୍ରହଣୀୟ - ତେଣୁ ରୁଦ୍ଧକକ୍ଷ ଭିତରେ ରାଜା ଆଶ୍ରୟ ନିଅନ୍ତୁ ଓ ସର୍ବଶ୍ରେଷ୍ଠ ବୈଦ୍ୟସବୁ ପାଖରେ ଜଗି ରହନ୍ତୁ - ତଥାପି ବ୍ରାହ୍ମଣ ପୁତ୍ରର ଅଭିଶାପ ଯେହେତୁ ଅଲଂଘ୍ୟ ମହାରାଜା ମୃତ୍ୟୁ ପାଇଁ ମଧ୍ୟ ପ୍ରସ୍ତୁତ ହୋଇ ରହନ୍ତୁ ।'

ପରୀକ୍ଷିତଙ୍କ ବିବେକ ଉଦୟ ହେଲା । ସେ ଇଚ୍ଛା ପ୍ରକାଶ କଲେ ଯେ ଇହଲୋକରେ ତାଙ୍କର ଆଉ ଯେଉଁ ସାମାନ୍ୟ ସାତ ଦିନର ମାତ୍ର ରହଣୀ, ସେଇ ସମୟତକ ସେ ପାଣ୍ଡବ ସଖା ଶ୍ରୀକୃଷ୍ଣଙ୍କ ନାମ ଓ ଯଶ ଗାନ ଶୁଣି ଶୁଣି କଟାଇବେ । ଫଳରେ ଶୁକଦେବ ଗାଇଲେ -

"ଶୁଣ ପରୀକ୍ଷ ନରନାଥ
କୃଷ୍ଣ ଚରିତ ଭାଗବତ ।
............................
..........................."

ଏପରି ଭାବରେ ପରୀକ୍ଷ ନରନାଥ ଭାଗବତ ଶୁଣିଲେ ଓ ସେ ସଙ୍ଗରେ ଅନ୍ୟମାନେ ମଧ୍ୟ କୃଷ୍ଣଚରିତ ଶୁଣିବାର ସୁଯୋଗ ପାଇଲେ ।

ରାଜା ମହାରାଜାଙ୍କ ଉଚ୍ଛେଦ ଘଟିଲା ପରେ ଆଜିକାଲି ଆମ ଦେଶରେ ଆଉ ରାଜା ମହାରାଜା ନାହାନ୍ତି - ତଥାପି ନରନାଥଙ୍କ ଅଭାବ ନାହିଁ । ଏ ପ୍ରବନ୍ଧମାଳାର ଲେଖକ ତା'ର ୩୩ ବର୍ଷର କର୍ମମୟ ଜୀବନ ମଧ୍ୟରେ ୨୧ ବର୍ଷକାଳ କଲେଜଛାତ୍ରଙ୍କ ଗହଣରେ କଟାଇ ଆସିଛି - ୬ ବର୍ଷ ବୁର୍ଲା ଇଞ୍ଜିନିୟରିଂ କଲେଜରେ, ୧୦ ବର୍ଷ ରାଉରକେଲା ଆଞ୍ଚଳିକ ଇଞ୍ଜିନିୟରିଂ କଲେଜରେ, ୫ ବର୍ଷ ସମ୍ବଲପୁର ବିଶ୍ୱବିଦ୍ୟାଳୟରେ । ଏହି ୨୧ ବର୍ଷ ଭିତରେ ସେ

କଲେଜମାନଙ୍କରେ ତଥା ବାଟରେ ଘାଟରେ ପଇଁତରା ମାରୁଥିବା ଅନେକ ଆଧୁନିକ ପରୀକ୍ଷ ନରନାଥମାନଙ୍କୁ ଭେଟିଛି । ସେହି ନରନାଥମାନଙ୍କ ମଧ୍ୟରୁ ଅନେକ ତାଙ୍କର ବୃଦ୍ଧ ଗୁରୁଜନମାନଙ୍କ ଗଳାରେ ମଲାସାପ ଝୁଲାଇ ଦେବାପାଇଁ ଉତ୍କଣ୍ଠିତ ନ ହେଲେ ମଧ୍ୟ ପଶ୍ଚାତ୍‌ପଦ ଯେ ନୁହନ୍ତି ତାହା ସେ ଜାଣେ । ସେହି ଗୁରୁଜନମାନଙ୍କର କେହିକେହି ଏପରି ପରୀକ୍ଷମାନଙ୍କୁ ସାତ ଦିନରେ ନ ହେଲେ ମଧ୍ୟ ଯଥା ସମୟରେ ସର୍ପ ଦଂଶନ କରୁ ବୋଲି ଅଭିଶାପ ଦେଇଥାଇ ପାରନ୍ତି । ଏମାନେ ତ ଯେତେ ଅଭିଶପ୍ତ ହେଲେ ମଧ୍ୟ କେବେ କୌଣସି ରକମର ଭାଗବତ ଶୁଣିବାକୁ ଚାହିଁବେନି - ସେହି ଅଭିଶପ୍ତ ତଥା ଅନଭିଶପ୍ତ ପ୍ରିୟଛାତ୍ରଙ୍କ ଉଦ୍ଦେଶ୍ୟରେ ହିଁ ଏହି 'ଶୁଣ ପରୀକ୍ଷ' ମୁଖ୍ୟତଃ ଉଦ୍ଦିଷ୍ଟ ।

ପରୀକ୍ଷିତ ମହାରାଜାଙ୍କ କାହାଣୀ ଓ ଆମ ଏହି ପରୀକ୍ଷଙ୍କ କାହାଣୀ ଭିତରେ କିନ୍ତୁ ଗୋଟିଏ ବଡ଼ ପାର୍ଥକ୍ୟ ରହିଛି । ଶୁକଦେବଙ୍କ ମୁହଁରୁ ଭାଗବତ ଶୁଣି ସାରିଲା ପରେ ମଧ୍ୟ ସର୍ପଦଂଶନରେ ପରୀକ୍ଷିତ ମହାରାଜାଙ୍କ ମୃତ୍ୟୁ ହେଲା । ସାପ କାମୁଡ଼ାରେ କିନ୍ତୁ ଆମ ଏହି ପରୀକ୍ଷମାନଙ୍କ ମୃତ୍ୟୁ ନାହିଁ । ଏମାନଙ୍କ ମଧ୍ୟରୁ କେତେ ନିଜେ ଗରଳ ଭକ୍ଷୀ - ତେଣୁ ସ୍ୱୟଂ ସଦାଶିବ । ଯିଏ ହଳାହଳ ପାନକରି ନୀଳକଣ୍ଠ, ସର୍ପ ଯାହାଙ୍କ ଭୂଷଣ, ସର୍ପ ଦଂଶନରେ ତାଙ୍କର ମୃତ୍ୟୁ କାହିଁ ?

ଏଇ ଗରଳଭକ୍ଷୀମାନେ ଆଜି ତାଣ୍ଡବ ନୃତ୍ୟରେ ମତ୍ତ ଓ ବିଭୋର । ତେଣୁ ସେମାନେ ପ୍ରତ୍ୟେକେ ଯେ ସତ୍ୟ, ଶିବ ଓ ସୁନ୍ଦର ସେ ସମ୍ବନ୍ଧରେ ସମ୍ପୂର୍ଣ୍ଣ ଅଚେତନ । 'ଶୁଣ ପରୀକ୍ଷ' ଏହି ନୃତ୍ୟକାରୀମାନଙ୍କୁ କ୍ଷଣକ ପାଇଁ ହେଲେ ମଧ୍ୟ ତାଙ୍କ ତାଣ୍ଡବ ନୃତ୍ୟରୁ ଓହରାଇ ଆଣି ଯତ୍‌କିଞ୍ଚିତ୍ ଯୋଗଛ କରିବ ।

ପାଶ୍ଚାତ୍ୟ ଯୁବଜଗତ୍ ସଙ୍ଗରେ ତାଳମିଳାଇ ଭାରତୀୟ ଯୁବସମାଜ ଆଜି ପୁରୁଣା ରୀତିନୀତି, ଢଙ୍ଗରଙ୍ଗର ଚାଲିଚଳଣ ବିରୁଦ୍ଧରେ ବିପ୍ଳବର ଆହ୍ୱାନ ଦେଇଛି । ଯାହା ଶାଶ୍ୱତ ଓ ଚିରନ୍ତନ, ତାହା ନିତ୍ୟ ନୂତନ - କଦାପି ପୁରାତନ ହୋଇ ପାରେନା । ସୂର୍ଯ୍ୟ ତେଣୁ କେବେ ବୁଢ଼ା ହୁଏନି କି ମା' ପୃଥିବୀ କେବେ ବୁଢ଼ୀ ହୁଏନା । ଭାରତୀୟ ଜୀବନ ଦର୍ଶନ ଚିରନ୍ତନୀ ସତ୍ୟଉପରେ ପ୍ରତିଷ୍ଠିତ । ସେହି ଜୀବନ ଦର୍ଶନ ତେଣୁ ପୁରୁଣା ହେବ କିପରି ? ଏ କଥା କିନ୍ତୁ ସତ ଯେ ଯୁଗଯୁଗର ଅନ୍ଧବିଶ୍ୱାସ ଓ କୁସଂସ୍କାର ଭିତରେ ଏହି ଜୀବନ ଦର୍ଶନ ହଜିଯିବା ଉପରେ ବସିଲାଣି - ଅଳିଆ ଗଦା ଭିତରେ ହଜିଲା ରତ୍ନ ମୁଦିଟିଏ ପରି । କର୍ତ୍ତବ୍ୟବୋଧର ଅଳିଆ ସଫା କରୁଁ କରୁଁ ଆମ ଯୁବସମାଜ ଯେପରି ସେହି

ଆବର୍ଜନା ସଙ୍ଗରେ ରତ୍ନମୁଦିକୁ ଫିଙ୍ଗି ନ ଦିଅନ୍ତି । ଏହି ଅଳିଆ ସଫାକାରୀ ଓ ବିପ୍ଲବ ଧ୍ୱଜାଧାରୀଙ୍କ ଭ୍ରୂକୁଟିଳ ଅନ୍ଧାରୁଆ ମୁହଁରେ ସାମାନ୍ୟ କିଛି ହସ ଫୁଟାଇ ଆବର୍ଜନା ଫିଙ୍ଗିଲା ବେଳେ ରତ୍ନ ମୁଦିକୁ ମଧ ଦରାଣ୍ଡିବା ପାଇଁ ଚେତାଇ ଦେବା ଏହି 'ଶୁଣ ପରୀକ୍ଷ'ର ଲକ୍ଷ୍ୟ ।

'ମଣିଷ ସମ୍ବନ୍ଧରେ ଏକ ପ୍ରବନ୍ଧ' ବ୍ୟତୀତ ଏ ପ୍ରବନ୍ଧାବଳୀରୁ ଅନ୍ୟାନ୍ୟ ସବୁ ପ୍ରବନ୍ଧ ସମ୍ବଲପୁର ବିଶ୍ୱବିଦ୍ୟାଳୟର ମାସିକ ସାହିତ୍ୟ ପତ୍ରିକା 'ସପ୍ତର୍ଷି'ର ବିଭିନ୍ନ ସଂଖ୍ୟାମାନଙ୍କରେ ସମ୍ପାଦକୀୟ ରୂପରେ ପ୍ରକାଶିତ ହୋଇଥିଲା । ଏହି ସମ୍ପାଦକୀୟ ସବୁକୁ ପୁସ୍ତକ ଆକାରରେ ପ୍ରକାଶ କଲେ 'ସପ୍ତର୍ଷି' ପଢ଼ି ନ ଥିବା ଅନେକେ ସେହି ପୁସ୍ତକ ପଢ଼ି କିଛି ଆନନ୍ଦ ପାଇ ପାରିବେ ବୋଲି 'ସପ୍ତର୍ଷି'ର କେତେ ସହୃଦୟ ପାଠକ ସୂଚନା ଦେଇଥିଲେ । 'ଶୁଣ ପରୀକ୍ଷ' ସେହି ପରାମର୍ଶର ପରିଣତି ।

କହିବା ବାହୁଲ୍ୟ ଯେ ଏ ଉଦ୍ୟମ ପଛରେ ମୋର ସହଧର୍ମିଣୀ ଶ୍ରୀମତୀ ଉମାଙ୍କ ଉତ୍ସାହ ଓ ପ୍ରେରଣା ଯଥେଷ୍ଟ ମାତ୍ରାରେ କାର୍ଯ୍ୟ କରିଛି ।

ପ୍ରବନ୍ଧ ସମୂହର ପଠନ ପରେ ବିଦଗ୍ଧ ପାଠକଙ୍କ ମୁଖମଣ୍ଡଳର ଭ୍ରୂକୁଟି କୁଟିଳତ୍ୱ କେତେ ମାତ୍ରାରେ ଅପସାରିତ ହେଲା ତାହାହିଁ ଲେଖକର ଉଦ୍ୟମର ସଫଳତା ଇଙ୍ଗିତ କରିବ ।

**ଲେଖକ**

# ସୂଚୀ

# ନାଟର ଗୋବର୍ଦ୍ଧନ

କୌଣସି ଘଟଣାବଳୀର ଆଢୁଆଳରେ ଯଦି କାହାରି ହାତ ଛପି ରହିଥିବାର ସନ୍ଦେହ କରାଯାଏ ତେବେ ସେ ଅଦୃଶ୍ୟ ହାତର ଅଧିକାରୀକୁ ସନ୍ଦେହକାରୀମାନେ 'ନାଟର ଗୋବର୍ଦ୍ଧନ' ବୋଲି ବର୍ଣ୍ଣନା କରିଥାଆନ୍ତି । ନାଟରେ ଜଣେ ଗୋବର୍ଦ୍ଧନ କାହିଁକି ଦରକାର, ଏ ଗୋବର୍ଦ୍ଧନ ଠିକ୍ କ'ଣ ସବୁ କରେ, ଆଉ ଏ ନାଁ'ଟି କିଏ କେଉଁଥିପାଇଁ ପ୍ରଥମକରି ଦେଲା, ସେ ସମ୍ବନ୍ଧରେ ବିଶେଷ କିଛି କହିହେଉନି - ତେବେ ଧରିନିଆଯାଇ ପାରେ ଯେ, ସିନେମାର ଡାଇରେକ୍ଟର ପରି ଏହି ନାଟର ଗୋବର୍ଦ୍ଧନ - ଲୋକଲୋଚନର ଅନ୍ତରାଳରେ ରହି ନାଟରେ ଭାଗନେଉଥିବା ଖେଳାଳୀମାନଙ୍କ ପାଇଁ ଭିନ୍ନ ଭିନ୍ନ ଚରିତ୍ର ବଣ୍ଟନ କରେ ଓ ସେମାନେ ଠିକ୍ କିପରି ଭାବରେ ନାଚିବେ ସେ ବିଷୟରେ ନିର୍ଦ୍ଦେଶ ଦିଏ ।

ଏହି 'ନାଟର ଗୋବର୍ଦ୍ଧନ' ଆଖ୍ୟାଟି ସାଧାରଣତଃ ଭଲ ଅର୍ଥରେ ନିଆଯାଉଥିବାର ଶୁଣାଯାଏନି । 'ନାଟ ଲଗେଇଛି' ବା 'ପାଲା ଲଗେଇଛି' ପରି ବିରକ୍ତି ବ୍ୟଞ୍ଜକ ଇଙ୍ଗିତ ପଛରେ କୌଣସି ଆକ୍ଷେପର ହିଁ ସୂଚନା ମିଳେ । ତେଣୁ ଲୋକ ଚକ୍ଷୁରେ ନାଟର ଗୋବର୍ଦ୍ଧନ ଏକଜାତୀୟ ଭିଲେନ୍, ଗୋଟିଏ ଖଳପ୍ରକୃତିର ନାୟକ ।

ନାଟ କହିଲେ ସାଧାରଣ ଭାବରେ ଦଣ୍ଡନାଟ, ସୁଆଙ୍ଗ, ପାଲା, ଦାସକାଠିଆ ଓ ଅପେରା ପ୍ରଭୃତି ବୁଝାଯାଉଥିଲେ ହେଁ ଆମ ଭାଷାରେ ଏହି ଶବ୍ଦର ବହୁଳ ପ୍ରୟୋଗ ଦେଖିବାକୁ ମିଳେ । ରାଜନୀତିରେ କୁଆଡ଼େ କେହି କେହି ରୀତିମତ ନାଟ ଲଗାଉ ଥାଆନ୍ତି - କଳ କାରଖାନାମାନଙ୍କରେ ଧାରଣା, ଧର୍ମଘଟ ପ୍ରଭୃତି ନାଟ ତାମସା ଲଗାନ୍ତି ଏବଂ ଅନେକ ସମୟରେ ଛାତ୍ରମାନେ ମଧ୍ୟ ସ୍କୁଲ-କଲେଜମାନଙ୍କରେ ନାନାରକମର ନାଟ ଲଗାଉଥିବା ଶୁଣାଯାଏ । ତେଣୁ ଏପରି ପ୍ରତ୍ୟେକ ନାଟରେ ଜଣେ ଲେଖାଏଁ ଗୋବର୍ଦ୍ଧନ ଥିବା ସ୍ୱାଭାବିକ କଥା ।

ରାମାୟଣରେ ମନ୍ଥରା ଓ ମହାଭାରତରେ ଶକୁନିକୁ 'ନାଟର ଗୋବର୍ଦ୍ଧନ' ବୋଲି ଧରି ନିଆଯାଇ ପାରେ ।

କାହାରି କାହାରି ମତରେ ଏ ସଂସାର ଗୋଟିଏ ଖେଳଘର ଓ ସେଥିରେ ପ୍ରତ୍ୟେକ ମଣିଷ ତା'ର ନିର୍ଦ୍ଦିଷ୍ଟ ଭୂମିକାରେ ଅଭିନୟ କରିଚାଲିଛି । ଏ 'ଭବ-ରଙ୍ଗଭୂମି ତଳେ' କୁଆଡ଼େ 'କେହି ରହିନାହିଁ' କିମ୍ୱା 'ରହିବେ ନାହିଁ' ଆଉ ସମସ୍ତେ 'ନିଜ ନିଜ ଅଭିନୟ ସାରି' ଆପଣା ଆପଣା ଘରକୁ ଯଥାସମୟରେ ବାହୁଡ଼ି ଯିବେ । ଏଥିରୁ କେଉଁ ଜଣେ ନଟକୂଟିଆ, ଗୋବର୍ଦ୍ଧନିଆ ସଂସାରରେ ସବୁ ପାଲା ଲଗେଇଛି ବୋଲି ଭାବିନେବା ସ୍ୱାଭାବିକ କଥା । କିନ୍ତୁ ଏସବୁ ଭିତରେ ଗୋଟିଏ ଧାରାବାହିକ କ୍ରମାନ୍ୱୟତା ଓ ମହାନ୍ ଉଦ୍ଦେଶ୍ୟରେ ସନ୍ଧାନ ପାଇ କେହି କେହି 'ସଂସାରର ଲୀଳା ଖେଳା ସରିଲା ଆମ୍ଭର' ବୋଲି ଘୋଷଣା କରି 'ମହାଯାତ୍ରା' ଆରମ୍ଭ କରିଦେଇଥିବା କଥା ମଧ୍ୟ ଶୁଣାଯାଏ । ଏପରି ସ୍ଥଳେ ଏ ଖେଳର ପରିଚାଳକଙ୍କୁ ନାଟର ଗୋବର୍ଦ୍ଧନ ବୋଲି କୁହାଯିବା ଉଚିତ ହେବ କି ନାହିଁ ସେ ସମ୍ୱନ୍ଧରେ ଭିନ୍ନ ଭିନ୍ନ ମତ ପୋଷଣ କରାଯାଇ ପାରେ । କିନ୍ତୁ ପ୍ରତ୍ୟେକ ମଣିଷର ବ୍ୟକ୍ତିଗତ ଜୀବନ ମୁଖ୍ୟତଃ ଗୋଟିଏ ଲେଖାଏଁ ନାଟ ହୋଇଥିବାରୁ ପ୍ରତ୍ୟେକ ମଣିଷ ଭିତରେ ଯେ ଜଣେ ଗୋବର୍ଦ୍ଧନ ଲୁଚିରହିଛି ଏଥିରେ ସନ୍ଦେହ ନାହିଁ ।

ଜାଣିଲା ଲୋକ କହନ୍ତି ଯେ ମଣିଷର ମନ ତାକୁ ଯେମିତି ନଚାଏ ସେ ବାଧ୍ୟ ହୋଇ ସେପରି ନାଚେ । ତେଣୁ ଏହି ମନକୁ ଗୋଟିଏ ନାଟର ଗୋବର୍ଦ୍ଧନ ବୋଲି ନିଃସନ୍ଦେହରେ କୁହାଯାଇ ପାରେ ।

ସ୍କୁଲରେ ଛାତ୍ର ବାପା ମା'ଙ୍କ କଥାମାନି ପଢ଼ିବାକୁ ଚାହୁଁଥିଲେ ମଧ୍ୟ କ୍ଲାସ ରୁମ୍‌ରେ ଶିକ୍ଷକ ଯେତେବେଳେ କିଛି ପଢ଼ାଉଥା'ନ୍ତି ଆଖି ବ୍ଲାକ୍ ବୋର୍ଡ଼କୁ ଅନାଇ ଥିଲେ ହେଁ ମନ ଯାଇ କେଉଁ ତେନ୍ତୁଳି ଗଛ, କଇଥ କିମ୍ୱା ଆମ୍ୱଗଛ ଚଢ଼ିସାରିଥାଏ । ଶିକ୍ଷକଙ୍କ ବକ୍ତୃତା ଆଡ଼କୁ କାନେଇ ରହିଲେ ବି ମନ ନିଜେ ନିଜେ ପେଁକାଳି ବଜାଇବାକୁ ଆରମ୍ଭ କରେ । କଲେଜରେ ସେମିତି ବ୍ଲାକ୍‌ବୋର୍ଡ଼ରେ ବିଜ୍ଞାନର କୌଣସି ଫର୍ମୁଲା ଦେଖୁ ଦେଖୁ ମନ ସେହି ଫର୍ମୁଲା ଉପରେ କୌଣସି ଚିତ୍ର ତାରକାର ମୁହଁ ଆଙ୍କିଦିଏ - ନ ହେଲେ ହଠାତ୍ ବ୍ରେବୋର୍ଣ୍ଣ ଷ୍ଟେଡ଼ିୟମ୍ କିମ୍ୱା ଫିରୋଜ ସାହା କୋଟ୍ଲା ଗ୍ରାଉଣ୍ଡର କ୍ରିକେଟ୍ ଫିଲ୍‌ଡ଼ରେ ପହଞ୍ଚି ଯାଇ ନିଜେ ନିଜେ ବ୍ୟାଟିଂ ଆରମ୍ଭ କରିଦିଏ, କିମ୍ୱା ଠିକ୍ ବହି ଖୋଲି ପଢ଼ି ବସିଲା ବେଳକୁ ସମାଜବାଦୀ ଜୀବନର ଆଦର୍ଶକୁ ବୃଦ୍ଧାଙ୍ଗୁଷ୍ଠି ଦେଖାଇ ଏହି ମନ ସୁନେଲୀ ସ୍ୱପ୍ନରେ ମଣିମୁକ୍ତାର ମୁକୁଟ ପିନ୍ଧାଇ ହାତୀର

ସୁନାହାଉଦାରେ ବସାଏ ଆଉ ସ୍ୱପ୍ନ ପୁରୀର ରାଜକନ୍ୟା ପାଖକୁ 'ବରାତ୍' ପ୍ରଶେସନ୍ ଆରମ୍ଭ କରିଦିଏ । ବୟସ ଯେମିତି ଗଡ଼ି ଗଡ଼ି ଯାଏ, ପଇସାଟିଏ ବେଙ୍କ୍ ବେଲେନ୍ସ ନ ଥିଲେ ମଧ୍ୟ ଖପରେଲି ଘରେ ରହୁଥିବା ପ୍ରୌଢ଼ ଶିକ୍ଷକର ମନ ବିରାଟ ପ୍ରାସାଦ ରଚିବାକୁ ଆରମ୍ଭକରେ ।

ମଣିଷ ବୁଝେ ଯେ ଏହି ଶୟତାନ ମନକୁ ଆକଟ ନ କଲେ ତା'ର ମଙ୍ଗଳ ନାହିଁ - ତେବେ ବି ସେ ନିରୁପାୟ ହୋଇଯାଏ । ମନକୁ ମଣକରିବା କେତେ କଷ୍ଟ ସେ ସମ୍ବନ୍ଧରେ ଏଠାରେ ଗୋଟିଏ ଗଳ୍ପର ଅବତାରଣା କରାଯାଇ ପାରେ ।

ରାଜାଙ୍କର କିଛି ଅଭାବ ନ ଥିଲା - ବିଶାଳ ସାମ୍ରାଜ୍ୟ, କୋଷାଗାର ଧନରତ୍ନରେ ଭରପୂର । ପୁଅ ଝିଅ, ହାତୀ ଘୋଡ଼ା, ସୈନ୍ୟ ସମାନ୍ତ କେଉଁଥିରେ ଅଭାବ ନାହିଁ । ତେବେ ବି ରାଜାଙ୍କର ଗୋଟିଏ ବଡ଼ ଦୁଃଖ - ମୁଣ୍ଡରୁ ବାଳ ଉପୁଡ଼ି ଉପୁଡ଼ି ତାଳୁ ଉପରେ ଦେଖା ଦେଇଥିବା '୦' ଟି ଧୀରେ ଧୀରେ ବଡ଼ ହେବାରେ ଲାଗିଥାଏ ଓ ଭୟ ହେଉଥାଏ ଯେ ବାଳ ଉପୁଡ଼ିବା ବନ୍ଦ ନ ହେଲେ ଓ ନୂଆ ବାଳ ନ ଗଜୁରିଲେ ସେ ଦିନେ ପୂରାପୂରି ଚନ୍ଦା ହୋଇଯିବେ ।

ରାଜ୍ୟର ବଡ଼ ବଡ଼ ଡାକ୍ତର, କବିରାଜ, ହାକିମ ସମସ୍ତେ ତାଙ୍କର ସବୁ ଉପାୟ ଶେଷ କରିସାରିଥିଲେ । ଜବାକୁସୁମ, ଅଁଳା ଆଉ ଆଉ କେତେ ଫୁଲଫଳରସରୁ ତିଆରି ହୋଇଥିବା ତୈଳ ସବୁ କିଛି କାମ ଦେଖାଇପାରିଲାନି । କେଡ଼େ କେଡ଼େ ଭୃଙ୍ଗରାଜ, ନାରାୟଣ, ମହାନାରାୟଣ ତୈଳ ସବୁ ଫେଲ୍ ମାରିଗଲେ । ବୃହଦ୍ ଛାଗଳଠାରୁ ଆରମ୍ଭ କରି ଅନ୍ୟାନ୍ୟ ନାନା ଜାତୀୟ ଘୃତ ଆଉ କେତେ କେତେ ସାଲସା ମଧ୍ୟ କାମଦେଲାନି । ବରଂ ମୁଣ୍ଡ ଧୀରେ ଧୀରେ ଅଧିକ ଚକ୍ ଚକ୍ କରିବାକୁ ଆରମ୍ଭକଲା ।

ରାଜାଙ୍କର ଧୈର୍ଯ୍ୟଚ୍ୟୁତି ଘଟିଲା ଓ ସେ ରାଗରେ ଘୋଷଣାକଲେ ଯେ ଯଦି ମାସେ ଭିତରେ ତାଙ୍କର ଚନ୍ଦା ମୁଣ୍ଡରେ ବାଳ ନ ଉଠେ ତେବେ ରାଜ୍ୟର ସବୁ ଡାକ୍ତରଙ୍କ ମୁଣ୍ଡକାଟ ହେବ ।

ଡାକ୍ତରମାନଙ୍କ ଭିତରେ ଭାଳେଣି ପଡ଼ିଗଲା ଏବଂ ଅନେକ ଆସନ୍ନ ବିପଦର ଆଶଙ୍କାରେ ଖାଇବା ପିଇବା ମଧ୍ୟ ଛାଡ଼ିଦେଲେ । ଜଣେ ଖୁସ୍‌ମିଜାଜ ଓ ବେ'ପରବାଏ ଡାକ୍ତର କିନ୍ତୁ ରାଜାଙ୍କର ଏ ଚ୍ୟାଲେଞ୍ଜ ଗ୍ରହଣକରି ଯଥା ସମୟରେ ଗୋଟିଏ ଶୁଭଦିନ ଓ ଶୁଭମୁହୂର୍ତ୍ତରେ ତାଙ୍କ ମହୌଷଧି ବାକ୍ସଧରି ରାଜାଙ୍କ ପାଖରେ ପହଞ୍ଚିଗଲେ । ବାକ୍ସ ଭିତରେ ନାନା ରଙ୍ଗର ଓ ନାନା ଢଙ୍ଗର ତୈଳଶିଶି

ସବୁ ଥାଏ । ଡାକ୍ତର ମହାଶୟ ରାଜାଙ୍କର ଚନ୍ଦାମୁଣ୍ଡ ତନ୍ନ ତନ୍ନକରି ପରୀକ୍ଷାକଲେ, ଲମ୍ୱା ଚୌଡ଼ା ମାପିଲେ, ମସୃଣତା ପରୀକ୍ଷାକଲେ - ରାଜାଙ୍କ ମୁଣ୍ଡରେ ନିଜ ପ୍ରତିବିମ୍ୱ ଦିଶୁଛି ନା ନାହିଁ ପରଖି ନେଲେ - ଆଉ ଗମ୍ଭୀର ଭାବରେ ମୁଣ୍ଡ ଟୁଙ୍ଗାରି ଘୋଷଣା କଲେ ଯେ ୨୨ ଦିନରେ ରଜାଙ୍କ ମୁଣ୍ଡରେ ଯେତେ ବାଳ ବାହାରିବ ସେଥିରୁ ଖଣ୍ଡିଏ ଗାଲିଚା ତିଆରି ହୋଇପାରିବ ।

ତେଲ ଶିଶି ସବୁ ବାହାର କରାଗଲା । ପ୍ରତ୍ୟେକ ତେଲର ଗୁଣ ବର୍ଣ୍ଣନା ବି ସଙ୍ଗେ ସଙ୍ଗେ ଚାଲିଥାଏ । କେଉଁ ତେଲ ମର୍ଦ୍ଦନରେ କେଶଗୁଚ୍ଛ ଝିଙ୍କ କାଠି ପରି ହେବ ତ କେଉଁଥିରେ ପ୍ରତ୍ୟେକ ବାଳ ଶାଳଗଛ ପରି ମୋଟାହୋଇ ଶାଖାପ୍ରଶାଖା ମେଲିଯିବ । ଯେଉଁ ତେଲର ସାମାନ୍ୟ ମର୍ଦ୍ଦନରେ ରାଜାଙ୍କ କେଶରାଶି ହିମାଳୟର ଚାମରୀ ଗାଈ ଲାଞ୍ଜର ଚଅଁର ପରି ହେବ ସେପରି ତେଲର ଗୋଟିଏ ଶିଶି ରାଜାଙ୍କ ଟେବୁଲ ଉପରେ ଥୋଇଦେଇ ଡାକ୍ତର ଅନୁପାନ ଦେଲେ ଯେ ପ୍ରତ୍ୟେକ ଦିନ ବ୍ରାହ୍ମ ମୁହୂର୍ତ୍ତରେ ରାଜା ଗାଧୋଇବେ, ଆଉ ଗାଧୋଇବା ପୂର୍ବରୁ ବାଁ ହାତ ପାପୁଲିରେ ଆଠଅଣି ସାଇଜ୍‌ରେ କିଛି ତେଲ ଢାଳିନେଇ ମୁଣ୍ଡର ଚନ୍ଦାଅଂଶରେ ଧୀରେ ଧୀରେ ପାଞ୍ଚ ମିନିଟ୍ କାଳ ଘଷିବେ ।

ରାଜାଙ୍କ ମୁହଁରେ ହସର ଢେଉ ଖେଳିଗଲା ।

ବାକ୍ସ ବନ୍ଦକରି ଘରକୁ ଯିବା ବାଟରେ ଡାକ୍ତରବାବୁ ହଠାତ୍ ଚମକି ଉଠିଲେ ଓ ଫେରି ଆସି କ୍ଷମାମାଗି ରାଜାଙ୍କୁ କହିଲେ ଯେ ସେ ଗୋଟାଏ ବଡ଼ କଥା କହିବାକୁ ଭୁଲି ଯାଇଛନ୍ତି । ତେଲ ଲଗାଇଲାବେଳେ ରାଜା ଯେପରି ତିନୋଟି ଜିନିଷ ମନେ ନ ପକାନ୍ତି - ପଚା ଅଣ୍ଡା, ଛିଣ୍ଡା ଚପଲ ଓ ଖଣ୍ଡିଆ ଝାଡୁ । ଏ ଭିତରେ କୌଣସି ଜିନିଷଟି ସେତେବେଳେ ରାଜାଙ୍କର ମନେ ପଡ଼ିଲେ ଔଷଧ ଆଉ କାମ୍ଚୁକରିବନି ।

ରାଜାଙ୍କ ମୁହଁରେ ବିଦ୍ରୂପର ହାସ୍ୟରେଖା ଦେଖାଦେଲା । ଯିଏ ହୀରା, ନୀଳା, ମୋତି ମାଣିକ୍ୟକୁ ମଧ୍ୟ ଗଣନା କରନ୍ତିନି ସେ କୁଆଡ଼େ ପଚା ଅଣ୍ଡା, ଛିଣ୍ଡା ଚପଲ ଆଉ ଖଣ୍ଡିଆ ଝାଡୁ କଥା ଭାବିବେ !

ଭୋର ଚଢ଼େଇ ସବୁ ଚିଁ ଚା କଲାବେଳକୁ ରାଜା ପଲଙ୍କରୁ ଉଠି ତେଲ ଶିଶି ପାଖକୁ ଦୌଡ଼ିଗଲେ । ହାତପାପୁଲିରେ କିଛି ଢାଳି ମୁଣ୍ଡରେ ଦେବାକୁ ଯାଉଛନ୍ତି ଠିକ୍ ସେତିକିବେଳେ ତାଙ୍କର ମନେ ପଡ଼ିଗଲା ଯେ ପଚାଅଣ୍ଡା, ଛିଣ୍ଡାଚପଲ, ଖଣ୍ଡିଆଝାଡୁ ବିଷୟରେ ନ ଭାବିବା କଥା । ଆଉ ତେଲ ମର୍ଦ୍ଦନ

ହୋଇପାରିଲାନି । ତା' ଆରଦିନ ବି ଠିକ୍ ସେମିତି ତେଲ ମୁଣ୍ଡପାଖକୁ ନେଲାବେଳକୁ ସେଇ ଛିଣ୍ଡାଚପଲ କଥା ମନେ ପଡ଼ିଗଲା । ପୁଣି ତହିଁ ଆରଦିନ ବି ସେଇଆ । ରାଜା ଶେଷରେ ମନ ଦୃଢ଼କଲେ, ପ୍ରତିଜ୍ଞାକଲେ ଯେ ପଚାଅଣ୍ଡା କାହିଁକି, ସେ ସକାଳେ କୌଣସି କଥା ଭାବିବେନି ।

ପାହାନ୍ତିଆ ହେଲା । ହାତ ପାପୁଲିରେ ତେଲନେଇ ଦାନ୍ତକାମୁଡ଼ି, ଡାହାଣ ହାତର ମୁଠା ଟାଣକରି, ଆଖିବୁଜି କଦାପି କିଛି ଭାବିବେନି ବୋଲି ଦୋହରାଇ ଏକ-ଦୁଇ-ତିନି ପରେ ତେଲ ଯେମିତି ତାଳୁରେ ଥାପୁଡ଼େଇଛନ୍ତି, ସେହି ମୂହୂର୍ତ୍ତରେ ପାଟିରୁ 'ଛିଣ୍ଡାଚପଲ' ଶବ୍ଦ ବନ୍ଧୁକର ଗୁଳି ପରି ବାହାରିଆସିଲା । ରାଜାଙ୍କର ସବୁ ଆଶା ଭରସା ସେଥିରେ ହିଁ ଶେଷହୋଇଗଲା ।

ଏହି ଚଞ୍ଚଳ ମନକୁ ଆକଟ କରିବା ସହଜ ନୁହେଁ । ଏହି ମନ ଏପରି ପିଚ୍ଛିଳ ଯେ ତାକୁ ସହଜରେ ଧରି ରଖିହୁଏନି ।

କେହି କେହି କହନ୍ତି ଯେ ଔଷଧ ଦ୍ୱାରା ଏ ମନକୁ ବଶ କରାଯାଇପାରେ । ମଣିଷ ବେଳେ ବେଳେ ଅଫିମ ନିଶାରେ ସ୍ୱର୍ଗରେ ଖାଲି ଥିବା ଇନ୍ଦ୍ରଙ୍କ ଆସନରେ ଯାଇ ବସେ; ଗଞ୍ଜେଇ, ମେରିଜୁଆନା, ଏଲ୍.ଏସ୍.ଡ଼ି. ନିଶାରେ ଆକାଶରେ ପହଁରି ବୁଲେ । ଆଉ କେବେ କେବେ ମଦ ପିଇ ରାସ୍ତାଘାଟରେ ଛାତିପିଟେ ଓ ନିଶମୋଡ଼ି ବାହାସ୍ଫୋଟ ମାରି ନେପୋଲିୟନ୍ ବୋନାପାର୍ଟଙ୍କୁ କୁସ୍ତି ଆଖଡ଼ାକୁ ଡାକେ । ଆମର ମହାନ୍ ସଂସ୍କୃତି କିନ୍ତୁ ଦୃଢ଼ ଭାବରେ ଘୋଷଣା କରେ ଯେ ଔଷଧ ଦ୍ୱାରା ମନକୁ ବଶୀଭୂତ କରିବା ଧାରଣା ସମ୍ପୂର୍ଣ୍ଣ ଭ୍ରମପୂର୍ଣ୍ଣ । ଔଷଧ ମନକୁ କ୍ଷଣିକ ଉନ୍ମାଦନାଦେଇ ସ୍ୱପ୍ନିଳ କରିପାରେ; ମାତ୍ର ଅନବରତ ବ୍ୟବହାର ଦ୍ୱାରା ମଣିଷ ଶେଷରେ ଔଷଧର ଦାସହେବା ସଙ୍ଗେ ସଙ୍ଗେ ନିଜେ ମନର କ୍ରୀତଦାସ ହୋଇଯାଏ । ତା' ପରିବର୍ତ୍ତେ ଏହି ସଂସ୍କୃତି ଶିକ୍ଷା ଦିଏ ଯେ, କଣ୍ଟାକୁ କଣ୍ଟାରେ ବାହାର କଲାପରି ମନକୁ ବୁଦ୍ଧି ଓ ବିବେକର ଶକ୍ତି ବଳରେ ଦୃଢ଼କରି ସେହି ଦୃଢ଼ ମନ ସାହାଯ୍ୟରେ କ୍ରମାଗତ ଅଭ୍ୟାସ ଦ୍ୱାରା ଚଞ୍ଚଳ ମନକୁ ଆକଟ କରାଯାଇ ପାରେ ।

ଲକ୍ଷ୍ୟହୀନ ଭାବରେ ଘୂରିବୁଲୁଥିବା କୁକୁରକୁ ହାଡ଼ ଖଣ୍ଡିଏ ଦେଲେ ସେ ଯେମିତି ହାଡ଼କୁ ରେକେଟି ରେକେଟି ଗୋଟିଏ ଜାଗାରେ ପଡ଼ିରହେ, ଏହି ବାରବୁଲା ମନକୁ ସେପରି ତା'ର ପ୍ରିୟ ଜିନିଷଟିଏ ଧରାଇଦେଲେ କିଛି ସମୟ ପାଇଁ ଧୀରସ୍ଥିର ଓ ଶାନ୍ତ ହୋଇରହେ । ଛୋଟପିଲାକୁ ପ୍ରଥମେ ଭାତ

ଖୁଆଇଲାବେଳେ ସେ ଭାତକୁ ଯେମିତି ଜିଭ ଅଗରେ ବାହାରକୁ ଠେଲିଦିଏ, କିନ୍ତୁ କ୍ରମେ କ୍ରମେ ସେହି ଭାତରୁ ସ୍ୱାଦ ପାଇ ଖୁସିରେ ଖାଏ, ସେପରି ମନକୁ ମଧ ଧୀରେ ଧୀରେ ତା’ ପ୍ରିୟ ବସ୍ତୁ ନ ଦେଇ ଶ୍ରେୟ ଜିନିଷ ଭଲପାଇବାକୁ ଶିକ୍ଷାଦିଆଯାଇ ପାରେ । ପାଠପଢ଼ାଠାରୁ ଆରମ୍ଭକରି ଗବେଷଣା, ସମାଜ-ସେବା, ସାହିତ୍ୟ-ସେବା, ଦେଶ-ସେବା ପ୍ରଭୃତି ଯେକୌଣସି ଭଲ କାମରେ ମନକୁ ଏପରି ଭାବରେ ଲଗାଇ ଦେଇପାରିଲେ ଘିଅଦୀପର ଶିଖାପରି ଊର୍ଦ୍ଧ୍ୱଗାମୀ ତଥା ଏକାଗ୍ରହୋଇ ମନ ଯଥାସମୟରେ ଶାନ୍ତହୋଇଯାଏ ।

ଆମର ଏହି ସଂସ୍କୃତି ପୁଣି ସାବଧାନ କରିଦିଏ ଯେ ଗୋଟିଏ ସୁସ୍ୱାଦୁ ଖାଦ୍ୟର ଆସ୍ୱାଦନରେ ମଣ ହୋଇଥିବା ମନ ଆଉ ଗୋଟିଏ ସ୍ୱାଦୁ ଖାଦ୍ୟର ସନ୍ଧାନ ପାଇଲେ ପୁଣି ଚଞ୍ଚଳ ଓ ଚପଳ ହୋଇ ଯାଇପାରେ । ତେଣୁ ଯେଉଁ ସୁଖ ଓ ଆନନ୍ଦଠାରୁ ଆଉ ଶ୍ରେଷ୍ଠତର ଆନନ୍ଦ ନାହିଁ ସେପରି ଆନନ୍ଦର ଆସ୍ୱାଦନରେ ମନ ସମ୍ପୂର୍ଣ୍ଣ ସ୍ଥିରହୋଇଯାଏ । ଏପରି ଧୀର ସ୍ଥିର ଶାନ୍ତ ମନର ଅଧିକାରୀ ହିଁ ଅମୃତର ସନ୍ତାନ ।

ଏହି ନାଟର ଗୋବର୍ଦ୍ଧନ ଚଞ୍ଚଳ ମନ ମଣିଷକୁ ବାସନାର ସଂକୀର୍ଣ୍ଣ ଗଳିକନ୍ଦି ଭିତରେ ବାଟ କଢ଼ାଇନେଇ ନରକର ଦ୍ୱାର ଉନ୍ମୁକ୍ତକରି ସେ ଭିତରକୁ ଠେଲିଦିଏ, ଆଉ ସେହି ମନ ଯେତେବେଳେ ମଣ ହୋଇଯାଏ ସେ ହୁଏ ପରମ ଆନନ୍ଦର ସ୍ରଷ୍ଟା । ତେଣୁ ଏହି ମନକୁ ଆକଟ କରିବା ସହଜସାଧ ନ ହେଲେହେଁ ତାକୁ ସବୁବେଳେ ସତ୍‌ଚିନ୍ତାରେ ନିୟୋଜିତ କରି କ୍ରମାଗତ ଚେଷ୍ଟା କରିବା ହିଁ ପ୍ରତ୍ୟେକ ମଣିଷ ପକ୍ଷରେ ସର୍ବତୋଭାବେ ବିଧେୟ ବୋଲି ମନେହୁଏ ।

# ଫେସନ

ସମୟ ସମୟରେ ମଣିଷ ଏପରି ଅବସ୍ଥାରେ ପଡ଼େ ଯେ ସେ ତା' ମନର କଥା କେଉଁଠି କହି ପାରେନି, ଆଉ କାହାକୁ ନ କହି ରହି ମଧ୍ୟ ପାରେନି । ଏହା ଯେ କେବଳ ଆଧୁନିକ ମଣିଷର ଗୋଟିଏ ନୂଆ ଅନୁଭୂତି ତା' ନୁହେଁ, ଆଗେ ବି ଏପରି ଘଟୁଥିଲା ।

ଗୋଟିଏ ଜଣାଶୁଣା ଗପ ।

ଥରେ କୁଆଡ଼େ ଜଣେ ରଜାଙ୍କର ଦିଓଟି ଯାକ କାନ କୌଣସି କାରଣରୁ ଗଧକାନ ପାଲଟିଗଲା । କାଳେ କିଏ ସେହି ଗଧକାନକୁ ଦେଖି ପକାଇବ ଏଇ ଭୟରେ ଓ ଲାଜରେ ରାଜା ସବୁବେଳେ ଟୋପି ପିନ୍ଧି କିମ୍ବା ପଗଡ଼ି ଭିଡ଼ି କାନ ଦିଓଟିକୁ ଲୁଚାଇ ରଖୁଥିଲେ । ଦିନେ ରାଜାଙ୍କୁ ଖିଅର କରୁ କରୁ ରାଜବାରିକ ଟୋପିଟିକୁ କେମିତି ହଠାତ୍ ଉପରକୁ ଠେଲି ଦେଲା ଓ ଗୋଟିଏ ଗଧ କାନ ଦେଖି ପକାଇଲା । ବାରିକମାନଙ୍କର ସ୍ୱାଭାବିକ ଚତୁର ପଣିଆ ଯୋଗୁଁ କାନଟି ଦେଖି ନ ଥିବା ଢଙ୍ଗ ଓ ବାହନା କରି ସନ୍ଦେହକୁ ବଦ୍ଧମୂଳ ବିଶ୍ୱାସରେ ପରିଣତ କରିବା ଉଦ୍ଦେଶ୍ୟରେ ଅନ୍ୟ ପାଖ କାନ ମଧ୍ୟ ଟୋପି ଟେକିବା ଛଳନାରେ ଦେଖି ନେଲା ଓ ସ୍ୱଭାବଜାତ କୌତୂହଳ ଦମନ କରିପାରିବା ଶକ୍ତି ବଳରେ ଛାତିଭିତରୁ ହାବେଲିବାଣ ପରି ଉପରକୁ ଠେଲି ଆସୁଥିବା ହସକୁ କୌଣସି ମତେ ଚାପି ଦେଇ ସେଠାରୁ ଖସିଆସିଲା । ଘରକୁ ଆସିବା ବାଟରେ ଯାହାକୁ ଦେଖିଲା ତାକୁ ଏହି ତାଜା ଓ ଗରମାଗରମ ଖବରଟି ଶୁଣାଇ ଦେବାକୁ ପ୍ରବଳ ଇଚ୍ଛା ହେଉଥିଲେ ହେଁ ଘଟଣାଟି ପ୍ରଘଟ ହୋଇଗଲେ ତା'ର ମୁଣ୍ଡକାଟ ଯେ ସୁନିଶ୍ଚିତ, ସେହି ଭୟରେ କାହାକୁ କିଛି କହିପାରିଲାନି । କଥାଟି କିନ୍ତୁ ରାତି ଦିନ ସବୁବେଳେ ତା' ମନ ଓ ପେଟ ଭିତରେ ଖଜବଜ ହେଉଥାଏ, ଆଉ ବଦହଜମିର ହାକୁଟି ପରି ପେଟ ଭିତରୁ ଠେଲା ମାରି ଜିଭ ଅଗ ପର୍ଯ୍ୟନ୍ତ ଚାଲି ଆସୁଥାଏ । ବାରିକ ତା' ସ୍ତ୍ରୀକୁ ମଧ୍ୟ ଏ କଥାଟି କହିବାକୁ ସାହସ କଲାନି - ସ୍ତ୍ରୀ ଲୋକମାନେ କୁଆଡ଼େ ସହଜରେ କୌଣସି କଥା ପେଟଭିତରେ ରଖିପାରନ୍ତିନି ଓ 'କାହାକୁ କହିବିନି'

କହି ଆଗ ପଡ଼ୋଶୀକୁ ସବୁ କହିଦିଅନ୍ତି । ଶେଷରେ ବାରିକ ତା' ଘର ବାଡ଼ିଆଡ଼େ ଗୋଟିଏ ଗାତ ଖୋଳି ଗାତଭିତରେ ମୁଣ୍ଡପୂରାଇ ତା' ଭିତରେ ଥିରି ଥିରି କହିଲା, 'ରାଜାଙ୍କର ଗଧ କାନ' ।

ଯଥା ସମୟରେ କେମିତି ସେ ଗାତରୁ ଗଛଟିଏ ଉଠିଲା ଓ ପବନରେ ଗଛ ଦୋହଲିଲା ବେଳକୁ 'ରଜାଙ୍କର ଗଧକାନ, ରଜାଙ୍କର ଗଧକାନ' ବୋଲି ଗୀତ ବାଜି ଉଠିଲା, ସେ କଥା ସମସ୍ତଙ୍କୁ ଜଣା ।

ଆଜିକାଲି ଆଧୁନିକ ବେଶଭୂଷା ଓ ଢଙ୍ଗଢାଙ୍ଗ ଦେଖିଲେ ଆମକୁ ମଧ ବେଳେ ବେଳେ ସେ ରଜାଙ୍କ ବାରିକର ଦଶା ଭୋଗକରିବାକୁ ପଡ଼େ । ଏ ଉଭଟ ବେଶ ସବୁ ଦେଖି ଅନେକ ସମୟରେ ନ ଦେଖିଲାଭଳି ଭଙ୍ଗୀକଲେ ମଧ ସେ ବିଷୟରେ କିଛି ନ କହି ରହି ହୁଏ ନାହିଁ । କହିବାରେ ଯେ ବିପଦର ସମ୍ଭାବନା ରହିଛି ତାହା ମଧ ଜଣାଶୁଣା ।

ଫେସନର ଗୋଟିଏ ଦିଗରେ ଏବେ ଦେଖାଦେଇଛି ଘରଚଟିଆର ବସା ପରି ଇତସ୍ତତଃ ଓ ନୁଖୁରା ମୁଣ୍ଡର ବାଳ - ବେଳେ ବେଳେ ଦି' ଚାରି କେରା କାନ୍ଧଉପରେ ଝୁଲିପଡ଼ି ପାଣିରେ ଭିଜିଗଲା କୁକୁଡ଼ା କି କାଉର ପଟାନ୍ତର ଦିଏ । ନିଶଦାଢ଼ି ବିହୀନ ଯତ୍ନହୀନ ମୁହଁ, ଦେହରେ ମିଶି ଯାଉଥିବା ନଳୀ ପେଣ୍ଟ, ଗେରୁଆ ପଞ୍ଜାବୀ ଓ ରୁଦ୍ରାକ୍ଷ ମାଳା - ପୁଅ କି ଝିଅ ବୋଲି ବି ଚିହ୍ନି ହୁଏନି । ଅନ୍ୟ ଦିଗରେ ଦେଖିବାକୁ ମିଳେ କଦମ୍ବ କେଶର ପରି ଛୋଟ ଛୋଟ ଓ ଗୋଜିଆ ଗୋଜିଆ ମୁଣ୍ଡର ବାଳ, ମହୁଫେଣା କିମ୍ବା ବାୟା ଚଢ଼େଇର ବସା ପରି ଝୁଲୁଥିବା ଦାଢ଼ି, ପ୍ୟାଟର୍ଣ୍ଣ କରା କଲି, ଅରଣା ମହିଷି ସିଂଘିଆ ନିଶ, ଆଣ୍ଠୁ ପାଖରେ ସରୁହୋଇ ପାଦପାଖରେ ଢିଲା ହୋଇଯାଇଥିବା ବେଲ୍‌ବଟମ୍ ଟ୍ରାଉଜର ଓ ବଣରେ ବାଘ ଭାଲୁ ବୁଲୁଥିବା ସାପୁଆ କେଳା ଗୋଖୁର ଖେଳାଉଥିବା, ଚଢ଼େଇ ବସା ବାନ୍ଧୁଥିବାଠାରୁ ଆରମ୍ଭ କରି ବିଜୁଳି ଶକ୍ତିର ଟ୍ରାନ୍ସମିଶନ୍ ଟାୱାର ପର୍ଯ୍ୟନ୍ତ ଦୃଶ୍ୟର କାହାଣୀ ଓ ଉପନ୍ୟାସ ଭରା ହାୱାଇଏନ ସାର୍ଟ ।

ଫେସନର ଗତି ଦୁର୍ବୋଧ ବୋଲି ମନେହେଲେ ହେଁ ସମୟର ଗତି ସଙ୍ଗେ ସଙ୍ଗେ ଠିକ୍ ଘଣ୍ଟାର ପେଣ୍ଡୁଲମ ପରି ଏ ପାଖରୁ ସେପାଖ ଓ ପୁଣି ସେ ପାଖରୁ ଏ ପାଖ ଘୂରି ବୁଲୁଥିଲା ପରି ଜଣାପଡ଼େ । ଆଣ୍ଠୁପର୍ଯ୍ୟନ୍ତ ଲମ୍ବ ହେଉଥିବା କୋଟ୍ ଫେସନ ପାଇଁ ଛୋଟ ହୋଇ ହୋଇ ଶେଷରେ ଉଏଷ୍ଟ କୋଟ ପରି ଅଣ୍ଟାକୁ ଛୁଇଁଲା ପରେ ପୁଣି ଆଣ୍ଠୁ ଆଡ଼କୁ ଗତିକରେ । ବ୍ଲାଉସ୍ ସବୁ ଛୋଟ ହୋଇ

ହୋଇ ସରିଗଲା ଅବସ୍ଥାକୁ ଆସିଲା ପରେ ପୁଣି ବଢ଼ିବାକୁ ଆରମ୍ଭ କରେ ଓ ଲମ୍ବରୁ ଲମ୍ବତର ହୋଇ କହୁଣୀକି ଡେଇଁଯାଏ । ଯେଉଁ ୧୨ ଇଞ୍ଚିଆ ଡ୍ରେନ୍ ପାଇପ୍ ବାଲେ ଆମ ୧୮ ଇଞ୍ଚିଆକୁ 'ପାଇଜାମା' ବୋଲି ଥଟ୍ଟା କରୁଥିଲେ ସେମାନେ ଆଉ କେତେଦିନ ଗଲେ ଶେଯ ଖୋଳ ପିନ୍ଧି ବାହାରିବେ ବୋଲି ମନେହୁଏ । ଦିନ ଆସିବ ଆମ ଆଇବୁଢ଼ୀଙ୍କ ଡୋଲିଆ ଖୋସା, ଝରାଦିଆ ରୁପା ଫୁଲ, ନଥ ଓ ଗୁଣା ସିନେମା ଜଗତରେ ନୂଆ ରୂପ ନେଇ ଦେଖାଦେବ ।

ଏଥରୁ କିନ୍ତୁ ଗୋଟିଏ ନୂତନ ଆଲୋକର ସନ୍ଧାନ ମିଳେ - ନୂଆ ଆଶା ଜାଗି ଉଠେ । ମନେହୁଏ ଯେ ଆମର ସେ ଦିନ ପୁଣି ଫେରି ଆସିବ । ସୃଷ୍ଟିର ନିୟମ ବୋଧହୁଏ ସେହିପରି । ଶଗଡ଼ଚକରେ ଲାଖିରହିଥିବା କୌଣସି ଜିନିଷ ଯେପରି ଚକ ଗଡ଼ି ଚାଲିଲାବେଳେ ଥରେ ଉପର ଓ ଥରେ ତଳ ହେଉଥାଏ - ଗୋଟିଏ ଧରାବନ୍ଧା ନିୟମ ଅନୁଯାୟୀ - ଶୀର୍ଷତମ ସ୍ଥାନକୁ ଉଠିସାରିଲା ପରେ ତଳକୁ ଖସିବାକୁ ଆରମ୍ଭକରେ ଓ ନିମ୍ନତମ ସ୍ଥାନରେ ପହଞ୍ଚିଲା ପରେ ପୁଣି ଉପରକୁ ଉଠେ, ସବୁ ଠିକ୍ ସେହିପରି । ପ୍ରତ୍ୟେକ ଗତିଶୀଳ ବସ୍ତୁର ଗତିରେ ନିଶ୍ଚିତ ଭାବେ ଗୋଟିଏ ସୀମା ଥାଏ । ଆଗେଇ ଯାଇ ସେଇଠି ପହଞ୍ଚିଲା କ୍ଷଣି ପୁଣି ସେ ଫେରେ - ଯୁକ୍ତରୁ ବିଯୁକ୍ତ ଦିଗକୁ, ଯୁକ୍ତ ପାଖର ଶେଷ ସୀମାଠାରୁ ବିଯୁକ୍ତ ପାଖର ଶେଷ ସୀମା ପର୍ଯ୍ୟନ୍ତ । ପୁଣି ବିଯୁକ୍ତରୁ ଯୁକ୍ତକୁ ଗତି ଆରମ୍ଭ ହୁଏ - ଆଗ କାଳର ଶଗଡ଼ ଚକ କିମ୍ବା ଆଜିକାଲିର ପେଣ୍ଡୁଲମ୍‌ର ନ୍ୟାୟରେ । ପୁରୁଣା ଓ ନୂଆ, ନୂଆ ଓ ପୁରୁଣା ଭିତରେ କେବଳ ଏତିକି ପାର୍ଥକ୍ୟ, ସମୟହିଁ ବୋଧହୁଏ ବ୍ୟବଧାନ ।

ଦିନଆସିଛି ଯେତେବେଳେ ଆଉ ବୟସ ଓ ସ୍ଥାନର ମୂଲ୍ୟବୋଧ ନାହିଁ । ପୁଅ ଓ ବାପ, ଗୁରୁ ଓ ଶିଷ୍ୟ ଭିତରେ ପାର୍ଥକ୍ୟ ଉଠିଯାଇଛି । ସମୟର ଚକ ଗଡ଼ିଚାଲିଲା ପରେ ପୁଣି ଦିନଆସିବ ପୁଅ ବାପକୁ ପୂର୍ବର ସମ୍ମାନ ଦେବ ଓ ଶିଷ୍ୟ ଗୁରୁଙ୍କ ଆଶୀର୍ବାଦ ଭିକ୍ଷା କରିବ । ସମୟ ଓ କାଳର ଅର୍ଥ ସମାନ ହୋଇଥିଲେ ହେଁ ଗୋଟାଏ ଅନ୍ୟଟିର କ୍ରାନ୍ତିକାରୀ ରୂପ । ସମୟ ଆଜି କାଳ ରୂପରେ ଦେଖା ଦେଇଛି । କାଳ ପୁଣି ସମୟରେ ପରିଣତ ହେବ ।

# ଭୁଲ

ମଣିଷ ବେଳେ ବେଳେ ଭୁଲକରେ, ଆଉ ଏମିତି ଭୁଲକରେ ବୋଲି ହିଁ ସେ ମଣିଷହୋଇ ରହେ । ପୁରାଣ ଓ ଇତିହାସରୁ ଜଣାଯାଏ ଯେ ମଣିଷ ଚିରଦିନ ହିଁ ମଝିରେ ମଝିରେ ଭୁଲ କରିଆସିଛି ।

ସତ୍ୟଯୁଗର କଥା । ବିଶ୍ୱାମିତ୍ର କୁଆଡ଼େ ଭୁଲ କରିଥିଲେ ଓ ସେ ଭୁଲରୁ ଜନ୍ମ ନେଇଥିଲେ ଶକୁନ୍ତଳା । ତା'ପରେ ତ୍ରେତୟା - ରାମାୟଣ ଯୁଗ ପ୍ରଜାବତ୍ସଳତାର ନିଦର୍ଶନ ସ୍ୱରୂପ ଓ ଜନମତର ଖାତିରରେ କରାଯାଇଥିଲେ ମଧ ସୀତାଙ୍କ ବନବାସ ଗୋଟାଏ ଭୁଲ ପରି ହିଁ ମନେହୁଏ । ଦ୍ୱାପର ତଥା ମହାଭାରତ ଯୁଗ - ଧର୍ମର ପ୍ରତୀକ ଯୁଧିଷ୍ଠିର ମଧ ଶକୁନି ସଙ୍ଗରେ ପଶାଖେଳି ନିଜ ରାଜ୍ୟ ସଙ୍ଗରେ ଦ୍ରୌପଦୀଙ୍କୁ ହରାଇଥିଲେ । ଆଉ ଆଜିର ଏ କଳିଯୁଗ କଥା ତ' ଛାଡ଼ ! ଗାନ୍ଧିଜୀଙ୍କ ପରି ମହାତ୍ମା ମଧ ଭାରତୀୟମାନଙ୍କ ସତ୍ୟ ଓ ଅହିଂସାରେ ବିଶ୍ୱାସ ରଖି ୧୯୨୧-୨୨ରେ ଅସହଯୋଗ ଆନ୍ଦୋଳନ ଓ ସତ୍ୟାଗ୍ରହ ପାଇଁ ଡାକରା ଦେଇଥିବାରୁ ଗୋଟାଏ ମସ୍ତବଡ଼ ଭୁଲକଲେ ବୋଲି କହିଲେ ଏବଂ ତାକୁ ସେ 'ହିମାଳୟାନ୍ ବ୍ଲଣ୍ଡର' ବୋଲି ବର୍ଣ୍ଣନା କରିଥିଲେ । କଥାରେ ଅଛି ଯେ ମୁନିମାନଙ୍କର ମଧ ମତିଭ୍ରମ ହୁଏ ଓ ଋଷିମାନେ ବେଳେ ବେଳେ ଆର୍ଷ ପ୍ରୟୋଗ କରନ୍ତି । ପୁରାଣ ଅନୁସାରେ ଦେବଦେବ ମହାଦେବ ମଧ ଭୁଲରେ ତାଙ୍କ ପୁଅ ଗଣେଶଙ୍କ ମୁଣ୍ଡ କାଟି ଦେଇଥିଲେ ଓ ଭୁଲ ଜାଣିସାରିଲା ପରେ ଗୋଟାଏ ହାତୀ ମୁଣ୍ଡ ଆଣି ଯୋଡ଼ିଦେଲେ ।

ଏସବୁ ଭୁଲର ବର୍ଣ୍ଣନା କେବଳ ଯେ ହିନ୍ଦୁମାନଙ୍କର ପୁରାଣ ଓ ଇତିହାସରେ ଦେଖିବାକୁ ମିଳେ ତାହା ନୁହେଁ, ବାଇବେଲ୍‌ରେ ଆଦମ୍ ଓ ଇଭ୍‌ଙ୍କ ଚରିତ୍ର ବୃତ୍ତାନ୍ତ ମଧ ଠିକ୍ ସେଇ ଧରଣର ।

ଆଦମ୍ ଓ ଇଭ୍‌ଙ୍କୁ ଇଡ଼େନ୍ ଉପବନରେ ଛାଡ଼ିଦେଲାବେଳେ ସ୍ୱୟଂ ପରମେଶ୍ୱର କୁଆଡ଼େ ସେ ଦୁହିଁଙ୍କୁ ବଗିଚାର ଗୋଟାଏ ସୁନ୍ଦର ଫଳ ଭୁଲରେ ମଧ ନ ଖାଇବାକୁ ସତର୍କ କରିଦେଇ ଯାଇଥିଲେ । ଶଇତାନ କିନ୍ତୁ ସବୁବେଳେ କାନେ

କାନେ ଇଭ୍‌ଙ୍କୁ ସେହି ରସଭରା ଜ୍ଞାନଫଳ ଚାଖିବାକୁ ପ୍ରବର୍ତ୍ତାଇ ଶେଷରେ ସଫଳକାମ ହୋଇଥିଲା । ପରିଣାମରେ ଇଭ୍‌ର କ୍ରମାଗତ ପ୍ରରୋଚନା ଯୋଗୁଁ ଆଦମ୍ ମଧ ସେଇଫଳ ଖାଇବାକୁ ରାଜିହେଲେ । ତା'ପରେ କେମିତି ଲଜ୍ଜାର ଆବିର୍ଭାବ ହେଲା, କାମନା ଜନ୍ମ ନେଲା ଓ ଅବିନାଶୀ ପ୍ରକୃତି ମଧ୍ୟରେ ନାଶଶୀଳ ଜରାକ୍ଲିଷ୍ଟ ମନୁଷ୍ୟ ମୁଣ୍ଡ ଟେକିଉଠିଲା, ତା'ର ସୁନ୍ଦର ବର୍ଣ୍ଣନା ସମସ୍ତଙ୍କୁ ଜଣା ।

ଦେବତାମାନେ କୁଆଡ଼େ ଭୁଲ କରନ୍ତିନି ! କିନ୍ତୁ ଭୁଲ ନ କରି କ'ଣ ଯେ ସେମାନେ ଅଧିକ ପାଆନ୍ତି ତାହା ଅବଶ୍ୟ ଭଲକରି ବୁଝି ହୁଏନି । ସବୁଦିନ ସକାଳ, ସଞ୍ଜ, ସେହି ଅମୃତ ପିଇ, ସବୁବେଳେ ସେ ରମ୍ଭା, ମେନକା, ଉର୍ବଶୀଙ୍କ ନାଚ ଦେଖି ଦେଖି ନିଶ୍ଚୟ ଆମ କଲେଜ ପିଲାଙ୍କ ଭାଷାରେ 'ବୋର୍' ହୋଇ ଯାଉଥିବେ । ଟିକିଏ ଦୁଃଖ କଷ୍ଟ ନ ସହିଲେ, ଭୋକ ଉପାସରେ ଦିନେ ଅଧେ ନ ରହିଲେ ଶିକ୍ଷକଙ୍କ ଗାଳି କିଛି ନ ଶୁଣିଲେ, ବୁଢ଼ା ଟୋକା ଭେଦଭାବ କିଛି ନ ଥିଲେ ଜୀବନ ଦୁର୍ବିସହ ହେବା କଥା । ସେଥିପାଇଁ ବୋଧହୁଏ ଦେବତାମାନେ ମଧ ମଝିରେ ମଝିରେ ଗୋଟିଏ ଅଧେ ଭୁଲ କରି ଦିଅନ୍ତି, ଆଉ ଭୁଲ କଲା ସାଙ୍ଗେ ସାଙ୍ଗେ ସ୍ୱର୍ଗରୁ ପୃଥିବୀକୁ ଟପ୍-ଟାପ୍ ଖସି ପଡ଼ନ୍ତି ବର୍ଷା କିମ୍ବା କୁଆପଥର ପରି ଏବଂ ଏମିତି 'ଅଭିଶପ୍ତ' ଜଣେ ଅଧେ କୁଆଡ଼େ ତାଙ୍କ ପ୍ରିୟାଙ୍କ ପାଖକୁ କ'ଣ ସବୁ ଚିଠି ଲେଖି କାହାକୁ ନ ପାଇଲେ ମେଘକୁ ଦୂତକରି ପଠାନ୍ତି ।

କୁହା ଯାଇଥାଏ ଯେ ରାକ୍ଷସମାନେ ଭୁଲ ପରେ ଭୁଲ କରି ଚାଲି ଥାଆନ୍ତି । ସେମାନଙ୍କୁ ଯଦି ଏ ବିଷୟରେ କିଛି ପଚରା ଯାଆନ୍ତା, ସେମାନେ ନିଶ୍ଚୟ ଏଥିର ପ୍ରତିବାଦ କରି କହନ୍ତେ ଯେ ଏ ସବୁ କେବଳ ଦେବତାମାନଙ୍କ ପ୍ରୋପାଗାଣ୍ଡା, ଅପପ୍ରଚାର, ଚକ୍ରାନ୍ତ । ସେମାନେ ବୋଧହୁଏ ଓଲଟା ଅଭିଯୋଗ କରନ୍ତେ ଯେ ପ୍ରକୃତରେ ଦେବତାମାନେ ହିଁ ଥରକୁ ଥର ନିଃସଂକୋଚରେ ଓ ନିର୍ଭୟରେ ଭୁଲ କରି ଯାଆନ୍ତି । ମହାଦାନୀ ବଳିକୁ କୌଶଳରେ ପାତାଳକୁ ଠେଲିବାଠାରୁ ଆରମ୍ଭ କରି ଦେବତା ଓ ଅସୁରମାନଙ୍କର ମିଳିତ ଉଦ୍ୟମରେ ସମୁଦ୍ର ମନ୍ଥନ କରି ତହିଁରୁ ବାହାରିଥିବା ହାତୀ ଘୋଡ଼ାଠାରୁ ଅମୃତ ପର୍ଯ୍ୟନ୍ତ ସବୁ ଦେବତାମାନେ କିପରି ଚକ୍ରାନ୍ତ କରି ନେଇଗଲେ ତହିଁର ଉଦାହରଣ ଦିଅନ୍ତେ ।

ଏ ସବୁଥିରୁ ମନେହୁଏ ଯେ କେବଳ ମଣିଷ ନୁହେଁ, ଦେବତା ଓ ଅସୁର ସମସ୍ତେ ଭୁଲ କରନ୍ତି । ତେଣୁ ଖାଲି ଭୁଲ କରିବାଟା ଯେ ଘୃଣ୍ୟ, ସେପରି ବିବେଚନା କରିବା ଉଚିତ ହେବ ନାହିଁ । ଜାଣି ଶୁଣି ଭୁଲ କରିବା, ଭୁଲକରି

ଭୁଲ ସ୍ୱୀକାର ନ କରିବା ଅଥବା ଭୁଲ କରି ସାରିଲା ପରେ ସେଥିପାଇଁ ନିର୍ଦ୍ଦିଷ୍ଟ ଫଳ ଭୋଗ କରିବାରେ କୁଣ୍ଠାବୋଧ କରିବା କିନ୍ତୁ ନିନ୍ଦନୀୟ ।

ଭୁଲ କ'ଣ ଓ ତାହାର ନିଦାନ କିପରି କରାଯିବ, ସେ ସମ୍ବନ୍ଧରେ ଏଠାରେ ସ୍ୱାଭାବିକ ଭାବରେ ପ୍ରଶ୍ନ ଉଠେ ।

ଆମ ଭାରତରେ ରାସ୍ତାର ବାଁ' ପାଖରେ ଗାଡ଼ିଚଳାଇବା ଠିକ୍‌ବୋଲି ଧରା ଗଲାବେଳେ ଯୁକ୍ତରାଷ୍ଟ୍ର ଆମେରିକାର ଡାହାଣପାଖରେ ଗାଡ଼ିଚଳାଇବା ଠିକ୍‌ବୋଲି ଧରାଯାଏ । ତେଣୁ ନଇ ଦେଶ ଦେଶକୁ ବାଙ୍କ ପରି ଭୁଲର ସଂଜ୍ଞା ମଧ୍ୟ ଭିନ୍ନ ଭିନ୍ନ ଥିବାର ଦେଖାଯାଏ ।

ଭୁଲ କିମ୍ବା ଭଲ ଏହି ଧାରଣା ତେଣୁ ଗୋଟାଏ ଦୃଷ୍ଟିକୋଣବୋଲି ମନେ ହୁଏ । ପ୍ରତ୍ୟେକ ଦେଶର ଓ ପ୍ରତ୍ୟେକ ଜାତିର ଭୁଲ ଓ ଭଲ ସମ୍ବନ୍ଧରେ ନିଜ ନିଜ ସଂଜ୍ଞା ତଥା ନିୟମକାନୁନ୍ ରହିଥାଏ ।

ଆଗେ ଆମ ଦେଶରେ ଏହି ଭୁଲ ଓ ଭଲ ବିଷୟରେ ସମାଜ ହିଁ ମୁଖ୍ୟତଃ ମାନ ନିରୂପଣ କରୁଥିଲା । ସେହି ମାନ ଅନୁସାରେ ବ୍ରାହ୍ମଣ, କ୍ଷତ୍ରିୟ ପ୍ରଭୃତି ବର୍ଣ୍ଣ ବିଭାଗ ଅନୁଯାୟୀ ସମସ୍ତଙ୍କ ରୀତି ନିୟମର ରୂପରେଖ ସ୍ଥିର କରାଯାଉଥିଲା । ସମାଜର ପୁରୁଷ ଓ ସ୍ତ୍ରୀର ସ୍ଥାନଠାରୁ ଆରମ୍ଭ କରି ବାପା, ମା', ପୁଅ, ଝିଅ, ଗୁରୁ, ଶିଷ୍ୟ, ରାଜା, ପ୍ରଜା ସମସ୍ତଙ୍କର ସ୍ଥାନ ନିରୂପିତ ହେଉଥିଲା ଓ ସେମାନଙ୍କ ଯଥାଯଥ କର୍ତ୍ତବ୍ୟର ନିର୍ଦ୍ଦେଶ ଦିଆ ଯାଉଥିଲା । ସେ ନିର୍ଦ୍ଦେଶନାମା ହିଁ ଥିଲା ମାପକାଠି । ଏହି ମାପକାଠି କର୍ତ୍ତବ୍ୟ ବିଚ୍ୟୁତି, ଭୁଲର ପରିମାଣ ଓ ସେଥିପାଇଁ ଦଣ୍ଡବିଧାନ ଇଙ୍ଗିତ କରୁଥିଲା । ସମାଜ ଗୋଟିଏ ସ୍ୱୟଂଚାଳିତ ସଂସ୍ଥାପରି କାମକରୁଥିଲା ।

ସମୟର ଗତିଅନୁସାରେ ସମାଜର ଏହି ଭୂମିକା ଏବେ ପୂରାପୂରି ବଦଳି ଯାଇଛି । ବ୍ରାହ୍ମଣ ସମାଜ, କ୍ଷତ୍ରିୟ ସମାଜ କିମ୍ବା ହିନ୍ଦୁ ସମାଜ, ମୁସଲମାନ ସମାଜ ପରି ସମାଜ ବିଭାଗ ଧୀରେ ଧୀରେ ଉଠିଯାଇ କେବଳ ଗୋଟିଏ ସମାଜ ଦେଖା ଦେଇଛି - ଭାରତୀୟ ସମାଜ । ଏହି ସମାଜରେ ପ୍ରତ୍ୟେକ ପ୍ରତ୍ୟେକଙ୍କ ସଙ୍ଗେ ସମାନ - ସମସ୍ତଙ୍କର ସମାନ ଅଧିକାର ।

ଦୁଃଖର କଥା - ଏ ନୂତନ ସମାଜର କର୍ମକର୍ତ୍ତାମାନେ ନାଗରିକମାନଙ୍କର ଅଧିକାର ବିଶଦ ଭାବରେ ଦର୍ଶାଇ ଦେଇଥିଲେ ମଧ୍ୟ ପ୍ରତ୍ୟେକ ନାଗରିକର କର୍ତ୍ତବ୍ୟ ନିର୍ଦ୍ଧାରଣ କରିଦେଇ ପାରି ନାହାନ୍ତି । ଫଳରେ ଭୁଲ ଓ ଭଲର ମାପକାଠି

ଆଜି ହଜିଯାଇଛି ଓ ଯିଏ ଯାହା କରିପାରିଲା ତାହା କରିଯାଉଛନ୍ତି ଏବଂ ଦରକାରବେଳେ ଅନ୍ୟ କୌଣସି ଦେଶର ମାପକାଠି ଆଡ଼ିକି ଆଙ୍ଗୁଠି ଦେଖାଇ ଦେଉଛନ୍ତି । ନିଜର ଯେ କିଛି ଭୁଲ ହୋଇପାରେ ତାହା କେହି କଳ୍ପନା ହିଁ କରିପାରୁନାହାନ୍ତି । କିନ୍ତୁ ସମସ୍ତେ ଅନ୍ୟର ଭୁଲ ବାଛିବାକୁ ସବୁବେଳେ ଆଗଭର ହୋଇଯାଉଛନ୍ତି । ଏ ରୋଗ ବାପ ମା', ପୁଅ ଝିଅ, ଶିକ୍ଷକ ଛାତ୍ର ସମସ୍ତଙ୍କୁ ଗ୍ରାସକରିଛି । ଫଳରେ ପ୍ରତ୍ୟେକ ଭାବୁଛନ୍ତି ଯେ ସେମାନେ ଜଣେ ଜଣେ ଦେବତା ଓ ଅନ୍ୟମାନେ ସମସ୍ତେ ଅସୁର ।

ଆମ ଦେଶର ସାଧାରଣ ପ୍ରଥା ଅନୁସାରେ ଦେବତାମାନଙ୍କୁ ମନ୍ଦିର ଭିତରେ ଭର୍ତ୍ତି କରିଦେଇ ଟିକିଏ ଗୁଡ଼, କାଣିଚାଏ ଦୁଧସର ଆଉ କଦଳୀରୁ ଆଙ୍ଗୁଳିଏ ଭୋଗ ଲଗାଇଦିଆହୁଏ । ଧୂପ ନାଁରେ ଟିକିଏ ଧୂଆଁ ଆଉ ଦୀପ ନାଁ'ରେ ଟୋପାଏ ଘିଅର ସଳିତା ଜଳାଇଦେଇ ଗୋଟାଏ ଦି'ଟା ଥାପୁଡ଼ି ସହ ଘଣ୍ଟି ହଲାଇ ଦିଆ ହୁଏ ଓ ଶେଷରେ କବାଟ କିଳି ଦିଆଯାଏ । ଦେବତା ମନ୍ଦିର ଭିତରେ ପଥର ପାଲଟି ଯାଆନ୍ତି ଏବଂ ତାଙ୍କର ପାଟି ଫିଟାଇବାକୁ ବି ଲୁ' ନ ଥାଏ ।

ବାପା ମା' ଓ ଶିକ୍ଷକମାନେ ଯଦି ନିଜ ନିଜ ଭୁଲ ସ୍ୱୀକାରକରି ବେଳରୁ ହୁସିଆର ନ ହୁଅନ୍ତି ତେବେ ସେମାନେ ମଧ୍ୟ ଏପରି ଦେବତାମାନଙ୍କ ଦଶା ଭୋଗ କରିବାର ସମ୍ଭାବନା ରହିଛି ।

# ଶାନ୍ତିପୂର୍ଣ୍ଣ ଆରେ ପଲ୍ଲୀଗ୍ରାମ

ଓଡ଼ିଆ ଲଘୁ କାବ୍ୟର ଯୁଗସ୍ରଷ୍ଟା 'ଡାମରା କାଉରେ ଡାମରା କାଉ, ଉଞ୍ଚ ପରବତେ ବୋବାଉ ଥାଉ' 'ଚୁଟିଆ ମୂଷାରେ ଚୁଟେଇ ମୂଷି, ଧାନଅମାରକ ଖାଉଥା ବସି'ର ଗାୟକ ପଲ୍ଲୀ କବି ନନ୍ଦକିଶୋର ପଲ୍ଲୀ ଅଞ୍ଚଳରେ ଗୋଟିଏ ସରଳ ସୁନ୍ଦର ଓ ନିଖୁଣ ଚିତ୍ର ଦେବାକୁ ଯାଇ ଗାଇଥିଲେ,

'ଶାନ୍ତି ପୂର୍ଣ୍ଣ ଆରେ ପଲ୍ଲୀ ଗ୍ରାମ
ମଧୁରିମାମୟ ତୋର ନାମ ।'

ନନ୍ଦ କିଶୋରଙ୍କ ପରି ଅନେକ ମହାନ୍ କବି ଓ ଭାବୁକ ଯୁଗଯୁଗ ଧରି ପଲ୍ଲୀଗ୍ରାମର ଅନାବିଳ ଶାଶ୍ୱତ ସୌନ୍ଦର୍ଯ୍ୟରେ ବିମୋହିତ ଓ ଆତ୍ମହରା ହୋଇଯାଇଛନ୍ତି ।

ଗାଁ'ର ଠିକ୍ କ'ଣ ସବୁ ଯେ ମଣିଷ ମନକୁ ଏପରି ସ୍ପର୍ଶ କରେ ସେ ସବୁକୁ ସିଧା ସଳଖ ଆଙ୍ଗୁଠି ଦେଖାଇ ଚିହ୍ନାଇ ଦେବା ସହଜ ନୁହେଁ । ଡାମରା କାଉ ଓ ଚୁଟିଆ ମୂଷା ପରି ବର୍ଷା ଦିନିଆ ବେଙ୍ଗ, ନିରୋଳା ରାତିର ଝିଙ୍କାରି, ନିଶା ଗର୍ଜୁଥିଲା ବେଳର ପେଚା ଓ ଭେରେଣ୍ଡା, ଦିନ ଦି'ପହରିଆ କୁମ୍ଭାଟୁଆ, କାପ୍ତା, ଗାଁ ପୋଖରୀ, ଆମ୍ବତୋଟା ଗାଈଜଗାଳୀଠାରୁ ପଲ୍ଲୀବଧୂ ପର୍ଯ୍ୟନ୍ତ ଗାଁର ଅନେକ ଜୀବନ୍ତ ଓ ପ୍ରାଣହୀନ ନାୟକ ନାୟିକା ଗ୍ରାମୀୟ ଜୀବନରେ ନିଜ ନିଜ ପ୍ରଭାବ ପକାଇ ଯାଆନ୍ତି । ସେ ସମସ୍ତଙ୍କ ଅଭିନୟ ମଧ୍ୟରେ ସରଳ, ନିରଳସ, ନିରାଡ଼ମ୍ବର କର୍ମମୟ ଜୀବନ ନେଇ ମୁଖ୍ୟ ଭୂମିକାରେ ଦେଖା ଦିଏ କୃଷକ ।

ଭାରତ ଯେ ଆଜି କେବଳ କିଷାନ୍‌ର ଜୟଗାନ କରୁଛି ତା' ନୁହେଁ - ଭାରତୀୟ ସଂସ୍କୃତିରେ କୃଷକ ଚିର ଦିନ ନମସ୍ୟ ହୋଇ ଆସିଛି ।

ଏ ସମ୍ବନ୍ଧରେ ଗୋଟିଏ ପୁରୁଣା ଜଣାଶୁଣା କାହାଣୀ ମନେ ପଡ଼େ ।

ଭାରତୀୟ ସାଂସ୍କୃତିକ ରଙ୍ଗମଞ୍ଚର ସର୍ବଶ୍ରେଷ୍ଠ ଲୋକପ୍ରିୟ ଅଧିନାୟକ କଳିଗୋଳ ଭିଆଣ ବିଶାରଦ ଦେବର୍ଷି ନାରଦ ଦିନେ ତାଙ୍କର ଢିଙ୍କିଉପରେ ଚଢ଼ି

ବୀଣା ବଜେଇ ବଜେଇ ବୈକୁଣ୍ଠରେ ବିଷ୍ଣୁଙ୍କ ପାଖରେ ପହଞ୍ଚିଗଲେ । ବିଷ୍ଣୁ ଓ ନାରଦଙ୍କ ମଧ୍ୟରେ ଯଥାରୀତି ସୃଷ୍ଟି ସମ୍ବନ୍ଧୀୟ ଅନେକ କଥାବାର୍ତ୍ତା ହେଲା । ସର୍ବଜ୍ଞ ହୋଇ ମଧ୍ୟ ଭଗବାନ ନାରଦଙ୍କ ମାନରକ୍ଷା ପାଇଁ ତାଙ୍କଠାରୁ ପୃଥିବୀର ଭଲ ମନ୍ଦ ସବୁ ପଚାରି ବୁଝିନେଲେ । ନାରଦ ସେ ସବୁ କହିସାରିଲା ପରେ ଭଗବାନଙ୍କୁ ପ୍ରଶ୍ନକଲେ ତାଙ୍କର ଶ୍ରେଷ୍ଠ ଭକ୍ତ କିଏ ?

ଭକ୍ତି ଯୋଗ ଓ ନାମ କୀର୍ତ୍ତନର ପ୍ରବର୍ତ୍ତକ ତଥା ପ୍ରଚାରକ ନାରଦ ବୋଧହୁଏ ମନେକରୁଥିଲେ ଯେ ଭଗବାନ ତାଙ୍କୁ ହିଁ ଇଙ୍ଗିତ ଦେବେ । ଭଗବାନ କିନ୍ତୁ କୌଣସି ଗୋଟିଏ ଗାଁର ଜଣେ କୃଷକର ନାମ ଧରି ତାଙ୍କୁ ତାଙ୍କର ଶ୍ରେଷ୍ଠଭକ୍ତ ବୋଲି ସୂଚାଇ ଦେଲେ । ନାରଦ ଆଶ୍ଚର୍ଯ୍ୟ ହେଲେ । ତାଙ୍କ ମନରେ ଅଭିମାନ ମଧ୍ୟ ଜାତହେଲା । ବିଷ୍ଣୁଙ୍କ ପାଖରୁ ବିଦାୟ ନେଇ ସେ ସିଧା ସଳଖ ସେହି କୃଷକ ପାଖକୁ ଚାଲିଲେ - ଦେଖିବେ ସେ କ'ଣ କରି ତାଙ୍କଠାରୁ ବଡ଼ଭକ୍ତ ପାଲଟିଛି ।

ଅଲକ୍ଷ୍ୟରେ ରହି ନାରଦ ଚାଷୀର ରଙ୍ଗଢଙ୍ଗ, ରୀତିନୀତି ସବୁ ଦେଖିବାକୁ ଲାଗିଲେ । ଚାଷୀ ତାର ଚାଷ କାମରେ ସବୁବେଳେ ବ୍ୟସ୍ତ ଥାଏ । କେତେବେଳେ ହଳ ଧରୁଥାଏ ତ କେତେବେଳେ ମାଟି ହାଣୁଥାଏ, କେବେ ଢେଲା ଭାଙ୍ଗେ ତ କେବେ ଖତ ବୋହି ନେଇ କ୍ଷେତରେ ଦିଏ - ବଳଦଙ୍କ ଯତ୍ନ ନିଏ - ଗଛ ବାଉଁଶ ଆଣି ଘର ମରାମତି କରେ, କେତେ କ'ଣ ଗୀତ ଗାଏ । ସମୟ ପାଇଲେ ପିକା ଫୁଙ୍କେ, ସାଥି ଚାଷୀଙ୍କ ସାଙ୍ଗରେ ମଉଜିଆ ଖୁସି ଗପ କରେ, ଆଉ ଲୁଣ ଲଙ୍କା ପିଆଜ ଧରି କଂସା ଭର୍ତ୍ତି ପଖାଳ ଠୁଙ୍କେ - ଟାହି ଟାପରା ମଧ୍ୟ କରେ ।

ନାରଦ ଦେଖିଲେ ଯେ ଚାଷୀଟି କେବଳ ଶୋଇଲାବେଳେ ଥରେ ଭଗବାନଙ୍କ ନାମ ନେଉଛି ଓ ଭୋର ଖଟରୁ ଉଠିଲାବେଳେ ଥରେ ସେହି ଭଗବାନଙ୍କ ଉଦ୍ଦେଶ୍ୟରେ ନମସ୍କାର କରୁଛି । ଦିନରାତି ଭିତରେ ବାସ୍ ସେତିକି ।

ପ୍ରତ୍ୟେକ ମୁହୂର୍ତ୍ତରେ ନାରାୟଣ ଭଜୁଥିବା ନାରଦ ଏ ଚାଷୀଠାରୁ କେଉଁ ଗୁଣରେ ହୀନ ସେ ସମ୍ବନ୍ଧରେ ତାଙ୍କ ମନରେ ସନ୍ଦେହ ହେଲା । ଭଗବାନ୍ ତେବେ କ'ଣ ଠିକ୍ ଖବର ରଖିପାରିନାହାନ୍ତି ? ନାରଦଙ୍କ ବିରୁଦ୍ଧରେ କିଛି ଅପପ୍ରଚାର ଚାଲିନାହିଁ ତ ? ଅସୁରମାନଙ୍କୁ ଦେବତାମାନଙ୍କ ଚକ୍ରାନ୍ତ କଥା ମଝିରେ ମଝିରେ କହି ଦେଉଥିବାରୁ ଦେବତାମାନେ କିଛି ଷଡ଼ଯନ୍ତ୍ର କରି ନାହାନ୍ତି ତ ?

ନାରଦ ପୁଣି ଥରେ ବୈକୁଣ୍ଠଧାମ ଚାଲିଲେ । ତାଙ୍କ ପାଇଁ ସବୁବେଳେ ବୈକୁଣ୍ଠର ବଡ଼ ଦରଜା ଖୋଲା । ଲକ୍ଷେଭାର ଗଦାଧରି ଜୟ-ବିଜୟ

ଦେଖିଲାକ୍ଷଣି ଆଡ଼େଇ ଯାଆନ୍ତି । ନାରଦ ସିଧାସଳଖ ଭଗବାନ୍‌ଙ୍କ ପାଖକୁଯାଇ କୃଷକର ରଙ୍ଗଢଙ୍ଗ ସବୁ ବର୍ଣ୍ଣନାକରି ସର୍ବଶ୍ରେଷ୍ଠ ଭକ୍ତ କିଏ ସେ ବିଷୟରେ ପୁନର୍ବିଚାର ପାଇଁ ଅନୁରୋଧ କଲେ ।

ଏ ସମ୍ବନ୍ଧରେ ଆଲୋଚନା କରିବା ପାଇଁ ଭଗବାନ ରାଜିହେଲେ । କିନ୍ତୁ ତା' ପୂର୍ବରୁ ଗୋଟାଏ ଛୋଟକାମ କରିବାକୁ ସେ ନାରଦଙ୍କୁ ନିର୍ଦ୍ଦେଶ ଦେଲେ । ଆଦେଶ ହେଲା ଯେ ନାରଦ ଗୋଟିଏ ତେଲରେ ଭରପୂର ତେଲସରା ମୁଣ୍ଡରେଥୋଇ ବୈକୁଣ୍ଠର ଚାରିଆଡ଼େ ଘେରାଏ ବୁଲି ଆସିବେ - ବୁନ୍ଦିଏ ତେଲ ବି ଯେମିତି ସରାରୁ ଉଛୁଳି ନାରଦଙ୍କ ମୁଣ୍ଡରେ ନ ପଡ଼େ ।

ସାମାନ୍ୟ କଥା । ଯଥା ସମୟରେ ତେଲସରା ମୁଣ୍ଡରେ ରଖି ନାରଦ ସହସ୍ରେ ଯୁଣ ଲମ୍ବ ଓସାର ବୈକୁଣ୍ଠ ପ୍ରଦକ୍ଷିଣରେ ବାହାରିଲେ । ଗୋଟିଏ ହାତ ମୁଣ୍ଡ ଉପରେ ତେଲ ସରାରେ ଥାଏ - ଅନ୍ୟ ହାତରେ ବୀଣା । ଟିକିଏ ଜୋରରେ ଚାଲିଲେ ମନେହୁଏ ଯେ ତେଲ ମୁଣ୍ଡରେ ଢାଳିହୋଇଯିବ । କେଉଁଠି ପାହାଚ ଗୋଟିଏ ଚଢ଼ିଲେ, କେଉଁଠି ପାଦ ତଳକୁ ଖସିଗଲେ, ଆବରା ଖାବରା ରାସ୍ତାର କେଉଁଠି ଝୁଣ୍ଟିପଡ଼ିଲେ ମୁଣ୍ଡଉପରେ ତେଲ ଦୋହଲି ଉଠେ । ଅତି ସନ୍ତର୍ପଣରେ ନାରଦ ଆଗେଇ ଗଲେ ।

ଟିକିଏ ଡେରି ହେଲା ସତ - ନାରଦ ଶେଷରେ ବିଷ୍ଣୁଙ୍କ ପାଖକୁ ଫେରି ଆସିଲେ । କାର୍ଯ୍ୟର ସଫଳତା ଯୋଗୁଁ ମୁହଁ ତାଙ୍କର ଉଜ୍ଜ୍ୱଳ ଦିଶୁଥିଲା ।

ବିଷ୍ଣୁ ଏଥର ଗୋଟିଏ ଅଖାଡୁଆ ପ୍ରଶ୍ନ କଲେ । ପଚାରିଲେ - ତେଲସରା ଧରି ବୁଲିଲାବେଳେ ନାରଦ କେତେଥର ଭଗବାନଙ୍କ ନାମ ନେଇଛନ୍ତି ।

ନାରଦ ଆଶ୍ଚର୍ଯ୍ୟ ହେଲେ । ପ୍ରଶ୍ନଟି ନ୍ୟାୟ ସଙ୍ଗତ ବୋଲି ତାଙ୍କର ମନେହେଲାନି । ସେ ଭିତରେ ତ ସେ ଭଗବାନଙ୍କ ନାମ ନେଇ ନାହାନ୍ତି । ପ୍ରତ୍ୟେକ ମୁହୂର୍ତ୍ତରେ ଯେତେବେଳେ ମୁଣ୍ଡରେ ତେଲ ଢାଳି ହୋଇଯିବାର ସମ୍ଭାବନା, ସେ ତେଲ ଘଡ଼ି ଆଡ଼ିକି ମନ ନଦେଇ ଭଗବାନଙ୍କ ଆଡ଼ିକି ମନଦିଅନ୍ତେ କିପରି ! ଭଗବାନଙ୍କୁ ମନେ ପକାଇବେ କେମିତି ଯେ ଡାକିବେ ?

ଭଗବାନ ଏଥର ବୁଝାଇ ଦେଲେ ।

କୃଷକର ମୁଣ୍ଡରେ ତେଲ ସରାଠାରୁ ଆହୁରି ବିଶାଳ ବୋଝ । ଏ ପାଖ ସେ ପାଖ ହେଲେ ସୃଷ୍ଟି ଦୋହଲି ଯିବ, ସାରା ସଂସାର ଭୋକ ଉପାସରେ ମରିବ । ସମସ୍ତଙ୍କୁ ଖୁଆଇ ପିଆଇ ସୁଖରେ ରଖିବା ପାଇଁ ସେ ନିତିଦିନ ଲାଗିପଡ଼ିଥାଏ ।

ଭଗବାନଙ୍କ ନାମ ନେବାପାଇଁ ତାକୁ ସମୟ ବି ମିଳେନି । ଯେତେବେଳେ ଟିକିଏ ବିଶ୍ରାମ ପାଏ ଭଗବାନଙ୍କ ନାମନିଏ, ଆଉ ସଦାସର୍ବଦା ଭଗବାନଙ୍କ ନିର୍ଦ୍ଦେଶମତେ କାମକରି ଚାଲିଛି ବୋଲି ଆନନ୍ଦମନରେ ଦିନ କାଟେ । ନାରଦ କଥାର ଉଦ୍ଦେଶ୍ୟ ବୁଝି ଯାଇଥିଲେ ।

ଏ କଥା ମନେକରି ବୋଧହୁଏ ଭକ୍ତକବି ମଧୁସୂଦନ ସେ ଦିନ ଗାଇଥିଲେ -

'ଛାଡ଼ି ବନ୍ଧୁ ନଗର ଚହଳ
ଯିବା ଚାଲ ଯେଉଁ ସ୍ଥାନେ ଗୋପାଳ କୃଷକମାନେ
ଆନନ୍ଦେ କାଟନ୍ତି ଦିନ, ସୁଖେନ୍ଦୁ ବିମଳ
ଯାହାଙ୍କର ଚିତ୍ତାକାଶ ସର୍ବଦା ଉଜ୍ଜ୍ୱଳ ।'

ଆଜି ସମୟ ବଦଳିଯାଇଛି, ଯାତାୟାତର ସୁବିଧା ଯୋଗୁଁ ଗ୍ରାମାଞ୍ଚଳ ଭଣା ଅଧିକେ ସହରତଳିରେ ପରିଣତ ହେଲାଣି । ଗ୍ରାମୀୟ ଜୀବନରେ ସରଳତା ପରିବର୍ତ୍ତେ ନାନା ରକମର କୁଟିଳତା ଓ ଜଟିଳତା ଦେଖା ଦେଇଛି ।

ଗୋବର, ଗେରୁ କିମ୍ବା ଧଳା ଛୁଇ ମାଟି ଲିପାରେ ଆଗ ଚକଚକ କରୁଥିବା ମାଟି କାନ୍ଥମାନଙ୍କରେ ଏବେ କେଉଁଠି ଭୋଟ ବାକ୍ସର ଚିତ୍ର ଦେଖା ଦେଇଛି ତ କେଉଁଠି ଲେଖା ହୋଇଛି - 'ଦୁଇଟି ସନ୍ତାନ ଯଥେଷ୍ଟ' । ଖରାଦିନିଆ ଦି'ପହରବେଳେ ଘରଭିତରେ ଗାଁ ବୁଢ଼ାବୁଢ଼ୀଙ୍କ ମେଳରେ ରାମାୟଣ ମହାଭାରତ ବୋଲାହେବା ବଦଳରେ ସମସ୍ତେ ସଦା ସର୍ବଦା କ୍ଲବ ଘର ଆଡ଼କୁ ମୁହାଁଇଲେଣି । ଜହ୍ନ ରାତିର ଗାଁ ଝିଅଙ୍କ ବୋରିଆ ନାଚ ଓ ହୁମ ଗୀତ, ପୁଅଙ୍କ ଡୁଡୁ ଖେଳ ଆଉ ନାହିଁ, ହଳଦୀ ମଖା ମୁହଁ ଓ ଝୁଣ୍ଟିଆ ପିନ୍ଧା ଅଳତା ବୋଳା ପାଦ ବଦଳରେ ଗାଁ ଦାଣ୍ଡରେ ଦେଖା ଦେଇଛି ସ୍ନୋ ପାଉଡ଼ର ଲେପା ମୁହଁ ଓ 'ଭେଲ୍‌ଭଟ୍' କାମିଜ, ଧୋତି ପିନ୍ଧା, ଗାମୁଛା ଓ ବେତ ଧରା ଗାଁ ଅବଧାନଙ୍କ ସ୍ଥାନ ପୂରଣ କରିଛନ୍ତି ନଳୀପେଣ୍ଟ ପିନ୍ଧା ଧର୍ମଘଟ ଚିନ୍ତାଗ୍ରସ୍ତ ଆଧୁନିକ ସ୍କୁଲ ଶିକ୍ଷକ । ଶଗଡ଼ ସ୍ଥାନରେ ଏଠି ସେଠି ଟ୍ରାକ୍ଟର ଓ ଜିପ୍‌ଗାଡ଼ି ଉଙ୍କିମାରିଛି ଆଉ ଗାଁ ପୋଖରୀରେ ବଡ଼ ଶେଉଳ ମାଛ ଛୋଟମାଛ ସବୁକୁ ଦୟା ଦେଖାଉଥିବା ରୀତିରେ କାହିଁ କେଉଁଠି ବଡ଼ ବଡ଼ କୃଷକ ସବୁ ଛୋଟ କୃଷକମାନଙ୍କୁ ସାହାଯ୍ୟ କରିବାରେ ଲାଗିଛନ୍ତି ।

ତଥାପି ଗାଁ'ର ଆକର୍ଷଣ ଏଡ଼ି ହୁଏନି । ଗାଁ କାହିଁକି ଯେ ଏତେ ଭଲଲାଗେ ସେ କଥା କହିବା ସହଜ ନୁହେଁ । ରବି ଶଙ୍କରଙ୍କ ସେତାର ବାଦନ ଶୁଣିଲା ପରେ ମଧ୍ୟ ଝରଣାର କୁଳୁକୁଳୁ ଧ୍ୱନି କାହିଁକି ଯେ ଭଲ ଲାଗେ, ଲତା ମଙ୍ଗେଶକରଙ୍କ

ଗୀତ ଶୁଣି ସାରି କୋଇଲିର କୁହୁତାନ ଆଡ଼କୁ କାହିଁକି ଯେ ମନ ଯାଏ ସେ କଥା କିଏ କହିବ ? ସେପରି ଶୀତ ତାପ ନିୟନ୍ତ୍ରିତ ଅଥବା ଉଷା ଫେନ୍ ଖଞ୍ଜା କୋଠରିଠାରୁ ଆମ୍ବତୋଟାର ଖୋଲା ପବନ ଆଉ ସହରର ରଙ୍ଗୀନ ଆଲୋକ ସଜ୍ଜାଠାରୁ ସେଇ ପୁରୁଣା ଚିରାଚରିତ 'ବାଘନିଶ ହଲାନା' ରଙ୍ଗ ଦିଆ ବୁଢ଼ା ଇନ୍ଦ୍ରଧନୁ କାହିଁକି ଯେ ଭଲଲାଗେ ସେ କଥା ମଧ କହି ହୁଏନି । ଏ କଥା କିନ୍ତୁ ସତ ଯେ ସହରରେ ଆର୍କେଷ୍ଟ୍ରାର ମେଲୋଡ଼ି ଯେତେ ଭଲ ହେଲେ ମଧ ଗ୍ରାମାଞ୍ଚଳର 'ତୋର ପିତା ଥିଲା ଗୋବିନ୍ଦ ଚନ୍ଦ୍ରରେ...'ର କେନ୍ଦରା ମୂର୍ଚ୍ଛନାକୁ କେବେ ହଟାଇ ଦେଇପାରିବନି; ସୋଫାସେଟ୍‌ର କୋମଳତା ଖେତ ହୁଡ଼ାର କର୍କଶ ସ୍ୱାଚ୍ଛନ୍ଦ୍ୟକୁ ଦବାଇ ଦେଇପାରିବନି ।

କାହିଁକି ?

ଯେତେଥର ପ୍ରଶ୍ନ କଲେ ବି ମନ ବୁଝିଲା ଭଳି କୌଣସି ଉତ୍ତର ମିଳେନି ।

ମନେହୁଏ ଯେ ପଲ୍ଲୀ ଅଞ୍ଚଳର ପରିବେଷ୍ଟନୀ ମଧ୍ୟରେ ହିଁ ମଣିଷ ଅନ୍ତରର ସ୍ୱରୂପ ସଙ୍ଗରେ ଲୀଳାମୟ ପ୍ରକୃତିର ଛନ୍ଦମୟ ମିଳନ ସମ୍ଭବପର ହୁଏ ।

# ମଣିଷ ସମ୍ବନ୍ଧରେ ଏକ ପ୍ରବନ୍ଧ

ଜଟାଜୁଟଧାରୀ କେହି କେହି ଉର୍ଦ୍ଧ୍ୱମୂଳ ଓ ଶାଖାବିହୀନ କ୍ଷୁଦ୍ର ଅଶ୍ୱତ୍ଥ ତୁଲ୍ୟ ଦେଖାଯାଉଥିଲେ ହେଁ ସାଧାରଣତଃ କୌଣସି ସରୁ ଥୁଣ୍ଟା ଗଛଉପରେ ଭଙ୍ଗା ହାଣ୍ଡିଟିଏ ଥୁଆ ହୋଇଥିଲେ ସେ ଯେପରି ଦିଶେ, ସେପରି ଦିଶୁଥିବା ଜନ୍ତୁବିଶେଷକୁ ମଣିଷ କୁହାଯାଏ । ଥୁଣ୍ଟାଗଛର କୋରଡ଼ରେ ଚଢ଼େଇ ଯେପରି ବସା କରେ, ମଣିଷ ଭିତରେ ମଧ ଚଢ଼େଇଟିଏ ସେପରି ବସା ବାନ୍ଧି ରହିଥାଏ ବୋଲି କେହି କେହି କହନ୍ତି । କିନ୍ତୁ ଚଢ଼େଇ ଉଡ଼ିଗଲେ ଥୁଣ୍ଟା ଗଛର କୌଣସି କ୍ଷୟକ୍ଷତି ହେଉ ନ ଥିବା ସ୍ଥଳେ ମଣିଷ ଭିତରର ଚଢ଼େଇ ଉଡ଼ିଗଲା ପରେ ତାକୁ ଯେତେ ଠିଆ କରାଇବାକୁ ଚେଷ୍ଟାକଲେ ମଧ ସେ ଆଉ ଠିଆ ହୋଇ ରହିପାରେ ନାହିଁ - ଗଡ଼ିପଡ଼େ ।

ଗରିଲାଜାତୀୟ ମାଙ୍କଡ଼ ବ୍ୟତୀତ ଅନ୍ୟାନ୍ୟ ଜନ୍ତୁସବୁ ଫଳଭାରେ ଅବନତ ତରୁଗଣଙ୍କ ସଦୃଶ ବିନମ୍ରତାର ସୂଚନା ଦେଇ ଅବନତ ବଦନରେ ପୃଥିବୀ ପୃଷ୍ଠକୁ ଅନାଇଁ ହାମୁଡ଼େଇ ହାମୁଡ଼େଇ ଚାଲୁଥିବାବେଳେ ମଣିଷ ସିଧା ସଳଖ ଆକାଶକୁ ଫଣା ଟେକି 'ମୁଁ ମୁଁ' ବୋଲି ଗରଜି ଗରଜି ଚାଲେ । କୌଣସି ନିରୀହ ପ୍ରାଣୀ ଏପରି ମଣିଷକୁ ଭୁଲରେ ଥୁଣ୍ଟାଗଛ ବୋଲି ଭାବି ତା'ର ଅତି ନିକଟକୁ ଚାଲିଗଲେ ବିଶେଷ ବିପଦ ପଡ଼ିବାର ଆଶଙ୍କା ରହିଛି । ତେଣୁ ଏ ଜନ୍ତୁବିଶେଷର ଅଙ୍ଗପ୍ରତ୍ୟଙ୍ଗ ଉପରେ ସମ୍ୟକ ଦୃଷ୍ଟିପାତ କରି ତାକୁ ଉତ୍ତମ ରୂପେ ଚିହ୍ନି ରଖିବା ତଥା ତା' ସମ୍ବନ୍ଧରେ କିଛି ସାଧାରଣ ଜ୍ଞାନ ଅର୍ଜନ କରିବା ବିଧେୟ ।

କେତେକ ମଣିଷଙ୍କ ଏକାଧିକ ମୁଣ୍ଡ ଥିବା କଥା ଶୁଣାଯାଇଥିଲେ ମଧ ସାଧାରଣତଃ ପ୍ରତ୍ୟେକ ମଣିଷର ଗୋଟିଏ ଲେଖାଏ ମୁଣ୍ଡ ଥାଏ । ମନ୍ତ୍ରୀ କିମ୍ବା କୌଣସି ଉଚ୍ଚପଦସ୍ଥ କର୍ମଚାରୀ ହୋଇଗଲେ ମଣିଷ ଏହି ଗୋଟିଏ ମାତ୍ର ମୁଣ୍ଡ ମଧ ସମୟ ସମୟରେ ହରାଉଥିବା ଦେଖାଯାଏ । ମୁଣ୍ଡକୁ ତଳ ଉପର, ଏ ପାଖ ସେପାଖ କିମ୍ବା ଘଣ୍ଟାର ପେଣ୍ଡୁଲମ୍ ପରି ହଲାଇଲେ ବିଭିନ୍ନ ମଣିଷ ଭିନ୍ନ ଭିନ୍ନ ଅର୍ଥ କରନ୍ତି । ଘଣ୍ଟା ପରି ମଣିଷର ମୁଣ୍ଡ ମଧ ସମୟ ସମୟରେ ବିଗିଡ଼ିଯାଏ ।

ଅରଣା ମଇଁଷି ପାଖରୁ ଦନାଇ ଦୂରରେ ରହିଲା ପରି ଏପରି 'ଷୁ' ଢିଲା ମଣିଷଙ୍କ ପାଖରୁ ଅନ୍ୟମାନେ ଦୂରେଇ ରହିବା ଉଚିତ । ଏକ-ଶିଙ୍ଗିଆ ମଣିଷଙ୍କ କଥା ଶୁଣାଯାଉଥିଲେ ମଧ ମଣିଷର ଶିଙ୍ଗ ନ ଥାଏ ।

ମଣିଷ ମୁଣ୍ଡର ଶିଖର ଦେଶରେ କେଶଗୁଚ୍ଛ । ଏହି କେଶର ଆକାର-ପ୍ରକାର ଭେଦରୁ ମଣିଷର ବିଭାଗ କେତେକାଂଶରେ ନିର୍ଣ୍ଣୟ କରାଯାଇପାରେ । ଲମ୍ବା ବାଳ ଥିଲେ ସ୍ତ୍ରୀ ମଣିଷ, ଧଳା ବାଳ ଥିଲେ ବୁଢ଼ା, ଟାଙ୍ଗର ଖେଳ ପଡ଼ିଆ ଅଥବା ଚୋପାଛଡ଼ା ଆଳୁପରି ଦେଖାଯାଉଥିଲେ ପଣ୍ଡିତ, ପାଣିରେ ତିନ୍ତି ଯାଇଥିବା କାଉ, କୁକୁଡ଼ା ଅଥବା ଭାଲୁପରି ଦେଖାଯାଉଥିଲେ ଛାତ୍ର ଓ ଜଟା ଥିଲେ ଋଷି ମଣିଷ ବୋଲି ଅନୁମାନ କରାଯାଇ ପାରେ । ଏପରି ଜଟା ଥିବା ଯୋଗୁଁ ମଣିଷମାନଙ୍କର ବ୍ୟବହାରରେ କ୍ଷୁବ୍ଧ ହେଲେ ଋଷି-ମଣିଷମାନଙ୍କୁ ଜଟା ଛିଣ୍ଡାଇବାକୁ ସୁବିଧା ହୁଏ ।

କୌଣସି ମଣିଷର ମୁଣ୍ଡ ତେଲିଆ ଦେଖାଗଲେ ଅନ୍ୟ ମଣିଷମାନେ ସେ ମୁଣ୍ଡରେ ତେଲ ଢାଳନ୍ତି ।

ଠିକ୍ କେଶ ତଳ ସାମ୍ନାକୁ କପାଳ । ଏଥିରେ କ'ଣ ସବୁ ଲିଖନ ହୋଇଥାଏ ଯେ କେହି ତାକୁ ଆନ କରି ପାରନ୍ତିନି । ମଣିଷମାନେ ସାଧାରଣତଃ ଅନ୍ୟ ମଣିଷମାନଙ୍କ କପାଳରେ ଚିତା କୁଟାନ୍ତି ।

କପାଳ ତଳକୁ ଦୁଇଟି ଲେଖାଏଁ ଆଖି । ଗୋଟିଏ ଆଖିଥିବା ମଣିଷକୁ କିମ୍ବା ବେଳେ ବେଳେ ଆଦୌ ଆଖି ନ ଥିବା ମଣିଷକୁ କେହି କେହି ପଦ୍ମଲୋଚନ ବୋଲି ଡାକନ୍ତି । ଏହି ଆଖି ସାହାଯ୍ୟରେ ପୁରୁଷ ମଣିଷ (ମଣିଷର ପ୍ରକାର ଭେଦ) ସ୍ତ୍ରୀ ମଣିଷ (ଆଉ ଗୋଟିଏ ପ୍ରକାର ଭେଦ) ଆଡ଼କୁ ସମୟ ସମୟରେ ଟେରେଇ ଚାହିଁପାରେ ଓ ସ୍ତ୍ରୀ ମଣିଷ କଟାକ୍ଷପାତ କରିପାରେ ।

ଆଖି ତଳକୁ ଗୋଟିଏ ନାକ । ଗାଁ କନିଆଁମାନଙ୍କ ନାକରୁ ଏକ ପ୍ରକାରର ତରଳ ପଦାର୍ଥ ନିର୍ଗତ ହୁଏ ।

ନାକର ଦୁଇ ପାଖରେ ଗୋଟିଏ ଲେଖାଏଁ ଗାଲ । ଗାଲଟି ଚାପୁଡ଼ାପାଇଁ ଉପଯୁକ୍ତ ସ୍ଥାନ ବୋଲି ଅନେକ ବିବେଚନା କରନ୍ତି । ଜଣକର ଗାଲରେ ଆଉ ଜଣେ ଚାପୁଡ଼ାଟିଏ ଦେଲେ ପୂର୍ବୋକ୍ତ ମଣିଷ ପରୋକ୍ତ ମଣିଷର ଦୁଇ ଗାଲରେ ଦୁଇ ଚାପୁଡ଼ା ବଜାଇ ନ ଦେଇ ନିଜର ଅନ୍ୟ ଗାଲ ଦେଖାଇ ଦେବାପାଇଁ କହିଥିବା ଜଣେ ମଣିଷକୁ ଅନ୍ୟ ମଣିଷମାନେ କ୍ରୁଶରେ ବିଦ୍ଧ କରି ଦେଇଥିଲେ ।

ଗାଲର ପୂର୍ବ ଓ ପଶ୍ଚିମ ପ୍ରାନ୍ତରେ ଗୋଟିଏ ଲେଖାଏଁ କାନ । କାନର ଏପରି ଅବସ୍ଥିତି ଯୋଗୁଁ ଶିକ୍ଷକମାନେ (ଗୋଟିଏ ଭୟଙ୍କର ପ୍ରକାରର ମଣିଷ) ପାଠ ପଢ଼ାଇଲା ବେଳେ ପାଠଟି ଛାତ୍ରମାନଙ୍କର ଗୋଟିଏ କାନରେ ପଶି ସହଜରେ ଅନ୍ୟ କାନ ଦେଇ ସିଧାସଳଖ ବାହାରିଯାଏ ।

ଦୁଇ ଗାଲ ମଝିରେ ଗୋଟିଏ ପାଟି ଓ ତା' ଭିତରେ ଗୋଟିଏ ଗହ୍ୱର । ଜଣକର ସେହି ପାଟି ଭିତରେ ଆଉ ଜଣେ କେହି ବିଶ୍ୱବ୍ରହ୍ମାଣ୍ଡ ଦେଖିଥିଲେ ବୋଲି ଶୁଣାଯାଏ । କିନ୍ତୁ ସମସ୍ତଙ୍କ ପାଟି ଭିତରେ ଏପରି ବିଶ୍ୱବ୍ରହ୍ମାଣ୍ଡ ବଦଳରେ ଦାନ୍ତ ଓ ଜିଭ ଦେଖିବାକୁ ମିଳେ । ଦାନ୍ତ ସାହାଯ୍ୟରେ ମଣିଷ ହାଡ଼, ରକ୍ତ ଚାଉଳ ତଥା ଅନ୍ୟାନ୍ୟ ଅନେକ ପଦାର୍ଥ ଚୋବାଇ ପାରେ । ପାଟିର ଏ ପାଖ ସେ ପାଖ ଗତି ବେଗରୁ ମଣିଷ କିରି କିରି ହସୁଛି କିମ୍ବା ମୃଦୁ ହାସ୍ୟ କରୁଛି, ତାହା ଜଣାପଡ଼େ ଓ ଉପର ତଳ ଗତି ବେଗରୁ ରଡ଼ି, ଚିତ୍କାର ତଥା କ୍ରନ୍ଦନ ବୁଝାଯାଏ । ନିଜର ପ୍ରଶଂସା ଗାଇଲାବେଳକୁ ମଣିଷର ଗୋଟିଏ ମାତ୍ର ଜିଭ ସହସ୍ରଜିହ୍ୱା ହୁଏ ।

ଗରିବ ମଣିଷମାନେ ମୁଣ୍ଡଝାଳ ତୁଣ୍ଡରେ ମାରନ୍ତି ।

ପାଟି ଉପରକୁ ଓ ନାକ ତଳକୁଥିବା କେଶ ପରି ପଦାର୍ଥକୁ ନିଶ କୁହାଯାଏ । ଏଇ ନିଶ ଆକାରରେ ପ୍ରଜାପତି ହୋଇଥିଲେ ହିଟଲର୍‌ଜାତୀୟ, ଗାଈ ଲାଞ୍ଜର ଚାମର ପରି ହୋଇ ସିଧାସଳଖ ପୂର୍ବ-ପଶ୍ଚିମକୁ ମାଇଲିଏ ଅଧମାଇଲ ଯାଇଥିଲେ ଷ୍ଟାଲିନ୍‌ଜାତୀୟ, କୁକୁର ଲାଞ୍ଜ ପରି ସରୁ ଓ ପୂର୍ବ-ପଶ୍ଚିମରୁ ହଠାତ୍ ଦକ୍ଷିଣକୁ ଖସିଥିଲେ ଚେଙ୍ଗିଜଖାନ୍ ଜାତୀୟ ଓ ଉତ୍ତରକୁ ଉଠିଥିଲେ ରାଜା କିମ୍ବା ପୋଲିସ ମଣିଷ ବୋଲି ବୁଝିବ । ପୂର୍ବ ପଶ୍ଚିମକୁ କିଛି ଦୂର ଯାଇ ଦକ୍ଷିଣକୁ ଖସିଲା ପରେ ପୁଣି ପୂର୍ବ ଓ ପଶ୍ଚିମକୁ ମୁହାଁଇଥିଲେ କଲେଜଛାତ୍ର ବୋଲି ଜଣା ଅଧିକେ ନିଶ୍ଚିତ ଭାବେ କୁହାଯାଇପାରେ ।

ଦରକାର ପଡ଼ିଲେ ଏ ନିଶ ମୋଡ଼ାଯାଏ । ସ୍ତ୍ରୀ-ମଣିଷମାନଙ୍କର ନିଶ ନ ଥାଏ - ତେଣୁ ସେମାନେ ନିଶ ନ ମୋଡ଼ି ଅଣ୍ଟା ଭିଡ଼ନ୍ତି ।

ମୁଣ୍ଡତଳକୁ ଗୋଟିଏ ବେକ ବା ଗଳା । ମନ୍ତ୍ରୀମାନେ ବେକରେ ଫୁଲମାଳ ପିନ୍ଧନ୍ତି । ଧନୀମାନଙ୍କ ସ୍ତ୍ରୀମାନେ ଗଳାରେ ସୁନାହାର ମଣ୍ଡି ହୁଅନ୍ତି । ଆଉ ପେଟ ବିକଳରେ ଗରିବ ମଣିଷ ବେକରେ ଦଉଡ଼ି ଦିଏ ।

ଏହି ଗଳାରେ ଧକ୍‌କା ଦିଆ ଯାଇପାରେ ।

ମୁଣ୍ଡ ତଳକୁ ରହିଥିବା ଯେଉଁ ଅଂଶକୁ ବେକ ଯୋଡ଼ିକରି ରଖିଥାଏ ତାକୁ ଗଣ୍ଠି କହନ୍ତି ।

ଏହି ଗଣ୍ଠି ଉପରର ସାମନା ଭାଗରେ ଛାତି । କ୍ଷମତାରେ ଥିବା ମଣିଷମାନେ ଛାତି ଫୁଲାଇ ଚାଲନ୍ତି ! କାନ୍ଦିଲା ବେଳକୁ ଏ ଛାତି ପିଟାଯାଇପାରେ ।

ଠିକ୍ ଛାତିର ପଛ ପଟକୁ ପିଠି । ସବଳ ମଣିଷ ଦୁର୍ବଳ ଉପରେ ଅତ୍ୟାଚାର କଲା ବେଳେ ଏହି ଦୁର୍ବଳ ମଣିଷର ପିଠିରେ କେହି ପଡ଼ନ୍ତି ନାହିଁ । ଗାଲ ଯେପରି ଚାପୁଡ଼ାର ସ୍ଥାନ, ପିଠି ସେହିପରି ବିଧାର ଉପଯୁକ୍ତ ସ୍ଥାନ ।

ଛାତି ଓ ପିଠି ଦୁଇ ପାଖରେ ଗଛର ଡାଳ ପରି ଦୁଇଟି ହାତ ଥାଏ । ଏ ହାତର ଉପକାରିତା ଅନେକ । ଜଣକର ପରିଶ୍ରମର ମୂଲ୍ୟ ଅନ୍ୟ ଜଣେ ଏହା ସାହାଯ୍ୟରେ ପଇଠ କରିପାରେ । ଗୋଟିଏ ହାତର ଉପରି ଭାଗରେ ଆଉ ହାତ ବାଡ଼େଇ ବାହାସ୍ଫୋଟ ଦେଇପାରେ । ଆଗରୁ କୁହାଯାଇଥିବା ବିଧା, ଚାପୁଡ଼ା ଗଳାଧକ୍କା ସମୂହ ଭାବରେ ବିତରଣ କରିପାରେ । ଠେଙ୍ଗା, ଟାଙ୍ଗିଆ, ବନ୍ଧୁକ, ବୋମା ପ୍ରଭୃତି ଧରିପାରେ । ଚାଳନା କରିପାରେ ଅବା ଫିଙ୍ଗିପାରେ । ଖୋଳିପାରେ, ତାଡ଼ିପାରେ, ଖାଇ ପାରେ ଓ ଅନ୍ୟର ଜିନିଷ ନିଜ ପକେଟରେ ଭର୍ତ୍ତି କରିପାରେ ।

ମଣିଷ ଉପରେ ମଣିଷ ଠେଙ୍ଗା, ଟାଙ୍ଗିଆ ବନ୍ଧୁକ ବ୍ୟବହାର ନ କରିବାକୁ କହୁଥିବା ଜଣେ ମଣିଷଙ୍କୁ ଅନ୍ୟ ମଣିଷମାନେ ଗୁଳି କରି ମାରିଦେଲେ ।

ଛାତି ତଳକୁ ପେଟ । ଏହି ଚାଖଣ୍ଡେ ପେଟ ପାଇଁ ମଣିଷ ବାରଦ୍ୱାର ଆଉ କୌଣସି ଭଦ୍ରଲୋକଙ୍କ ପିଣ୍ଡାକୁ ଯାଏ । ଯେଉଁ ମଣିଷମାନେ ଏହି ପେଟରେ ଓଦା କନା ଦେଇ ଶୁଅନ୍ତି ସେମାନଙ୍କୁ ଗରିବ ବୋଲି ଜାଣିବ ।

ପେଟ ମଝିରେ ଗୋଟିଏ ଗର୍ତ୍ତ । ଏହି ଗର୍ତ୍ତଟିର ମହିମା ଅନେକ । କେହି ଜଣେ ଏ ନାଭିରୁ ଆଉ ଗୋଟିଏ ପାଦ ବାହାର କରିଥିଲେ । ଆଉ ଜଣେ ଯୋଗନିଦ୍ରାରେ ଶୋଇ ରହିଥିଲା ବେଳେ ଏଥିରୁ ଗୋଟିଏ ପଦ୍ମନାଡ଼ ବାହାରିଥିଲା ଓ ସେହି ନାଡ଼ ଉପରେ ଚତୁର୍ଦ୍ଦିଗକୁ ମୁହଁ କରି ବସିଥିବା ଭଦ୍ରଲୋକ ହିଁ ଏ ସୃଷ୍ଟି ଭିଆଣ କରିଛନ୍ତି ବୋଲି କେହି କେହି କହନ୍ତି । ତେବେ ତହିଁର କୌଣସି ଚାକ୍ଷୁଷ ପ୍ରମାଣ ନାହିଁ ।

ଧନୀମାନେ ନାହିରେ ତେଲଦେଇ ଶୁଅନ୍ତି ।

ପେଟ ଓ ନାଭି ପାଖରେ ଅଣ୍ଟା । ନିଶ ନ ଥିଲେ ଏହା କିପରି ଚିହ୍ନାଯାଇ ପାରେ ସେ ସମ୍ବନ୍ଧରେ ପୂର୍ବରୁ କୁହାଯାଇଥିବା ମନ୍ତବ୍ୟ ଦ୍ରଷ୍ଟବ୍ୟ ।

ଗଣ୍ଡିକୁ ଟେକି ଧରିଥିବା ଦୁଇଟି ଖମ୍ବ ପରି ଅଙ୍ଗର ନାମ ଗୋଡ଼ । ଗୋଟିଏ ନିରୀହ ମଣିଷକୁ କୌଣସି ଭୟଙ୍କର ମଣିଷ ଚୋବାଇ ଖାଇବାକୁ ଗୋଡ଼ାଇଲାବେଳେ ପୂର୍ବୋକ୍ତ ମଣିଷଟି ଏହି ଦୁଇ ଖମ୍ବ ସାହାଯ୍ୟରେ ଦ୍ରୁତ ଗତିରେ ପଳାୟନ କରିପାରେ । ନତୁବା ଏପରି ଆକ୍ରମଣର ସମ୍ମୁଖୀନ ହେବାପାଇଁ ଶକ୍ତି ଓ ସାମର୍ଥ୍ୟ ଥିଲେ ଗୋଡ଼ର ଉପରି ଭାଗରେ ଥିବା ଜଂଘକୁ ପିଟି ରଣପାଇଁ ଆହ୍ୱାନ ଦେଇପାରେ ।

ଏହି ଗୋଡ଼ ଗୋଦରା ହୋଇଥିଲେ ମଣିଷ ଯେତେ କୋଢ଼େ, ସେତେ ମାଢ଼େ ।

ପ୍ରତ୍ୟେକ ଖମ୍ବ ତଳକୁ ଲମ୍ବା ଥାଳିଆ ପରି ଦେଖା ଯାଉଥିବା ଅଙ୍ଗ ବିଶେଷକୁ ପାଦ କୁହାଯାଏ । କେହି କେହି ମଣିଷ ଅନ୍ୟ କେଉଁ ମଣିଷଙ୍କ ପିଠିରେ ପାଦ ପ୍ରହାର କରନ୍ତି । କେହି କେହି ବା ଅନ୍ୟ କାହାରି ପାଦ ଘଷନ୍ତି ଓ ବେଳେ ବେଳେ ପାଦ ଚାଟନ୍ତି ବୋଲି ଶୁଣାଯାଏ ।

ପୂର୍ବ କାଳର ଝିଅ-ମଣିଷମାନଙ୍କ ଚାରୁ-କୁନ୍ତଳ ଦେଖି ଚାମରୀ ଗାଈ ହିମାଳୟକୁ ପଳାୟନ କରୁଥିଲା । ଭ୍ରୁରୁ ଦେଖି କାମଦେବଙ୍କ ଧନୁରୁ ଗୁଣ ଖସି ଯାଉଥିଲା ଓ ବଦନ ନିରେଖି ପୂର୍ଣ୍ଣମୀ ଚାନ୍ଦ ମେଘରେ ମୁହଁ ଲୁଚାଉଥିଲା । ନାକ ଦେଖି ତିଳଫୁଲ ଝଡ଼ି ପଡୁଥିଲା, ନିଃଶ୍ୱାସ ଗନ୍ଧରେ ଆକୃଷ୍ଟ ଅଳିକୁଳ ଗୁଞ୍ଜରି ଏପରି ବାମାଙ୍କୁ ଆକୁଳ କରୁଥିଲେ । ନୟନ ଦେଖି କୁରଙ୍ଗର ନେତ୍ରରୁ ପଲକ ପଡୁ ନ ଥିଲା । ଅଧର ଓ ଦନ୍ତପନ୍ତି ଦର୍ଶନରେ ମନ୍ଦାର ଫୁଲ ତଥା ଡାଳିମ୍ବ କରମକୁ ନିନ୍ଦୁ ଥିଲେ । କଟି ଦେଖି ସିଂହ ବଣ ମଧରେ ଓ ହାତ ଦେଖି ପଦ୍ମନାଡ଼ ପାଣି ଭିତରେ ଲୁଚି ରହୁଥିଲେ । ଏପରି ଝିଅମଣିଷଙ୍କ କଟାକ୍ଷ-ପାତର କବି ମଣିଷଙ୍କ ମୁଣ୍ଡ ବିଗିଡ଼ି ଯାଉଥିଲା ଓ ସେମାନଙ୍କ ଯୋଗୁଁ ତ୍ରୟ ନଗରୀ ଧ୍ୱଂସ ହେଉଥିଲା, ଲଙ୍କାପୁରୀ ଛାରଖାର ହେଉଥିଲା, କୌରବ ବଂଶ ସମୂଳେ ନାଶ ଯାଉଥିଲା । ଆଜିକାଲି ସେପରି ଆଉ ଘଟୁ ନାହିଁ । ଚନ୍ଦ୍ରଙ୍କ ବଦନରେ ଏବେ ବ୍ରଣ ଦେଖା ଦେଇଥିବାରୁ ଓ ଏକାଳର କବିମାନେ ମୁଖ୍ୟତଃ ଗବାକ୍ଷ ନିକଟରେ ବସି ରହୁଥିବାରୁ ଅବସ୍ଥାର ପରିବର୍ତ୍ତନ ଘଟିଛି ।

କେବଳ କେଉଁ ଜଣେ ସଗର ରାଜାଙ୍କ ରାଣୀଙ୍କୁ ଛାଡ଼ିଦେଲେ ଅନ୍ୟ କେହି ମଣିଷଡିମ୍ବ ଦେଇଥିବା କଥା ଶୁଣାଯାଏ ନାହିଁ । ତେଣୁ ସନ୍ତାନ ପ୍ରସବ କରୁଥିବା

ପ୍ରାଣୀ ହିସାବରେ ମଣିଷକୁ ବାଦୁଡ଼ି, ତିମିମାଛ ଅଥବା ପଶୁ-ଶ୍ରେଣୀରେ ଗଣନା କରାଯାଇପାରେ । ମଣିଷ ଦେଖିବାକୁ କଳା, ଧଳା ବା ଗୋରା, ହଳଦିଆ, ତମ୍ବାଳିଆ, ଖଇରା ଓ ମାଟିଆ ।

ଏମାନଙ୍କ ଭିନ୍ନ ଭିନ୍ନ ଧରଣର ଚିତ୍କାରକୁ ଭାଷା କୁହାଯାଏ ।

ମଣିଷମାନେ ଗଛ ପତ୍ର, ମାଛ, କଇଁଛ ଚେରମୂଳ ସବୁ ଖାଆନ୍ତି । ଏ ସବୁ ପଦାର୍ଥ ପୂର୍ବୋକ୍ତ ହାତ ସାହାଯ୍ୟରେ ପାଟି ମଧ୍ୟ ଦେଇ ଗର୍ଭକୁ ନିକ୍ଷେପ କରାଯାଏ । ଶୁଣିବାକୁ ମିଳେ ଯେ ଆଗକାଳରେ କେଉଁକେଉଁ ଜାତୀୟ ମଣିଷ ଅନ୍ୟଜାତୀୟ ମଣିଷମାନଙ୍କୁ କଞ୍ଚା କିମ୍ବା ପୋଡ଼ି ଖାଇଯାଉଥିଲେ; କିନ୍ତୁ ଆଜିକାଲି କୌଣସି ମଣିଷ ଅନ୍ୟ ମଣିଷକୁ ସିଧା ସଳଖ ଖାଇଯାଉଥିବାର ଦେଖାଯାଏ ନାହିଁ ।

ମଶା, ମାଛି, ପିମ୍ପୁଡ଼ି ଅଥବା ପଙ୍ଗପାଳ ପରି ଏମାନଙ୍କ ସଂଖ୍ୟା ଯେପରି ବୃଦ୍ଧି ନ ପାଏ, ସେଥିପାଇଁ ହେଉ, ଅଥବା ଅନ୍ୟ କୌଣସି କାରଣ ଯୋଗୁଁ ହେଉ, ଏମାନେ ଧର୍ମ ନାମରେ ଦେଶ ନାମରେ ଜାତି ବର୍ଣ୍ଣ ତଥା ଭାଷା ନାମରେ ଅଥବା ବିନା କାରଣରେ ନିଜ ନିଜ ମଧ୍ୟରେ ସଦା-ସର୍ବଦା ହଣାକଟା ହେଉ ଥାଆନ୍ତି ।

ଏପରି ଭାବରେ କିଛି କାଳ ଏ ସଂସାରର ମିଛ ମାୟାରେ ଲଢ଼-ବଢ଼ ଲଢ଼-ବଢ଼ ହେବା ପରେ ମଣିଷ ଶୁଖା ଖଡ଼୍ ଖଡ଼୍ ହୋଇଯାଏ । ତା'ର ବହୁତ କଫ, ବାତ, ପିତ୍ତ ହୁଏ ଓ ତଣ୍ଟି ଘଡ଼୍ ଘଡ଼୍ ଶୁଭେ । ଯଥା ସମୟରେ ମଣିଷ ଭିତରେ ଥିବା ଚଢ଼େଇ ଏ ଅବସ୍ଥା ନିରୀକ୍ଷଣ କରେ ଓ ଅନ୍ୟମାନଙ୍କ ଅଜାଣତରେ କେତେବେଳେ ଉଡ଼ିଯାଏ । ଫଳରେ ମଣିଷ ସବୁଦିନ ପାଇଁ ଗଡ଼ି ଗଡ଼ି ପଡ଼େ । (ଏଠାରେ ଥୁଣ୍ଟା ଗଛର ପାର୍ଥକ୍ୟ ଦ୍ରଷ୍ଟବ୍ୟ) । ଏପରି ଦୁର୍ଦ୍ଦଶାଗ୍ରସ୍ତ ମଣିଷ ମରିଗଲା ପରେ ତା'ର ଭାଇବନ୍ଧୁମାନେ ତାକୁ ବୋହି ନେଇ ବଡ଼ ବଡ଼ କାଠ ଲଦି ଜାଳି ଦିଅନ୍ତି ଏବଂ ଭୋଜନଦ୍ୱାରା ଅନ୍ୟ ମଣିଷମାନଙ୍କୁ ଆପ୍ୟାୟିତ କରନ୍ତି ।

ନିତିଦିନ ଏପରି ଘଟୁଥିଲେ ମଧ୍ୟ ଜଣେଅଧେ ମଣିଷଙ୍କୁ ଛାଡ଼ି ଦେଲେ ଅନ୍ୟ ପ୍ରତ୍ୟେକ ମଣିଷ ଭାବେ ଯେ ତା' କଥା ସ୍ୱତନ୍ତ୍ର ଓ ତା'ର ମରଣ ନାହିଁ । ତେଣୁ ପ୍ରାଣୀ ଜଗତରେ କେବଳ ଏହି ପ୍ରାଣୀ ଅନ୍ୟ ପ୍ରାଣୀଙ୍କର ଖାଦ୍ୟ ପଦାର୍ଥ ତଥା ଅନ୍ୟାନ୍ୟ ଧନ ସମ୍ପଦ ଲୁଟି ଆଣି ନିଜେ ଜମା କରେ । ସେଥିପାଇଁ ଚଢ଼େଇ ଉଡ଼ିଯିବାର ଅବ୍ୟବହିତ ପୂର୍ବରୁ ମଣିଷ ଯେ ତା'ର ଏପରି ସବୁ ସମ୍ପଦ କେଉଁଠି ଲୁଚାଇ ରଖିଥାଇ ପାରେ ସେ ସମ୍ବନ୍ଧରେ ଅନ୍ୟମାନେ ସନ୍ଦେହ କରିବା ସ୍ୱାଭାବିକ ।

ସଂସାରର ଅନେକ ସମ୍ପଦ ଠୁଳ କରିସାରିଲା ପରେ 'ଜିଣିବାକୁ ନାହିଁ ଆଉ ଧରାଖଣ୍ଡ' ବୋଲି ଅଶ୍ରୁସିକ୍ତ ଗଣ୍ଡ କରିଥିବା ଜଣେ ମଣିଷ ଏପରି ସନ୍ଦେହର ସମ୍ଭାବନା ହୃଦୟଙ୍ଗମ କରି କୁଆଡ଼େ ଆଗରୁ କହି ଯାଇଥିଲେ ଯେ, ମୃତ୍ୟୁ ପରେ ତାଙ୍କୁ ଯେତେବେଳେ କୋକେଇରେ ବୋହି ନିଆଯିବ ସେତିକିବେଳେ ତାଙ୍କର ଦୁଇ ହାତକୁ ମେଲା କରି କୋକେଇ ବାହାରେ ଝୁଲାଇ ଦିଆଯିବ, ଯାହା ଦେଖି ସମସ୍ତେ ଜାଣିବେ ଯେ ସେ ଟ୍ରେଜେରୀରେ ଚାବି ପେଣ୍ଡା ନିଜ ସଙ୍ଗରେ ନେଇଯାଉ ନାହାନ୍ତି ଓ ଏ ସଂସାରକୁ ଯେପରି ଭାବରେ ଆସିଥିଲେ, ସେପରି ଭାବରେ ଖାଲିହାତରେ ହିଁ ବିଦାୟ ନେଉଛନ୍ତି ।

ଏ ସମସ୍ତ ବିଷୟ ଅନୁଧ୍ୟାନ ତଥା ପର୍ଯ୍ୟାଲୋଚନା କରି ସାରିଲା ପରେ ଉପସଂହାରରେ କୁହାଯାଇପାରେ ଯେ ଏପରି ଅଦ୍ଭୁତ ଜନ୍ତୁ ସବୁ କେଉଁଠାରୁ ଆସନ୍ତି ଓ ଶେଷରେ କେଉଁଠିକି ଯାଆନ୍ତି ସେ କଥା ଠିକ୍ ନ ଜାଣିଲା ପର୍ଯ୍ୟନ୍ତ ଆମ ସମସ୍ତଙ୍କୁ ଟିକିଏ ହୁସିୟାର ହୋଇ ଚଳିବାକୁ ପଡ଼ିବ ।

# ମଣିଷ ଓ ତାର କାରିଗର

କେହି କେହି ପ୍ରଶ୍ନକରନ୍ତି ଯେ ଭଗବାନ୍ ମଣିଷକୁ ସୃଷ୍ଟିକରିଛନ୍ତି ନା ମଣିଷ ଭଗବାନ୍‌କୁ ସୃଷ୍ଟିକରିଛି । ପ୍ରଶ୍ନଟି ଯେ ଅତି ଜଟିଳ ଏଥିରେ ସନ୍ଦେହ ନାହିଁ ।

ଭଗବାନ୍‌ଙ୍କ ଅସ୍ତିତ୍ୱ ସମ୍ବନ୍ଧରେ ମହା ମହା ଜ୍ଞାନୀମାନେ ମଧ୍ୟ ଆଲୋଚନା କରିବାକୁ ପଶ୍ଚାତ୍‌ପଦ ହୁଅନ୍ତି । ତେଣୁ ସ୍ୱଳ୍ପଜ୍ଞାନନେଇ ସେ ସମ୍ବନ୍ଧରେ ଆଲୋଚନା କରି ବସିବା ଅଳ୍ପ ପାଣିରେ ଶଫରୀ ଫର ଫର କଲାପରି ଅଥବା ଫମ୍ପାହାଣ୍ଡି ସାମାନ୍ୟ ପବନରେ ଗରଜିଲାପରି ହେବ । ପ୍ରଶ୍ନଟି କିନ୍ତୁ ଯେତେ ଜଟିଳ ତା' ଅପେକ୍ଷା ତାଚ୍ଛଲ୍ୟ ଓ ବ୍ୟଙ୍ଗର ପ୍ରଚ୍ଛନ୍ନତା ଯୋଗୁଁ ବେଶି କୁଟିଳ ବୋଲି ମନେହୁଏ । କେବଳ ସେ କୁଟିଳତା ଖଣ୍ଡନ କରିବାକୁ ଚେଷ୍ଟା କରିବା ଉଦ୍ଦେଶ୍ୟରେ କିଛି ଆଲୋଚନା କରାଯାଇ ପାରେ ।

ଜୀବଜଗତରେ କେବଳ ମଣିଷହିଁ ଚିନ୍ତା କରିପାରେ ବୋଲି ସମସ୍ତେ ସ୍ୱୀକାର କରନ୍ତି । ମଣିଷ ଚିନ୍ତା କରିପାରେ ବୋଲି କର୍ମେନ୍ଦ୍ରିୟ ଓ ଜ୍ଞାନେନ୍ଦ୍ରିୟ ବହିର୍ଭୂତ ବିଷୟବସ୍ତୁମାନଙ୍କର କଳ୍ପନା କରିପାରେ, ସେ ସମ୍ବନ୍ଧରେ ଅନୁସନ୍ଧାନ ଓ ଅନୁଧ୍ୟାନ କରିପାରେ ଓ ସେ ଅନୁଧ୍ୟାନର ଫଳାଫଳ ନିର୍ଣ୍ଣୟ କରିପାରେ - ଗ୍ରହ ଉପଗ୍ରହମାନଙ୍କଠାରୁ ଶହ ଶହ ଆଲୋକ ବର୍ଷ ଦୂରରେଥିବା ଗେଲେକ୍ସି ଓ ନକ୍ଷତ୍ରମାନଙ୍କ ସ୍ଥିତି ନିର୍ଣ୍ଣୟ କରେ । କସ୍ମିକ୍ ରଶ୍ମିର ମୂଳଉତ୍ସ ସମ୍ବନ୍ଧରେ ଚିନ୍ତାକରେ । କ୍ଷୁଦ୍ରାତିକ୍ଷୁଦ୍ର ଅଣୁ ପରମାଣୁଠାରୁ ଅନେକ ସାନ ଇଲେକ୍‌ଟ୍ରନ୍-ନିଉଟ୍ରନ୍ ପ୍ରଭୃତିର ତଥ୍ୟ ଉଦ୍‌ଘାଟନ କରିସାରିଲା ପରେ ଫୋଟନ୍, ମେଜନ୍ ପ୍ରଭୃତି କଣିକାର ଅସ୍ତିତ୍ୱ ଘୋଷଣାକରେ । ପରମାଣୁ ଅନ୍ତରର ମହାଶକ୍ତି ଆବିଷ୍କାରକରି ତହିଁର ଚାକ୍ଷୁଷ ପ୍ରମାଣ ଦିଏ, ରକ୍ତରେ ଥିବା ଜିନ୍‌ର ଗୁଣ ବର୍ଣ୍ଣନା କରେ ଓ ନିତି ନୂତନ ମାନସିକ ଦିଗ୍‌ବଳୟ ସୃଷ୍ଟିକରି ଚାଲେ । ସେହି ମଣିଷ ଯଦି କୌଣସି ସର୍ବଶକ୍ତିମାନ ତଥା ସବୁ ଶକ୍ତିର ମୂଳ ଉତ୍ସଙ୍କ ସ୍ଥିତି ସମ୍ବନ୍ଧରେ କଳ୍ପନାକରି ତହିଁର ଅନୁସନ୍ଧାନ କରି ବସେ ଓ ସେହି ସର୍ବଶକ୍ତିର ମୂଳଉତ୍ସଙ୍କୁ ଭଗବାନ୍ ନାମରେ ନାମିତକରି ସେହି ପ୍ରକ୍ରିୟାରେ ଭଗବାନ୍ ଓ ତାଙ୍କ ରୂପରେଖ

ସୃଷ୍ଟିକରେ, ସେଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ତେଣୁ ସେହି କଳ୍ପିତ ଭଗବାନ୍ ମଣିଷକୁ ସୃଷ୍ଟି କରିଛନ୍ତି ନା ନାହିଁ ସେ ବିଷୟ ହିଁ ଆଲୋଚନା ଯୋଗ୍ୟ ।

ମଣିଷ ଯେ ନିଜେ ନିଜକୁ ସୃଷ୍ଟି କରିନାହିଁ ତାହା ସ୍ୱତଃ ସିଦ୍ଧ । ସେ ନିଜକୁ ସୃଷ୍ଟି କରିଥିଲେ ନିଜ ଦେହରେ ପକ୍ଷୀର ଡେଣା ଖଞ୍ଜି ମେଘ ଭିତରେ ଲୁଚକାଳି ଖେଳି ଥାଆନ୍ତା । ତିମି ଓ ଶାର୍କ ଶକ୍ତି ଏବଂ କ୍ଷିପ୍ରତା ନେଇ ସମୁଦ୍ରର ଉତ୍ତାଳ ତରଙ୍ଗରେ ନାଚି ବୁଲି ଥାଆନ୍ତା, ଜରା ବ୍ୟାଧି ଓ ମୃତ୍ୟୁରୁ ମୁକ୍ତହୋଇ ଚିରଯୌବନ ନେଇ ଆନନ୍ଦମୟ ହୋଇ ଥାଆନ୍ତା ।

ବାପା ମା' ମଧ୍ୟ ମଣିଷ ସୃଷ୍ଟି କରନ୍ତିନି । ସେମାନେ ଯଦି ନିଜ ଇଚ୍ଛା ଅନୁସାରେ ପୁଅ ଝିଅ ସୃଷ୍ଟି କରୁଥାଆନ୍ତେ ପ୍ରତ୍ୟେକ ମଣିଷ କାମଦେବଙ୍କ ପରି ସୁନ୍ଦର, ପବନସୁତଙ୍କ ପରି ପରାକ୍ରମୀ, ବୃହସ୍ପତିଙ୍କ ପରି ଜ୍ଞାନୀ ଓ କୁବେରଙ୍କ ପରି ଧନଶାଳୀ ହୋଇଥାଆନ୍ତା । ପୁଅ ନ ହୋଇ ଝିଅ ଜନ୍ମ ହେଲା ବୋଲି କେତେ ଘରେ କାନ୍ଦ ବୋବାଳି ପଡ଼ନ୍ତାନି ।

ଏକଥା ତେଣୁ ନିଶ୍ଚିତ ଯେ ମଣିଷକୁ କେହି ଜଣେ ଅଦୃଶ୍ୟ କାରିଗର, ମିସ୍ତ୍ରୀ, ମେକାନିକ୍ କିମ୍ବା ବିନ୍ଧାଣୀ ସ୍ୱଇଚ୍ଛାରେ କିମ୍ବା କୌଣସି ଅର୍ଡ଼ର ମୁତାବକ୍ ସୃଷ୍ଟି କରୁଛି । କଳା, ଗୋରା, ହଳଦିଆ ପ୍ରଭୃତି ରଙ୍ଗ, ଡେଙ୍ଗା ଗେଡ଼ା ପ୍ରଭୃତି ଆକାର ଭେଦରୁ ମନେହୁଏ ଯେ ଏମ୍ବାସେଡ଼ର୍ ଫିଏଟ୍ କିମ୍ବା ଷ୍ଟାଣ୍ଡାର୍ଡ଼ ମଟରକାର ତିଆରି କରୁଥିବା କମ୍ପାନୀମାନଙ୍କପରି ବିଭିନ୍ନ କମ୍ପାନୀ ଭିନ୍ନ ଭିନ୍ନ ମଣଷ ସୃଷ୍ଟି କରୁଛନ୍ତି, ଆଉ ଟାଟା-ମାର୍ସଡ଼ିଜ୍, ଲିଲେଣ୍ଡ ଟ୍ରକ୍ କମ୍ପାନୀ ପରି ଅନ୍ୟକୌଣସି କମ୍ପାନୀ ହାତୀ, ଗଣ୍ଡାର, ଅରଣା, ମହିଷି ପ୍ରଭୃତି ଓ ଗୋଳାବାରୁଦ କାରଖାନାର 'ଶକ୍ତିମାନ' ଟ୍ରକ ପରି କୌଣସି ଅର୍ଡ଼ିନେନ୍‌ସ ଫେକ୍ଟରୀ ବାଘ, ଚିତାବାଘ ଗଧିଆ ପ୍ରଭୃତି ତିଆରି କରୁଛି ।

ମଟରଗାଡ଼ିରେ ଲାଗିଥିବା କଳକବ୍ଜା ପରି ମଣିଷ ଭିତରେ ମଧ୍ୟ ନାନା ରକମର କଳକବ୍ଜା ରହିଛି । ହାତ ଗୋଡ଼ଠାରୁ ଆରମ୍ଭ କରି କଲିଜା ଫୁସ୍‌ଫୁସ୍ ଅନ୍ତନାଡ଼ୀ ପର୍ଯ୍ୟନ୍ତ ସବୁ ମଣିଷର କଳକବ୍ଜା ଏକା ଧରଣର ହୋଇ ଥିବାରୁ ମନେହୁଏ ଯେ କୌଣସି ସ୍ପେଆରପାର୍ଟ୍ କମ୍ପାନୀ ବିନ୍ଧାଣୀକୁ ଏ ସବୁ ଆଗ୍‌ମାର୍କା ମାଲ ଯୋଗାଇ ଦେଉଛି ।

ଢିଙ୍କିକୁଟା କିମ୍ବା ମିଲକୁଟା ଚାଉଳ, ହାତତିଆରି କିମ୍ବା ମେସିନତିଆରି କାଗଜ ପରି ମଣିଷ ହେଣ୍ଡମେଡ଼୍ କି ମେସିନମେଡ଼୍ ସେ ସମ୍ବନ୍ଧରେ ମଧ୍ୟ ସନ୍ଦେହ

ଛନ୍ତେ । ଆହୁରି ମଧ୍ୟ ପ୍ରଶ୍ନ ଉଠେ ଯେ ମଣିଷ ତିଆରି କଲା ବେଳକୁ ବିନ୍ଧାଣୀ ଯନ୍ତ୍ରପାତି ଖଞ୍ଜି ଦେଲା ପରେ ସେ ଭିତରେ ନିଜେ ବସି ତାକୁ ଚଳାଏ, କୌଣସି ଡ୍ରାଇଭରଟିଏ ବସାଇଦିଏ କିମ୍ବା ହେଣ୍ଡେଲ୍ ମାରି ଷ୍ଟାର୍ଟ କଲାକ୍ଷଣି ନୂଆ ମଣିଷ ଫୁଟ୍ ଫୁଟ୍ ଆରମ୍ଭ କରି ଦେଲେ ତାକୁ ସେମିତି ଛାଡ଼ିଦିଏ ।

ଯେଉଁମାନେ ହେଣ୍ଡଲ ଷ୍ଟାର୍ଟ୍‌ରେ ବିଶ୍ୱାସୀ, ସେମାନଙ୍କ ମତରେ ଷ୍ଟାର୍ଟ୍ ବନ୍ଦ ହୋଇଗଲେ ମଣିଷ ମରିଯାଏ; ଆଉ ମରିଗଲା ପରେ ମଣିଷର ଆଉ କୌଣସି ଅସ୍ତିତ୍ୱ ରହେନି । କିନ୍ତୁ ମଣିଷ ଭିତରେ 'ମୁଁ' ଗୋଟାଏ ବସି ତର୍ଜନ ଗର୍ଜନ କରୁଥିବାରୁ ମନେହୁଏ ଯେ ବିନ୍ଧାଣୀ କୌଣସି ଗୋଟିଏ ଡ୍ରାଇଭର ବସାଇ ଦେଉଛି ଆଉ ସେ ଡ୍ରାଇଭର୍ ହିଁ ମଣିଷକୁ ଏପଟ ସେପଟ ଘୋଷାରି ବୁଲୁଛି ଓ ମଣିଷ କୌଣସି କାରଣରୁ ଭାଙ୍ଗି ରୁଜି ଗଲେ କିମ୍ବା ମରିଗଲେ ଏ ଅଦୃଶ୍ୟ ଡ୍ରାଇଭର ମଣିଷ ଦେହରୁ ବାହାରି ଆସୁଛି । ଡ୍ରାଇଭରଟି ବିନ୍ଧାଣୀଙ୍କ ଦ୍ୱାରା ନିଯୁକ୍ତ ହୋଇଥିବାରୁ ଓ ତାଙ୍କ ଆଦେଶ ମାନୁଥିଲେ ମଧ୍ୟ ସେ ଜୀବାତ୍ମା ରୂପରେ ସ୍ୱତନ୍ତ୍ର ବୋଲି କେହି କେହି କହନ୍ତି । କାହାରି କାହାରି ମତରେ କିନ୍ତୁ ବିନ୍ଧାଣୀ ଓ ଡ୍ରାଇଭର ଏକ ଓ ଅଭିନ୍ନ ।

ବୈଜ୍ଞାନିକ ନିଉଟନ୍ ପ୍ରମାଣ କରିଦେଇଗଲେ ଯେ ବସ୍ତୁ ସ୍ଥିତାବସ୍ଥାରେହିଁ ଥାଏ ଓ କୌଣସି ବାହ୍ୟଶକ୍ତିର ପ୍ରୟୋଗ ନ ହେବା ପର୍ଯ୍ୟନ୍ତ ସେହି ସ୍ଥିତାବସ୍ଥାରେ ହିଁ ରହେ । ଆମ ପୃଥିବୀ ନିଜେ ଗୋଟିଏ ନଟୁ ପରି, ନିଜ ଅକ୍ଷର ଚାରିପଟେ ନିତିଦିନ ଘୂରୁଛି ଓ ସୂର୍ଯ୍ୟଙ୍କ ଚାରିଆଡ଼େ ରୀତିମତ ପରିକ୍ରମାକରି ବୁଲୁଛି । ଏ ପୃଥିବୀକୁ କିଏ ପ୍ରଥମେ ନଟୁ କରି ଘୂରାଇଲା ? କୌଣସି ଡ୍ରାଇଭର ଯଦି ନାହିଁ - ତେବେ ପୃଥିବୀ କକ୍ଷଚ୍ୟୁତ ହୋଇ ଅନ୍ୟ ଗ୍ରହରେ ଧକ୍‌କା ଲାଗିବନି ତ ? ମଣିଷ ପ୍ରମାଣକରି କହେ ଯେ ବିଶ୍ୱ ବ୍ରହ୍ମାଣ୍ଡରେ ଏପରି କୋଟି କୋଟି ପୃଥିବୀ ଘୂରି ବୁଲୁଛନ୍ତି । ଏ ସମସ୍ତେ କାହାର ଆଦେଶ ନ ମାନି ଯଦି ନିଜ ଇଚ୍ଛାରେ ଘୂରି ବୁଲିବେ ତେବେ ତାଙ୍କ ଭିତରେ ସଂଘର୍ଷ ହେବନାହିଁ କି ? ପରମାଣୁ ଭିତରେ ଏତେ ଶକ୍ତି କିଏ ଠୁଳ କଲା ? ଏପରି ପ୍ରଶ୍ନ ଓ ଆହୁରି ଅନେକ ପ୍ରଶ୍ନ ମନଭିତରେ ସ୍ୱତଃ ଜାଗିଉଠେ ।

କିଏ ଏସବୁ କାରସାଦି କରୁଛି ତହିଁର ସିଦ୍ଧାନ୍ତ ସମ୍ବନ୍ଧରେ ସମସ୍ତେ ଏକମତ ନୁହନ୍ତି । ଅନେକ ବିଶ୍ୱାସକରନ୍ତି ଯେ ରୁଷିଆର ବୈଜ୍ଞାନିକମାନେ ଯେପରି କୌଣସି ମଣିଷ ବସି ନ ଥିବା ସ୍ପୁଟନିକ୍ ଯାନକୁ ଚନ୍ଦ୍ରରେ ଓହ୍ଲାଇ ଦେଇ

ପୃଥିବୀରୁ ସେ ଯାନକୁ ନିୟନ୍ତ୍ରଣ କରି ଚନ୍ଦ୍ରର ମାଟି ଖୋଳାଇ ପାରିଛନ୍ତି ସେପରି ଜଣେ ସର୍ବଜ୍ଞ ଓ ସର୍ବଶ୍ରେଷ୍ଠ ବୈଜ୍ଞାନିକ ଦୂରରୁ ସବୁ ଗ୍ରହ ନକ୍ଷତ୍ର, ଜୀବ ନିର୍ଜୀବ ସମସ୍ତଙ୍କୁ ନିୟନ୍ତ୍ରଣ କରୁଛନ୍ତି । ସେମାନଙ୍କ ମତରେ ଏହି ବୈଜ୍ଞାନିକହିଁ ମଣିଷ ତିଆରି କରୁଥିବା ସେଇ ବିନ୍ଧାଣୀ । ସେମାନେ ପୁଣି କହନ୍ତି ଯେ ସେଇ ବିନ୍ଧାଣୀ ନିଜେହିଁ ସବୁ ଆଖି, ସବୁ କାନ, ସବୁ ନାକ, ସବୁ ଶକ୍ତି, ସବୁ ସାମର୍ଥ୍ୟ, ସବୁ ଡ୍ରାଇଭର ଆଉ ସବୁ ସବୁ - ଏକ ଏବଂ ଅନେକ ।

ସବୁଠାରେ ପୂରି ରହିଥିବାରୁ ସେ ଯେତେ ଦୂରରେ ସେତେ ନିକଟରେ ମଧ୍ୟ । ସାକାର ଓ ନିରାକାର ।

ଜଣେ ଯଦି ସବୁ ନିୟନ୍ତ୍ରଣ କରେ ଆଉ ସମସ୍ତଙ୍କର ମାଲିକ ହୁଏ, ତେବେ ସେ ନିଶ୍ଚୟ ସବୁଠାରୁ ବଡ଼ ପୁଞ୍ଜିବାଦୀ, ଏହା ଭାବି ପୁଞ୍ଜିବାଦ ବିରୋଧୀମାନେ ଏପରି କୌଣସି ବିନ୍ଧାଣୀର ଅସ୍ତିତ୍ୱ ସ୍ୱୀକାର କରନ୍ତି ନାହିଁ । ସେମାନଙ୍କ ମତରେ ଏସବୁ ପ୍ରକୃତି ବୋଲି ଗୋଟିଏ ସମାଜବାଦୀ ସମବାୟ ସଂସ୍ଥାଦ୍ୱାରା ପରିଚାଳିତ ।

ତେବେ କମ୍ପାନୀ କିମ୍ବା ସମବାୟ ସଂସ୍ଥାଟିଏ ରହିଲେ ମଧ୍ୟ ତହିଁର ଜଣେ ପରିଚାଳକ ବା ଡାଇରେକ୍ଟର ଦରକାର । ସେ ବିନ୍ଧାଣୀ ତେଣୁ ଜଣେ ଡାଇରେକ୍ଟର ରୂପରେ ପୁଣି ଥରେ ଦେଖା ଦିଅନ୍ତି ।

ଏ ସବୁ ଭାବନା ଭୀଷଣ ଗୋଳମାଳିଆ । ସାଧାରଣ ମଣିଷ ତେଣୁ ଏ ଚିନ୍ତାରୁ ଦୂରେଇ ରହିବାକୁ ଚାହେ ।

ଗୋଟିଏ କଥା କିନ୍ତୁ ନିଶ୍ଚିତ । ବେଟେରୀ, କାରବୁରେଟର୍, ଏ.ସି. ପମ୍ପ ପରି କୌଣସି ଅଂଶ କାମ ନ କଲେ ମଟରଗାଡ଼ି ଯେପରି ବନ୍ଦହୋଇଯାଏ ଆଉ ସେପରି ଗୋଟିଏ ନୂଆ ଜିନିଷ ଆଣି ଖଞ୍ଜିଦେଲେ ପୁଣିଥରେ ଚାଲେ - ମଣିଷ ଭିତରର ଅନେକ କଳକବ୍ଜା ଏପରି ଯେ ସେଥିରୁ ଗୋଟିଏ ଖରାପ ହୋଇଗଲେ ମଧ୍ୟ ମଣିଷ ଚିରଦିନ ପାଇଁ ଅକାମୀ ହୋଇଯାଏ - ଥରେ ବନ୍ଦହୋଇଗଲେ ତାକୁ ଆଉ ଥରେ ଚାଲୁ କରି ହୁଏ ନାହିଁ । ଅନ୍ୟ କେଉଁଠାରୁ ସେପରି ଖଣ୍ଡିଏ କଳକବ୍ଜା ଆଣି ଅକାମୀ କଳକବ୍ଜା ବଦଳରେ ତାକୁ ଖଞ୍ଜି ହୁଏ ନାହିଁ - କେବଳ ସାମାନ୍ୟ ମରାମତି କରିହୁଏ ଯାହା ।

କିନ୍ତୁ ସେ ମରାମତି ମଧ୍ୟ ଅତ୍ୟନ୍ତ କଷ୍ଟପ୍ରଦ । ସେତିକିବେଳେ ଅସହାୟ ମଣିଷ ବିକଳରେ ତା'ର ବାପା ମା'ଙ୍କୁ ଡାକେ - କିଛି ସାହାଯ୍ୟ ସାନ୍ତ୍ୱନା ପାଇବା

ଆଶାରେ ଓ ମାନସିକ ଶାନ୍ତି ପାଇଁ ସାଥୀ ସହୋଦରଙ୍କ ସାନିଧ ଲୋଡ଼େ। କିଂକର୍ତ୍ତବ୍ୟବିମୂଢ଼ ବାପା ମା' ପୁଅ ଝିଅର କଷ୍ଟ ଦେଖି ନିଃସହାୟ ଭାବରେ ସେହି ବିଧାଣୀଙ୍କୁହିଁ ସେତେବେଳେ ମନେ ପକାନ୍ତି - କାକୁତି ମିନତି କରି ତାଙ୍କର ଦୟାଭିକ୍ଷା କରନ୍ତି - ତାଙ୍କର ବନ୍ଦନା ଗାନ କରନ୍ତି।

ମହାଭାରତର ଗୋଟିଏ ସୁନ୍ଦର ଆଖ୍ୟାନ ଏଠାରେ ମନେପଡ଼େ।

ପିତୃହୀନ ତଥା ସହାୟ ଓ ସମ୍ବଳହୀନ ପାଞ୍ଚୋଟି ସାନ ସାନ ପିଲାଙ୍କୁ ନେଇ ମା' କୁନ୍ତୀ ଯେତେବେଳେ ହସ୍ତିନାରେ ଧୃତରାଷ୍ଟ୍ରଙ୍କ ଆଶ୍ରୟ ନେଲେ କୌରବ ଓ ସେମାନଙ୍କ ଖଳ ପ୍ରକୃତିର ବନ୍ଧୁମାନଙ୍କ ଚକ୍ରାନ୍ତରେ ତାଙ୍କ ପୁଅଙ୍କ ଜୀବନ ଯେ ସଂକଟାପନ୍ନ ସେ କଥା ସେ ଶୀଘ୍ର ଜାଣି ପାରିଥିଲେ। ଭଗବାନ୍‌ହିଁ କେବଳ ତାଙ୍କର ସହାୟ ବୋଲି କହି ବିଦୁର ତାଙ୍କୁ ବାସୁଦେବ ଶ୍ରୀକୃଷ୍ଣଙ୍କ ସାହାଯ୍ୟ ଭିକ୍ଷା ପାଇଁ ପରାମର୍ଶ ଦେଲେ। ଶ୍ରୀକୃଷ୍ଣ କୁନ୍ତୀଙ୍କ ଭଣଜା - ବୟସରେ ଯୁଧିଷ୍ଠିରଙ୍କଠାରୁ ସାନ - ତଥାପି ପରମ ଭକ୍ତ ବିଦୁରଙ୍କ କଥାରେ ବିଶ୍ୱାସରଖି କୁନ୍ତୀ ସେହି ଶ୍ରୀକୃଷ୍ଣଙ୍କର ହିଁ ସ୍ନେହ ଭିକ୍ଷାକଲେ। ଶ୍ରୀକୃଷ୍ଣ ହେଲେ ପାଣ୍ଡବଙ୍କ ସଖା।

ମହାଭାରତ ଯୁଦ୍ଧ ଶେଷ ହୋଇସାରିଥିଲା। ଅର୍ଜୁନଙ୍କ ସାରଥୀ ଶ୍ରୀକୃଷ୍ଣ ଏଥର ଦ୍ୱାରକାକୁ ଫେରିଯିବେ - ବିଦାୟ ନେବା ଉଦ୍ଦେଶ୍ୟରେ କୁନ୍ତୀଙ୍କ ପାଖକୁ ଗଲେ। ଜତୁଗୃହ ଦାହ, ପାଣ୍ଡବଙ୍କ ବନବାସ, ଦ୍ରୌପଦୀଙ୍କ ଅପମାନ, ଅଜ୍ଞାତ ବନବାସ, ମହାଭାରତ ଯୁଦ୍ଧ ଓ ଭୀଷ୍ମ, ଦ୍ରୋଣ, କର୍ଣ୍ଣ, ଶଲ୍ୟ, ଜୟଦ୍ରଥଙ୍କ ପଣ - ସବୁ ଗୋଟି ଗୋଟି କରି ମନେ ପକାଇ କୁନ୍ତୀ ଲୁହ ଛଳଛଳ ଆଖିରେ କହିଲେ, ''କୃଷ୍ଣ, ତୁ ଯିବୁ ଯଦି ଯା - ଥରେ ଏମିତି ଯଶୋଦା ପାଖରୁ ଗଲୁ ଯେ ତା' ପାଖକୁ ଆଉ ଫେରିଲୁନି। ଏବେ ଦ୍ୱାରକାକୁ ଯିବୁ - ମୋତେ ବି ପାସୋରି ଦେବୁ। ତୁ ଯିବା ଆଗରୁ ଏତିକି ଖାଲି ପ୍ରତିଶ୍ରୁତି ଦେଇ ଯା ଯେ ମୁଁ ଜନ୍ମାନ୍ତରରେ ଚିରଦିନ ସହାୟହୀନ ଓ ସମ୍ବଳହୀନ ହୋଇ ରହେଁ, ଯାହା ଫଳରେ ମୁଁ ତୋତେ ଯେପରି କେତେବେଳେ ବି ପାସୋରି ନ ଯାଏଁ। ମୋ ପୁଅଙ୍କ ପାଇଁ ତୋ ଅର୍ଜିତ ସାମ୍ରାଜ୍ୟ ଓ ହସ୍ତିନାପୁରର ଐଶ୍ୱର୍ଯ୍ୟ ମୋତେ ତୋର ସାନ୍ନିଧରୁ ବଞ୍ଚିତ ନ କରୁ।''

ସୁଖବେଳେ ଯିଏ ଭଗବାନଙ୍କ ଅସ୍ତିତ୍ୱ ମଧ୍ୟ ସ୍ୱୀକାର କରେନି ଦୁଃଖବେଳେ ସେହି ମଣିଷ ତାଙ୍କୁ ହିଁ ପିତାମାତା ବନ୍ଧୁ ସଖା ବୋଲି ଏକମାତ୍ର ଭରସା ଜ୍ଞାନରେ ତାଙ୍କର ସାନ୍ନିଧ ଖୋଜେ। ଦୁଃଖ ଯାଇ ସୁଖ ଆସିଲେ ପୁଣି ସେହି ଭଗବାନ୍‌ଙ୍କୁ ଭୁଲିଯାଏ।

ମିଠା ଜିନିଷ ଖାଇବାକୁ ନ ଦେଇ ଦେହର ହିତ ନିମନ୍ତେ ପିତା ଜିନିଷ ଖାଇବାକୁ ଦେଲେ ଛୁଆମାନେ ଯେମିତି ମା'କୁ ରାଗନ୍ତି - ସୁଖ ନ ଦେଇ ଦୁଃଖ ଦେଲେ ମଣିଷ ବି ବେଳେ ବେଳେ ତା' ସ୍ରଷ୍ଟାଙ୍କ ଉପରେ ବିରକ୍ତ ହୁଏ - ତାଙ୍କୁ ଅସ୍ୱୀକାର କରେ ।

ପୁଅଝିଅ ତାଙ୍କର ମଉଜ ମଜଲିସ୍‌ରେ ମଉରହି ବାପା ମା'ଙ୍କୁ ଭୁଲି ଯାଉଥିଲେ ହେଁ ଓ ବେଳେ ବେଳେ କଟୁ କଥା କହୁଥିଲେ ମଧ ବାପା ମା' ଯେପରି ସବୁବେଳେ ପୁଅ ଝିଅଙ୍କ ମଙ୍ଗଳ ଚାହାନ୍ତି ଓ ସେମାନଙ୍କ ଦୁଃଖ କଷ୍ଟ ସହି ପାରନ୍ତିନି ମଣିଷ ଭଗବାନଙ୍କୁ ସୃଷ୍ଟି କରିଛି ବୋଲି କହି ତାଚ୍ଛଲ୍ୟ କଲେ ମଧ ମଣିଷର ସ୍ରଷ୍ଟା ମଣିଷର ମଙ୍ଗଳହିଁ ନିଶ୍ଚୟ ଚାହୁଁଥିବେ ।

# ଅମୃତର ସନ୍ତାନ

ମନେହୁଏ ଯେ ପ୍ରତ୍ୟେକ ମଣିଷର ମୁଣ୍ଡରେ ମଝିରେ ମଝିରେ ତେନ୍ତୁଳିଆ ବିଛା କାମୁଡ଼େ, ଆଉ ସେ ଅଦା ବେପାରୀ ହୋଇ ବି ଜାହାଜର ଖବର ନେବାକୁ ବାଧ ହୁଏ - ଦରକାର ନ ଥାଇ କେତେ ବିଷୟରେ ଅଯଥା ମୁଣ୍ଡ ଘୂରାଏ ।

ସମୟ ସମୟରେ ବହି ପଢୁ ପଢୁ କିମ୍ବା କୌଣସି ବିଷୟରେ ଚିନ୍ତା କରୁ କରୁ ହଠାତ୍ କିଏ ଜଣେ ଅତର୍କିତ ଭାବରେ ବିନା ନୋଟିସରେ ମନ ଭିତରେ ଉଙ୍କି ମାରି ପଚାରି ଦିଏ 'କୁକୁଡ଼ା ଆଗ ନା ଅଣ୍ଡା ଆଗ ?'

ଏପରି ଅକାରଣ ଓ ଉଦ୍ଭଟ ଚିନ୍ତାକୁ ମନରୁ ଜୋର ଜବରଦସ୍ତି ଠେଲିଦେଇ ମଣିଷ ପୁଣି ଯେତେବେଳେ ପଢ଼ାରେ କିମ୍ବା ନିଜର ଅନ୍ୟ ଚିନ୍ତାରେ ମନ ଲଗାଇବାକୁ ଚେଷ୍ଟା କରେ ମୁଣ୍ଡ ଭିତରେ କେଉଁ ଗୋଟାଏ ଅଜ୍ଞାତ କୋଣରୁ କୁକୁଡ଼ା ବାହାରି ପଡ଼ି ଚିତ୍କାର କରି ଉଠେ - 'ମୁଁ ନ ଥିଲେ ଅଣ୍ଡା ଆସନ୍ତା କୁଆଡୁ ?' ଅନ୍ୟ ଦିଗରୁ ୱାଲ୍ଟ ଡିସ୍‌ନେଙ୍କ କାର୍ଟୁନ ପରି ଅଣ୍ଡାଟିଏ ଦି'ଫାଳ ହୋଇଯାଏ, ଆଉ ସେ ଭିତରୁ ଚିଆଁଟିଏ ବାହାରି ଜବାବ ଦିଏ 'ଅଣ୍ଡା ଆଗ ନ ଥିଲା ତ ତମେ ଆସିଲ କୁଆଡୁ ?'

ମଣିଷ ଜୋରରେ ଆଖି ମକଚି ମୁଣ୍ଡ ଝୁଣିଦେଇ ପୁଣି ତା'ର ସଂସାରକୁ ଫେରି ଆସେ ଓ ନିଜେ ନିଜକୁ ବୁଝାଇବାକୁ ବ୍ୟର୍ଥ ଚେଷ୍ଟାକରେ ଯେ କୁକୁଡ଼ା ଆଗ ହେଲେ ବା ଅଣ୍ଡା ଆଗ ହେଲେ ତା'ର ଯାଏ ଆସେ କ'ଣ ?

ମଜା କଥା ଏଇ ଯେ ଅନ୍ୟ ଜଣେ ଏପରି ଉଦ୍ଭଟ ଚିନ୍ତା କରୁଥିବା ଶୁଣିଲେ ହସ ମାଡ଼େ, ଆଉ ଏହା ତାହାର ପାଗଳାମି ବୋଲି ମନେହୁଏ । ତଥାପି ପ୍ରତ୍ୟେକ ମଣିଷ ନିଜ ଅଜାଣତରେ ନିଜେ ସେମିତି ପାଗଳାମି କରେ ।

ଯେଉଁମାନେ ଏପରି ଚିନ୍ତାକୁ ଦର୍ଶନ ସାଙ୍ଗରେ ଯୋଡ଼ି ଦେବାକୁ ଚେଷ୍ଟା କରନ୍ତି ସେମାନେ ବୋଧହୁଏ ଭୁଲ କରନ୍ତି । ଚାଉଳ, ଡାଲି, ଲୁଣର ଚିନ୍ତାରେ ଘାଣ୍ଟି ହେଉଥବା ମଣିଷ ପାଇଁ ଏ ରକମର ଚିନ୍ତା ଅସାଂସାରିକ ବୋଲି ମନେ

ହେଉଥିଲେ ହେଁ ସାହିତ୍ୟ, ନୃତ୍ୟ ଗୀତ ଓ ବିଭିନ୍ନ କଳାର ବିକାଶ ଯେପରି ସଭ୍ୟତାର ଗୋଟିଏ ମାପକାଠି, ଏ ରକମର ଚିନ୍ତାଧାରା ବୋଧହୁଏ ଠିକ୍ ସେପରି - ମେରୁ ପ୍ରଦକ୍ଷିଣ ଓ ଏଭାରେଷ୍ଟ ଆରୋହଣ ପରି ଅଜଣାର ସନ୍ଧାନରେ ଦୁଃସାହସିକ ପଦକ୍ଷେପ । ଏପରି ଚିନ୍ତା ମଣିଷର ଜୀବନ ସାଙ୍ଗରେ ନିବିଡ଼ ଭାବରେ ଜଡ଼ିତ ପରି ମନେହୁଏ । ତେଣୁ ଏହାକୁ ଦର୍ଶନର କୌଣସି ଦୃଷ୍ଟି ଭଙ୍ଗୀ ବୋଲି କୁହାଯାଇ ନ ପାରେ - ଏହା ମଣିଷର ଜୀବନ ଚିନ୍ତା, ମନୁଷ୍ୟ ମନର ସ୍ୱାଭାବିକ ପରିପ୍ରକାଶ । ଏହା ବୋଧହୁଏ ମନୁଷ୍ୟ ସୃଷ୍ଟିର ବିଶେଷତ୍ୱ ।

'ମଣିଷ ଉପରକୁ ଉଠୁଛି ନା ଧୀରେ ଧୀରେ ତଳକୁ ଖସୁଛି' ଏପରି ଗୋଟିଏ ଚିନ୍ତା ମଧ୍ୟ ମଣିଷର ଜୀବନ ଚିନ୍ତା ବୋଲି ଧରି ନିଆଯାଇପାରେ ।

ଆମ ସାଙ୍ଗସାଥୀଙ୍କ ମତରେ ଆଜିକାଲିକା ପିଲା ସବୁ ଧୀରେ ଧୀରେ ତଳକୁ ଖସୁଛନ୍ତି । ଆମ ବାପା ଓ ତାଙ୍କ ସାଙ୍ଗ ସାଥିମାନଙ୍କ ଆଖିରେ ଆମେମାନେ ବି ଠିକ୍ ସେମିତି ତଳକୁ ଖସୁଥିଲୁଁ - ଆଉ ଆମ ଅଜା ପଣଅଜା ମଧ୍ୟ ବାପାଙ୍କ ଓ ତାଙ୍କ ସାଙ୍ଗ ସାଥୀମାନଙ୍କ ବିଷୟରେ ଠିକ୍ ସେପରି ମନ୍ତବ୍ୟ ଦେଉଥିଲେ । ଏ ସବୁ ଯଦି ସତ, ତେବେ ମଣିଷ ସମାଜ ପୁରୁଷାନୁକ୍ରମେ ତଳକୁ ଖସୁଛି ?

ରୁଷ ଦେଶୀୟ ଗୋଟିଏ ବିଖ୍ୟାତ ଗପ ମଧ୍ୟ ସେ ରକମର ସୂଚନା ଦିଏ । ସେ ଗପର ସାର କଥାଟିକୁ ନିଜ ଢଙ୍ଗରେ ଏଠାରେ କୁହାଯାଇପାରେ -

ନବାବଙ୍କ ପାଦତଳେ ଅଣ୍ଡା ପରି କୌଣସି ଗୋଟିଏ ଜିନିଷ ଥୋଇଦେଇ କୁର୍ଣ୍ଣିସ୍ କରି କରି ପଛକୁ ଘୁଞ୍ଚି ଯାଉ ଯାଉ ହୋସେନ ମିଆଁ କହିଲା - 'ହଜୁର, ଆମ ଘର ବଗିଚାରେ ମାଟି ଖୋଳୁ ଖୋଳୁ ଏ ଅଦ୍ଭୁତ ଜିନିଷଟି ପାଇଛି । ହଜୁର ଯାହା ଆଦେଶ ଦେବେ ।'

ଦରବାରରେ ଚହଳ ପଡ଼ିଗଲା । କେହି ଜଣେ କହିଲା ସେଇ ଜିନିଷଟି ଗୋଟିଏ ରକମର ଭାରତୀୟ ଗୁଆଫଳ । ଆଉ ଜଣେ କହିଲା ବାଦାମ । ପୁଣି ଜଣେ ସବ୍‌ଜାନତା ହସି ହସି ମୁଣ୍ଡ ହଲାଇ କହିଲା - 'ସେଇଟା ଫଳ ନୁହେଁ, ସମୁଦ୍ରର ଗୋଟିଏ ଜୀବ - ଗେଣ୍ଡା ଓ ଶଙ୍ଖ ପରି - ଶୁଖି ଯାଇଛି ଯାହା ।' ଅନ୍ୟମାନେ ଆଉ କେତେ କ'ଣ କହିଲେ । ଉଜିର୍ କିନ୍ତୁ ପରାମର୍ଶ ଦେଲେ ଯେ ସହରର ସବୁଠାରୁ ବୁଢ଼ା ଗୁଲାମ ମହମ୍ମଦଙ୍କୁ ପଚାରିଲେ କଥାଟି ଠିକ୍ ଜଣା ପଡ଼ିଯିବ ।

ନବାବଙ୍କ ଆଦେଶମତେ ୮୦ ବର୍ଷ ବୟସରେ ଥୁରୁଥୁରୁ ବୁଢ଼ା ଗୁଲାମ ମହମ୍ମଦଙ୍କୁ ଦୁଇ ଜଣ ଟେକାଟେକି କରି ଦରବାରକୁ ଆଣିଲେ। ଝାଅଁାଳିଆ ଦିଶୁଥିବା ଆଖିରେ ଅଣ୍ଡାପରି ଜିନିଷଟିକୁ କିଛି ସମୟ ଅନାଇ ବୁଢ଼ା ମୁଣ୍ଡ ହଲାଇ କହିଲେ ଯେ ସେ ଚିହ୍ନିପାରୁ ନାହାନ୍ତି; ତାଙ୍କ ବାପା ବୋଧହୁଏ ଚିହ୍ନି ଦେବେ।

ଗୁଲାମ ମହମ୍ମଦଙ୍କ ବାପା ଜୀବିତ ଥିବା ଶୁଣି ସମସ୍ତେ ଆଶ୍ଚର୍ଯ୍ୟ ହେଲେ। ଯଥାସମୟରେ ଗୁଲାମଙ୍କ ବାପା ହନିଫ୍‌ମିଆଁଙ୍କୁ ପାଖକୁ ଡକରାଗଲା। ଗୋଟାଏ ମସ୍ତବଡ଼ ଠେଙ୍ଗା ଠୁକୁରୁ ଠୁକୁରୁ କରି କାହାର ଆଶ୍ରୟବିନା ମିଆଁସାହେବ ଦରବାରରେ ପହଞ୍ଚିଗଲେ।

ହନିଫ୍ ଜିନିଷଟିକୁ କିଛି ସମୟ ଏପାଖ ସେପାଖ କରିସାରିଲା ପରେ କହିଲେ ଯେ ପିଲାଦିନେ ସେ ଏମିତି ଜିନିଷ ସବୁ ଦେଖିଥିଲେ, କିନ୍ତୁ ଠିକ୍ ଜିନିଷଟି କ'ଣ ସେ ଏବେ ଧରିପାରୁ ନାହାନ୍ତି। ତେବେ ତାଙ୍କ ବାପାଙ୍କୁ ଡକାଇଲେ ସେ ନିଶ୍ଚେ କହିଦେବେ।

ହନିଫ୍‌ଙ୍କ ବାପା ଜୀବିତ, ଏ କଥା ଶୁଣି ସମସ୍ତେ ହତବାକ୍ ହୋଇଗଲେ। ଡାକରା ପାଇ ହଫିଜ୍‌ମିଆଁ ଯେତେବେଳେ ହସି ହସି ବଡ଼ ବଡ଼ ପାହୁଣ୍ଡ ପକାଇ ଦରବାରକୁ ପଶି ଆସିଲେ ସମସ୍ତେ ନିର୍ବାକ ବିସ୍ମୟରେ ତାଙ୍କ ଆଡ଼କୁ ଅନାଇ ରହିଲେ। କହରା କହରା ନିଶ, ଦାଢ଼ିର ଗୋଟିଏ ଅଧେ ବାଳ ପାଚିଛି। ଆଖି ଦିଓଟି ସତେଯେମିତି ଜଳୁଛି। ମିଆଁସାହେବ ଜିନିଷଟିକୁ ଥରେ ଦେଖି ନେଇ ଆଶ୍ଚର୍ଯ୍ୟ ହୋଇ କହିଲେ, "ଆରେ, ଏ ତ ଆମ କାଳର ଗହମ, କୋଉଠୁ ମିଳିଲା ?"

ପୁଅ, ବାପ ଓ ଅଜାଙ୍କୁ ଦେଖି ସମୟର ଗତି ସଙ୍ଗେ ସଙ୍ଗେ ମଣିଷ କେମିତି ଧୀରେ ଧୀରେ ଦୁର୍ବଳ ଓ ଅସହାୟ ହୋଇ ପଡୁଛି ସମସ୍ତେ ସେଦିନ ବୁଝି ପାରିଥିଲେ।

ପୁରାଣ କଥାରୁ ମଧ୍ୟ ସେପରି ଅନୁମାନ ହୁଏ। କୁହାଯାଏ ଯେ ସୃଷ୍ଟିର ଆରମ୍ଭରେ ଭଗବାନଙ୍କ ନାଭି କମଳରୁ ବ୍ରହ୍ମାଙ୍କ ଉତ୍ପତ୍ତି ହେଲା। ବ୍ରହ୍ମାଙ୍କଠାରୁ ଦକ୍ଷପ୍ରଜାପତି ଓ ପ୍ରଜାପତିଙ୍କଠାରୁ ଋଷିମାନଙ୍କର ଜନ୍ମ। ଆମେ ସମସ୍ତେ ଏହି ଋଷିମାନଙ୍କର ବଂଶଧର ବୋଲି ଶୁଣାଯାଏ। ସମୟର ଗତି ସଙ୍ଗେ ସଙ୍ଗେ ପୁରୁଷାନୁକ୍ରମେ ଆମେ ସବୁ ବୋଧହୁଏ ତଳକୁ ଖସୁଛୁ - ପାଣିଚିଆ ହୋଇ ଯାଉଛୁ - ଗାଇ ପାଖରୁ ଗୋଆଳା ଜରିଆରେ ଘରେ ପହଞ୍ଚିଲା ବେଳକୁ ଦୁଧର

ଅବସ୍ଥା ଯେପରି ହୋଇଥାଏ ସେ ନ୍ୟାୟରେ - ହୋମିଓପ୍ୟାଥି ଔଷଧର ପୋଟେନ୍ସି ନ୍ୟାୟରେ ନୁହେଁ ।

ଅନ୍ୟ କେତେ ପଣ୍ଡିତ କିନ୍ତୁ ଭିନ୍ନ ରକମର ମତ ଦିଅନ୍ତି । ସେମାନଙ୍କ ଭିତରୁ କେତେ କହନ୍ତି ଯେ ଆମ ପିତୃ ପିତାମହ କୁଆଡ଼େ ମାଙ୍କଡ଼ ଥିଲେ । ତାଙ୍କ ପିତୃ ପିତାମହ ପୁଣି କ'ଣ ଥିଲେ ସେ ବିଷୟରେ କିଛି ନ କହିଲେ ହିଁ ଭଲ । ଏମାନଙ୍କ ମତରେ ମଣିଷ ଆଗେଇ ଚାଲିଛି । ତା'ର ମନ ବିଶାଳ ହୋଇ ଉଠିଛି । ବୁଦ୍ଧି ବଳରେ ସେ ନାନା ଗ୍ରହ, ଉପଗ୍ରହ ଉପରେ ପାଦ ଦେବାକୁ ବସିଲାଣି । ସେ ଉପରକୁ ଉଠିବାରେ ଲାଗିଛି, ଆଉ ଧାପେ ବାଟ ଗଲେ ଅତିମାନବ୍ ହୋଇଯିବ - ଦେବତା ପାଲଟିଯିବ ।

ଏ ଦିଓଟି ପରସ୍ପର ବିରୋଧୀ ମାର୍ଗରେ ଆମ ପରି ସାଧାରଣ ମଣିଷ ବାଟବଣା ହୋଇଯାଏ । ଠିକ୍ ବାଟ କେଉଁଠି ଦରାଣ୍ଡିଲା ବେଳକୁ ଆଉ ଗୋଟିଏ ନୂଆ ବାଟ ହାବୁଡ଼ିଯାଏ ।

ହଜାର ହଜାର ବର୍ଷ ପୂର୍ବରେ ପ୍ରାକ୍ ଐତିହାସିକ ଯୁଗରେ ବଶିଷ୍ଠ, ବିଶ୍ୱାମିତ୍ରଙ୍କ ପରି ଋଷିମାନେ ଯେପରି ଦେଖା ଦେଇଥିଲେ ବାଲ୍ମୀକି ଓ ବ୍ୟାସଦେବଙ୍କ ପରି ମହାକବିମାନେ ଯେପରି ଜନ୍ମ ନେଇଥିଲେ; ସେପରି ଐତିହାସିକ ଯୁଗରେ ବୁଦ୍ଧ, ମହାବୀର, ଯୀଶୁଖ୍ରୀଷ୍ଟ ଓ ମହମ୍ମଦଙ୍କ ସାଙ୍ଗରେ ଶଙ୍କରାଚାର୍ଯ୍ୟ, ନାନକ, ଚୈତନ୍ୟ ଓ କାଳିଦାସ ପ୍ରଭୃତିଙ୍କୁ ଦେଖିବାକୁ ମିଳେ । ଆଧୁନିକ ଯୁଗରେ ମଧ୍ୟ ଆମେ ରାମକୃଷ୍ଣ ପରମହଂସ, ବିବେକାନନ୍ଦ, ଗାନ୍ଧିଜୀ, ଅରବିନ୍ଦ ରବୀନ୍ଦ୍ରନାଥ ତଥା ଗୋପବନ୍ଧୁ ପ୍ରଭୃତିଙ୍କୁ ଦେଖିବାକୁ ପାଉ ।

ଏଥିରୁ ମନେହୁଏ ଯେ ଅନନ୍ତକାଳରୁ ହିଁ ମଣିଷ ଭିତରେ ଅତିମାନବ ଓ ମହାମାନବର ସନ୍ଧାନ ମିଳିଆସିଛି । ଆଉ ସେ ଭିତରେ ରାବଣ ଓ କଂସ ପରି ରକ୍ତ ପିପାସୁ ଚେଙ୍ଗିଜ୍ ଖାଁ, ହିଟଲର ଓ ୟାହିୟା ମଧ୍ୟ ଦେଖା ଦେଇଛନ୍ତି । ପ୍ରତ୍ୟେକ ଯୁଗରେ ମଣିଷ ଭିତରେ ଦେବତା ଓ ପିଶାଚର ଆବିର୍ଭାବ ହୋଇଛି । ସେଥିରୁ ହିଁ ଅନୁମାନ ହୁଏ ଯେ ମଣିଷ ସବୁଦିନ ସେହି ମଣିଷ ହୋଇ ରହିଛି - ତା'ର ଉତ୍‌ଥାନ ଯେପରି ହୋଇଛି, ପତନ ମଧ୍ୟ ଠିକ୍ ସେପରି ହୋଇଛି । ତେଣୁ ସେ ଉପରକୁ ଉଠିନାହିଁ କି ତଳକୁ ବି ଖସି ନାହିଁ । କେବଳ କେତେବେଳେ କେଉଁ ରୂପରେ ଦେଖା ଦେଇଛି - କେତେବେଳେ ଦେବତା ତ ଅନ୍ୟ କେତେବେଳେ ପିଶାଚ, ନରରାକ୍ଷସ ।

ପଶୁତ୍ୱ ଓ ଦେବତ୍ୱ ବୋଧହୁଏ ଗୋଟିଏ ମନୁଷ୍ୟର ଦୁଇପାଖ । ଯିଏ ଦସ୍ୟୁରତ୍ନାକର ସିଏ ହିଁ ମହାକବି ବାଲ୍ମୀକି - ଯିଏ ସୁଦର୍ଶନ କୋମଳ ହୃଦୟ ଡ. ଜେକିଲ, ସିଏ ହିଁ ଭୟଙ୍କରରୂପୀ କଠିନ ହୃଦୟ ନରହନ୍ତା ମିଷ୍ଟର ହାଇଡ୍ ।

ମଣିଷ ଯେତେବେଳେ ନିଜ ମନରୁ ପାଶବିକ ଚିନ୍ତାଧାରାସବୁକୁ ଦୂରକରି ଦେବାରେ ସକ୍ଷମ ହୁଏ, ସେ ହୁଏ ଦେବତା, ଆଉ ଯେତେବେଳେ ସେ ଭୁଲିଯାଏ ଯେ ସେ ଅମୃତର ସନ୍ତାନ, ଧୀରେ ଧୀରେ ସେ ତଳକୁ ଖସେ, ଶୟତାନର ରୂପ ନିଏ; ସେତେବେଳେ ପଶୁ ଓ ତା' ଭିତରେ ଆଉ କିଛି ପ୍ରଭେଦ ରହେନି ।

ସମାଜରେ ସାଧାରଣ ନୈତିକତାର ଅଭାବ ଦେଖି ଅନେକ ସମୟରେ ଧାରଣା ହୁଏ ଯେ ଆଜିର ମଣିଷ ବୋଧହୁଏ ପଶୁ ପାଲଟି ଗଲାଣି । ଏ ଧାରଣା କିନ୍ତୁ ସମ୍ପୂର୍ଣ୍ଣ ଭୁଲ ଯେହେତୁ ଆଜି ମଧ୍ୟ ପ୍ରତ୍ୟେକ ମନୁଷ୍ୟ ଭିତରେ ଦେବତ୍ୱ ଛପି ରହିଛି; ଆଉ, ସବୁଦିନ ପରି ଆଜି ବି ଆମରି ମଧ୍ୟରେ ମଣିଷରୂପୀ ଦେବତା ଅଛନ୍ତି । କେବଳ ଆମ ନିଜ ମୂଲ୍ୟବୋଧର ଅଭାବ ଯୋଗୁଁ ଆମେ ନିଜେ ନିଜକୁ ତଥା ସେମାନଙ୍କୁ ବୋଧହୁଏ ଠିକ୍ ଚିହ୍ନି ପାରୁ ନାହୁଁ ।

# ଧର୍ମ ଓ ମତବାଦ

ଇଂରାଜୀରେ ଗୋଟିଏ କଥା ଅଛି ଯେ ସାମାନ୍ୟ ଗୋଟିଏ କୁକୁରକୁ ଫାଶୀ ଦେବାକୁ ଚାହିଁଲେ ମଧ୍ୟ ଆଗ ତା'ର ବଦ୍‌ନାମ କରିବା ଉଚିତ ।

କଥାଟି ଯେ ସମ୍ପୂର୍ଣ୍ଣ ନୀତିହୀନ ଏଥିରେ ସନ୍ଦେହ ନାହିଁ । ମଣିଷର କିନ୍ତୁ ଦୁର୍ଭାଗ୍ୟ ଯେ ଚିରକାଳ ମଣିଷ ସମାଜରେ ଏପରି ଗୋଷ୍ଠୀସବୁ ଦେଖାଦେଇଛନ୍ତି ଯେଉଁମାନେ ସ୍ୱାର୍ଥସିଦ୍ଧି ଉଦ୍ଦେଶ୍ୟରେ ନୀତିବାକ୍ୟର ଢାଙ୍କୁଣୀ ତଳେ ନୀତିହୀନ କାର୍ଯ୍ୟ ସବୁ କରିଯାଆନ୍ତି । ତେଣୁ ଦୁନିଆରେ ଏ ଇଂରାଜୀ ଉକ୍ତିର କ୍ରିୟାତ୍ମକ ପ୍ରୟୋଗ ବହୁଳଭାବରେ ଦେଖିବାକୁ ମିଳେ । ସାମ୍ରାଜ୍ୟବାଦୀମାନେ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ଦଣ୍ଡଦେବା ଆଗରୁ ସେମାନଙ୍କ ବିରୁଦ୍ଧରେ ନାନା ରକମର ଅପରାଧର ତାଲିକା ତିଆରିକରି ଯେପରି ଭାବରେ ଚରିତ୍ର ସଂହାର କରିବାକୁ ଚେଷ୍ଟାକରନ୍ତି ତାହା ଆମ ଦେଶର ପ୍ରାୟ ସମସ୍ତଙ୍କୁ ଜଣା । ଆଜି ମଧ୍ୟ ଏପରି ଭାବରେ କେହି କେହି ନିରୀହ ଲୋକ କ୍ଷମତାନ୍ଧ ବ୍ୟକ୍ତି ବିଶେଷଙ୍କ ଶିକାର ହେଉଥିବା କଥା ଶୁଣାଯାଏ । ଏ ସମ୍ବନ୍ଧରେ ପୁରୁଣା ଅଥଚ ଚିର-ନୂତନ ସେହି ଗଧିଆ ଓ ମେଣ୍ଢା ଛୁଆର ଉପାଖ୍ୟାନଟି ମନେପଡ଼େ ।

ମେଣ୍ଢାଛୁଆକୁ ଦେଖି ଗଧିଆର ପାଟିରୁ ଲାଳ ଗଡ଼ିବାକୁ ଆରମ୍ଭ କରିଥାଏ । ନିରୀହ ମେଣ୍ଢାଛୁଆକୁ ବିନା କାରଣରେ ସିଧାସଳଖ ଆକ୍ରମଣ କରି ଖାଇଯିବା ନୀତିହୀନ ଦେଖାଯିବ ବୋଲି ଭାବି ବୋଧହୁଏ ଗଧିଆ ତା'ର ସଚ୍ଚୋଟ ପଣିଆ ଦେଖାଇବାକୁ ଯାଇ ପ୍ରଥମରେ ଅଭିଯୋଗ କଲା ଯେ ସେ ପିଉଥିବା ପାଣିକୁ ମେଣ୍ଢାଛୁଆ ଗୋଳିଆ କରି ପକାଉଛି । ମେଣ୍ଢାଛୁଆଟି ଉତ୍ତର ଦେଲା - ସେ ତ ପାଣି ସୁଅର ତଳ ଆଡ଼କୁ ରହି ପାଣି ପିଉଛି, ଉପର ମୁଣ୍ଡରେ ଥିବା ଗଧିଆର ପାଣିକୁ ଗୋଳିଆ କରୁଛି କିପରି ?

ଯୁକ୍ତିଯୁକ୍ତ କଥା । ବିଷୟଟି ସେତିକିରେ ସରିଗଲାନି । ଗଧିଆର ନୂତନ ଅଭିଯୋଗ ହେଲା ଯେ, ଏବେ ସିନା ସେ ଗୋଳିଆ କରୁନି, ଗଲାବର୍ଷ ଏତିକି ବେଳକୁ ଏମିତି ସେ କାହିଁକି ଗୋଳିଆ କରିଥିଲା ?

ମେଣ୍ଢା ଛୁଆଟି ଥରିଲା ଗଳାରେ ଜବାବ ଦେଲା, "ମୁଁ ତ ଗଲାବର୍ଷ ଏ ବେଳକୁ ଜନ୍ମହିଁ ହୋଇ ନ ଥିଲି, ଆପଣଙ୍କ ପାଣି ଗୋଳିଆକଲି କିପରି ?"

ଗଧିଆ ଏଥର ମୁହଁ ନେଫଡ଼ାଇ ରୁକ୍ଷ କର୍କଶ ସ୍ୱରରେ କହିଲା - "ତୁ ଯଦି କରି ନ ଥିଲୁ ତେବେ ତୋର ମା' ଗଲାବର୍ଷ ମୋ ପିଇବା ପାଣି ଗୋଳିଆ କରିଥିଲା ।"

ଏହାର ଆଉ କ'ଣ ଜବାବ ଅଛି ?

ତା'ପରେ ଗଧିଆ ମହାଶୟ ଯେଉଁ ରାୟ ଦେଇଥିବେ ତାହା କେବଳ କଳ୍ପନା କରାଯାଇପାରେ ।

ଆଜି ଧର୍ମର ଅବସ୍ଥା ଠିକ୍ ଏହି ମେଣ୍ଢାଛୁଆ ପରି । ଆଧୁନିକ ମଣିଷ ଧର୍ମକୁ ଫାଶୀ ଖୁଣ୍ଟରେ ଝୁଲାଇବା ଆଗରୁ ତା' ବିରୁଦ୍ଧରେ ଗୋଟିକ ପରେ ଗୋଟିଏ କାଳ୍ପନିକ ଅଭିଯୋଗ ଆଣିବାରେ ଲାଗିଛି ।

ଏକଥା ସତ ଯେ ଧର୍ମନାମରେ ଯେତେ ଅତ୍ୟାଚାର ଓ ନରସଂହାର ହୋଇଯାଇଛି ତା'ର ପଟାନ୍ତର ନାହିଁ । ଖ୍ରୀଷ୍ଟିୟାନ ଓ ଇହୁଦୀମାନଙ୍କର ସଂଘର୍ଷ, କାଥୋଲିକ୍ ଓ ପ୍ରୋଟେଷ୍ଟାଣ୍ଟ ବିବାଦ; ଇସଲାମ ଓ ଖ୍ରୀଷ୍ଟଧର୍ମାବଲମ୍ବୀଙ୍କ ଧର୍ମଯୁଦ୍ଧ; ଧର୍ମନାମରେ ଇସଲାମର ଦିଗ୍‌ବିଜୟ; ପାକିସ୍ତାନ ସୃଷ୍ଟିବେଳର ହିନ୍ଦୁ-ମୁସଲିମ ଦଙ୍ଗାହଙ୍ଗାମାର ଲୋମହର୍ଷଣକାରୀ କାହାଣୀ - ମାନବ ଇତିହାସର ଗୋଟିଏ ଗୋଟିଏ କଳଙ୍କମୟ ଅଧ୍ୟାୟ । ଆଜିର ପ୍ରଗତିବାଦୀ ଯୁବକ ତଥା ପ୍ରଗତିଶୀଳ ସମାଜ ତେଣୁ ଧର୍ମକୁ ଖଳନାୟକ ସ୍ଥାନରେ ତାକୁ ଦେଶାନ୍ତର, ଦ୍ୱୀପାନ୍ତରଠାରୁ ଆରମ୍ଭକରି ଆଜୀବନ କାରାଦଣ୍ଡ ଓ ଏପରିକି ମୃତ୍ୟୁଦଣ୍ଡ ପର୍ଯ୍ୟନ୍ତ ଦେବାକୁ ଚାହେଁ ।

ଏପରି ବିଚାର କେବଳ ଯେ ଏକ ତରଫା ତାହା ନୁହେଁ, ଏଥିରେ ଜଣକର ଦୋଷ ଅନ୍ୟଜଣକର ଉପରେ ଜୋର ଜବରଦସ୍ତି ଲଦିଦେଇ ତାକୁ ଦଣ୍ଡଦେବା ପାଇଁ ଅପଚେଷ୍ଟା ବୋଲି ହିଁ ମନେହୁଏ ।

ମଣିଷର ଧର୍ମ ମୁଖ୍ୟତଃ ଏକ ଓ ଅଭିନ୍ନ । ଯାହା ବିଭିନ୍ନ ସେ ମତବାଦ, ଧର୍ମ ନୁହେଁ ।

ଧାରଣ କରିବା ଅର୍ଥରୁ ଧର୍ମ ଶବ୍ଦର ଉତ୍ପତ୍ତି ବୋଲି ସମସ୍ତେ କହନ୍ତି । ବ୍ୟାପକ ଅର୍ଥରେ କହିବାକୁଗଲେ ଯାହା ଧରିରଖେ, ସମ୍ଭାଳିରଖେ ବା ବଞ୍ଚାଇରଖେ, ଯାହା ପାଳନକରେ ବା ପୁଷ୍ଟିକରେ ଓ ଯାହା ରକ୍ଷାକରେ ତାହାହିଁ

ଧର୍ମ । ଏହି ଅର୍ଥରେ ଇଂରାଜୀରେ ଧର୍ମ ଶବ୍ଦର ଠିକ୍ ପ୍ରତିଶବ୍ଦ ନାହିଁ । 'ରିଲିଜନ୍' ଶବ୍ଦ ଧର୍ମର ପ୍ରତିଶବ୍ଦ ହୋଇପାରେନା । ଧର୍ମର ସିଧାସଳଖ ସଂଜ୍ଞାଦେବା ମଧ୍ଯ କଠିନ ।

ଆମ ପୂର୍ବପୁରୁଷମାନେ ତେଣୁ ଧର୍ମକୁ ପରୋକ୍ଷ ଭାବରେ ବୁଝାଇବାକୁ ଚେଷ୍ଟା କରିଛନ୍ତି । ସେମାନଙ୍କ ମତରେ ଆଲୋକ ଦେବା ସୂର୍ଯ୍ୟର ଧର୍ମ । ସେପରି ଶୀତଳତା ଚନ୍ଦ୍ରର, ଆର୍ଦ୍ରତା ଜଳର ଓ ଉତ୍ତାପଦେବା ଅଗ୍ନିର ଧର୍ମ । ଏହି ଅର୍ଥରେ ଜୀବଜଗତକୁ ପ୍ରାଣର ସ୍ପନ୍ଦନ ଦେଇ ବଞ୍ଚାଇ ରଖିବା ପବନର ଯେପରି ଧର୍ମ, ପ୍ରାଣୀ ଓ ଉଦ୍ଭିଦ ଜଗତକୁ ଖାଦ୍ୟ ଯୋଗାଇ ବଞ୍ଚାଇ ରଖିବା ସେପରି ଶସ୍ୟ ଶ୍ୟାମଳା ପୃଥିବୀର ଧର୍ମ । କଥାରେ କହନ୍ତି, ଧର୍ମ ବଳରେ ସମୁଦ୍ର କୂଳଲଂଘନ କରେନି । ଧର୍ମବଳରେ ଦିନଯାଇ ରାତିଆସେ ଓ ରାତି ପରେ ପୁଣି ଦିନର ଆବିର୍ଭାବ ହୁଏ । ଗ୍ରହନକ୍ଷତ୍ର ନିଜନିଜ ଅକ୍ଷ, କକ୍ଷରେ ଘୂରି ବୁଲନ୍ତି - ସୃଷ୍ଟି ଧର୍ମକୁ ମାନି ଚଳେ । ତେଣୁ ଧର୍ମକୁ ସୃଷ୍ଟି ତଥା ପ୍ରକୃତିର ସାରସ୍ଵତ ନିୟମ ବୋଲି ଅର୍ଥ କରାଯାଇପାରେ । ଏହି ଅର୍ଥରେ ଧର୍ମର ଚ୍ୟୁତି ତଥା ଅଧର୍ମର ଆଗମନରେ ସୃଷ୍ଟିର ବିନାଶ ହେବା ସ୍ଵାଭାବିକ - ଗ୍ରହନକ୍ଷତ୍ର ଯଦି କୌଣସି ଧର୍ମ ବା ନିୟମ ନ ମାନି ନିଜ ମନ ମୁତାବକ ଆକାଶରେ ଘୂରିବୁଲନ୍ତି ତେବେ ସେମାନଙ୍କ ସଂଘର୍ଷଫଳରେ ଯାହା ହେବା କଥା !

ଏଥିପାଇଁ ସମ୍ଭବତଃ କୁହାଯାଏ ଯେ ଧର୍ମର ଗ୍ଲାନିହୋଇ ଅଧର୍ମର ଅଭ୍ୟୁତ୍‌ଥାନ ହେଲେ ସୃଷ୍ଟିକର୍ତ୍ତା ପୁଣିଥରେ ସୃଷ୍ଟିର ରଙ୍ଗମଞ୍ଚକୁ ଉଠିଆସନ୍ତି ।

ଯାହା ବଞ୍ଚାଇ ରଖେ ତାହା ଯଦି ଧର୍ମ, ତେବେ ସେହି ଧର୍ମ ସଂଘର୍ଷ ଓ ବିନାଶର କାରଣ ହୋଇପାରେନା ।

ମାନବର ଧର୍ମ କ'ଣ ସେ ସମ୍ବନ୍ଧରେ ସିଧାସଳଖ ଉତ୍ତର ଦେବା ବୋଧହୁଏ ସହଜ ନୁହେଁ । ତେବେ ଯେଉଁସବୁ ମୌଳିକଗୁଣ ମାନବ ସମାଜର ଅଭିବୃଦ୍ଧି ଓ ବିକାଶର ସହାୟକ ସେହି ଗୁଣସମୂହର ସମଷ୍ଟିକୁ ଧର୍ମ ନାମରେ ନାମିତ କରାଯାଇପାରେ । ତେଣୁ ସାଧାରଣଭାବରେ କହିବାକୁଗଲେ ମାନବିକତା ହିଁ ମାନବର ଧର୍ମ । ମାନବିକତାର ଅର୍ଥକୁ କେତେ ଶବ୍ଦମାଳାର ପରିସରମଧ୍ଯରେ ସୀମିତ ତଥା ସମ୍ପୂର୍ଣ୍ଣ ପର୍ଯ୍ୟବସିତ କରାଯାଇ ନପାରିଲେ ମଧ୍ଯ ଏହା ଦୟା, କ୍ଷମା, ସ୍ନେହ ପରି ହୃଦୟର କୋମଳତାକୁ ବୁଝାଏ, ନିଷ୍ଠୁରତାକୁ ନୁହେଁ; ଧୈର୍ଯ୍ୟ, ସାହସ, ନିର୍ଭୀକତା ପ୍ରଭୃତି ମନର ବଳକୁ ବୁଝାଏ, ପଳାୟନବାଦୀ ଦୁର୍ବଳତାକୁ

ନୁହେଁ; ସୃଷ୍ଟିର ସୌନ୍ଦର୍ଯ୍ୟ ଉନ୍ମୋଚନକାରୀ ବିକାଶମୁଖୀ ବୁଦ୍ଧିକୁ ବୁଝାଏ, ବିନାଶକାରୀ ଚିନ୍ତାଧାରାକୁ ନୁହେଁ; ପରୋପକାର ପାଇଁ ଶରୀରର ସ୍ଥିତିକୁ ବୁଝାଏ, ସ୍ୱାର୍ଥ ସାଧନ ପାଇଁ ଶରୀରର ପୁଷ୍ଟିସାଧନକୁ ନୁହେଁ ।

ଆମ ପୂର୍ବପୁରୁଷମାନେ ଧର୍ମର ଏହି ଅର୍ଥରେ ମନୁଷ୍ୟ ସମାଜର ପ୍ରତ୍ୟେକଙ୍କ ବ୍ୟକ୍ତିଗତ ଧର୍ମ ସମ୍ବନ୍ଧରେ ଇଙ୍ଗିତ ଦେଇଯାଇଛନ୍ତି । ତାଙ୍କରି ମତରେ ଶିଶୁ ସନ୍ତାନର ଲାଳନପାଳନ ପିତାମାତାଙ୍କର ଯେପରି ଧର୍ମ, ବୃଦ୍ଧ ପିତାମାତାଙ୍କ ସେବା ତଥା ସ୍ତ୍ରୀ ଓ ସନ୍ତାନ ସନ୍ତତିଙ୍କ ରକ୍ଷଣାବେକ୍ଷଣ ପ୍ରତ୍ୟେକ ଗୃହସ୍ଥର ଧର୍ମ ।

ଏପରି ଭାବରେ କୁଳଧର୍ମ ଓ ଜାତିଧର୍ମର ସୂଚନା ମଧ୍ୟ ଦେଖିବାକୁ ମିଳେ ।

ଅନ୍ୟାୟ ବିରୁଦ୍ଧରେ, ଧର୍ମରକ୍ଷା ପାଇଁ ଓ ଦେଶରକ୍ଷା ନିମନ୍ତେ ଯୁଦ୍ଧକରିବା ଯେପରି କ୍ଷତ୍ରିୟର ଧର୍ମ, ଜ୍ଞାନଆହରଣ ଓ ଶିକ୍ଷାଦାନ ସେପରି ବ୍ରାହ୍ମଣର ଧର୍ମ ବୋଲି କୁହାଯାଏ । ଏପରି ବର୍ଣ୍ଣବିଭାଗ ବୃତ୍ତି ଓ ସ୍ୱଭାବଗତ ଥିଲାପରି ମନେହୁଏ ଜନ୍ମଗତ ନୁହେଁ, ଯେହେତୁ ଏକଥା ସ୍ପଷ୍ଟ ଭାବରେ କୁହାହୋଇଛି ଯେ ସ୍ୱଧର୍ମରେ ଜୀବିକା ଅର୍ଜନ କଷ୍ଟସାଧ୍ୟ ହେଉଥିଲେହେଁ ଓ ଅନ୍ୟର ଧର୍ମ ଅପେକ୍ଷାକୃତ ଲାଭଦାୟକ ବୋଲି ମନେ ହେଲେହେଁ ସ୍ୱଧର୍ମରେ ମୃତ୍ୟୁ ପଛକେ ଶ୍ରେୟସ୍କର, ପରଧର୍ମ ଭୟାବହ । ଏଥିରୁ ମନେହୁଏ ଯେ ଆଜି ଯେପରି ଜଣେ ପ୍ରକୃତ ଗବେଷକ, ବୈଜ୍ଞାନିକ କିମ୍ବା ଶିକ୍ଷକ ନିଜ ପ୍ରକୃତି ତଥା ସ୍ୱଭାବଗତ ଗୁଣ ବା ଏପ୍‌ଟିଚ୍ୟୁଡ୍ ଯୋଗୁଁ ଅର୍ଥନୈତିକ ଦୁରବସ୍ଥାରେ ପଡ଼ି ମଧ୍ୟ ଲାଭଦାୟକ ବାଣିଜ୍ୟ ଆଡ଼କୁ ଆକୃଷ୍ଟ ହୁଏ ନାହିଁ, ଆମ ପରମ୍ପରା ଠିକ୍ ସେପରି ଶିକ୍ଷାଦେଇ କହି ଯାଇଛି ଯେ ବ୍ରାହ୍ମଣ ସ୍ୱଭାବର ବ୍ୟକ୍ତି କ୍ଷତ୍ରିୟ ବୃତ୍ତି କିମ୍ବା ବୈଶ୍ୟର ବୃତ୍ତି ଆଚରଣ କରିବା ଅବିଧେୟ ।

ଏଥିରୁ ମନେହୁଏ ଯେ ଧର୍ମ ଓ କର୍ତ୍ତବ୍ୟ ପ୍ରାୟ ଏକାର୍ଥ ବ୍ୟଞ୍ଜକ । ମାନବର ଧର୍ମ ତେଣୁ ଏକମୁଖୀ । ଏଥିରେ ବହୁମୁଖୀ ବିଭିନ୍ନତାଜନିତ ସଂଘର୍ଷର ଅବକାଶ ନାହିଁ ।

ସୃଷ୍ଟିର ନିୟମ ବୁଝିବା ଯେପରି କଠିନ, ଧର୍ମର ଅର୍ଥ ବୁଝିବା ସେପରି କଠିନ । ସେଥିପାଇଁ ବୋଧହୁଏ ଧର୍ମର ଅର୍ଥ କରିବାକୁ ଯାଇ ନାନା ମତବାଦ ଜନ୍ମ ନେଇଛି । ପ୍ରତ୍ୟେକ ମତବାଦ କହେ ଯେ ତା'ର ଅର୍ଥ ହିଁ ଠିକ୍ ।

ହିନ୍ଦୁ, ବୌଦ୍ଧ, ଖ୍ରୀଷ୍ଟିୟାନ, ମୁସଲମାନ ଓ ଅନ୍ୟସବୁ ମତବାଦ ତଥା ସମ୍ପ୍ରଦାୟର ମୂଳ ଉତ୍ସ ସମାନ - ଏକ ଓ ଅଭିନ୍ନ । ଆବରଣରେ କେବଳ

ବିଭିନ୍ନତା ଦେଖାଯାଏ । କର୍ପୂର ଗୋଟିଏ । ତାକୁ କିଏ ସୂତା କନାରେ ବୁଜୁଳା ବାନ୍ଧିଛି ତ ଆଉ କିଏ ରେଶମ କିମ୍ବା ପାଟ କନାରେ । ଏ ଭିତରେ କର୍ପୂର ଉଡ଼ିଯାଇ ସାରିଲାଣି, କିନ୍ତୁ ପ୍ରତ୍ୟେକ ମତବାଦ କର୍ପୂରହୀନ ବୁଜୁଳା ପାଇଁ ହିଁ ଟଣାଓଟରା ଲଗାଇଛନ୍ତି - ଦୁର୍ଗାପୂଜା ବେଳେ ପୂଜା କୁଆଡ଼େ ଯାଏ, କେଉଁ ସାହିର ମୂର୍ତ୍ତି ବେଶି ସୁନ୍ଦର ସେଥିପାଇଁ ଯେପରି ଗଣ୍ଡଗୋଳର ସୃଷ୍ଟି ହୁଏ । ମାନବ ସମାଜର ଦୁର୍ଭାଗ୍ୟ ଯେ ସାଧାରଣ ମଣିଷ କୌଣସି ବିଷୟର ସାର ସମ୍ବନ୍ଧରେ ଚିନ୍ତା ନକରି ଏପରି ଖୋଳପା ପାଇଁ ହିଁ ଲଢ଼ି ବସେ । ମତବାଦ ଭିତରେ ଧର୍ମର ଅସ୍ତିତ୍ୱ ଅଛି ସତ, କିନ୍ତୁ ମତବାଦ ଧର୍ମ ନୁହେଁ ।

# ଢେଙ୍କି ଓ ପ୍ରକୃତି

ଯେତେ ମଜା ଘଷା, ସାଧ ସାଧନା କଲେ ମଧ୍ଧ ଅଙ୍ଗାରର ମଳିନତା ପରି ପ୍ରାଣୀମାନଙ୍କର ଜନ୍ମଗତ ପ୍ରକୃତି ବଦଳେନି ବୋଲି କେହିକେହି କହନ୍ତି । ଏ କଥାର ପ୍ରମାଣ ଦେବାକୁଯାଇ ମଣିଷ ଅନ୍ୟମାନଙ୍କ ସମ୍ବନ୍ଧରେ ବେଳେ ବେଳେ ଏକ ତରଫିଆ ବିଚାର କରୁଥିବା ପରି ମନେହୁଏ ।

କେଉଁ ମହାଶୟ କେବେ ସ୍ୱର୍ଗକୁ ଯାଇ ସେଠାରେ ଚାଲିଥିବା ଧାନକୁଟା ପ୍ରଣାଳୀ ଦେଖି ଆସିଥିଲେ କେଜାଣି, ମନ୍ତବ୍ୟ ଦେଇଦେଲେ ଯେ ଢେଙ୍କି ସ୍ୱର୍ଗକୁ ଗଲେ ବି ଧାନ କୁଟେ । ସ୍ୱର୍ଗରେ ତ ସମସ୍ତେ କୁଆଡ଼େ ଖାଲି ଅମୃତ ପିଇ ରହନ୍ତି - ତେଣୁ ସେଠାରେ ଧାନର କାରବାର ଆସିବ କେଉଁଠୁ ଯେ ସେମାନେ ଧାନ କୁଟିବେ କି ଢେଙ୍କି ରଖିବେ ! ପୁଣି ସେଇଠି ବି ଯଦି ଧାନ କୁଟିବାକୁ ପଡ଼େ ତେବେ ଲୋକେ ସ୍ୱର୍ଗକୁ ଯିବାକୁ ଚାହିଁବେ ବା କାହିଁକି ?

ସବୁ ଢେଙ୍କି ଯେ ସଦାସର୍ବଦା ଧାନକୁଟନ୍ତି ସେକଥା ମଧ୍ଧ ନୁହେଁ । ନାରଦ କୁଆଡ଼େ ଗୋଟାଏ ଢେଙ୍କି ଉପରେ ଚଢ଼ି ଦେଶବିଦେଶ ଗସ୍ତକରନ୍ତି । ଘରର ଢେଙ୍କି ବେଳେ ବେଳେ କୁମ୍ଭୀର ହେଉଥିବା କଥା ମଧ୍ଧ ମଝିମଝିରେ ଶୁଣାଯାଏ ।

ଖାଲି ଯେ ଗୋଟିଏ ନିର୍ଜୀବ ବସ୍ତୁ ସମ୍ବନ୍ଧରେ ମଣିଷ ଏପରି ଟିପ୍ପଣୀ ଦିଏ ତା’ ନୁହେଁ । ପ୍ରତିବାଦ କରିପାରୁ ନ ଥିବା ପ୍ରାଣୀମାନେ ମଧ୍ଧ ଏପରି କଟୁ ସମାଲୋଚନାର ଶରବ୍ୟ ହୁଅନ୍ତି ।

କିଏ କେବେ କେଉଁଠି ଓ କେଉଁ ଜାତିଆ କୁକୁରକୁ ରାଜଗାଦିରେ ବସାଇ ତା’ର କ୍ରିୟାବିଧି ନିରୀକ୍ଷଣ କରିଥିଲା କେଜାଣି, କହିଦେଲା ଯେ ‘କୁକୁରକୁ କର ଯଦି ରାଜ୍ୟ ଅଧୀଶ୍ୱର, ଚୋବାଇବ ଉପାନହ ସେହୁ ଆପଣାର ।’

କୁକୁର ପରି ବାଘ, ବିରାଡ଼ି, ସାପ, ବଗ ପ୍ରଭୃତି ଜନ୍ତୁ ଏପରି ବ୍ୟଙ୍ଗୋକ୍ତିରୁ ରକ୍ଷା ପାଇ ନାହାନ୍ତି ।

ଥରେ ଗୋଟିଏ ସାପ ବଣଭିତରେ ନିଆଁଘେରରେ ପଡ଼ିଯାଇଥିଲା । ନଳରାଜାଙ୍କୁ ଦେଖି ସେ ପ୍ରାଣବିକଳରେ ତାକୁ ବଞ୍ଚାଇବାକୁ ଅନୁରୋଧ କଲା ।

ନଳରାଜା ମଧ୍ୟ ଦୟାରେ ତରଳିଯାଇ ନିଜ ଜୀବନକୁ ବିପନ୍ନକରି ନିଆଁଭିତରେ ପଶି ସାପଟିକୁ ଉଦ୍ଧାର କରିଆଣିଲେ । ବାହାରକୁ ଆସିଲାକ୍ଷଣି ସାପ ନଳରାଜାଙ୍କୁ ଦଂଶନ କଲା ଓ କୈଫିୟତ ଦେଲା ଯେ ସେ ତ ସର୍ପ ଜନ୍ମ ନେଇଛି, ନିଜ ଖଳ ପ୍ରକୃତି ଛାଡ଼ିବ କିପରି ? ... କାଳିନ୍ଦୀ ହ୍ରଦର କାଳୀୟ ମଧ୍ୟ 'ତୁ ମୋତେ କଲୁ ସର୍ପ ଜାତ, ସ୍ୱଭାବ ଛାଡ଼ିବି କେମନ୍ତ ?' ବୋଲି କୃଷ୍ଣଙ୍କୁ କହିଥିଲା ବୋଲି ଅତିବଡ଼ୀ ଜଗନ୍ନାଥ ଦାଶ ଭାଗବତରେ ଗାଇ ଯାଇଛନ୍ତି ।

ପ୍ରକୃତି ବଦଳିଛି ବୋଲି କହିଲେ ମଧ୍ୟ ସେ କଥା ବିଶ୍ୱାସ ନକରିବାକୁ କେହି କେହି ଉପଦେଶ ଦିଅନ୍ତି । ଏ ସମ୍ବନ୍ଧରେ ଅନେକ ସୁନ୍ଦର କାହାଣୀ ରହିଛି । ସେଥିରୁ କେତୋଟି ଏଠାରେ କୁହାଯାଇପାରେ ।

ପାଣିଭିତରୁ ସୁନାକଙ୍କଣକୁ ଦେଖାଇ ବୁଢ଼ା ବାଘଟି ବାଟୋଇଙ୍କୁ ସମ୍ବୋଧନ କରି କହିଲା, 'ହେ ସାଧୁ ବ୍ରାହ୍ମଣ, ଆପଣଙ୍କ ବ୍ରାହ୍ମଣୋଚିତ ଦୟାଦେଖାଇ ମୋ ହାତରୁ ଏ ସ୍ୱର୍ଣ୍ଣଦାନ ଗ୍ରହଣକରି ମୋତେ ମୋ ଇହଜନ୍ମକୃତ ପାପପଙ୍କରୁ ଉଦ୍ଧାର କରନ୍ତୁ ।' ବ୍ରାହ୍ମଣ ମହାଶୟ ବାଘର ପ୍ରକୃତିକଥା ଜାଣି ଦୋ ଦୋ ପାଞ୍ଚ ହେଲେ । ବାଘ ଏଥର କହିଲା - 'ବାଘ ଯେ ମଣିଷ ଖାଏ ଏ ଲୋକ ଅପବାଦ ନିବାରଣ କରିବା ସହଜ ନୁହେଁ । ଏତେ ପ୍ରାଣୀହତ୍ୟା କରି ମୁଁ ଜୀବନରେ ଯାହାସବୁ ପାପ ଅର୍ଜନ କରିଛି ସେ ସବୁ କଥା ଭାବି ଏ ବୁଢ଼ା କାଳରେ ନଖ ଓ ଦନ୍ତହୀନ ହୋଇ ମୁଁ ଯେ କି ଅନୁତାପ କରୁଛି ସେ କଥା କିପରି ବା ବୁଝାଇବି ? କେହି କିନ୍ତୁ ମୋତେ ବିଶ୍ୱାସ କରି ମୋ ପାଖରୁ ଦାନଗ୍ରହଣ କରିବାକୁ ରାଜି ହେଉନାହାନ୍ତି । ଆପଣଙ୍କ ପରି ଜ୍ଞାନୀ କ'ଣ ଏ ପାପୀକୁ ତା'ର ପାପର ପ୍ରାୟଶ୍ଚିତ୍ତ କରିବା ପାଇଁ ସୁଯୋଗ ଦେବେନାହିଁ ?' - ବାଘ ତା'ପରେ ଥୋପାଏ ଲୁହ ବି ଗଡ଼ାଇ ଦେଲା । ବ୍ରାହ୍ମଣ ମହାଶୟ ଦାନ ସ୍ୱରୂପ ସୁବର୍ଣ୍ଣ କଙ୍କଣ ଗ୍ରହଣ କରିବାକୁ ପାଣି ଭିତରକୁ ପଶିଯାଇ ବାଘ ଆଡ଼ିକି ହାତଟି ବଢ଼ାଇ ଦେଲେ । ତା'ପରେ କ'ଣ ହେଲା ସେ କଥା ସମସ୍ତେ ଜାଣନ୍ତି ।

ଆଉ ସେ ବିରାଡ଼ି !

ରୁଦ୍ରାକ୍ଷ ମାଳାଟିଏ ବେକରେ ଗଳାଇ ହାତରେ କମଣ୍ଡଳୁଟିଏ ଧରି ଅଶ୍ୱତ୍ଥ ଗଛରେ ଚଢ଼େଇ ଛୁଆମାନଙ୍କ ଜଗୁଆଳି ଥିବା ବୃଦ୍ଧ ଜରଦ୍‌ଗବ ପାଖରେ ପହଞ୍ଚି କହିଲା ଯେ ସେ ସିଧାସଳଖ ବୃନ୍ଦାବନରୁ ବୈଷ୍ଣବ ଧର୍ମ ଗ୍ରହଣକରି ଜଗନ୍ନାଥ ପୁରୀଧାମକୁ ସେହି ବାଟ ଦେଇ ଯାଉଛି । ଧର୍ମପ୍ରାଣ ବୃଦ୍ଧ ଜରଦ୍‌ଗବ ବୈଷ୍ଣବ

ବିରାଡ଼ିକୁ ସେଠାରେ କିଛିଦିନ ବିଶ୍ରାମ ନେବାକୁ ଅନୁରୋଧ କଲେ । ବିରାଡ଼ି ସେଠାରେ ରହି ମାଳାଗଡ଼ାଇବାକୁ ଲାଗିଲା ଓ ଯଥା ସମୟରେ ଜରଦ୍‌ଗବକୁ ଗଛର କୋରଡ଼ରେ ଆଶ୍ରୟ ନେବାକୁ କହି ନିଜେ ଚଢ଼େଇ ଛୁଆମାନେ କିପରି ଅଛନ୍ତି ଦେଖିବାକୁ ଲାଗିଲା । ଛୁଆ ସଂଖ୍ୟା କେମିତି ଧୀରେ ଧୀରେ କମିଲା ଓ ଶେଷରେ ଚଢ଼େଇ ସବୁ ବୃଦ୍ଧ ଜରଦ୍‌ଗବ ଛୁଆଙ୍କୁ ଖାଇ ଦେଉଛି ବୋଲି ଭାବି ତାକୁ ମାରି ପକାଇଲେ ସେ କଥା ସମସ୍ତଙ୍କୁ ଜଣା ।

ବଗର ମଧ୍ୟ ଥରେ ସେପରି ବିବେକ ଉଦୟ ହୋଇଥିଲା ।

ପୋଖରୀ ତୁଠରେ ଠିଆହୋଇ ସେ ଅନବରତ କାନ୍ଦିବାକୁ ଲାଗିଲା । ବହୁତ ପାଣି ଭିତରେ ଥାଇ ମାଛସବୁ ଏ ଦୃଶ୍ୟ ଦେଖି ଆଶ୍ଚର୍ଯ୍ୟହୋଇ ତାକୁ କାରଣ ପଚାରିଲେ, ଆଉ ଭବିଷ୍ୟତଦ୍ରଷ୍ଟା ବଗ କହିଲା ଯେ, ସେହି ବର୍ଷ ଭୟଙ୍କର ଖରାହେବ - ସବୁ ନଈ ନାଳ ପୋଖରୀ ଶୁଖିଯିବ ଆଉ ଆହା ! ସବୁ ମାଛ କଙ୍କଡ଼ା ଛଟପଟ ହୋଇ ମରିଯିବେ । ମାଛମାନଙ୍କର ଏ ଦୁଃଖ କଷ୍ଟ ତାକୁ କିଛିଦିନ ପରେ ଦେଖିବାକୁ ପଡ଼ିବ । ମାଛମାନେ ପ୍ରତିକାରର ଉପାୟ ପଚାରିଲେ । ବଗ କହିଲା - ଦୂରରେ, ଅନେକ ଅନେକ ଦୂରରେ ଗୋଟିଏ ବିଶାଳ ହ୍ରଦ ଅଛି ଯାହା କି ସହସ୍ର ବର୍ଷରେ ମଧ୍ୟ ଶୁଖେ ନାହିଁ । ତେବେ ସେଠାକୁ ଏ ମାଛମାନେ ଯିବେ କିପରି ? ବଗ ଏଠାରେ ଆଉ ଦୁଇ ଥୋପା ଲୁହ ଗଡ଼ାଇ ଦେଲା । ବଗହିଁ ସେମାନଙ୍କ ଏକମାତ୍ର ସାହା ଭରସା ଭାବି ମାଛମାନେ ସେମାନଙ୍କୁ ଏ ପୋଖରୀରୁ ସେ ହ୍ରଦକୁ କୌଣସି ମତେ ନେଇଯିବା ପାଇଁ ଅନୁରୋଧ କଲେ । ମାଛମାନଙ୍କ ମଙ୍ଗଳ ନିମନ୍ତେ ଏପରି ଦୁରୂହ କର୍ମ ସମ୍ପାଦନ କରିବାକୁ ବଗ ଶେଷରେ ରାଜିହେଲା । ଦିନକୁ କେବଳ ଗୋଟିଏ ବଡ଼ମାଛ କିମ୍ବା ଛୋଟ ଦି' ତିନିଟାକୁ ଥଣ୍ଟରେ ଧରି ସେ କ୍ରମାଗତ ସେହି ଦୂର ହ୍ରଦ ଆଡ଼କୁ ଉଡ଼ିଯାଇ ଗୋଟିଏ ଅଶ୍ୱତ୍ଥ ଗଛର ତଳେ ସେମାନଙ୍କର କଣ୍ଟା ସବୁ ଜମା କରିବାକୁ ଲାଗିଲା । ଶେଷରେ କଙ୍କଡ଼ା କିପରି ତା'ର ଜୀବନ ନେଲା ସେ କଥା ମଧ୍ୟ ସମସ୍ତେ ଜାଣନ୍ତି ।

ଏ ସବୁ କାହାଣୀ ପ୍ରମାଣ କରିବାକୁ ଚାହେଁ ଯେ କାହାରି ପ୍ରକୃତି ବଦଳେନି । ଏ ମତ କିନ୍ତୁ ସମ୍ପୂର୍ଣ୍ଣ ଭ୍ରମପୂର୍ଣ୍ଣ, ଏଥିରେ ସନ୍ଦେହ ନାହିଁ ।

ପ୍ରକୃତି ବଦଳେ ଓ ନିଶ୍ଚିତ ଭାବରେ ବଦଳେ ।

ପ୍ରକୃତି ବଦଳେ ବୋଲି ହିଁ ଦସ୍ୟୁ ରତ୍ନାକର ମହାକବି ବାଲ୍ମୀକି ପାଲଟି ଗଲେ; ଚଣ୍ଡାଶୋକ ଧର୍ମାଶୋକ ହେଲେ ଓ ରତ୍ନାବଳୀଙ୍କ ତୁଳସୀ ଦାସ ସନ୍ଥ

ତୁଳସୀରେ ପରିଣତ ହେଲେ। କ୍ଷତ୍ରିୟ ଘରେ ଜନ୍ମହୋଇ ବିଶ୍ୱାମିତ୍ର ବ୍ରହ୍ମର୍ଷି ହେଲେ ଓ ବ୍ରାହ୍ମଣ ଘରେ ଜନ୍ମ ନେଇ ପରଶୁରାମ ପରଶୁ କୁଠାର ହାତରେ କ୍ଷତ୍ରିୟକୁଳର ଆତଙ୍କ ହୋଇଥିଲେ।

ପ୍ରକୃତି ବଦଳେ ବୋଲି ହିଁ ଆଦିମ ମଣିଷ ଆଦିମ ଅବସ୍ଥାରେ ନ ରହି ଦେବତ୍ୱର ସନ୍ଧାନରେ ଆଗେଇ ଚାଲେ।

ପବନ ଯେପରି ଅମ୍ଳଜାନ, ଯବକ୍ଷାରଜାନ ଓ ଅଙ୍ଗାରକ ଅମ୍ଳ ପ୍ରଭୃତି ଉପାଦାନରେ ଗଠିତ - ଓ ଏସବୁ ଉପାଦାନର ତାରତମ୍ୟ ଯୋଗୁଁ ଉପକୂଳ ଅଞ୍ଚଳ, ପାହାଡ଼ ଅଞ୍ଚଳ ତଥା କଳକାରଖାନାର ଧୂଆଁରେ ଭରି ଯାଇଥିବା ସହରାଞ୍ଚଳର ବାତାବରଣରେ ପାର୍ଥକ୍ୟ ଦେଖାଦିଏ, ସେପରି ମଣିଷର ରକ୍ତ ପ୍ଲାଜ୍‌ମା, କ୍ରୋମୋଜୋମ ଓ ଜିନ୍ ପ୍ରଭୃତି ଉପାଦାନରେ ଗଠିତ ହେଲେ ହେଁ, ସେ ସବୁ ବିଭିନ୍ନ ଉପାଦାନର ଗୁଣାତ୍ମକ ତାରତମ୍ୟରେ ମଣିଷର ପ୍ରକୃତିଗତ ପାର୍ଥକ୍ୟ ଦେଖାଦିଏ। କ୍ରୋମୋଜୋମ୍ ଓ ଜିନ୍‌ମାନଙ୍କରେ ପିତାମାତା ଓ ପୂର୍ବପୁରୁଷଙ୍କ ଗୁଣସବୁ ପ୍ରତିଫଳିତ ହୋଇଥାଏ ଓ ଏହି କ୍ରୋମୋଜୋମ୍ ଓ ଜିନ୍ ମଣିଷ ପ୍ରକୃତିର ବାହକ ବୋଲି କହନ୍ତି। ସେ ସବୁର ପରିବର୍ତ୍ତନରେ ମଣିଷ ପ୍ରକୃତିର ପରିବର୍ତ୍ତନ ହେବା ତେଣୁ ସମ୍ଭବ।

ଆମ ପୂର୍ବପୁରୁଷମାନଙ୍କ ମତରେ ପ୍ରତ୍ୟେକ ମଣିଷର ପ୍ରକୃତିରେ ସତ୍ୱ, ରଜ ଓ ତମ ଏହି ତିନି ଗୁଣ ମିଳିମିଶି ରହିଥାଏ। ଏହି ତିନିଗୁଣ ରକ୍ତର ଉପାଦାନ କି ନୁହେଁ ସେ କଥା କହି ହେବନି, କିନ୍ତୁ ଏହା ନିଶ୍ଚିତ ଯେ ଭଲର ଆଧିକ୍ୟରେ ମନ୍ଦ ଦବିଗଲାପରି ତଥା ମନ୍ଦର ଆଧିକ୍ୟରେ ଭଲ ଦବିଗଲାପରି ସତ୍ୱର ପ୍ରାଧାନ୍ୟରେ ରଜ ଓ ତମ ଗୁଣ ଯେପରି ଦବିଯାଏ, ରଜର ପ୍ରାଧାନ୍ୟରେ ସତ୍ୱ ଓ ତମ ତଥା ତମର ପ୍ରାଧାନ୍ୟରେ ସତ୍ୱ ଓ ରଜୋଗୁଣ ଦବିଯାଏ। ଜନ୍ମବେଳକୁ ମଣିଷ ତା'ର ରକ୍ତର ମାଧମରେ ପିତାମାତା ଓ ପୂର୍ବ ପୁରୁଷଙ୍କ କେତେକ ଗୁଣାବଳୀ ନେଇ ସଂସାରକୁ ଆସେ ସତ; ତଥା ସତ୍ୱ ରଜ ଓ ତମ ଗୁଣ ମଧ୍ୟରୁ କୌଣସି ଗୋଟିଏ ଗୁଣର ପ୍ରାଧାନ୍ୟ ନେଇ ଜନ୍ମନିଏ; କିନ୍ତୁ ପାରିପାର୍ଶ୍ୱିକ ଅବସ୍ଥା, ପିତା ମାତା, ସାଙ୍ଗ ସାଥୀଙ୍କ ପ୍ରଭାବ, ଶିକ୍ଷା ଓ ସାଧନା ପ୍ରଭୃତି ଏସବୁ ଗୁଣରେ ପରିବର୍ତ୍ତନ ଆଣେ। ଫଳରେ ତା'ର ଜନ୍ମଗତ ପ୍ରକୃତି ବଦଳେ। ପାରିପାର୍ଶ୍ୱିକ ଅବସ୍ଥା ପରି ଖାଦ୍ୟ ମଧ ଏ ଗୁଣାତ୍ମକ ପରିବର୍ତ୍ତନର ସହାୟକ ହୁଏ।

ଜନ୍ମ ଓ ଜନ୍ମଗତ ପ୍ରକୃତି ଉପରେ ମଣିଷର କିଛି କର୍ତ୍ତୃତ୍ୱ ନ ଥିଲେ ହେଁ ସୁସଙ୍ଗ ଲାଭରେ ଓ ବ୍ୟକ୍ତିଗତ ସାଧନା ତଥା ଅଭ୍ୟାସ ଉପରେ ତା'ର ସମ୍ପୂର୍ଣ୍ଣ

କର୍ତ୍ତୃତ୍ୱ ରହିଛି । ତେଣୁ ମଣିଷ ଯଦି ଆଜି ସାତ୍ତ୍ୱିକ ପ୍ରବୃତ୍ତି ଏବଂ ଦେବତ୍ୱର ମାର୍ଗରୁ ବିଚ୍ୟୁତ ହୋଇ ତାମସିକ ପ୍ରବୃତ୍ତି ତଥା ଆସୁରୀ ମାର୍ଗରେ ଗତି କରେ ତେବେ ସେଥିପାଇଁ ସେ ନିଜେ ବ୍ୟକ୍ତିଗତ ଭାବରେ ହିଁ ଦାୟୀ ହେବ ।

# ଘୋଡ଼ାଙ୍କର ଲଗାମ୍

ଆଜିକାଲି ଛାତ୍ର ବିଶୃଙ୍ଖଳା କିମ୍ବା ଯୁବ ବିଶୃଙ୍ଖଳା ବିଷୟ ନେଇ ଦୁଇ ଚାରିପଦ ନ କହିଲେ ବା ନ ଲେଖିଲେ ପ୍ରଗତିଶୀଳ ବୋଲି ତ ଜଣା ପଡ଼ିବ ନାହିଁ, ବରଂ ରକ୍ଷଣଶୀଳ ବୋଲି ଗଣ୍ୟହେବାର ଆଶଙ୍କା ରହିଛି ।

କେହିକେହି କହୁଛନ୍ତି ସାମାଜିକ ପାରିପାର୍ଶ୍ୱିକ ଅବସ୍ଥାହିଁ ଛାତ୍ର ବିଶୃଙ୍ଖଳା ପାଇଁ ଦାୟୀ । ଅନ୍ୟ କାହାରି ମତରେ ପ୍ରକୃତ ଦୋଷୀ ହେଉଛି ବେକାର ସମସ୍ୟା, ତେଣୁ ଏଇ ବିଶୃଙ୍ଖଳାର କାରଣ ହେଲା ଅର୍ଥନୈତିକ । ଆଉ କେତେକ ପଣ୍ଡିତ ଏଥିରେ ମୁଣ୍ଡ ହଲାଇ ପାପୁଲିରେ ମୁଠା ମାରି କହନ୍ତି - ଏସବୁ ମିଛ । ତାଙ୍କ ମତରେ ମୂଳକାରଣ ହେଉଛି ରାଜନୀତି ଓ ରାଜନୈତିକ ଦଳମାନଙ୍କର ଭିତିରି କାରସାଦି ।

କୌଣସି କଲେଜର ଅଧ୍ୟକ୍ଷଙ୍କୁ ଯଦି ଏ ଭିତରୁ କେଉଁଟା ଭୁଲ ଓ କେଉଁଟା ଠିକ୍ ବୋଲି ପଚରାଯାଏ ସେ ମହାଶୟ ଆଉ ଗୋଟିଏ କଥା କହିବେ । କହିବେ - ଆଗେ ଯେଉଁଘର ସ୍କୁଲ ପାଇଁ ବି ଯଥେଷ୍ଟ ନ ଥିଲା, ସେ ଏବେ ହେଲା କଲେଜ ଘର । ୩୦୦ ପିଲାଙ୍କ ପଢ଼ିବା ପାଇଁ ଯେଉଁଠି ଜାଗାନାହିଁ, ସେଇଠି ପଢୁଛନ୍ତି ୧୫୦୦ ଜଣ । ଭଲ ଲାଇବ୍ରେରୀ ନାହିଁ, ଲେବୋରେଟରୀ ନାହିଁ, ପିଲାଏ ଘଣ୍ଟାଏ ବସି ବିଶ୍ରାମ ନେବାପାଇଁ କୋଠରି ନାହିଁ, ପରୀକ୍ଷା ହଲ ନାହିଁ । ସେଥିରେ କି ଶୃଙ୍ଖଳା ଆଶା କରିବେ ? ଫୁରୁସତ ସମୟ ଟିକିଏ ଭଲଭାବରେ କଟାଇବା ପାଇଁ ଯଦି ଖେଳପଡ଼ିଆଟାଏ ବି ନଥାଏ ତେବେ ଖାଲିଖାଲି ବୁଲିବା ଅପେକ୍ଷା ବତିଖୁଣ୍ଟକୁ ପଥରଟାଏ ଫୋପାଡ଼ିବା କ'ଣ ବେଶି ଆମୋଦଦାୟକ ମନେହେବ ନାହିଁ ? ଆଉ ଶିକ୍ଷକଙ୍କ କଥା ତ ଛାଡ଼ । ଆଜିକାଲିକା ଯୁଗରେ ଯେଉଁଠି ଶିକ୍ଷକଙ୍କ ସାମାଜିକ ମର୍ଯ୍ୟାଦା ବୋଲି କିଛି ନାହିଁ, ସେଇଠି ଟ୩୫୦୬ ଗାଏ ମୋଟ ବେତନ, ଅଥଚ ଦିନଦିନ ଧରି ଗଳିକନ୍ଦି ଖୋଜିଖୋଜି ରହିବା ପାଇଁ ଘରଟିଏ ପାଇଲେ, ତହିଁରେ ଭଲ ପାଇଖାନାଟିଏ ନଥାଇ ବି ଘରଭଡ଼ା ଟ୧୫୦ । ତହିଁରେ ପୁଣି ଦୁଇଜଣ ଜାଗାରେ ଜଣେ ଶିକ୍ଷକ ନିଯୁକ୍ତ ଥିବା ହେତୁ ଦୁଇଗୁଣ

ପାଠ ପଢ଼ାଇଲା ବେଳକୁ ତ ସେ ନାକେଦମ୍। ପିଲାଙ୍କ ଭଲ ମନ୍ଦ ଆଉ କେତେବେଳେ ବୁଝିବେ ?

ଏ ସବୁ ସତ। କେଉଁ ଗୋଟାକ ବି ଭୁଲ ନୁହେଁ। ଗଛ ପରି ଗୋଡ଼, କୁଲା ପରି କାନ, ଦଉଡ଼ି ପରି ଲାଞ୍ଜ, ସବୁକୁ ମିଶାଇ ତ ହାତୀ। କେମିତି କହି ହେବ ଯେ ହାତୀ କୁଲା ପରି ନୁହେଁ କି ଦଉଡ଼ି ପରି ନୁହେଁ ?

ତେବେ ଗୋଟିଏ କଥା ମନକୁ ଆସେ। ସତେ କ'ଣ ଆମେ ସବୁ ଆଗଦିନ ଗୋଟାଏ ଗୋଟାଏ ମହାତ୍ମା ଗାନ୍ଧି ଥିଲୁ ? ଆଉ ଆଜିର ଏଇ ଟୋକା ସବୁ - ଗଲେ, ନଷ୍ଟ ହୋଇଗଲେ... ସତ୍ୟାନାଶ ହୋଇଗଲେ।

ପର୍ବତ ଦୂରରୁ କେଡ଼େ ସୁନ୍ଦର ଦିଶେ। ଚହଟ ଚିକ୍କଣ, ଡଉଲଡାଉଲ, ପାଖକୁ ଗଲେ ?

ଅତୀତ ଠିକ୍ ସେଇପରି - ଭାରି ସୁଆଦିଆ। ପଛକୁ ଚାହିଁଲା ବେଳକୁ ସେ ଦିନର ଭେଲ ସବୁକିଛି ମନେପଡ଼େନି, ଖାଲି ଭଲସବୁ ମନେପଡ଼େ। ସ୍ମୃତି ସବୁ ମଧୁମୟ ହୋଇଉଠେ। ମନେପଡ଼େ ସେତେବେଳେ କେମିତି ଦୁଇ ପଇସାକୁ ବଡ଼ ବଡ଼ ରସଗୋଲା ମିଳୁଥିଲା; ଆଉ କି ନରମ ! ମନେପଡ଼େନିଯେ ସେଦିନ ସେଇ ସାମାନ୍ୟ ଦୁଇ ପଇସା ପାଇବା କେଡ଼େ କଷ୍ଟକର ହେଉଥିଲା।

ବର୍ତ୍ତମାନ ସବୁବେଳେ ଆମ୍ବିଳିଆ, ନହେଲେ ପିତା। ଏଇ ବର୍ତ୍ତମାନର ନିରାଟ ବାସ୍ତବତାହିଁ କଠୋରତା ଆଣିଦିଏ। ସେଥିରେ ଆମର ଟେରିଲିନ୍ ସାର୍ଟପେଣ୍ଟ କିମ୍ବା ଚିତ୍ରତାରକା ଦେବାନନ୍ଦର ଅଭିନୟ, କିମ୍ବା ଲତା ମଙ୍ଗେଶକରର ଗୀତ କିମ୍ବା ଗତ ବଣଭୋଜିର ମଉଜମଜଲିସ୍ ମନେପଡ଼େନି। ମନେପଡ଼େ କେମିତି ଅମୁକ କମ୍ ପାଠ ପଢ଼ିବି ବେଶି ଦରମା ପାଉଛି, ତମୁକର ନୂଆ ମଟରଗାଡ଼ି, ଆଉ ନିଜର... ?

ଆମେମାନେ ଯେତେବେଳେ ସେବେ କଲେଜରେ ପାଠ ପଢୁଥିଲୁ ଆମକୁ ବି ସେତେବେଳର ସମାଜ ଅନେକ ସମୟରେ ଉଚ୍ଛୃଙ୍ଖଳ ବୋଲି କହୁଥିଲେ। ସେବେ ବି ସେମିତି ବିନା କାରଣରେ ଧର୍ମଘଟ ହେଉଥିଲା। ପ୍ରକ୍ସି ପଡୁଥିଲା, ଦୁଷ୍ଟାମି କରିବାକୁ ଇଚ୍ଛା ହେଉଥିଲା। ବିନା ଟିକେଟରେ ରେଳଗାଡ଼ିରେ ଯିବାକୁ ମନ ବଳୁଥିଲା। ମାଙ୍କଡ଼ାମି କରିବାକୁ ଭଲ ଲାଗୁଥିଲା। ଲୋକେ କହୁଥିଲେ - ଚଗଲା, ଟେରୀ କେମିତି କାଟିଛି ଦେଖ। ଝିଅହୋଇ କେଡ଼େ ଅଲାଜୁକ, ପୁଅଙ୍କ ସଙ୍ଗରେ ପାଠ ପଢୁଛି। ବ୍ରାହ୍ମଣ ପିଲା ହୋଇ କରଣ ଝିଅ ବାହାହେଲା - ଏ

ସବୁରୁ ଆରମ୍ଭ କରି ଶ୍ରେଣୀ ଭିତର ଓ ବାହାରର କେତେଜଣ ! ସେତେବେଳର ସବୁ ଶିକ୍ଷକ ବି ଆଇନ୍‌ଷ୍ଟାଇନ୍ କିମ୍ବା ରାଧାକ୍ରିଷ୍ଣନ୍ ନଥିଲେ ।

ତେବେ ??

ଆମ ସମୟରେ ଡରଥିଲା । ବାପା ମା'ଙ୍କୁ ଡର, ଗୁରୁଜନଙ୍କୁ ଡର, ଶିକ୍ଷକଙ୍କୁ ଡର, ସରକାରୀ କଳକୁ ଡର ! ଧରାପଡ଼ିଲେ କେଉଁଠି ମୁହଁ ଦେଖାଇ ହେବନି । ସେଇ ଡରହିଁ ଥିଲା ଆମର ଘୋଡ଼ାଦ୍ୱର ଲଗାମ୍ । ଆଜି ସମସ୍ତେ ଲଗାମ୍ ଛାଡ଼ - ସ୍ୱାଧୀନ ଦେଶର ସ୍ୱାଧୀନ ନାଗରିକ କି ନା !

ହେଉ, ଆଉ ୨୫-୩୦ ବର୍ଷପରେ ଆମ କଲେଜର ଆଜିର ଏଇ ବୀର ଯବାନ ସବୁ ଯେତେବେଳେ ସାମାନ୍ୟ ଶ୍ଳଥଚର୍ମ ହୋଇ ଏଇ ବିଷୟଟିକୁ ଯଦି ଯୋଗକୁ ଓଲଟାଇ ପକାଇବେ, ସେତେବେଳେ ସେମାନେ ତାଙ୍କ ଆଧୁନିକ ସନ୍ତାନ ସନ୍ତତିମାନଙ୍କ 'these old fools' ଧାରଣା କଥା ଭାବି କି ମନ୍ତବ୍ୟ ଦେବେ ସେଇଟା ଶୁଣିବା କଥା । ଅବଶ୍ୟ ସେତେବେଳକୁ ଆମ ଭିତରୁ ଅନେକେ ନ ଥିବେ ।

# କୁମ୍ଭାରଙ୍କୁ ପଦେ

ସମୟ ସମୟରେ କେହିକେହି କୌଣସି ବ୍ୟକ୍ତି ବିଶେଷଙ୍କୁ ମେରୁଦଣ୍ଡହୀନ ବୋଲି ଆକ୍ଷେପ କରୁଥିବା କିମ୍ବା ଅଭିଯୁକ୍ତ କରୁଥିବା ଶୁଣାଯାଏ । ଏଥିରୁ ମଣିଷ ମେରୁଦଣ୍ଡହୀନ ପ୍ରାଣୀ ହୋଇପାରେ ବୋଲି ଭାବିବା ଭୁଲହେବ । ମେରୁଦଣ୍ଡ ଥିବା ଯୋଗୁଁ ହିଁ ମଣିଷ ଥୁଣ୍ଟାଗଛ ପରି ସିଧାସଳଖ ଠିଆ ହୋଇପାରେ ଓ ଏପରି ଠିଆ ହୋଇଥିବା ଲୋକ ଆଗକୁ ଯିବାକୁ ଚେଷ୍ଟାକଲେ ଗୋଡ଼ ସଙ୍ଗରେ ଦେହ ମଧ ଆଗକୁ ଯାଏ, ପଛକୁ ଝୁଲିପଡ଼େନାହିଁ । କେତେକ ମଣିଷଙ୍କ ଗତି କୁଟିଳ ପରି ଜଣା ପଡୁଥିଲେ ମଧ ମେରୁଦଣ୍ଡ ଯୋଗୁଁ ସାଧାରଣତଃ ମଣିଷର ଗତି ସରଳ ଓ ସହଜ ହୋଇଥାଏ । ଅନ୍ୟପକ୍ଷରେ ମେରୁଦଣ୍ଡହୀନ ପ୍ରାଣୀର ଗତି କେବଳ ଯେ କୁଟିଳ ତାହା ନୁହେଁ, ଜଟିଳ ମଧ । ଏପରି ପ୍ରାଣୀ ଗତିକଲା ବେଳେ ଗୋଟିଏ ଅଂଶ ଆଉଗୋଟିଏ ଅଂଶକୁ ଓଟାରି ନେଉଥିବାର ଲକ୍ଷ୍ୟ କରାଯାଏ ।

ଅନେକ ସମୟରେ ମେରୁଦଣ୍ଡକୁ ଆକ୍ଷରିକ ଅର୍ଥରେ ବ୍ୟବହାର ନକରି ଆଳଙ୍କାରିକ ଅର୍ଥରେ ବ୍ୟବହାର କରାଯାଇଥାଏ । କୌଣସି ପ୍ରାଣହୀନ ସଂସ୍ଥା, ସଙ୍ଗଠନ କିମ୍ବା ଅନୁଷ୍ଠାନ ଶୃଙ୍ଖଳାର ସହିତ ବିନା ଜଟିଳତାରେ ସରଳ ଭାବରେ ପରିଚାଳିତ ହେଉଥିଲେ ଓ ତାହାର ଅଗ୍ରଗତି ସହଜ ଭାବରେ ସାଧିତ ହେଉଥିଲେ, ସେପରି ସୁପ୍ରତିଷ୍ଠିତ ଓ ସୁପରିଚାଳିତ ସଂସ୍ଥାର ମେରୁଦଣ୍ଡ ଅଛି ବୋଲି ଧରିନିଆଯାଏ ଓ ଯିଏ ବା ଯେଉଁମାନେ ଏ ଶୃଙ୍ଖଳିତ ବ୍ୟବସ୍ଥାର ମୁଖ୍ୟକାରଣ ସେମାନଙ୍କୁ ସଂସ୍ଥାର ମେରୁଦଣ୍ଡ ବୋଲି ବର୍ଣ୍ଣନା କରାଯାଏ । ଆଗ ଗୋଡ଼ ଓ ପଛ ଗୋଡ଼ ମଝିରେ ଦୋଳିପରି ଝୁଲୁଥିବା ପଶୁମାନଙ୍କର ମେରୁଦଣ୍ଡ ଭାଙ୍ଗିଲେ ସେ ପଶୁମାନେ ଯେପରି ଦୋଳି ଛିଣ୍ଡିଲା ପରି କଚାଡ଼ି ହୋଇ ପଡ଼ନ୍ତି, ସେହିପରି ଉପରୋକ୍ତ ସୁପରିଚାଳିତ ସଂସ୍ଥାରୁ ଦାୟିତ୍ୱଜ୍ଞାନସମ୍ପନ୍ନ କର୍ତ୍ତବ୍ୟନିଷ୍ଠ ବିବେକୀ ପରିଚାଳକ ଦୂରେଇଗଲେ ସଂସ୍ଥାର ମେରୁଦଣ୍ଡ ଭାଙ୍ଗିଯାଏ ଓ ସଂସ୍ଥା ଭୁଷୁଡ଼ି ପଡ଼େ ।

ମଣିଷ-ସମାଜ ଏପରି ଗୋଟିଏ ସଂସ୍ଥା ।

ସଭ୍ୟ-ଜଗତର ପ୍ରତ୍ୟେକ ଦେଶରେ ଶିକ୍ଷକମାନଙ୍କୁ ସମାଜର ମେରୁଦଣ୍ଡ ବୋଲି ବିନା ଦ୍ୱିଧା ଓ ବିନା ପ୍ରତିବାଦରେ ଗ୍ରହଣ କରାଯାଇଥାଏ । ପ୍ରାଚୀନ-ସଭ୍ୟତାର ପୀଠସ୍ଥଳୀ ଭାରତରେ ଶିକ୍ଷକ ଯେ ସମାଜର କେବଳ ମେରୁଦଣ୍ଡ ଥିଲା ତାହା ନୁହେଁ, ସେ ଥିଲା ସମାଜର ପ୍ରାଣକେନ୍ଦ୍ର । ବ୍ୟକ୍ତି ବିଶେଷଙ୍କ ଜୀବନର ପଥପ୍ରଦର୍ଶକ, ଜନ୍ମଦାତା ପିତାଙ୍କ ସମସ୍କନ୍ଧ ଶିକ୍ଷାଦାତା ଗୁରୁ ।

ମେଞ୍ଚାଏ ଚିକିଟା ମାଟି ଚକ ଉପରେ ଥୋଇ ଚକ ବୁଲାଉ ବୁଲାଉ ହାତର କାଉଁରୀ ପରଶରେ କୁମ୍ଭାର ଯେପରି ମାଟିରୁ କେତେବେଳେ ହାଣ୍ଡି, ମାଠିଆ, ସୋରାଇ ଗଢ଼େ ତ କେତେବେଳେ ଆଟିକା, ଠେକି, ଢୁଙ୍ଖା ତିଆରି କରେନ୍ତ କେବେ ଦିଅଁଙ୍କ ପାଇଁ ଘୋଡ଼ା ହାତୀ ସୃଷ୍ଟିକରେ ତ କେବେ ସେଇ ମାଟିରୁ ଦିଅଁଟିଏ ଗଢ଼ିପକାଏ; ଶିକ୍ଷକ ସେପରି ସମାଜର କଅଁଳିଆ ଶିଶୁମାନଙ୍କୁ ନେଇ ନାନାରକମର ମଣିଷ ଗଢ଼େ । କିଏ ଇଞ୍ଜିନିୟର, ଡାକ୍ତର ହୁଏ ତ କେହି ସାହିତ୍ୟିକ, ଐତିହାସିକ, ରାଜନୀତିଜ୍ଞ ହୁଅନ୍ତି, କିଏ ସମାଜ ସଂସ୍କାରକ, ଧର୍ମ ପ୍ରଚାରକ ହୁଏ ତ ଅନ୍ୟ କେହି ଶିଶୁ ରାମ, କୃଷ୍ଣ, ବୁଦ୍ଧ, ଗାନ୍ଧୀ ରୂପରେ ବିଶ୍ୱର କଲ୍ୟାଣ ସାଧନ କରିଯାଆନ୍ତି । ହାଣ୍ଡି ଗଢୁ ଗଢୁ କୁମ୍ଭାରର ଗୋଟିଏ ଦିଓଟି ହାଣ୍ଡି ଫାଟିଗଲା ପରି ଶିକ୍ଷକ ମଣିଷ ଗଢ଼ିଲାବେଳକୁ ଜଣେ ଅଧେ ଫାଟି ଯାଆନ୍ତି ବା ଫେଲ୍‌ହୁଅନ୍ତି । କୁମ୍ଭାରର କେତେଟା ହାଣ୍ଡି ବଙ୍କା ତେଢ଼ା ହେଲା ପରି କିମ୍ବା ପୋଡ଼ିଲାବେଳକୁ କେତେ ଉଆଁଲୁ ଧରିଲା ପରି ଶିକ୍ଷକର କେତୋଟି ଛାତ୍ର ମଧ୍ୟ ସମୟ ସମୟରେ ତେଢ଼ା ମନୋବୃତ୍ତି ଧାରଣ କରନ୍ତି - ସମାଜର ଶିଖୀ ମନାଇଁ ହୁଅନ୍ତି । ପାଣି ମାଠିଆ ଗଢ଼ି, ଦିଅଁ ଡୋଲି କିମ୍ବା ମଦପାତ୍ର ତିଆରିକରି କୁମ୍ଭାର ଯେପରି ସେଇ ଗରିବ କୁମ୍ଭାର ହୋଇ ରହିଯାଏ, ସେଇପରି ଗୁରୁଶ୍ରେଷ୍ଠ ଦ୍ରୋଣାଚାର୍ଯ୍ୟ ନିଜ ପୁଅ ଅଶ୍ୱତ୍ଥମାକୁ କ୍ଷୀର ମୁନ୍ଦିଏ ଦେଇ ନପାରି ଗାଈଟିଏ ଦାନପାଇବା ଆଶାରେ ଦ୍ରୁପଦ ରାଜାଙ୍କ ଦ୍ୱାରସ୍ଥ ହେଲାପରି ଭାରତବର୍ଷରେ ଶିକ୍ଷକ ଯେତେ ଜ୍ଞାନୀ ହେଉ ନା କାହିଁକି ଗରିବ ଶିକ୍ଷକ ହୋଇ ହିଁ ରହିଯାଏ । କିନ୍ତୁ ବଶିଷ୍ଠ, ବିଶ୍ୱାମିତ୍ର, ସାନ୍ଦିପନୀ, ଶଙ୍କର, ରାଧାକୃଷ୍ଣନ୍‌ଙ୍କ ପରି ସବୁବେଳେ ସମାଜରେ ଉପଯୁକ୍ତ ସମ୍ମାନ ପାଇଥାଏ ।

ଆଜି କିନ୍ତୁ ଅବସ୍ଥା ବଦଳି ଯାଇଛି । ସମାଜର ମେରୁଦଣ୍ଡୀରୂପୀ ଶିକ୍ଷକ ତା'ର ନିଜ ମେରୁଦଣ୍ଡ ହରାଇବା ଉପରେ ।

ଅବସ୍ଥାର ଏ ଅବାଞ୍ଛିତ ପରିବର୍ତ୍ତନ ପାଇଁ ଦାୟୀ କିଏ ?

ହାଣ୍ଡି ଫାଟିଲେ କିମ୍ବା ଭୁଷୁଡ଼ି ଗଲେ କୁମ୍ଭାର ମାଟିକୁ ଦୋଷ ଦିଏ । ମାଟିରେ ଗୋଡ଼ି ମିଶିଥିବା କଥା କହେ, ପାଣି ଓ ଜାଳକୁ ନିନ୍ଦା କରେ, କିନ୍ତୁ ଦୁନିଆ ଦୋଷ ଦିଏ କୁମ୍ଭାରକୁ - କୁମ୍ଭାରର ଗଠନ ପ୍ରଣାଳୀକୁ - ତା'ର ଅପାରଗତାକୁ । ଆଜି ସେପରି ବହୁ ସଂଖ୍ୟାରେ ଭଙ୍ଗା, ତୁଟା ଓ ଡେଙ୍ଗା ଛାତ୍ର ବାହାରୁଥିବା ଯୋଗୁଁ ସମାଜର ପାରିପାର୍ଶ୍ୱିକ ଅବସ୍ଥାକୁ ଶିକ୍ଷକ ଯେତେ ଦୋଷ ଦେଉଥିଲେ ମଧ୍ୟ ସମାଜ ଶିକ୍ଷକକୁ ହିଁ ଦୋଷୀ ସାବ୍ୟସ୍ତ କରେ ।

ପାଣିରେ ବୁଡିଯାଉଥିବା ଲୋକ କୂଳରେ ଠିଆହୋଇଥିବା ଲୋକମାନଙ୍କଠାରୁ ସାହାଯ୍ୟ ପାଇବା ଆଶାରେ ବିକଳ ଇଙ୍ଗିତ ଦେଲାବେଳେ ତାକୁ ସାହାଯ୍ୟ ଦେବା ପରିବର୍ତ୍ତେ ପହଁରି ନ ଜାଣି ପାଣିଭିତରକୁ ପଶିଯାଇଥିବା ହେତୁ ତା'ର ସମାଲୋଚନା କରିବା ଯେପରି, ଆଜି ଶିକ୍ଷକମାନେ କେତେକ ଅସାମାଜିକ, ଦୃଷ୍ଟିହୀନ ଓ ନୀଚ ମନୋବୃତ୍ତି ପୋଷଣ କରୁଥିବା ବ୍ୟକ୍ତିବିଶେଷଙ୍କଦ୍ୱାରା ଲାଞ୍ଛିତ ଓ ଅପମାନିତ ହେଉଥିଲାବେଳେ, ସେମାନଙ୍କ ଜୀବନ ବିପନ୍ନ ଥିଲାବେଳେ ଓ ବିଶାଳ ଛାତ୍ର ସମାଜର, ଅଭିଭାବକମାନଙ୍କର ତଥା ଆଇନ କାନୁନ ରକ୍ଷାକାରୀ ସରକାରୀ କଳର ନିର୍ବିକାର ଉଦାସୀନତା ପରିଲକ୍ଷିତ ହେଉଥିଲାବେଳେ ଏହି ଶିକ୍ଷକମାନଙ୍କର ଦୋଷ ତ୍ରୁଟି ବାଛିବା ଅତ୍ୟନ୍ତ ଦୁଃଖଦାୟକ ହେବ । ତଥାପି ଶିକ୍ଷକ ସମାଜର ଭବିଷ୍ୟତ ମଙ୍ଗଳ ନିମନ୍ତେ ଏପରି ଦୁର୍ଦ୍ଦିନରେ ମଧ୍ୟ ଆତ୍ମ ନିରୀକ୍ଷଣ ତଥା ସମସ୍ୟାର ପର୍ଯ୍ୟାଲୋଚନା ବିଧେୟ ବୋଲି ମନେହୁଏ ।

ଏଇ କେତେବର୍ଷ ତଳେ ସ୍ୱାଧୀନତା ପ୍ରାପ୍ତିର ଠିକ୍ ପରବର୍ତ୍ତୀ କାଳରେ ଶାସନ ଶିଥିଳତାର ସୁଯୋଗନେଇ 'କଙ୍କଣ ଲୋଭୀ' କେତେକ ଶିକ୍ଷକ ଅଧିକ ଅର୍ଥ ଉପାର୍ଜନ ଉଦ୍ଦେଶ୍ୟରେ ଟିଉସନ ଆରମ୍ଭ କଲେ । ଜଣେ ଦି'ଜଣ ଛାତ୍ରଙ୍କୁ ନେଇ ଆରମ୍ଭ ହୋଇଥିବା ଏ ଟିଉସନ କ୍ରମେ ବଡ଼ ଆକାର ଧାରଣ କରି ୧୫/୨୦ ଜଣ ଛାତ୍ର ବିଶିଷ୍ଟ ଟିଉସନ କ୍ଲାସ ରୂପରେ କେତେକ ଶିକ୍ଷକଙ୍କ ଘରେ ଦେଖା ଦେଲା । ଏପରି ଛାତ୍ର ସଂଖ୍ୟା ବଢ଼ାଇବା ଆଶାରେ କେତେକ ଶିକ୍ଷକ ଜାଣି ଶୁଣି ସ୍କୁଲରେ ପାଠ ପଢ଼ାଇବାରେ ଅବହେଳା କଲେ । ଟିଉସନ ପ୍ରତିଯୋଗିତା କ୍ରମେ ଆରମ୍ଭ ହେଲା ଓ ଏପରି କେତେ ଶିକ୍ଷକ ଟିଉସନ ପାଉଥିବା ଛାତ୍ରଙ୍କୁ ପାଶ୍ ଗେରେଣ୍ଟି ଦେବାକୁ ଆରମ୍ଭ କଲେ । ଫଳରେ ଛାତ୍ରମାନଙ୍କୁ ପରୀକ୍ଷାପୂର୍ବରୁ ପ୍ରଶ୍ନ କହିଦେବା ପ୍ରବୃତ୍ତି ଦେଖାଦେଲା ଓ ପରୀକ୍ଷା ପ୍ରଶ୍ନର ଘରୋଇ ସମାଧାନ ଟିଉସନର ଗୋଟିଏ ଅଙ୍ଗ ହେବାକୁ ଲାଗିଲା । କେତେ ଟିଉସନ ପାଉଥିବା ଛାତ୍ର

ସେଥିରେ ମଧ୍ୟ ପରୀକ୍ଷା ହଲ୍‌ରେ ଭୁଲ ଲେଖୁଥିବା ଦେଖି ଟିଉସନ ଶିକ୍ଷକ ପରୀକ୍ଷା ହଲରେ ମଧ୍ୟ ଏପରି ଛାତ୍ରମାନଙ୍କୁ ସିଧାସଳଖ ସାହାଯ୍ୟ କରିବାକୁ ଆରମ୍ଭ କଲେ । ସ୍କୁଲରେ ପ୍ରଧାନ ଶିକ୍ଷକ ତଥା ଅନ୍ୟାନ୍ୟ ଶିକ୍ଷକମାନେ ଏପରି ଅସତ୍ ଉପାୟ ଅବଲମ୍ବନକୁ ରୋକି ନ ପାରିବା ଯୋଗୁଁ ଧୀରେ ଧୀରେ ଏପରି ସୁବିଧାରୁ ବଞ୍ଚିତ ହେଉଥିବା ଛାତ୍ରମାନେ ବିଦ୍ରୋହ କଲେ ଓ କେତେକ ଅଭିଭାବକମାନଙ୍କ ପ୍ରରୋଚନା ପାଇ ସେମାନେ ମଧ୍ୟ କପି କରିବା ଆରମ୍ଭ କଲେ । ଯଥାସମୟରେ ରୋଗର ନିରାକରଣ ହୋଇ ନ ଥିବାରୁ ଅଳ୍ପ କେତେ ବର୍ଷ ମଧ୍ୟରେ ଏ କପି କରିବା ବ୍ୟାଧି ଭୀଷଣ ସଂକ୍ରାମକ ଆକାର ଧାରଣ କରି ମେଟ୍ରିକୁଲେଶନ ପରୀକ୍ଷାରେ ପଶିଲା ।

ପାଠରେ ନିହାତି ଦୁର୍ବଳ କିନ୍ତୁ କପି କରି ପାଶ୍ କରିଥିବା କେତେ ଛାତ୍ର ଯଥା ସମୟରେ କଲେଜମାନଙ୍କରେ ଭର୍ତ୍ତି ହେଲେ । ଶ୍ରେଣୀରେ ପଢ଼ା ହେଉଥିବା ପାଠ ବୁଝି ପାରିବା ଶକ୍ତି ମଧ୍ୟ ସେମାନଙ୍କର ନଥିଲା ।

ଆମ ପରମ୍ପରା ଅନୁଯାୟୀ ୫ ବର୍ଷର ଲାଳନ ପରେ ୧୦ ବର୍ଷ ପାଇଁ ତାଡ଼ନ ସହ ଶିକ୍ଷା ଦେବା କଥା । ତା' ପରିବର୍ତ୍ତେ ଟିଉସନ ଓ ବେନିୟମ ସାହାଯ୍ୟ ପାଇଥିବା ୧୬ ବର୍ଷ ବୟସର ଏହି ଯୁବକମାନେ ଷୋଡ଼ଶ ବର୍ଷ ପ୍ରାପ୍ତିର ଫଳସ୍ୱରୂପ କଲେଜରେ କପି କଲା ବେଳେ ମଧ୍ୟ ମିତ୍ର ଆଚରଣ ପାଇବା ଆଶା କଲେ । ଫଳରେ କଲେଜ ଅଧ୍ୟାପକ ଓ ଏହି କପିକରାଗୋଷ୍ଠୀ ଛାତ୍ରଙ୍କ ମଧ୍ୟରେ ଦ୍ୱନ୍ଦ୍ୱ ଦେଖାଦେଲା । ଏହି ଦ୍ୱନ୍ଦ୍ୱର ପରିଣାମ ହିଁ ଏବେ ଦେଖିବାକୁ ମିଳେ ।

ଯେଉଁ ରୋଗର ଆରମ୍ଭ ସ୍କୁଲସ୍ତରରେ ହେଉଛି, ସେ ରୋଗର ନିରାକରଣ ସେହି ସ୍କୁଲସ୍ତରରେ ହିଁ ହେବା ସମ୍ଭବ । ବ୍ୟାଧି ପୁରୁଣା ହୋଇଗଲା ପରେ ତା'ର ନିରାକରଣ ସହଜସାଧ୍ୟ ନୁହେଁ । ତେବେ ମଧ୍ୟ କଲେଜର ଅଧ୍ୟାପକମାନଙ୍କୁ ହତାଶ ନ ହୋଇ ରୋଗର ନିରାକରଣ ନହେଲେ ମଧ୍ୟ ରୋଗ ଯନ୍ତ୍ରଣାର ସାମାନ୍ୟ ଉପଶମ ନିମନ୍ତେ ଯତ୍‌ପରୋନାସ୍ତି ଚେଷ୍ଟା କରିବାକୁ ପଡ଼ିବ ।

'କହିବା ସହଜ ଓ କରିବା କଠିନ' ଜାଣି ମଧ୍ୟ ଏ ସମ୍ବନ୍ଧରେ କିଛି କୁହାଯାଇପାରେ ।

କଲେଜମାନଙ୍କରେ ଅଧ୍ୟାପକମାନଙ୍କର ଅନେକ ଅସୁବିଧା ରହିଛି ସତ ଓ ଛାତ୍ରମାନଙ୍କୁ ଶିକ୍ଷାଦେବା ପ୍ରୟୋଜନୀୟ ବ୍ୟବସ୍ଥା ପର୍ଯ୍ୟାପ୍ତ ଭାବରେ ନାହିଁ, ତାହା ମଧ୍ୟ ସତ; ତେବେ ଯାହା ଅଛି, ଅନେକକ୍ଷେତ୍ରରେ ସେ ସବୁର ସଦୁପଯୋଗ ଯେ

କରାଯାଉ ନାହିଁ ଏହା ଅସ୍ୱୀକାର କରିହେବନାହିଁ । ତେଣୁ ବର୍ତ୍ତମାନର ସନ୍ଧିକ୍ଷଣରେ ଅନ୍ୟମାନଙ୍କ ସାହାଯ୍ୟ ଉପରେ ଭରସା ନରଖି ଶିକ୍ଷକମାନଙ୍କୁ ନିଜର ଦୋଷତ୍ରୁଟି ନିଜେ ସଂଶୋଧନ କରିବାକୁ ପଡ଼ିବ ଓ ନିଜ କର୍ତ୍ତବ୍ୟ ସମ୍ବନ୍ଧରେ ସଚେତନ ହେବାକୁ ପଡ଼ିବ ।

ସାମାନ୍ୟ କେତେଜଣଙ୍କୁ ଛାଡ଼ିଦେଲେ କୌଣସି ଶିକ୍ଷକ ସୁଶିକ୍ଷକ ଭାବରେ ଜନ୍ମ ନେଇ ନଥାଏ । ତେଣୁ ଶିକ୍ଷକ ନିଜେ ହିଁ ନିଜକୁ ସୁଶିକ୍ଷକ କରି ଗଢ଼ିନିଏ । ସେଥିପାଇଁ ଯେଉଁ ମାତ୍ରାରେ ଉତ୍ସାହ, ଉଦ୍ଦୀପନା, କର୍ତ୍ତବ୍ୟନିଷ୍ଠା ଓ ଶ୍ରମସ୍ୱୀକାର ଦରକାର ତଥା ଜ୍ଞାନ ସାଧନ ଓ ଜ୍ଞାନର କ୍ରମୋନ୍ନତି ପାଇଁ ଯେଉଁ ଚେଷ୍ଟା ଲୋଡ଼ା, ତାହା ଅନେକ କ୍ଷେତ୍ରରେ ଦେଖିବାକୁ ମିଳୁ ନାହିଁ । ଏପରି ଅବିରତ ଉଦ୍ୟମହିଁ କଲେଜମାନଙ୍କରେ ଉପଯୁକ୍ତ ବାତାବରଣ ସୃଷ୍ଟିକରିବାରେ ସହାୟକ ହେବ ।

ଶିକ୍ଷକଙ୍କୁ ନିଜେ ବ୍ୟକ୍ତିଗତ ଭାବେ ଛାତ୍ରମାନଙ୍କର ଆଦର୍ଶ ହେବାକୁ ହେଲେ ସମୟାନୁବର୍ତ୍ତିତା ସହ ଶ୍ରେଣୀ ପାଇଁ ବିଶେଷ ଭାବରେ ଯୋଜନାବଦ୍ଧ ପ୍ରସ୍ତୁତି ଲୋଡ଼ା । ପୋଥିଗତ ବିଦ୍ୟା ଭିତରେ ଯଦି ଶିକ୍ଷକର ଶିକ୍ଷାଦାନ ସୀମିତ ରହେ ତେବେ ଛାତ୍ର ଶ୍ରେଣୀକୁ ଆସିବା ପାଇଁ ଆଗ୍ରହୀ ନହେବା ସ୍ୱାଭାବିକ ।

ଅନେକ ସମୟରେ ଶିକ୍ଷକର ଶିକ୍ଷା ପ୍ରଣାଳୀରେ ତ୍ରୁଟି ରହିଯାଇଥାଏ । ଏକା ସ୍ୱରରେ ପଢ଼ାଇବା ଫଳରେ ସମୟ ସମୟରେ ଶୁଣିବା ଲୋକର ନିଦ ଆସିଯାଏ, ଟିକିଏ ହସର ଅବତାରଣା କରି ନପାରିଲେ ପଢ଼ା ରୁଚିକର ହୁଏନାହିଁ । ଶ୍ରେଣୀ ବାହାରେ ଖେଳକୁଦ, ମଉଜ ମଜଲିସ ଓ ନାନାବିଧ ସାଂସ୍କୃତିକ କାର୍ଯ୍ୟକ୍ରମମାନଙ୍କରେ ଛାତ୍ରର ପ୍ରତ୍ୟକ୍ଷ ସଂସ୍ପର୍ଶରେ ନ ଆସିଲେ ଶିକ୍ଷକ ଓ ଛାତ୍ର ମଧ୍ୟରେ ଥିବା ବ୍ୟବଧାନ ଦୂରୀଭୂତ ହୁଏ ନାହିଁ ଓ ଛାତ୍ର ଶିକ୍ଷକକୁ ନିଜର ବୋଲି ମନେକରିପାରେ ନାହିଁ । ଶିକ୍ଷକର ଗବେଷଣାତ୍ମକ କାର୍ଯ୍ୟ ଦେଖିଲେ ଶିକ୍ଷକର ଜ୍ଞାନପ୍ରତି ଛାତ୍ରର ବିଶ୍ୱାସ ଜନ୍ମେ । ଛାତ୍ରମାନଙ୍କ ମଧ୍ୟରେ ରହି ଛାତ୍ର ନଜାଣିଲା ପରି ଯେଉଁ ଶିକ୍ଷକ ଦିଗ୍‌ଦର୍ଶନ ଦେଇପାରେ ତାକୁ ହିଁ ଛାତ୍ରମାନେ ନିଜ ବନ୍ଧୁ, ଦାର୍ଶନିକ ଓ ପଥପ୍ରଦର୍ଶକ ବୋଲି ବିବେଚନା କରନ୍ତି ।

ପୁଅ ଝିଅ ଯେତେବଡ଼ ଭୁଲକଲେ ମଧ, ଯେତେ କଷ୍ଟ ଓ ମାନସିକ ଯନ୍ତ୍ରଣା ଦେଲେ ମଧ ବାପ ମା' ସେମାନଙ୍କୁ କ୍ଷମା ଦେଇଥାଆନ୍ତି ଓ ତା' ସଙ୍ଗେସଙ୍ଗେ ତାଙ୍କର ମଙ୍ଗଳ ସାଧନରେ ତତ୍ପର ରହନ୍ତି । ଆଜିର ଏହି କେତେ ବିପଥଗାମୀ ଛାତ୍ର ମଧ ଆମ୍ଭମାନଙ୍କର ତଥା ଆମ୍ଭ ଭାଇ ବନ୍ଧୁଙ୍କର ସନ୍ତାନ ସନ୍ତତି । ଯେ

ପର୍ଯ୍ୟନ୍ତ ଶିକ୍ଷକ ଲାଞ୍ଛନା, ଗଞ୍ଜଣା, ଅପମାନ ଓ ନିର୍ଯାତନା ସହି ମଧ୍ୟ ଏହି ଛାତ୍ରମାନଙ୍କୁ ନିଜ ପୁଅ ଝିଅ ଆଖିରେ ନ ଦେଖିଛନ୍ତି ସେ ପର୍ଯ୍ୟନ୍ତ ସେମାନେ ଏ ଛାତ୍ରମାନଙ୍କର ତଥା ସମାଜର ସମ୍ମାନ ଭାଜନ ହୋଇପାରିବେ ନାହିଁ ।

ବିନୋବାଜୀ ଓ ଜୟପ୍ରକାଶଙ୍କ ସ୍ନେହ ଓ କ୍ଷମା ବାଣୀରେ ଆଜି ଯଦି ଚମ୍ବଲ ଉପତ୍ୟକାର ନରହନ୍ତା ଡକାୟତମାନେ ଅସ୍ତ୍ରଶସ୍ତ୍ର ତ୍ୟାଗକରି ଆତ୍ମସମର୍ପଣ କରିପାରିଲେ ଆମ ପୁଅ ଝିଅଙ୍କ ମାନସିକ ଦୃଷ୍ଟଭଙ୍ଗୀ ବଦଳାଇବା ସମ୍ବନ୍ଧରେ ହତବୁଦ୍ଧି ଓ ନିରୁପାୟ ହେଲେ ସମାଜ ଆମ୍ଭମାନଙ୍କୁ ହୀନମଣ୍ୟ ଓ ପଳାୟନପନ୍ଥୀ ବୋଲି ଗଣନା କରିବ ନାହିଁ କି ?

# ଘୋଡ଼ାକୁ ପାଣି ପିଆଇବ କିପରି

ମଣିଷ ସମାଜର ତେରଛା ଦୃଷ୍ଟିଭଙ୍ଗୀର ବାସ୍ତବତାକୁ ରୂପନେଇ ଢଗ ଓ ପ୍ରବଚନ ଜନ୍ମ ନିଏ । ଆକ୍ଷରିକ ସତ୍ୟତାର ଅଭାବରୁ ଓ ସାଧାରଣତଃ ପରିହାସ ବ୍ୟଞ୍ଜକ ହୋଇଥିବାରୁ ଅନେକ ସମୟରେ ବ୍ୟକ୍ତିବିଶେଷ ଢଗର ଅନ୍ତର୍ନିହିତ ସତ୍ୟତା ଉପରେ ଗୁରୁତ୍ୱ ଦିଅନ୍ତି ନାହିଁ । ତେଣୁ ଗାଁ କନିଆଁ ଯେତେ ସୁନ୍ଦର ହୋଇଥିଲେ ମଧ୍ୟ ସିଙ୍ଘାଣି ନାକୀ ହେବା ନ୍ୟାୟରେ ଢଗ ଯେତେ ଦର୍ଶନଯୁକ୍ତ ହୋଇଥିଲେ ମଧ୍ୟ ଢଗ ହୋଇ ହିଁ ରହିଯାଏ ।

ସମାଜବାଦର ବନ୍ଧୁର ପଥରେ ମନ୍ଥର ଗତିରେ ଅଗ୍ରସର ହେଉଛି ବୋଲି ବାହାନା କରି ଛୋଟେଇ ଛୋଟେଇ ଚାଲୁଥିବା ଆଜିର ଏ ସମାଜରେ ଧନ ଓ ଶକ୍ତି ତଥା କ୍ଷମତା ନ ଥିବା ଲୋକ କିପରି ସମସ୍ତଙ୍କର ପରିହାସର ପାତ୍ର ସେ କଥା ସୂଚାଇବାକୁ ଯାଇ ଗୋଟିଏ ପ୍ରଚଳିତ ଢ଼ଗ ଇଙ୍ଗିତ ଦିଏ ଯେ ଗରିବ ମାଇପି ସମସ୍ତଙ୍କର ଏପରି ଏକ ମଧୁର ସମ୍ପର୍କୀୟା ନାରୀ ଯାହା ସାଙ୍ଗରେ କି ଯେ କେହି ନିଃସଙ୍କୋଚରେ ଓ ନିର୍ଭୟରେ ଯେକୌଣସି ସମୟରେ ଥଟ୍ଟା ତାମସା କରିପାରନ୍ତି । ପୁରୁଷ ବଳ ଓ ସ୍ତ୍ରୀ ଦୁର୍ବଳତାର ପ୍ରତୀକ ବୋଲି ଧରା ଯାଉଥିବାରୁ ଢ଼ଗର ଗରିବ ପାଇପି ଧନ ଓ କ୍ଷମତାହୀନ ବ୍ୟକ୍ତିଙ୍କୁ ହିଁ ବୁଝାଏ ।

ଧନ କିମ୍ବା କ୍ଷମତା କିମ୍ବା ଦୁଇଟିଯାକ ଠୁଳ ହୋଇ ରହିଥିବା ପୋଲିସ, ପୂର୍ତ୍ତ, ଜଙ୍ଗଲ ଓ ଅବକାରୀ ପ୍ରଭୃତି ସରକାରୀ ବିଭାଗମାନଙ୍କ ମଧ୍ୟରେ ଧନ ଓ କ୍ଷମତାହୀନ ଶିକ୍ଷା ବିଭାଗ ଓ ତତ୍ ସମ୍ବନ୍ଧୀୟ ବ୍ୟକ୍ତି ବିଶେଷ ଢଗର ଗରିବ ମାଇପି ପରି ବାଟରେ ଘାଟରେ ଆଜି ସମସ୍ତଙ୍କର ପରିହାସର ପାତ୍ର ହେବାରେ କିଛି ଅସ୍ୱାଭାବିକତା ନାହିଁ । କିନ୍ତୁ ଯେଉଁ ଶିକ୍ଷାପ୍ରଣାଳୀ ଓ ଶିକ୍ଷାପଦ୍ଧତି ମଧ୍ୟଦେଇ ଗତିକରି ଡିଗ୍ରୀ ସାର୍ଟିଫିକେଟ ଇତ୍ୟାଦି ହାସଲ କରିଥିବା ଯୋଗୁଁ ଓ ଯେଉଁ ଶିକ୍ଷକମାନଙ୍କର ଶିକ୍ଷାଦାନ ଫଳରେ ସରକାରୀ ଓ ବେସରକାରୀ ସଂସ୍ଥାମାନଙ୍କ ବିଭିନ୍ନ ବିଭାଗମାନଙ୍କରେ ଉଚ୍ଚକର୍ମକର୍ତ୍ତାର ଆସନ ପାଇବାର ସୁଯୋଗ ଯେଉଁମାନେ ପାଇଛନ୍ତି ସେଇମାନେ ଯେତେବେଳେ ବର୍ତ୍ତମାନର ଶିକ୍ଷାପଦ୍ଧତିର

ତୁଚ୍ଛତା ପ୍ରତିପାଦନ କରିବାକୁ ଚେଷ୍ଟାକରି ଶିକ୍ଷକ ସମାଜକୁ ପରିହାସ କରନ୍ତି ସେତେବେଳେ ମନରେ ଆଘାତ ଲାଗେ । 'ଯାହା ପାଇଁ ଚୋରି କରେ ସେ କହେ ଚୋର' ଏ କଥା ମନେ ପଡ଼େ ଓ ଯେଉଁ ଶିଡ଼ି ସାହାଯ୍ୟରେ ମଣିଷ ଉପରକୁ ଉଠେ, ଚଢ଼ି ସାରିଲା ପରେ ସେଇ ଶିଡ଼ିକୁ ଗୋଇଠା ମାରିବା ନୀତି ଦେଖି ମନ ସମୟ ସମୟରେ ବିଦ୍ରୋହ କରିଉଠେ ।

ଆଜିର ଶିକ୍ଷା ଓ ଶିକ୍ଷାପଦ୍ଧତିରେ ଯେ ସଂସ୍କାର ଆବଶ୍ୟକ ଏଥିରେ କାହାରି ଭିନ୍ନମତ ନାହିଁ । କିନ୍ତୁ ଦେଶ ଓ ସମାଜର ସବୁ ଦୂରବସ୍ଥା ପାଇଁ ଏଇ ଶିକ୍ଷାପଦ୍ଧତି ଉପରେ ସବୁଦୋଷ ଲଦିଦେବା ବହୁତ ଅନ୍ୟାୟ ପରି ମନେହୁଏ ।

ଆମ ଦେଶରେ ଆଜି ଯେଉଁ ଶିକ୍ଷାପଦ୍ଧତି ପ୍ରଚଳିତ ଅଛି ତାହା ବିଲାତର ଶିକ୍ଷାପଦ୍ଧତିର ଅନୁରୂପ । ତିଳକ, ଗୋଖେଲ, ମୋତିଲାଲ, ଗାନ୍ଧିଜୀ, ପଟେଲ, ସୁଭାଷ ବୋଷଠାରୁ ଆରମ୍ଭକରି ଗୋପବନ୍ଧୁ, ମଧୁସୂଦନ ପର୍ଯ୍ୟନ୍ତ; ରାଧାକୃଷ୍ଣନ, ସି.ଭି. ରମଣ, ଜଗଦୀଶ ବୋଷ, ପ୍ରାଣକୃଷ୍ଣ ପରିଜାଙ୍କଠାରୁ ଆରମ୍ଭକରି ଚନ୍ଦ୍ରଶେଖର, ନାର୍ଲିକର, ଖୁରାନା ପର୍ଯ୍ୟନ୍ତ ଓ ବିବେକାନନ୍ଦ, ଶିବାନନ୍ଦଙ୍କଠାରୁ ଆରମ୍ଭକରି ଚିନ୍ମୟାନନ୍ଦ ଚିଦାନନ୍ଦଙ୍କ ପର୍ଯ୍ୟନ୍ତ ଗତ ଶତାବ୍ଦୀ ଓ ଚଳିତ ଶତାବ୍ଦୀର ଭାରତର ସର୍ବଶ୍ରେଷ୍ଠ କୃତୀ ସନ୍ତାନ ସବୁ ଏହି ଶିକ୍ଷା ପଦ୍ଧତି ଭିତରଦେଇ ଗତିକରି ଯାଇଛନ୍ତି । ଅରବିନ୍ଦ ଓ ଜବାହରଲାଲଙ୍କ ପରି କେତେଜଣ ଏହି ଶିକ୍ଷାପଦ୍ଧତିରୁ ତାଲିମପ୍ରାପ୍ତ ହୋଇ ନ ଥିଲେ ମଧ ତଦନୁରୂପ ଶିକ୍ଷାପଦ୍ଧତିର ସନ୍ତାନ ଥିଲେ । ତେଣୁ ବର୍ତ୍ତମାନର ପ୍ରଚଳିତ ଶିକ୍ଷାପଦ୍ଧତିକୁ ହେୟଜ୍ଞାନକରି ସମ୍ପୂର୍ଣ୍ଣଭାବରେ ମୂଳପୋଛ କରିଦେବା କେତେଦୂର ସମୀଚୀନ ତାହା ବିଚାର ଓ ଆଲୋଚନା ଯୋଗ୍ୟ ।

ଅନେକଙ୍କ ମତରେ ପ୍ରଚଳିତ ଶିକ୍ଷାପଦ୍ଧତି କେବଳ ଯେ ସମୟର ଅନୁପଯୋଗୀ ଓ ଅନେକାଂଶରେ ଖାପଛଡ଼ା ତାହା ନୁହେଁ, ସମାଜର ଚିନ୍ତାଧାରାଠାରୁ ବିଚ୍ଛିନ୍ନ, ତେଣୁ ସର୍ବସାଧାରଣଙ୍କ କଲ୍ୟାଣ ସାଧନ ପାଇଁ ସମ୍ପୂର୍ଣ୍ଣ ଅନୁପଯୁକ୍ତ । ଏ ପଦ୍ଧତି ଛାତ୍ରକୁ ଆତ୍ମବିଶ୍ୱାସ ଦେବା ପରିବର୍ତ୍ତେ ପରମୁଖାପେକ୍ଷୀ କରାଏ, ନୂତନ ଓ ମୌଳିକ ଚିନ୍ତାଧାରାର ପରିପ୍ରକାଶ ପାଇଁ ସମର୍ଥ ନୁହେଁ । ଏମାନଙ୍କ ମତରେ ଶିକ୍ଷା ପଦ୍ଧତି ଆଧୁନିକ ହେବା ସଙ୍ଗେ ସଙ୍ଗେ କର୍ମାଭିମୁଖୀ ବା ବୃତ୍ତି ଓ ଧନ୍ଦାମୂଳକ ହେବା ଉଚିତ, ଯାହାଦ୍ୱାରା ଛାତ୍ର ତା'ର କଲେଜରୁ ଉପାର୍ଜିତ ଜ୍ଞାନ ସାହାଯ୍ୟରେ ନିଜ ବୁଦ୍ଧିର ବିକାଶ କରିବା ସଙ୍ଗେ ସଙ୍ଗେ ଅନ୍ୟ ଉପରେ

ନିର୍ଭର ନକରି ନିଜଗୋଡ଼ରେ ଠିଆହୋଇ ପାରିବ ତଥା ନିଜ କୁଟୁମ୍ବର ପ୍ରତିପୋଷଣ କରିପାରିବ । କୁହାଯାଇଥାଏ ଯେ ଏପରି କର୍ମାଭିମୁଖୀ ଶିକ୍ଷାପଦ୍ଧତିରେ ଛାତ୍ରର ମନ ପାଠ ଆଡ଼ିକି ବିଶେଷ ଭାବରେ ଆକୃଷ୍ଟ ହୋଇପାରିବ ଯାହାଫଳରେ ସେ ଶ୍ରେଣୀବର୍ଜନ କରିବା ଓ ପରୀକ୍ଷାରେ ଅସତ୍ ଉପାୟ ଅବଲମ୍ବନ କରିବା ପ୍ରଭୃତିରୁ କ୍ଷାନ୍ତହେବ । ଏ ଯୁକ୍ତିରେ ଯେ ଯଥେଷ୍ଟ ଗୁରୁତ୍ୱ ରହିଛି ତାହା ଅସ୍ୱୀକାର କରିହେବନାହିଁ । କିନ୍ତୁ ଏଠାରେ ପ୍ରଶ୍ନ ଉଠେ ଯେ ତେବେ ଭେଷଜ ବିଜ୍ଞାନ, ଇଞ୍ଜିନିୟରିଂ, କୃଷି-ବିଜ୍ଞାନ ପ୍ରଭୃତି କର୍ମାଭିମୁଖୀ ଶିକ୍ଷାରେ ବିଭିନ୍ନ ସମସ୍ୟା ଦେଖାଦେଉଛି କାହିଁକି ? ପୁଣି କୁହାଯାଏ ଯେ ଇଞ୍ଜିନିୟରିଂ ବିଦ୍ୟା କର୍ମାଭିମୁଖୀ ପରି ଦେଖାଯାଉଥିଲେ ମଧ୍ୟ ଯେପର୍ଯ୍ୟନ୍ତ ଛାତ୍ରମାନେ ନିଜେନିଜ ହାତରେ କିଛି କରିପାରି ନାହାନ୍ତି ତଥା ନିଜର କୌଣସି ଶିଳ୍ପ ମାଧ୍ୟମରେ ନିଜର କର୍ମ ସଂସ୍ଥାନର ଯୋଗାଣ କରି ନପାରିଛନ୍ତି ସେପର୍ଯ୍ୟନ୍ତ ଏ ଶିକ୍ଷାକୁ କର୍ମାଭିମୁଖୀ ଶିକ୍ଷା ବୋଲି କୁହାଯାଇ ନ ପାରେ । ତେବେ କୃଷି ବିଦ୍ୟା ତଥା ଡାକ୍ତରୀ ବିଦ୍ୟା ?

ଶିକ୍ଷା ପ୍ରକୃତ ଶିକ୍ଷା ହେବାକୁ ହେଲେ ତାହା ଛାତ୍ରର ଶରୀର, ମସ୍ତିଷ୍କ ଓ ହୃଦୟର ପରିପୂର୍ଣ୍ଣ ବିକାଶରେ ସହାୟକ ହେବା ଉଚିତ । ଆମର ଶିକ୍ଷାପଦ୍ଧତିରେ ଅନେକ ମଇଳା ଜମିଯାଇ ଜମାଟ ବାନ୍ଧିଗଲାଣି । ତାକୁ ଯେ ସଂସ୍କାର କରି ସଫା କରିବାକୁ ହେବ ଏଥିରେ ସନ୍ଦେହ ନାହିଁ । ଦେଶ ପରାଧୀନ ଥିଲାବେଳେ ଆମର ସବୁ ଦୋଷ ଦୁର୍ଗୁଣ ପାଇଁ ସାମ୍ରାଜ୍ୟବାଦକୁ ଦାୟୀ କରି ଇଂରେଜ ଜାତି ମୁଣ୍ଡରେ ଅଠା ବୋଳିବାର ସୁବିଧା ଓ ସୁଯୋଗ ଥିଲା । ଏବେ କିନ୍ତୁ ଆଉ କାହାକୁ ଦାୟୀ କରିବା ବାଟ ନାହିଁ ।

ଭାରତରେ ପ୍ରଚଳିତ ଗୋଲାମ ସୃଷ୍ଟିକାରୀ ଶିକ୍ଷାପଦ୍ଧତିର ତ୍ରୁଟି ଲକ୍ଷ୍ୟକରି ଶିକ୍ଷା ପ୍ରଣାଳୀର ଆମୂଳ ସଂସ୍କାର ସାଧନ ଓ ମୌଳିକ ଶିକ୍ଷାର ପ୍ରଚଳନ ପାଇଁ ଗାନ୍ଧିଜୀ ଅନେକ ଚେଷ୍ଟା କରିଥିଲେ । କର୍ମ ମାଧ୍ୟମରେ ଶିକ୍ଷାଦାନ ଓ ନୈତିକଶିକ୍ଷା ଉପରେ ଗୁରୁତ୍ୱ ଏହି ମୌଳିକ ଶିକ୍ଷାର ମୂଳମନ୍ତ୍ର ଥିଲା । କିନ୍ତୁ ଦୁର୍ଭାଗ୍ୟର କଥା ଯେ ଆଜି ଯେଉଁମାନେ ବର୍ତ୍ତମାନର ଶିକ୍ଷାପଦ୍ଧତିକୁ ଘୃଣ୍ୟ ବୋଲି ଚିତ୍ରିତକରି କୁମ୍ଭୀରକାନ୍ଦଣା କାନ୍ଦୁଛନ୍ତି, ସେଇମାନଙ୍କ ଭିତରୁ କେତେ ସେଦିନ ଗାନ୍ଧିଜୀଙ୍କ ମୌଳିକ ଶିକ୍ଷାର ତୋଟି ଚିପିଦେଇଥିଲେ ଓ ଧର୍ମ ନିରପେକ୍ଷତାର ଦ୍ୱାହିଦେଇ ନୈତିକ ଶିକ୍ଷାକୁ ଗୋଇଠା ମାରିଥିଲେ ।

ଗାନ୍ଧିଜୀ କହୁଥିଲେ ଯେ ଛାତ୍ର ଆକାଶ ପରି ସ୍ୱଚ୍ଛ ଓ ପବିତ୍ର । ଆକାଶର ଯେପରି ନିଜର କିଛି ରଙ୍ଗ ନଥାଏ ଓ କେବଳ ଅନ୍ୟର ରଙ୍ଗ ପ୍ରତିଫଳିତ ହେବା ଫଳରେ ଆକାଶ ରଙ୍ଗୀନ ହୁଏ, ଠିକ୍ ସେହିପରି ଛାତ୍ରର ମନ ଓ ହୃଦୟରେ ନିଜର କିଛି କଳୁଷ ନ ଥାଏ । ପରୀକ୍ଷାରେ ଅସତ୍ ଉପାୟ ଅବଲମ୍ବନ ପ୍ରଭୃତି ଭ୍ରାନ୍ତ ଚିନ୍ତାଧାରା ତେଣୁ ଆମ କଳୁଷିତ ସାମାଜିକ ଜୀବନର ଏକ ପ୍ରତିବିମ୍ବ ମାତ୍ର । ଚାଉଳରେ ଗୋଡ଼ି, ଅଟାରେ ତେନ୍ତୁଳି ମଞ୍ଜି ଗୁଣ୍ଡ, ସୋରିଷ ତେଲରେ ପୋଡ଼ା ମୋବିଲ୍, ଘିଅରେ ଚର୍ବି ପ୍ରଭୃତି ଅପମିଶ୍ରଣ, ଲାଞ୍ଚ, ମିଛ, କଳାବଜାର, ସଚ୍ଚା ପ୍ରଭୃତି ସାମାଜିକ ଜୀବନର ପରିପ୍ରକାଶ ଭିତରେ ଛାତ୍ର ତା'ର ଦୈନନ୍ଦିନ କର୍ତ୍ତବ୍ୟରେ ହେଳାକରି ଶେଷରେ ପରୀକ୍ଷାରେ ପାଶ୍‌କରିବା ପାଇଁ କପି କରିବା ଓ ବାପା ମା'ଙ୍କ ପଇସା ବଳରେ ବେଶି ମାର୍କ ପାଇବାକୁ ସକ୍ଷମ ନହେଲେ ନିଜ ଶକ୍ତି ଉପରେ ଭରସା ରଖି ଭୟ ଦେଖାଇ ପାଶ୍ କରିବାକୁ ଚେଷ୍ଟା କରିବା ଆମ ସାମାଜିକ ଜୀବନର ପ୍ରତୀକ ନୁହେଁ କି ?

ଛାତ୍ର ତଥା ମନୁଷ୍ୟର ଜୀବନବ୍ୟାପୀ ଶିକ୍ଷାଗ୍ରହଣ ମଧ୍ୟରେ କଲେଜ ଜୀବନର ଶିକ୍ଷା ଏକ ଅଙ୍ଗ ବିଶେଷ ମାତ୍ର । ପିଲାଦିନର କଅଁଳିଆ ମନରେ ବାପା ମା ଓ ଘରର ଅନ୍ୟମାନଙ୍କ ଚରିତ୍ରର ପ୍ରଭାବ ସାଙ୍ଗରେ ସ୍କୁଲ ଜୀବନର ସାଙ୍ଗସାଥୀମାନଙ୍କ ଆଚରଣ ତଥା ଶିକ୍ଷକଙ୍କ ବ୍ୟକ୍ତିଗତ ଚରିତ୍ରର ପ୍ରଭାବ ଅଲିଭାଦାଗ ଟାଣିଦେଇଯାଏ । କଣା କ୍ୟାମେରାର ଆଲୋକଚିତ୍ର ପର୍ଦ୍ଦାରେ କ୍ରମାଗତ ଛାପ ପଡୁଥିଲା ପରି ଛାତ୍ରର ଅଜାଣତରେ ସମାଜର ସବୁ କ୍ରିୟାକଳାପ ତା' ମନରେ ଛାପ ପକାଇ ଚାଲିଥାଏ । ଯେକୌଣସି ଉପାୟରେ ରାତାରାତି ଧନୀହେବାର ଚେଷ୍ଟା, ରାଜନୀତିର ଘୋଡ଼ାବେପାର, ସବଳର ଛାତିଫୁଲା ଚାଲି ସଙ୍ଗରେ ଦୁର୍ବଳର ଅସହାୟତା - କୌଣସି ଘଟନା ବାଦ ଯାଏନାହିଁ । ଏହି ଛାପଭରା ମନରେ ଗରିବ ଶିକ୍ଷକର ସଚ୍ଚୋଟପଣିଆ କେବଳ ମେଣ୍ଢାର ସଚ୍ଚୋଟପଣିଆ ପରି ମନେହୁଏ ଓ ଆଜିର ଦୁନିଆଁରେ ଟିକିଏ ବୋକାମିର ପରିଚାୟକ ବୋଲି ଜଣାପଡ଼େ ।

ସାମାଜିକ ଜୀବନର ଏଇ ପରିପ୍ରେକ୍ଷୀରେ ଶିକ୍ଷାପଦ୍ଧତିର ସଂସ୍କାର ସଙ୍ଗେସଙ୍ଗେ କଲେଜ ଛାତ୍ରଜୀବନର ଆଭିମୁଖ୍ୟ ଯେ ଆପେ ଆପେ ବଦଳିଯିବ ସେ ଆଶା କେବଳ ବିଡ଼ମ୍ବନା ପରି ମନେହୁଏ ।

ଇଂରାଜୀରେ ଗୋଟିଏ ପ୍ରବଚନ ଅଛି ଯେ ଘୋଡ଼ାକୁ ସିନା ପାଣି ପାଖକୁ ଟାଣି ନେବ, ପିଇବାକୁ ତା'ର ମନ ନଥିଲେ ପାଣି ପିଆଇବ କେମିତି ?

ସେହିପରି ଶିକ୍ଷାପଦ୍ଧତିକୁ ସିନା ବଦଳାଇଦେବ, ପାଠପଢ଼ାରେ ମନ ନଥିବା ଆମର ଏ ଘୋଡ଼ାମାନଙ୍କୁ (କେହି ଯେପରି ଗଧ ବୋଲି ଭୁଲ ନ ବୁଝନ୍ତି !) ପଢ଼ିବା ପାଇଁ ବାଧ୍ୟ କରିବ କିପରି ?

ଜାପାନ, ଜର୍ମାନୀ, ଇଂଲଣ୍ଡ ପ୍ରଭୃତି ଯେଉଁ ଦେଶମାନଙ୍କରେ କର୍ତ୍ତବ୍ୟଜ୍ଞାନ ପରି ମହନୀୟ ଗୁଣ ଜାତୀୟ ଚରିତ୍ରର ଏକ ଅବିଚ୍ଛେଦ୍ୟ ଅଙ୍ଗ, ସେ ସବୁ ଦେଶରେ ଯେକୌଣସି ଶିକ୍ଷାପଦ୍ଧତି ନିଶ୍ଚୟ କୃତକାର୍ଯ୍ୟ ହେବ । ଚରିତ୍ରର ଉନ୍ନତି ନହେବାଯାଏ ଆମ ଦେଶରେ ଯେକୌଣସି ଶିକ୍ଷାପ୍ରଣାଳୀ ବିଫଳହେବାର ସମ୍ଭାବନା ରହିଛି । ତେଣୁ ଜାତୀୟ ଚରିତ୍ରର ପୁନଃ ପ୍ରତିଷ୍ଠା ହିଁ ଶିକ୍ଷା ପଦ୍ଧତି ସଂସ୍କାରର ମୂଳଲକ୍ଷ୍ୟ ହେବା ବିଧେୟ ବୋଲି ମନେହୁଏ ।

# ଲେଡ଼ି ଗୁଡ଼

ମୁଦ୍ରାର ଦୁଇପାଖ ପରି ପ୍ରତ୍ୟେକ ବିଷୟ ତଥା ବିଷୟବସ୍ତୁର ଦୁଇପାଖ ବା ଦୁଇଦିଗ ଥିବା ଦେଖାଯାଏ । ଦିନ-ରାତି, ଭଲ-ମନ୍ଦ, ଲାଭ-କ୍ଷତି, ସୁଖ-ଦୁଃଖ, ଜୟ-ପରାଜୟ ପରି ଏ ଦୁଇ ପାଖ ପରସ୍ପର ବିରୋଧୀ ଓ ବିପରୀତଧର୍ମୀ - ଗୋଟିଏ ପାଖ ଅନ୍ୟପାଖର ଠିକ୍ ଓଲଟା । ଏଥିରୁ କିନ୍ତୁ କହିହେବନାହିଁ ଯେ ଗୋଟିଏ ଯଦି ସତ, ଅନ୍ୟଟି ମିଛ । ଅନୁଧ୍ୟାନ କଲେ ଦେଖାଯିବ ଯେ ଦୁଇଟିଯାକ ସତ, ଯେହେତୁ ଗୋଟିଏ ନ ଥିଲେ ଅନ୍ୟଟିର ଅସ୍ତିତ୍ୱ ନାହିଁ । ପରାଜୟ ବିନା ଜୟର ସ୍ଥିତି ଅସମ୍ଭବ । ଦିନ ନଥିଲେ ରାତି ଆସିବ କୁଆଡୁ ? କେବଳ ଗୋଟିଏ ପାଖ ଥିବା ମୁଦ୍ରାର ଅସ୍ତିତ୍ୱ କଳ୍ପନା କରାଯାଇପାରେ ନା ।

ଦୁଇଦିଗ ମଧ୍ୟରେ ପରସ୍ପରବିରୋଧୀ ଭାବ ନିହିତ ଥିଲେମଧ୍ୟ ପ୍ରତ୍ୟେକ ଦିଗରେ ସତ୍ୟତାର ସ୍ଥିତି ପ୍ରଚ୍ଛନ୍ନ ଭାବରେ ରହିଥିବାରୁ ଯେକୌଣସି ବିଷୟବସ୍ତୁର ଯେକୌଣସି ଦିଗ ସପକ୍ଷରେ କିଛି ଆଲୋଚନା କରାଯାଇପାରେ । ଏଥିରୁ ବୋଧହୁଏ ଓକିଲାତିର ଜନ୍ମ । ଦୁର୍ଭାଗ୍ୟବଶତଃ ମଣିଷ ଗୋଟିଏ ଦିଗରେ ସପକ୍ଷରେ କହିବାକୁଯାଇ ଅନ୍ୟ ଦିଗରେ ବିରୋଧ କରେ, ଗୋଟିଏ ପକ୍ଷକୁ ସତ ବୋଲି ବର୍ଣ୍ଣନା କରି ଅନ୍ୟପକ୍ଷକୁ ମିଛ ବୋଲି ପ୍ରମାଣିତ କରିବାକୁ ଚେଷ୍ଟାକରେ । ଏଥିରୁ ଆରମ୍ଭ ହୁଏ ଯୁକ୍ତିତର୍କ, ବାଗ୍‌ବିତଣ୍ଡା, ଆଲୋଚନା ସମାଲୋଚନା - ଡିବେଟ୍ । ଧଳାକୁ କଳା ଓ କଳାକୁ ଧଳା ବୋଲି ପ୍ରମାଣ କରିବାର ବାସନା ଓ ତତ୍‌ସହ ଜିଦ୍ ।

ଏହି ଯୁକ୍ତିତର୍କ ଫଳରେ ଗୋଟିଏ ପକ୍ଷର ବିଜୟ ହୁଏ ସତ, କିନ୍ତୁ ଏ ବିଜୟ ସତ୍ୟର ବିଜୟ ବୋଲି କୁହାଯାଇ ନ ପାରେ । ତର୍କ କରିବାରେ ଯିଏ ଦକ୍ଷ, ଯୁକ୍ତିଚାତୁରୀରେ ଯିଏ ବିଶାରଦ ଓ ବୁଦ୍ଧିର ବିଚକ୍ଷଣତା ଯାହାର ବେଶି ତାହାରିହିଁ ଜୟ ହୁଏ । ପରିଣାମ ସ୍ୱରୂପ ଯେଉଁ ମୀମାଂସା ହୁଏ ବା ସିଦ୍ଧାନ୍ତ ଗ୍ରହଣ କରାଯାଏ ସେ ସିଦ୍ଧାନ୍ତ କେବଳ ସାମୟିକ ଓ ଆପେକ୍ଷିକ ସିଦ୍ଧାନ୍ତ ମାତ୍ର - ଚରମ ଓ ଶେଷ ସିଦ୍ଧାନ୍ତ ନୁହେଁ । ସମୟର ଗତି କିମ୍ବା ସମୟର ପରିବର୍ତ୍ତନ ସଙ୍ଗେ, ସେହି

ବିଷୟରେ ତର୍କବିତର୍କର ନୂତନପର୍ଯ୍ୟାୟ ଆରମ୍ଭ ହୁଏ, ପୂର୍ବ ସିଦ୍ଧାନ୍ତର ପରିବର୍ତ୍ତନ ହୁଏ ଓ ନୂତନ ସିଦ୍ଧାନ୍ତର ଆବିର୍ଭାବ ହୁଏ । ପଦ୍ମ ଘୁଞ୍ଚୁଘୁଞ୍ଚୁ ଯିବା ନ୍ୟାୟରେ ଚରମ ସିଦ୍ଧାନ୍ତ ମଧ ଘୁଞ୍ଚୁଘୁଞ୍ଚୁ ଯାଏ ।

ତାର୍କିକ ମୀମାଂସାର ଅସ୍ଥିରତା ପରିବର୍ତ୍ତନଶୀଳତା ଯୋଗୁଁ ଯେଉଁ ସବୁ ବିଷୟରେ ସ୍ଥିରତା ଆବଶ୍ୟକ ସେସବୁ ବିଷୟକୁ ତର୍କରୁ ଦୂରରେ ରଖିବା ପାଇଁ ଆମର ପୂର୍ବପୁରୁଷମାନେ ଉପଦେଶ ଦେଇଯାଇଛନ୍ତି । ପ୍ରେମ, ଭକ୍ତି, ସ୍ନେହ, ଦୟା ପ୍ରଭୃତି ହୃଦୟର ମହନୀୟ ଗୁଣସବୁ ଯେଉଁସବୁ ସମ୍ବନ୍ଧରେ ଜଡ଼ିତ ସେହିସବୁ ବିଷୟମାନଙ୍କରେ ଆମ ଭାରତୀୟ ପରମ୍ପରା ଓ ସଂସ୍କୃତି ତର୍କକୁ ସ୍ଥାନ ଦିଏନାହିଁ । ପାଶ୍ଚାତ୍ୟ ସଭ୍ୟତା ଓ ଭାରତୀୟ ସଭ୍ୟତା ମଧରେ ଏହାହିଁ ପ୍ରଧାନ ପାର୍ଥକ୍ୟ ରୂପେ ପରିଲକ୍ଷିତ ହୁଏ । ପାଶ୍ଚାତ୍ୟ ସଭ୍ୟତାରେ ବୁଦ୍ଧିର ସ୍ଥାନ ମୁଖ୍ୟ ଥିବା ସ୍ଥଳେ ଭାରତୀୟ ସଭ୍ୟତାରେ ହୃଦୟର ସ୍ଥାନ ମୁଖ୍ୟ ଓ ବୁଦ୍ଧିର ସ୍ଥାନ ଗୌଣ ଆସନ ନେଇଥାଏ । ତେଣୁ 'ବିଶ୍ୱାସେ ମିଳଇ ହରି, ତର୍କେ ବହୁଦୂର' ନୀତିରେ ଭକ୍ତ ଓ ଭଗବାନ୍‌ଙ୍କ ସମ୍ବନ୍ଧ, ପିତା ଓ ପୁତ୍ରର ସମ୍ବନ୍ଧ, ପତି ଓ ପତ୍ନୀର ସମ୍ବନ୍ଧ ତଥା ଗୁରୁ ଓ ଶିଷ୍ୟ କିମ୍ବା ଶିକ୍ଷକ ଓ ଛାତ୍ରର ସମ୍ବନ୍ଧରେ ଆମ ପରମ୍ପରା ତାର୍କିକ ମୀମାଂସା ଅପେକ୍ଷା ହୃଦୟର ବିଶ୍ୱାସକୁ ପ୍ରାଧାନ୍ୟ ଦେଇଥାଏ ।

ଆଜି କିନ୍ତୁ ସମୟ ବଦଳି ଯାଇଛି । ପାଶ୍ଚାତ୍ୟ ସଭ୍ୟତାର କଲେଇ କରା ଚାକଚକ୍ୟ ଓ ଭୋଗବିଳାସମୟ ଜୀବନର ସୌଖୀନତା ପାଖରେ ଭାରତୀୟ ସଭ୍ୟତାର ତ୍ୟାଗପୂତ ଜୀବନ ପରାଜୟ ସ୍ୱୀକାର କରିଛି । ବୁଦ୍ଧି ପାଖରେ ହୃଦୟ ହାର ମାନିଛି । ଶିକ୍ଷକ ଓ ଛାତ୍ରର ସ୍ନେହ ଓ ଭକ୍ତିପୂର୍ଣ୍ଣ ପବିତ୍ର ସମ୍ପର୍କରେ ଦେଖାଦେଇଛି ଯୁକ୍ତି ଓ ତର୍କ ।

ଶିକ୍ଷକ ସାଙ୍ଗରେ ସମାନ ଆସନରେ ବସି କଲେଜ ଓ ବିଶ୍ୱବିଦ୍ୟାଳୟ ପରିଚାଳନାରେ ଅଂଶଗ୍ରହଣ କରିବା ପାଇଁ ଛାତ୍ର ଯେ ହକ୍‌ଦାର କେବଳ ଏ ପ୍ରଶ୍ନ ନୁହେଁ, ପ୍ରଶ୍ନ ଉଠିଛି ପରିଚାଳନାର କେଉଁକେଉଁ କ୍ଷେତ୍ରରେ କେତେ ପରିମାଣରେ ଓ କିପରି ଭାବରେ ଛାତ୍ରମାନେ ଅଂଶଗ୍ରହଣ କରିବେ । ଏଥିରେ ଗୋଟିଏ ପକ୍ଷ ଯେତେବେଳେ କହେ ଯେ ଜ୍ଞାନର ସ୍ୱଚ୍ଛତା ଓ ଅଭିଜ୍ଞତାର ପରିପକ୍ୱତାର ଅଭାବ ଯୋଗୁଁ ଛାତ୍ରମାନେ ଶିକ୍ଷାର ନୀତିନିର୍ଦ୍ଧାରଣ କରୁଥିବା ଏକାଡେମିକ୍ କାଉନ୍‌ସିଲର ଆଲୋଚନାରେ ଭାଗ ନେବାକୁ ସକ୍ଷମ ନୁହନ୍ତି, ଅନ୍ୟ ପକ୍ଷ କହେ ଯେ, ଭବିଷ୍ୟତରେ ଦେଶର ଶାସନ, ସମାଜର ଶାସନ ତଥା ଶିକ୍ଷାର ଭାର ବହନକରିବା ପାଇଁ ଛାତ୍ରସମାଜକୁ ଯଦି ପ୍ରସ୍ତୁତ ହେବାକୁ ପଡ଼େ, ତେବେ କଲେଜ

ଜୀବନରେହିଁ ସେମାନେ ଏ ଦାୟିତ୍ୱ ବହନର ଅଭିଜ୍ଞତା ଅର୍ଜନ କରିବା ଉଚିତ । ଗୋଟିଏ ପକ୍ଷ ଯେତେବେଳେ କହେ ଯେ ପରୀକ୍ଷକ ନିଯୁକ୍ତି ଓ ପରୀକ୍ଷା ପରିଚାଳନା କରୁଥିବା ସିଣ୍ଡିକେଟ୍‌ରେ ଛାତ୍ରମାନଙ୍କର ଉପସ୍ଥିତି ସମୀଚୀନ ନୁହେଁ, ଅନ୍ୟ ପକ୍ଷ ଜବାବ ଦିଏ ଯେ କଲେଜ ଓ ବିଶ୍ୱବିଦ୍ୟାଳୟର ଦୈନନ୍ଦିନ ପରିଚାଳନା ସମ୍ବନ୍ଧୀୟ ବିଷୟମାନଙ୍କରେ ଭାଗ ନେଲାବେଳେ ପରୀକ୍ଷା ସମ୍ବନ୍ଧୀୟ କୌଣସି ଆଲୋଚନା ଆରମ୍ଭ ହେଲେ, ସାମୟିକ ଭାବରେ ଛାତ୍ର ପ୍ରତିନିଧି ସଭାକକ୍ଷରୁ ଓହରି ଆସିଲେ ଚଳିଯିବ ନାହିଁ କି ? ଏଥିରେ କିନ୍ତୁ ପୂର୍ବପକ୍ଷ ସନ୍ଦେହ ପ୍ରକାଶକରି ଇଙ୍ଗିତ ଦିଏ ଯେ ନାବିକ ସିନ୍ଦବାଦ ଗପର ବୁଢ଼ା ପରି ଛାତ୍ର ଯଦି ଥରେ ଶିକ୍ଷକର କାନ୍ଧରେ ଚଢ଼ିଯାଏ, ଆଉ କ'ଣ ତାକୁ ତଳକୁ ଖସାଇ ଦେଇହେବ ? ବିଷୟଟିର ଗୁରୁତ୍ୱକୁ ଲାଘବ କରିବାକୁ ଯାଇ କେହି କେହି ଶିକ୍ଷକ ଓ ଛାତ୍ରଙ୍କ ଶୁଭାକାଂକ୍ଷୀ ପରିହାସ ଛଳରେ ସୂଚନା ଦିଅନ୍ତି ଯେ କଲେଜ ଓ ବିଶ୍ୱବିଦ୍ୟାଳୟ ପରିଚାଳନାର ପ୍ରତ୍ୟେକ କ୍ଷେତ୍ରରେ ଅଂଶଗ୍ରହଣ ବାଧ୍ୟତାମୂଳକ କରି ଉପସ୍ଥାପନ ଯଦି ଶତକଡ଼ା ୭୫ କରି ଦିଆଯାଏ ତେବେ ବିଷୟଟିର ସମାଧାନ ଆପେ ଆପେ ହୋଇଯିବ ।

ତାର୍କିକ ମୀମାଂସା ଫଳରେ ଏପରି ବିଷୟସବୁର କିଛିଗୋଟିଏ ସମାଧାନ ହୋଇଯିବ ସତ, କିନ୍ତୁ ଏପରି ଆଲୋଚନାର ଶେଷ ପରିଣତି ଯେ କେଉଁଠି ସେ ବିଷୟ ନେଇ ଭାବିଲେ ବହୁତ ଦୁଃଖଲାଗେ । ଆଶଙ୍କା ଜନ୍ମେ ଯେ ଶିକ୍ଷକ ଓ ଛାତ୍ର ସମ୍ବନ୍ଧୀୟ ଆଲୋଚନା ପରି ପିତାପୁତ୍ର ସମ୍ବନ୍ଧୀୟ ଆଲୋଚନା ମଧ୍ୟ ଶୀଘ୍ର ଆରମ୍ଭ ହୋଇଯିବ ଓ ବାର୍ଦ୍ଧକ୍ୟ ଯୋଗୁଁ କର୍ମକ୍ଷମତା ହରାଇ ବସିଥିବା ପିତା ଅକର୍ମଣ୍ୟ, ଅନ୍ନଧ୍ୱଂସକାରୀ, ସମାଜର ଗୋଟିଏ ପରାଙ୍ଗପୁଷ୍ଟ ଜୀବ ହିସାବରେ ଗୃହ-ପରିଚାଳନାର ଚାବିକାଠି ପୁଅହାତକୁ ବଢ଼ାଇଦେବାକୁ ବାଧହୋଇ ବାନପ୍ରସ୍ଥ ଗ୍ରହଣ କରିବ ।

ଆଜିର ଛାତ୍ର କାଲିର ଶିକ୍ଷକ ଓ ଆଜିର ପୁତ୍ର କାଲିର ପିତା । ତେଣୁ ଆଜିର ଯୁବସମାଜ ଯେଉଁ ନୂତନ ପରମ୍ପରା ସୃଷ୍ଟି କରିବାକୁ ଯାଉଛନ୍ତି ସେଥିର ପରିଣାମ ସେମାନେ ନିଜେ ଭୋଗିବେ ନାହିଁ କି ? ନିଜ କାର୍ଯ୍ୟକଳାପର ପରିଣତି ଅନୁଭବ କରି ଯେତେବେଳେ ସେମାନେ ଅନୁତାପ କରିବେ ସେତେବେଳକୁ ଲେଡ଼ି ଗୁଡ଼ କହୁଣୀକି ବୋହି ଯାଇ ସାରିଥିବ ।

# ଭୁଷ୍ ପଣ୍ଡିତ

'ପଣ୍ଡିତ' ଓ 'ମୂର୍ଖ' - ଦିଓଟି ବିପରୀତ ଅର୍ଥବ୍ୟଞ୍ଜକ ଶବ୍ଦ । ଏ ଦୁଇଟି ଶବ୍ଦ ସାଧାରଣଭାବରେ ଶିକ୍ଷିତ ଓ ଅଶିକ୍ଷିତ ସଙ୍ଗରେ ସମାନ ବୋଲି ଜଣା ପଡୁଥିଲେ ହେଁ ମୂର୍ଖକୁ ଯେପରି ଅଶିକ୍ଷିତର ଠିକ୍ ପ୍ରତିଶବ୍ଦ ବୋଲି ଧରିନିଆଯାଇପାରେ ନାହିଁ ପଣ୍ଡିତକୁ ସେପରି ଶିକ୍ଷିତର ପ୍ରତିଶବ୍ଦ ବୋଲି ଗ୍ରହଣ କରାଯାଇ ନପାରେ । ମୂର୍ଖ ଓ ପଣ୍ଡିତ ଭିତରେ ବ୍ୟବଧାନ ଯେତେ, ଶିକ୍ଷିତ ଓ ଅଶିକ୍ଷିତର ବ୍ୟବଧାନ ତା'ଠାରୁ ଯଥେଷ୍ଟ କମ୍ ବୋଲି ମନେହୁଏ ।

ଶିକ୍ଷିତ ଶବ୍ଦରେ କେତୋଟି ଶ୍ରେଣୀ ବିଭାଗ ରହିଛି - ଯଥା ଅର୍ଦ୍ଧଶିକ୍ଷିତ, ଶିକ୍ଷିତ ଓ ଉଚ୍ଚଶିକ୍ଷିତ । ପଣ୍ଡିତ କହିଲେ ଉଚ୍ଚ ଶିକ୍ଷିତଠାରୁ ମଧ୍ୟ ଉର୍ଦ୍ଧ୍ୱରେ ଥିବା ଜଣେ ବୋଲି ମନରେ ଧାରଣା ଜନ୍ମେ । ଠିକ୍ ସେପରି ମୂର୍ଖ କହିଲେ ଅଶିକ୍ଷିତଠାରୁ ଯଥେଷ୍ଟ ନିମ୍ନ ଶ୍ରେଣୀର କେହି ବୋଲି ଖିଆଲ ହୁଏ ।

ମୂର୍ଖ ଓ ପଣ୍ଡିତ ମଧ୍ୟରେ ଥିବା ଏହି ବ୍ୟବଧାନ ଯୋଗୁଁ ମୂର୍ଖକୁ ପଣ୍ଡିତ କିମ୍ବା ପଣ୍ଡିତକୁ ମୂର୍ଖ ବୋଲି ଭୁଲ କରି ବସିବା ପ୍ରଶ୍ନ ସାଧାରଣତଃ ନ ଉଠିବା କଥା । ତଥାପି କେହିକେହି ମୂର୍ଖ ଧନ ଓ କ୍ଷମତା ବଳରେ ନିଜର ଡିଣ୍ଡିମ ନିଜେ ପିଟି ଅଥବା ନିଜର କାହାଳୀ ନିଜେ ବଜାଇ ଆପଣାକୁ ପଣ୍ଡିତ ବୋଲି ପରିଚୟଦେବାକୁ ଚେଷ୍ଟାକରନ୍ତି । କୋଇଲି ବେଶରେ ବୁଲୁଥିବା କେହିକେହି ଏପରି କାଉ ପାଟି ଖୋଲିଲା ପରେ ମଧ୍ୟ ସହଜରେ ଧରା ପଡ଼ନ୍ତିନି । ଜାଣିବା ଶୁଣିବା ଲୋକେ ଏମାନଙ୍କୁ ପଣ୍ଡିତମ୍ମନ୍ୟ ବୋଲି କହନ୍ତି । ଅନ୍ୟ ପକ୍ଷରେ ବିନୟ ଓ ନମ୍ରତାର ପ୍ରତୀକ କେହିକେହି ଜ୍ଞାନୀ ପଣ୍ଡିତ ନିଜର ନଗଣ୍ୟତା ପ୍ରତିପାଦନ କରିବାକୁ ଯାଇ ଆପଣାକୁ ମୂର୍ଖ ବୋଲି ବର୍ଣ୍ଣନା କରିଥାଆନ୍ତି ।

ଏ ସମସ୍ତଙ୍କୁ ଛାଡ଼ି ମଣିଷ ସମାଜରେ ଆଉ ଗୋଟିଏ ଜାତିର ପଣ୍ଡିତ ଦେଖିବାକୁ ମିଳନ୍ତି । ଏମାନେ ବିଦ୍ୟାରେ ପଣ୍ଡିତ ହେଲେ ହେଁ ବୁଦ୍ଧିରେ ମୂର୍ଖ । ଏମାନଙ୍କ ପାଣ୍ଡିତ୍ୟ ଠିକ୍ ଶୁଆ-ଶାରୀଙ୍କ ପାଣ୍ଡିତ୍ୟ ପରି । ଏପରି ପଣ୍ଡିତମାନଙ୍କୁ ସାଧାରଣତଃ ମୂର୍ଖ-ପଣ୍ଡିତ ଆଖ୍ୟା ଦିଆଯାଇଥାଏ ।

ଆଜିକାଲିର ଅନେକ ବିଶ୍ୱବିଦ୍ୟାଳୟ ଡିଗ୍ରୀ ଓ ଉପାଧିଧାରୀ ବିଦ୍ୟାରେ ପଣ୍ଡିତ ହେଲେ ହେଁ ବିଦ୍ୟାର ପ୍ରୟୋଗ ସମ୍ବନ୍ଧରେ ଅନଭିଜ୍ଞ ହେଉଥିବାରୁ ଆମ ସମାଜ ଏମାନଙ୍କୁ ମଧ ମୂର୍ଖ-ପଣ୍ଡିତ ବୋଲି ଗଣିବାକୁ ଆରମ୍ଭ କଲାଣି । ତେଣୁ ଅନେକେ ଆମ ଦେଶରେ ପ୍ରଚଳିତ ଆଧୁନିକ ଶିକ୍ଷାକୁ ମୂର୍ଖ-ପଣ୍ଡିତ ସୃଷ୍ଟିକାରୀ ଶିକ୍ଷା ବୋଲି ବେଳେବେଳେ ପରିହାସ କରୁଛନ୍ତି ।

ଆଜିର ଶିକ୍ଷା ଯେ କେବଳ ଏପରି ମୂର୍ଖ-ପଣ୍ଡିତ ସୃଷ୍ଟି କରୁଛି ସେ କଥା କହିବା କିନ୍ତୁ ଅନ୍ୟାୟ ହେବ । ପୂର୍ବକାଳରେ ଶିକ୍ଷା ମଧ ଏପରି ମୂର୍ଖ-ପଣ୍ଡିତ ସୃଷ୍ଟି କରୁଥିଲା ବୋଲି ପରୋକ୍ଷ ଦୃଷ୍ଟାନ୍ତ ମିଳେ ।

ସଂସ୍କୃତରେ ଥିବା ଚାରି ମୂର୍ଖ-ପଣ୍ଡିତଙ୍କ ଗଳ୍ପ ଅତି ଜଣାଶୁଣା । ତଥାପି ସେ ଉପାଖ୍ୟାନଟି ଏତେ ମନୋରଞ୍ଜକ ଯେ, ଏଠାରେ ସାଧାରଣ ଭାବରେ ତା'ର ପୁନରାବୃତ୍ତି କରାଯାଇ ପାରେ ।

ବିଦ୍ୟାନଗରୀ କାଶୀ ବାରାଣସୀରେ ବିଦ୍ୟାଧନ ଶେଷ କଲାପରେ ନାନା ଉପାଧିରେ ଭୂଷିତ ହୋଇ ଓ ଅନେକ ପୋଥିପତ୍ର ଧରି ନାନା ପ୍ରାନ୍ତରୁ ଆସିଥିବା ପଣ୍ଡିତମାନେ ନିଜନିଜ ପ୍ରଦେଶକୁ ଫେରିଯାଉଥିଲେ । ଚାରି ସହପାଠୀଙ୍କ ବାଟ କିଛିଦୂର ସମାନ । ସେମାନେ ସେବାଟରେ ଏକାଠି ଗଲାବେଳେ ଗୋଟିଏ ଶ୍ମଶାନ ପଡ଼ିଲା । ଶ୍ମଶାନରେ ଗଧଟିଏ ଚରୁଥିବା ଦେଖି ଜଣେ ପଣ୍ଡିତ ଶ୍ଳୋକ ବୋଲିଦେଲେ - 'ରାଜ ଦ୍ୱାରେ ଶ୍ମଶାନେ ଚ ଯଃ ତିଷ୍ଠତି ସ ବାନ୍ଧବଃ !' ଶ୍ମଶାନରେ ଥିବା ଗଧ ଯେ ଶାସ୍ତ୍ରୋକ୍ତମତେ ସେମାନଙ୍କର ବନ୍ଧୁ ସେ ସମ୍ବନ୍ଧରେ ନିଃସନ୍ଦେହ ହୋଇ ପଣ୍ଡିତମାନେ ବନ୍ଧୁଚର୍ଚ୍ଚା ଆରମ୍ଭ କରିଦେଲେ । କିଏ ଘାସ ଦି' ଚାରିକେରା ଉପାଡ଼ିଆଣି ଗଧମୁହଁରେ ଦେଲା - କିଏ ଗଧର ପିଠି ଆଉଁସି ଦେଲା, କିଏ ଗୋଡ଼ ଛନ୍ଦାହୋଇଥିବା ଦଉଡ଼ି ଖୋଲି ବସିଲା, ଆଉ କିଏ ବା ଲାଞ୍ଜରେ ଲାଗିଥିବା ଟିଙ୍କ ସବୁ ବାଛିବାକୁ ଲାଗିଲା ।

ହଠାତ୍ ଜଣେ ପଣ୍ଡିତ ଆବିଷ୍କାର କଲେ ଯେ ଏ ଭିତରେ ଓଟଟିଏ କେଉଁଠୁ ସେ ପାଖକୁ ଚାଲିଆସିଛି । ପଣ୍ଡିତମାନେ ଆପଣା ଆପଣା ମଧରେ ଆଲୋଚନା କଲେ - କିଛିକ୍ଷଣ ପୂର୍ବରୁ ନଥିବା ଏ ଓଟ ଏତେଶୀଘ୍ର ଆସିଲା କେଉଁଠୁ ? ଜଣେ ଏଥର ଶ୍ଳୋକ ବୋଲିଲେ, 'ଧର୍ମସ୍ୟ ତ୍ୱରିତା ଗତି' । ଏପରି ଚଞ୍ଚଳ ଆସିଥିବା ଜୀବ ଦେଖିବାକୁ ଓଟ ରୂପୀ ହେଲେହେଁ ନିଶ୍ଚୟ ଯେ ଧର୍ମ ସେ ସମ୍ବନ୍ଧରେ ପଣ୍ଡିତମାନଙ୍କ ସନ୍ଦେହ ରହିଲାନି । ଆଉଜଣେ ପଣ୍ଡିତ ଏଠାରେ ଶ୍ଳୋକ

ଗାଇଦେଲେ - 'ଇଷ୍ଟଂ ଧର୍ମେଣ ଯୋଜୟେତ୍ ।' ଧର୍ମକୁ ନିଜର ପ୍ରିୟବସ୍ତୁ ପ୍ରଦାନ କରିବା କଥା । ତେଣୁ ଶ୍ମଶାନରେ ସେମାନଙ୍କ ପାଖରେ ରହିଥିବା ପ୍ରିୟବନ୍ଧୁ ଗଧକୁ କୌଣସିମତେ ଟେକାଟେକି କରି ଓଟର ତୋଟିରେ ବାନ୍ଧିବାକୁ ସମସ୍ତେ ଚେଷ୍ଟା କଲେ । ଫଳ ଯାହା ହୋଇଥିବ ତାହା କେବଳ କଳ୍ପନା କରାଯାଇପାରେ ।

ଗଳ୍ପ କିନ୍ତୁ ଏତିକିରେ ଶେଷ ହୋଇନି । ଆଉ ଅନେକ କିଛି ଘଟିଛି । ଚାରି ବନ୍ଧୁ ଏପରି ଘଟଣାବହୁଳ ଅନେକ ବାଟ ଗଲାପରେ ଗୋଟିଏ ନଈ ପଡ଼ିଲା । ନଈ ପାରି ହୋଇ ଜଣେ ବନ୍ଧୁ ଏଠାରେ ଅଲଗା ବାଟରେ ଚାଲିଯିବେ । ବନ୍ଧୁମାନଙ୍କଠାରୁ ବିଦାୟ ନେଇ ପଣ୍ଡିତ ନଈ ଭିତରେ ପଶିଲେ, ଆଉ ପାଣିର ସୁଅ ଠିକ୍ କଳନା କରିପାରି ନଥିବା ଯୋଗୁଁ ସେ ସୁଅରେ ଭାସିଯିବାକୁ ଲାଗିଲେ । ଅନ୍ୟ ପଣ୍ଡିତମାନେ କ'ଣ କରିବେ କିଛି ବୁଝି ନପାରି କୂଳରେ ଦଉଡ଼ି ଯାଉଯାଉ ଜଣେ ପଣ୍ଡିତ ଶ୍ଲୋକ ବୋଲିଦେଲେ - 'ସର୍ବନାଶ ସମୁତ୍ପନ୍ନେ ଅର୍ଦ୍ଧଂ ତ୍ୟଜନ୍ତି ପଣ୍ଡିତଃ' । ଗୋଟାଯାକ ପଣ୍ଡିତ ଭାସିଯିବା ଅପେକ୍ଷା ଅନ୍ତତଃ ଅଧା ପଣ୍ଡିତ ରକ୍ଷାପାଇବା ଉଚିତ ଭାବି ତାଙ୍କ ପାଖରେ ଥିବା କାତି ସାହାଯ୍ୟରେ ଭାସି ଯାଉଥିବା ପଣ୍ଡିତଙ୍କ ମୁଣ୍ଡ କାଟିଆଣିଲେ ।

ଗଳ୍ପଟି ଯେ ସମ୍ପୂର୍ଣ୍ଣ କାଳ୍ପନିକ ଏଥିରେ ସନ୍ଦେହ ନାହିଁ । ତଥାପି ବୁଦ୍ଧି ନଥିଲେ ବିଦ୍ୟା କିପରି ଅକାରଣହୁଏ ସେ କଥା ସେଦିନର ପରିବେଶମଧ୍ୟରେ ଏ ଗପ ସୁନ୍ଦର ଭାବରେ ସୂଚାଇ ଦିଏ ।

ଏ ସମ୍ବନ୍ଧରେ ଆଉ ଗୋଟିଏ ସୁନ୍ଦର ଜଣାଶୁଣା କାହାଣୀ ଏଠାରେ କୁହାଯାଇପାରେ ।

ଘରେ ପଣ୍ଡିତ ଓ ପଣ୍ଡିତିଆଣୀ ଦୁଇପ୍ରାଣୀ । ସକାଳବେଳେ ପଣ୍ଡିତିଆଣୀ ଗାଧୋଇ ଯିବାପାଇଁ ନଈଆଡ଼ିକି ବାହାରିଛନ୍ତି । ଚୁଲି ଉପରେ ଦୁଧହାଣ୍ଡି ବସିଛି । ପଣ୍ଡିତଙ୍କୁ ଅନୁରୋଧ କଲେ ଯେ ଦୁଧହାଣ୍ଡି ଆଡ଼ିକି ଟିକିଏ ନଜର ରଖିଥିବେ - ଦୁଧ ଯେମିତି ଉତୁରି ନ ଯାଏ ।

କିଛି ସମୟ ଗଲା । ସତକୁ ସତ ଦୁଧ ଫୁଲିଉଠି ହାଣ୍ଡିରୁ ଉଛୁଳିବାକୁ ଆରମ୍ଭ କଲା । ପଣ୍ଡିତେ ହାଣ୍ଡିପାଖକୁ ଦଉଡ଼ି ଆସିଲେ । କିନ୍ତୁ କ'ଣ କରି ଅବସ୍ଥାକୁ ସମ୍ଭାଳିବେ ବୁଝିପାରିଲେନି । ଅଗ୍ନି ଦେବତାଙ୍କ କୋପ ବୋଲି ମନେକରି ସେ ସେଠାରେ ଅର୍ଦ୍ଧ ପଦ୍ମାସନରେ ବସି ଅଗ୍ନି ଦେବତାଙ୍କ ଶାନ୍ତିମନ୍ତ୍ର ଉଚ୍ଚାରଣ କରିବାକୁ ଲାଗିଲେ । ଅଗ୍ନି, ବୈଶ୍ୱାନର ବହ୍ନି ପ୍ରଭୃତି ଅମରକୋଷରୁ ଶିଖିଥିବା

ସମସ୍ତ ନାମ ଜପକଲେ - ଯଜ୍ଞରେ ବହୁତ ଘିଅ ଖାଇବା ଫଳରେ କିପରି ତାଙ୍କର ଲୁହୁବୁହୁ ବ୍ୟାଧି ହୋଇଥିଲା ଆଉ ଅର୍ଜୁନଙ୍କ ଖାଣ୍ଡବ ବନ ଦହନଫଳରେ କିପରି ସେ ବ୍ୟାଧି ଆରୋଗ୍ୟ ହୋଇଥିଲା ସେ କଥା କହିଲେ, ଆଉ 'ତୁ ଅଗ୍ନି ଦେବତା ନାନା ସ୍ଥାନରେ ରହି, ନାନା ନାମ ବହି, ନାନା ରୂପରେ ଦେଖାଦେଉ ଓ ତୁ ହିଁ ସର୍ବଶକ୍ତିମାନ୍', ସେ କଥା ମଧ୍ୟ କହିବାକୁ ଛାଡ଼ିଲେନି - ତଥାପି ଦୁଧ ଉଛୁଳିବାକୁ ଲାଗିଲା ।

ପଣ୍ଡିତେ ଭାବିଲେ ଯେ, ସେ ବୋଧହୁଏ ଭୁଲ ଦେବତାଙ୍କୁ ଆରାଧନା କରୁଛନ୍ତି । ମନରେ ସ୍ଥିରକଲେ ଯେ ଦୁଧରେ ପାଣି ମିଶୁଥିବା ଯୋଗୁଁ ପାଣି କମ୍ କିମ୍ବା ବେଶି ହେବା ଫଳରେ ବରୁଣ ଦେବତାଙ୍କ କୋପ ହୋଇଛି । ସେ ତେଣୁ ବରୁଣ ଦେବତାଙ୍କ ସ୍ତୁତି ଆରମ୍ଭ କଲେ । ବରୁଣ ଦେବତାଙ୍କ ରୂପ କିପରି, ସେ କ'ଣ ସବୁ ପିନ୍ଧନ୍ତି, କେଉଁଠି ଶୁଅନ୍ତି, ତାଙ୍କର ଧନରତ୍ନ କେତେ ସେ ସବୁ ବର୍ଣ୍ଣନା କଲାପରେ ପ୍ରଳୟ ହେଲେ ସୃଷ୍ଟିର ବିନାଶ କିପରି ହୁଏ ଆଉ ବରୁଣ ନିଜେ କିପରି ଭଗବାନଙ୍କ ଶ୍ୱଶୁର, ସେ ସବୁ ମଧ୍ୟ କହିଲେ, କିନ୍ତୁ କିଛି ଲାଭ ହେଲାନି । ତା'ପରେ ପବନ ଦେବତାଙ୍କ ଧ୍ୟାନ ଆରମ୍ଭ କରି ଦେଇଛନ୍ତି ଏ ସମୟରେ ପଣ୍ଡିତିଆଣୀ ତରତର ହୋଇ ଘରେ ପହଞ୍ଚିଗଲେ । ଚୁଲି ଉପରେ ବସିଥିବା ଦୁଧ ହାଣ୍ଡିର ଅବସ୍ଥା, ପଣ୍ଡିତଙ୍କ ଅର୍ଦ୍ଧ-ପଦ୍ମାସନ ଓ ହସ୍ତର ଧେନୁମୁଦ୍ରା ଦେଖି କଥା କ'ଣ ବୁଝିବାକୁ ତାଙ୍କୁ ବେଶି ସମୟ ଲାଗିଲାନି । ସେ ଦଉଡ଼ିଯାଇ ହାତରେ ଥିବା ଡାଲରୁ ପାଣି ପୋଷେ ହାଣ୍ଡିଭିତରକୁ ଛାଟିଦେଇ ଜାଳ ଟିକିଏ କମ୍ କରିଦେଲେ । ଦୁଧ ଉତୁରିବା କମିଗଲା ।

ପଣ୍ଡିତେ ଏ ସବୁ ନିରୀକ୍ଷଣ କରୁଥିଲେ । ପାଣିନୀଙ୍କ ବ୍ୟାକରଣ ଓ ଅମରକୋଷ ଅଭିଧାନ ସମ୍ବନ୍ଧରେ ପଣ୍ଡିତିଆଣୀଙ୍କ ଜ୍ଞାନ ଅତି ସୀମିତ ଥିବାଯୋଗୁଁ ସେ ତାଙ୍କୁ ମୂର୍ଖ ବୋଲି ମନେକରି ଯଥୋଚିତ ସମ୍ମାନ ଦେବାକୁ କୁଣ୍ଠାବୋଧ କରୁଥିଲେ । ଏଥର କିନ୍ତୁ ତାଙ୍କ ମତ ବଦଳିଯାଇଥିଲା ।

ବ୍ୟାବହାରିକ ତଥା ପ୍ରୟୋଗାତ୍ମକ ଜ୍ଞାନ ବିନା ବିଦ୍ୟା ଯେ ନିରର୍ଥକ ଏ କଥା ସତ । ଏହି ବ୍ୟାବହାରିକ ଜ୍ଞାନହିଁ ପ୍ରକାରାନ୍ତରେ ବୁଦ୍ଧି ବୋଲି ବିବେଚିତ ହୋଇଥାଏ ।

ଏଠାରେ ସ୍ୱାଭାବିକ ଭାବରେ ପ୍ରଶ୍ନ ଉଠେ ଯେ, ବିଦ୍ୟା ଓ ବୁଦ୍ଧି ମଧ୍ୟରେ ସିଧା ସଳଖ କୌଣସି ସମ୍ବନ୍ଧ ଅଛି ନା ନାହିଁ ଓ ବିଦ୍ୟାର ମାଧ୍ୟମରେ ବୁଦ୍ଧିଦାନ

ସମ୍ଭବପର କି ନୁହେଁ । ପଣ୍ଡିତିଆଣୀଙ୍କ ପରି ଅନେକ ଅଛନ୍ତି ଯେଉଁମାନଙ୍କର ବିଦ୍ୟା ନାହିଁ - କିନ୍ତୁ ବୁଦ୍ଧି ଅଛି । ଅନେକ ଅଛନ୍ତି, ସେମାନେ ଶିକ୍ଷିତ ନ ହେଲେ ହେଁ କାର୍ଯ୍ୟଦକ୍ଷ, କର୍ମ ନିପୁଣ ଓ କର୍ମକୁଶଳୀ, କୋକିଶିଆଳୀ ପରି ଧୂର୍ତ୍ତ - କାଉ ପରି ଚତୁର ।

କେହିକେହି କହନ୍ତି, ଇନ୍ଦ୍ରିୟ ଓ ମନ ପରି ବୁଦ୍ଧିର ସ୍ୱତନ୍ତ୍ର ସ୍ଥିତି ରହିଛି । ବୁଦ୍ଧି ତେଣୁ ସାଧାରଣ ଭାବରେ ଜନ୍ମଗତ । ବିଦ୍ୟା ସାହାଯ୍ୟରେ ବୁଦ୍ଧିକୁ ମାର୍ଜିତ ତଥା ତୀକ୍ଷ୍ଣ କରାଯାଇପାରେ, ଏବଂ କ୍ରମାନ୍ୱୟ ଅଭ୍ୟାସ ବଳରେ ଓ ପର୍ଯ୍ୟବେକ୍ଷଣ ଦ୍ୱାରା ବୁଦ୍ଧିର ସୀମାକୁ ଯଥେଷ୍ଟ ବିସ୍ତୀର୍ଣ୍ଣ କରି ଦିଆଯାଇପାରେ । କିନ୍ତୁ ଯେଉଁଠି ବୁଦ୍ଧିର ସମ୍ପୂର୍ଣ୍ଣ ଅଭାବ ସେଇଠି ତାକୁ ଯେ ଆରୋପ କରି ଦିଆଯାଇ ପାରିବ ସେ ସମ୍ବନ୍ଧରେ ମନରେ ସନ୍ଦେହ ଜନ୍ମେ ।

ଶିକ୍ଷା କିମ୍ବା ବିଦ୍ୟା ମୁଖ୍ୟତଃ ତାତ୍ତ୍ୱିକ । ବୁଦ୍ଧି ବଳରେ ତା'ର ପ୍ରୟୋଗ ହୁଏ । ଯେଉଁ ଶିକ୍ଷାରେ ତତ୍ତ୍ୱସହ ପ୍ରୟୋଗ ସମ୍ବନ୍ଧରେ ମଧ୍ୟ କିଛି ସୂଚନା ଦିଆଯାଏ - ତାହାହିଁ ପ୍ରୟୋଗାତ୍ମକ ବିଦ୍ୟା ।

ଯେଉଁମାନେ ଭାବନ୍ତି ଯେ କେବଳ ଶିକ୍ଷାକୁ ପ୍ରୟୋଗାତ୍ମକ ବା ଧନ୍ଦାମୂଳକ କରିଦେଲେ ଆଜିର ସବୁ ସମସ୍ୟା ଆପେଆପେ ଦୂରହୋଇଯିବ ସେମାନେ ବୋଧହୁଏ ଭୁଲ କରିବସନ୍ତି । ପ୍ରୟୋଗାତ୍ମକ ବିଦ୍ୟା ସ୍ୱୟଂ ସମ୍ପୂର୍ଣ୍ଣ ନୁହେଁ । ତାହା ମଧ୍ୟ ତାତ୍ତ୍ୱିକ । ଏପରି ବିଦ୍ୟା ଅର୍ଜନକରି ମଧ୍ୟ ବ୍ୟବହାର କ୍ଷେତ୍ରରେ କୌଶଳୀ ନହେଲେ ତା'ର ପ୍ରୟୋଗ ଆପେଆପେ କରିହେବ ନାହିଁ । ସେଥିପାଇଁ ଭିନ୍ନଭିନ୍ନ ଡାକ୍ତର କିମ୍ବା ଇଞ୍ଜିନିୟର ପ୍ରଭୃତି ବିଶେଷଜ୍ଞମାନଙ୍କ ମଧ୍ୟରେ ଗୁଣାତ୍ମକ ପାର୍ଥକ୍ୟ ଦେଖିବାକୁ ମିଳେ । ପିଲାମାନେ ବ୍ୟବହାର ସମ୍ବନ୍ଧୀୟ ସାଧାରଣ ଜ୍ଞାନ ଓ ହସ୍ତପଟୁତା କ୍ଲାସରୁମ୍ ଅପେକ୍ଷା ବିଶେଷଭାବରେ ନିଜ ଘରେ ଓ ଘରର ପରିବେଶ ମଧ୍ୟରେ ବାପା ମା'ଙ୍କ ପାଖରୁ ଶିଖନ୍ତି । ତେଣୁ ଯେଉଁଠି ବାପା ମା' ଏ ସବୁ ବିଷୟରେ ଉଦାସୀନ ସେଠାରେ ତାତ୍ତ୍ୱିକ ବିଦ୍ୟାରେ ଯେତେ ଧୂରୀଣ ହେଲେ ମଧ୍ୟ ପିଲାମାନଙ୍କର ବ୍ୟାବହାରିକ ବୁଦ୍ଧିର ବିକାଶ ଘଟେନାହିଁ ।

ଏଠାରେ ସାଧାରଣ ଭାବରେ ଗୋଟିଏ ଉଦାହରଣ ଦିଆଯାଇପାରେ । ଓଡ଼ିଶା ଓ ପଞ୍ଜାବ ତଥା ହରିଆନାର କୃଷି, ଇଞ୍ଜିନିୟରିଂ ତଥା ପଶୁ ଚିକିତ୍ସା ବିଜ୍ଞାନ ପ୍ରାୟ ଏକା ଧରଣର । ତଥାପି ପଞ୍ଜାବ ଓ ହରିଆନାରେ ଯେତେବେଳେ ଅନେକେ ଏ ସବୁ ଶିକ୍ଷା ପାଇସାରିଲା ପରେ ସେହି ବିଦ୍ୟା ବଳରେ ନିଜନିଜ

କର୍ମସଂସ୍ଥାନ କରି ବସନ୍ତି ଓ ସେ ପ୍ରଦେଶମାନଙ୍କରେ ଏ ସବୁ କ୍ଷେତ୍ରରେ ସରକାରୀ ଚାକିରି ପାଇଁ ପ୍ରାର୍ଥୀର ଅଭାବ ପଡ଼େ, ଓଡ଼ିଶାର ସହରମାନଙ୍କରେ ଦୁଧ ଓ ଅଣ୍ଡାର ଅଭାବ ଥିଲାବେଳେ ଚାଷୋପଯୋଗୀ ଜମି ଶସ୍ତାରେ ମିଳୁଥିଲେ ମଧ ଓ ଛୋଟ ଛୋଟ କଳକାରଖାନାର ଯଥେଷ୍ଟ ଅଭାବ ଥାଉ ଥାଉ ଓଡ଼ିଶାର ଡିଗ୍ରୀଧାରୀ ପଶୁ ଚିକିତ୍ସା, କୃଷି ଓ କାରିଗରୀ ବିଜ୍ଞାନବିତ୍‌ମାନେ ବେକାର ହୋଇ ବସି ରହି ସରକାରୀ ଚାକିରିକୁ ଚାହିଁ ରହନ୍ତି । ଠିକ୍ ସେପରି ଏକା କଲେଜରୁ ପାଶ୍ କରି ମାରୁଆଡ଼ୀ ଘର ପୁଅ କିମ୍ବା କୌଣସି ଶିଖ୍ ଘର ପୁଅ କର୍ମସଂସ୍ଥାନର ଅଭାବଜନିତ ଦୁର୍ଦ୍ଦଶା ଭୋଗୁ ନଥିଲାବେଳେ ଓଡ଼ିଆ ପୁଅ ମୁଣ୍ଡରେ ହାତ ଦେଇ ବସେ । ମାରୁଆଡ଼ୀ ଘରର ପିଲାମାନେ ପିଲାଦିନରୁ ବାପର ଦୋକାନରେ ବସି ବାପକୁ ଘଣ୍ଟାଏ ଦୁଇଘଣ୍ଟା ସାହାଯ୍ୟ କରି ସେମାନଙ୍କ ବାଣିଜ୍ୟ ବ୍ୟ ସାୟ ବୁଦ୍ଧିକୁ ଆଗରୁ ପ୍ରଶସ୍ତ କରି ଥିବାରୁ ବିଦ୍ୟାର ପ୍ରୟୋଗକୁ ସହଜ ବୋଲି ଜ୍ଞାନ କରନ୍ତି । ସେପରି ଶିଖ୍ ପୁଅ ଛୁଆ ଦିନୁ ବାପର ଭଙ୍ଗା ଗାଡ଼ି ତଳେ ଶୋଇ ନଟ୍, ବୋଲ୍‌ଟ କଷାକଷି ଆରମ୍ଭ କରିଦେଇଥିବା ଫଳରେ, କଲେଜରୁ ଅତି କଷ୍ଟରେ ପାଶ୍ କରିଥିଲେ ମଧ କର୍ମକ୍ଷେତ୍ରରେ ଶୀଘ୍ର ପଟୁତା ଲାଭକରେ । ଇଂଲଣ୍ଡ, ଆମେରିକା, ଜାପାନ ପ୍ରଭୃତି ଦେଶମାନଙ୍କରେ ପିଲାମାନେ ଘରେଘରେ ସାଧାରଣ ବ୍ୟାବହାରିକ ବିଦ୍ୟା ଅନେକ ପରିମାଣରେ ହାସଲ କରିନେଇଥାଆନ୍ତି, ଯାହାଫଳରେ କଲେଜର ତାତ୍ତ୍ୱିକ ବିଦ୍ୟାର ପ୍ରୟୋଗ ସେମାନଙ୍କ ପାଇଁ ସହଜ ସାଧ ହୁଏ ।

ଯେଉଁଠି ବାପା ମା' ପିଲା ଦିନରୁ 'ଅନ୍ଧାର ହେଲାଣି - କୋକୋମିନା ନେଇଯିବ, କାବୁଲୀବାଲା ପିଲାଙ୍କୁ ମୁଣିରେ ଭର୍ତ୍ତିକରି ନେଉଛି, ପଠାଣ ବୁଢ଼ା ବସିଛି,' ଠାରୁ ଆରମ୍ଭ କରି 'ଗାଈ ପାଖକୁ ଯାଆ ନା - ଲାତ ମାରି ଦେବ; କୁର୍‌ହାଡ଼ି କାହିଁକି ଧରୁଛୁ - ଗୋଡ଼ରେ ବାଜିବ; ଦା' ସଙ୍ଗରେ ଖେଳ ନା - ଆଙ୍ଗୁଠି କଟିଯିବ', ଭୂତ, ସାପ, ବିଛା କହି କହି ଛୁଆଙ୍କୁ ବଢ଼ାଇ ଆସୁଛନ୍ତି - ଯେଉଁଠି ପିଲାଟି ଦିନରୁ ଘରେ ଶିଖା ହେଉଛି ଯେ - 'ତୁ ବ୍ରାହ୍ମଣ ଘରର ପୁଅ ହୋଇ ହଳ ଧରିବୁ ? ଭାର ବୋହିବୁ ? ମାଟି ହାଣିବୁ ?' ସେଇଠି ଆଜିର ଶିକ୍ଷାପଦ୍ଧତି ଯେତେ ତ୍ରୁଟିପୂର୍ଣ୍ଣ ହେଲେ ମଧ ତା' ଉପରେ ସବୁ ଦୋଷ ଢାଳି ଦେବା ଅନ୍ୟାୟ ବୋଲି ମନେ ହୁଏ ।

# ଶିକ୍ଷା ପଦ୍ଧତିର ଗୋଲକଧନ୍ଦା

ରେଳଗାଡ଼ିର ତୃତୀୟ ଶ୍ରେଣୀ ଡବା ଭାରତୀୟ ସାଧାରଣ ଜୀବନର ମୂର୍ତ୍ତିମନ୍ତ ପ୍ରତୀକ ।

ଜନସାଧାରଣଙ୍କ ପଦମର୍ଯ୍ୟାଦା ଦୃଷ୍ଟିରୁ ହେଉ ଅଥବା ଭାରତୀୟ ଜୀବନଧାରଣର ମାନ ତୃତୀୟ ଶ୍ରେଣୀରୁ ଦ୍ୱିତୀୟ ଶ୍ରେଣୀକୁ ଉନ୍ନୀତ ହୋଇଗଲାଣି ବୋଲି ପ୍ରମାଣ କରିବା ଉଦ୍ଦେଶ୍ୟରେ ହେଉ; କିମ୍ବା ଅନ୍ୟ କୌଣସି ଅଜଣା କାରଣରୁ ରେଳଗାଡ଼ିର ତୃତୀୟ ଶ୍ରେଣୀ ଏବେ ଉଠି ଯାଇଥିଲେ ମଧ ଭାରତୀୟ ଜୀବନ ଧାରଣର ଯେ କୌଣସି ଦିଗ ଏହି ତୃତୀୟ ଶ୍ରେଣୀ ଡବା ସଙ୍ଗରେ ତୁଳନୀୟ । ତେଣୁ ପ୍ରଚଳିତ ଶିକ୍ଷା ପଦ୍ଧତିକୁ ରେଳଗାଡ଼ିର ଏହି ତୃତୀୟ ଶ୍ରେଣୀ ସଙ୍ଗରେ ତୁଳନା କରାଯାଇ ପାରେ ।

ଘଣ୍ଟାଘଣ୍ଟା ଅପେକ୍ଷାକରି ରହିବା ଭିତରେ ପ୍ଲାଟଫର୍ମରୁ ବିଶ୍ରାମାଗାର, ବିଶ୍ରାମାଗାରରୁ ଚା' ଦୋକାନ, ସିମେଣ୍ଟ ବେଞ୍ଚ, ଟିକେଟ ବିକ୍ରି ଝରକା ଘୂରିବୁଲି ବେଡ଼ିଂ ଉପରେ କିମ୍ବା ବାକ୍ସଉପରେ ବସି ହାଇ ମାରିମାରି ସମ୍ପୂର୍ଣ୍ଣ ହାଲିଆ ହୋଇଗଲାବେଳକୁ ଶେଷରେ ଟ୍ରେନ ଯେତେବେଳେ ଷ୍ଟେସନରେ ପହଞ୍ଚିଯାଏ, ''ଗରମ ଚା', ପାନ ବିଡ଼ି ସିଗାରେଟ, ଚୀନାବାଦାମ...ର ତଣ୍ଟିଫଟା ରଡ଼ି ଓ 'ଆରେ ରାମୁ କୁଆଡ଼େ ଗଲୁରେ - ଏ ମରୁଆ ମା' ଦଉଡ଼ି ଆସ, ଏ କୁଲି...'' କୋଳାହଳ ଭିତରେ ତଥା ଯିବାଆସିବା ଲୋକ, ସେମାନଙ୍କ ବନ୍ଧୁବାନ୍ଧବ ଓ ପକେଟମାରୁଙ୍କ ଭିଡ଼ ମଧଦେଇ ଯାତ୍ରୀମାନେ ଏ ପାଖରୁ ସେ ପାଖ, ଏ ଡବାରୁ ସେ ଡବା ଧାଁ ଦଉଡ଼ ଆରମ୍ଭ କରିଦିଅନ୍ତି । ନାନା ରକମର ଠେଲା ପେଲା ସାହାଯ୍ୟରେ ସିଧାସଳଖ କୌଣସି କବାଟର ଫାଙ୍କ ଭିତରଦେଇ ଅଥବା ରେଲିଂ ନ ଦିଆ କୌଣସି ଖୋଲା ଝରକା ବାଟରେ ବାହାର ଲୋକଙ୍କ ଟେକାଟେକି ମାଧମରେ କେହିକେହି ଡବାଭିତରକୁ ପଶିଯାଆନ୍ତି ଓ ସେମାନେ ନିଜେ କବାଟ ଝରକା ବନ୍ଦକରି ଦେଇ ଆଉ କେହି ଯେପରି ସେ ଭିତରକୁ ପଶି ନ ପାରିବେ ସେ ସମ୍ବନ୍ଧରେ ଯତ୍ନଶୀଳ ହୋଇପଡ଼ନ୍ତି । ବାହାର ଆଡ଼ୁ କବାଟ ଝରକା ବାଡ଼ିଆରେ ଉତ୍ତର ଆସେ - 'ଜାଗା ନାହିଁ, ଅନ୍ୟ ଡବା ଦେଖ' ।

ତଥାପି କେହି କେହି ଭାଗ୍ୟବାନ ଛୁଞ୍ଚି ଗଳିବା ପାଇଁ ଜାଗା ନ ଥିବା ସେ ଡବାମାନଙ୍କରେ ପୁଣି କୌଣସି ମତେ ପଶି ଯାଆନ୍ତି । ଗୋଲଗାଲ ମଣିଷ କ୍ଷଣିକ ପାଇଁ ଚେପ୍‌ଟା ହୋଇଯାଏ । ଗେଡ଼ା ସରୁ ଓ ଡେଙ୍ଗା ହୁଏ ଆଉ ସରୁ ଓ ଡେଙ୍ଗା ବଙ୍କେଇ ଯାଇ ଦେହର ଫାଳେ ଡବାଭିତରେ ଓ ଅନ୍ୟ ଫାଳକ ଡବାବାହାରେ ରଖିସାରିଲା ପରେ ଛିଆ ପଛ ଫାଳ ଆଗକୁ ଭିଡ଼ି ନେଲା ପରି ବାହାରର ଫାଳକୁ ଡବା ଭିତରକୁ ଭିଡ଼ିନିଏ । ବାକ୍ସ ବେଡ଼ିଂ, ଅଖାବସ୍ତା, ଟିଣ ଡବା ସବୁ ଅଦ୍ଭୁତ ଭାବରେ ଭିତରକୁ ପଶେ । 'ସବୁ ଜିନିଷ ଅଛି ନା ନାହିଁ ଦେଖି ନେ', 'ବାବୁ ପଇସା ଦିଅ', 'ପହଞ୍ଚିଲା କ୍ଷଣି ଚିଠି ଦେବୁ' ଭିତରେ ଟ୍ରେନ୍ ହୁଇସିଲ୍ ମାରେ ଆଉ ତା' ନିଜଭାଷାରେ 'ଇସ୍ - କେତେ ଭିଡ଼୍, ଇସ୍ - କେତେ ଭିଡ଼୍' କେତେଥର କହି ଷ୍ଟେସନ ଛାଡ଼େ । ଠିକ୍ ପରେପରେ 'କିଏ ରହିଗଲା - କିଏ ରହିଗଲା' ... ପଚାରି ପଚାରି ଅଦୃଶ୍ୟ ହୋଇଯାଏ ।

ଗୋଟାଏ ଦିଗରେ ବନ୍ଧୁବାନ୍ଧବଙ୍କୁ ବସାଇ ଦେବାପାଇଁ ଆସିଥିବା ଲୋକେ ଆଉ ବେଶି ସଂଖ୍ୟାରେ ଟ୍ରେନ୍ ନ ଚଳାଉଥିବା ଯୋଗୁଁ ଓ ମହାସୁଲ ବଢ଼ାଇଥିବାରୁ ସରକାରୀ କଳର କଟୁ ସମାଲୋଚନା କରିକରି ଷ୍ଟେସନ ବାହାରକୁ ଆସନ୍ତି । ଅନ୍ୟ ଦିଗରେ ଟ୍ରେନ୍ ଡବା ଭିତରକୁ ସଦ୍ୟ ପଶିଥିବା ଯାତ୍ରୀମାନଙ୍କ ମଧ୍ୟରୁ କେହି ବାକ୍ସପତ୍ର ସଜାଡୁ ସଜାଡୁ କାହାର ଆଙ୍ଗୁଠି ଦଳି ଦେଇଥିବା ଯୋଗୁଁ, ଅନ୍ୟ କେହି ବାକ୍ସପତ୍ର ପାଇଖାନା ସାମନାରେ ଜମା କରିଦେଇ ବାଟ ବନ୍ଦକରି ଦେଇଛି ବୋଲି କିମ୍ବା ଭିଡ଼ଭିତରେ ଶୋଇରହିଥିବା କେଉଁ ଯାତ୍ରୀର ପେଟଉପରେ ଆଉ କେହି ଢଳି ପଡ଼ିଥିବାରୁ ତଥା ଅନ୍ୟାନ୍ୟ ଅନେକ କାରଣରୁ ସାମାନ୍ୟ ପାଟିତୁଣ୍ଡ ଗାଳିଗୁଲଜ ହୋଇସାରିଲା ପରେ ନୂଆ ଓ ପୁରୁଣା ଯାତ୍ରୀଙ୍କ ମଧ୍ୟରେ ସହାବସ୍ଥାନ ପ୍ରତିଷ୍ଠିତ ହୋଇଯାଏ ଓ ଗପ ଜମେ । ବିନା ଟିକଟରେ ଯାଉଥିବା ଯାତ୍ରୀ, ପକେଟମାରୁ, କଳାବଜାରୀ, ଭଦ୍ର ଅଭଦ୍ର ସମସ୍ତେ ବିଲାତ ଆମେରିକାରେ ରେଲଯାତ୍ରାର ସୁବିଧା ବଖାଣୁ ବଖାଣୁ ଭାରତୀୟ ରେଳବାଇ ଅଫିସରଙ୍କ ଅପାରଗତା, ଅସାଧୁତା, କର୍ତ୍ତୃପକ୍ଷଙ୍କ ବାଜେ ପରିଚାଳନା, ଡବାର ଧଡଡ଼୍ ଅବସ୍ଥା ଓ ମଇଳା ସମ୍ବନ୍ଧରେ ଟୀକା ଟିପ୍‌ପଣୀ ଆରମ୍ଭ କରି ଦିଅନ୍ତି । ସମସ୍ତଙ୍କ କଣ୍ଠସ୍ୱରକୁ ଦବାଇଦେଇ ଫେରିବାଲା ଗର୍ଜି ଉଠେ - 'ହିମାଳୟର ଜଡ଼ିବୁଟିରୁ ତିଆରି ଭାରତ ବିଖ୍ୟାତ କବିରାଜଙ୍କ ପ୍ରସ୍ତୁତ ଜାଦୁ ମଲମ... ଥରେ ଲଗାଇଲେ ପୁରୁଣା ଜାଦୁ, କାଛୁ କୁଣ୍ଡିଆ, ବିଇଞ୍ଚି, ଧଳା ଛଉ... ପରୀକ୍ଷା କରି ଦେଖନ୍ତୁ - ନ ହେଲେ ପଇସା ଫେରସ୍ତ...'

'ଆଉ କିଏ ଯିବ - ଆଉ କିଏ ଯିବ...' ରାଗିଣୀ ଧରି ଟ୍ରେନ୍ ଆଗେଇ ଚାଲେ ଅନ୍ୟ ଷ୍ଟେସନକୁ ।

ଠିକ୍ ଏପରି ଗୋଟିଏ ଦୃଶ୍ୟ ଶିକ୍ଷାକ୍ଷେତ୍ରରେ ମଧ ଦେଖିବାକୁ ମିଳେ ।

ପରୀକ୍ଷା ଫଳକୁ ଅପେକ୍ଷା କରିକରି ହାଲିଆ ହେଲାବେଳକୁ ଶେଷରେ ଯେତେବେଳେ ଫଳ ବାହାରେ, କେବେ ଜୁଲାଇ ତ କେବେ ଅଗଷ୍ଟ ମାସ ଆସି ପହଞ୍ଚି ଯାଇଥାଏ । କଲେଜମାନଙ୍କରେ ନୂଆ ପାଠପଢ଼ା ବର୍ଷର ନାମଲେଖା ଭିଡ଼ ଦେଖା ଦିଏ । ଛାତ୍ର-ଛାତ୍ରୀମାନେ ବାପା ମା' କିମ୍ବା ଅନ୍ୟ କେହି ଅଭିଭାବକଙ୍କୁ ଧରି ବିଜ୍ଞାନ, କଳା, ବାଣିଜ୍ୟ ପ୍ରଭୃତି ବିଭିନ୍ନ ବିଷୟମାନଙ୍କରେ ଭର୍ତ୍ତି ହେବାପାଇଁ କଲେଜ ବାରନ୍ଦାରେ ଧାଁଧାପଡ଼ ଆରମ୍ଭ କରିଦିଅନ୍ତି । କିଏ ଡାକ୍ତରହେବା ଆଶାନେଇ ବାଇଓଲଜି, କିଏ ଇଞ୍ଜିନିୟର ହେବା ଉଦ୍ଦେଶ୍ୟରେ ଗଣିତ ଆଉ କିଏ ବା ଆଇ.ଏ.ଏସ୍. କିମ୍ବା ଆଇ.ପି.ଏସ୍. ହେବାପାଇଁ ସାଧାରଣ ଜ୍ଞାନ ପ୍ରଭୃତି ଅଧିକା ବୋଝ ସାଙ୍ଗରେ ନେବାକୁ ଚେଷ୍ଟା କରନ୍ତି ।

ସିଧାସଳଖ ଯଦି ସିଟ୍ ନ ମିଳେ ଏ ପାଖ ସେପାଖର ଫାଙ୍କ ଦେଇ ଅଥବା ବାହାରିଆ ଚାପ ସାହାଯ୍ୟରେ ଭିତରକୁ ଗଳିଯିବାକୁ ଉଦ୍ୟମ ହୁଏ ।

ସିଟ୍ ଅଭାବରୁ କେଉଁ କେଉଁ କଲେଜରେ ଗୋଟିଏ ସହରର ଛାତ୍ର ଅନ୍ୟ ସହରର ଛାତ୍ରମାନଙ୍କୁ ବାଟ ଛାଡ଼ନ୍ତିନି ! ମେଡ଼ିକେଲ ପ୍ରଭୃତି କେତୋଟି କଲେଜ ଭିତରେ କୌଣସି ମତେ ପଶି ପାରିଥିବା କେତେ ଛାତ୍ର ସ୍ଥାନସଂଖ୍ୟା ବେଶି ଥିବାରୁ କର୍ମ ସଂସ୍ଥାନ ହୋଇ ପାରୁ ନାହିଁ ବୋଲି ସିଟ୍ ସଂଖ୍ୟା କମାଇ ଦେଇ ନାମଲେଖା ବନ୍ଦକରିଦେବା ପାଇଁ ବେଳେବେଳେ ଚେଷ୍ଟା କରନ୍ତି ।

ନାମଲେଖା ଶେଷ ହୁଏ ।

ଆଧୁନିକ ଶିକ୍ଷାରେ ଉଚ୍ଚ ଶିକ୍ଷିତ ହୋଇ ଉଚ୍ଚାସନ, ଉଚ୍ଚ ପଦବୀ, ଉଚ୍ଚ ପଦ ମର୍ଯ୍ୟାଦା ହାସଲକରିସାରି ଶିକ୍ଷା, ସମାଜ ଓ ଶାସନର ଭାଗ୍ୟଡୋରୀ ନିଜହାତକୁ ନେଇ ସାରିଥିବା ଅଭିଭାବକ ତଥା ଏପରି ଶିକ୍ଷାରୁ ବଞ୍ଚିତହୋଇ କର୍ମକୁ ନିନ୍ଦୁଥିବା ଅଭିଭାବକମାନେ ନିଜର ପୁଅ ଝିଅଙ୍କୁ କଲେଜମାନଙ୍କରେ କୌଣସିମତେ ଭର୍ତ୍ତିକରି ଦେଇ ସାରି ଅଥବା ଭର୍ତ୍ତି କରିବାରେ ଅକୃତକାର୍ଯ୍ୟ ହୋଇ ଘରକୁ ଫେରିବା ବାଟରେ ଆଧୁନିକ ଶିକ୍ଷାର କଟୁ ସମାଲୋଚନା ଆରମ୍ଭ କରିଦିଅନ୍ତି । ତଥାପି ସେମାନଙ୍କ ଚାପରେ ଶ୍ରେଣୀମାନଙ୍କରେ ସ୍ଥାନସଂଖ୍ୟା ବଢ଼େ, ନୂଆ କଲେଜ ସବୁ ମୁଣ୍ଡ ଟେକେ ।

ଏଣେ କଲେଜରେ ଭର୍ତ୍ତି ହୋଇଥିବା ନୂଆ ଛାତ୍ର ତଥା ପୁରୁଣା ଛାତ୍ରଙ୍କ ମଧ୍ୟରେ ହଷ୍ଟେଲ ସିଟ୍ ଓ ରେଗିଙ୍ଗ ପାଇଁ ନୂଆ ଚିହ୍ନା ପରିଚୟର ସାମାନ୍ୟ କିଛି ପାଟି ତୁଣ୍ଡ ଓ ଭିଡ଼ା ଓଟରା ହେଲା ପରେ ମିଳାମିଶା ହୋଇଯାଏ ଓ ସହପାଠୀଙ୍କ ମଧ୍ୟରେ ବନ୍ଧୁତ୍ୱ ଘନେଇ ଉଠେ । ମଉଜ ମଜଲିସ୍ ଓ ଖୁସୀ ଗପ ଜମେ । ସେ ଖୁସୀ ଗପର ଗୁଞ୍ଜନକୁ ଦବାଇ ଦେଇ କଲେଜ ୟୁନିଅନର ଭାବୀ ସଭାପତି ଓ ଅନ୍ୟାନ୍ୟ କର୍ମକର୍ତ୍ତାଗଣ ଗର୍ଜି ଉଠନ୍ତି - 'ମୋତେ ଯଦି ଭୋଟ୍ ଦେବ...'

ନିର୍ବାଚନ ସରିଲା ପରେ ଦିନେ ହଠାତ୍ ସମସ୍ତେ ଆବିଷ୍କାର କରନ୍ତି ଯେ, ତାଙ୍କ ପୁରୁଣା କଲେଜରେ କମନ୍ ରୁମ୍ ନାହିଁ, ଭଲ ଲାଇବ୍ରେରୀ ନାହିଁ, ଖେଳ ପଡ଼ିଆ ନାହିଁ, ଯଥେଷ୍ଟ ସଂଖ୍ୟକ ଶିକ୍ଷକ ନାହାନ୍ତି... ।'

'ଆମର ଦାବି..., ଆମର ଦାବି...'ର ଝଡ଼ ତୋଫାନ ମଧ୍ୟ ଦେଇ କଲେଜ ଅନ୍ୟ ପାଠ ପଢ଼ା ବର୍ଷକୁ ଛୋଟେଇ ଛୋଟେଇ ଚାଲେ ।

ରେଳଗାଡ଼ିର ତୃତୀୟ ଶ୍ରେଣୀ ଓ ଆଧୁନିକ ଶିକ୍ଷା ମଧ୍ୟରେ କିନ୍ତୁ ଗୋଟିଏ ବିଶେଷ ପାର୍ଥକ୍ୟ ପରିଲକ୍ଷିତ ହୁଏ । ତୃତୀୟ ଶ୍ରେଣୀ ଯାତ୍ରୀର କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ଗନ୍ତବ୍ୟ ସ୍ଥଳ ଥାଏ ଓ ସୁବିଧା ଅସୁବିଧା ମଧ୍ୟ ଦେଇ ଯାତ୍ରୀ ଶେଷରେ ସେ ଗନ୍ତବ୍ୟ ସ୍ଥଳରେ ହିଁ ପହଞ୍ଚେ । ଶିକ୍ଷା କ୍ଷେତ୍ରରେ କିନ୍ତୁ ଅନେକ ଛାତ୍ରଙ୍କ କୌଣସି ଲକ୍ଷ୍ୟସ୍ଥଳ ଦେଖିବାକୁ ମିଳେନି । ଅଧିକାଂଶ କ୍ଷେତ୍ରରେ ଛାତ୍ର କେବଳ ଉଦ୍ଦେଶ୍ୟହୀନ ଭାବରେ ଖଣ୍ଡିଆଭୂତର ଶୁଖିଲା ପତ୍ର ପରି ଉଡ଼ିବୁଲେ ଆଉ ଶେଷରେ ଏଇଠିସେଇଠି ଖାପଛଡ଼ା ହୋଇ ପଡ଼ିଯାଏ ।

ଲକ୍ଷ୍ୟହୀନ ଓ ଉଦ୍ଦେଶ୍ୟବିହୀନ ଶିକ୍ଷାକୁ ଶିକ୍ଷା ବୋଲି କହିବା ସମୀଚୀନ ହେବ ନାହିଁ । ପୁଣି ଯେଉଁ ଶିକ୍ଷାରେ ଛାତ୍ରର ମାନସିକ ଓ ବୌଦ୍ଧିକ ବିକାଶ ସଙ୍ଗେ ସଙ୍ଗେ ଶାରୀରିକ ତଥା ଆଧ୍ୟାତ୍ମିକ ବିକାଶ ନ ହୋଇଛି ସେ ଶିକ୍ଷାକୁ ମଧ୍ୟ ପ୍ରକୃତ ଶିକ୍ଷା ବୋଲି ଗ୍ରହଣ କରାଯାଇ ନପାରେ । ତେଣୁ ଆଜିର ଶିକ୍ଷା ଯେ ସମ୍ପୂର୍ଣ୍ଣ ତ୍ରୁଟିପୂର୍ଣ୍ଣ ଏହା ନିଃସନ୍ଦେହ ଏବଂ ଏ ଶିକ୍ଷାପଦ୍ଧତିର ପରିବର୍ତ୍ତନ ଲୋଡ଼ା ଏଥିରେ ମତଦ୍ୱୈଧର ଅବକାଶ ନାହିଁ ।

କିନ୍ତୁ ଆଜିର ଶିକ୍ଷାପଦ୍ଧତି ବଦଳରେ ଆଉ କେଉଁ ଢଙ୍ଗର ଶିକ୍ଷା ପ୍ରବର୍ତ୍ତନ କରାଯିବ ସେ ସମ୍ବନ୍ଧରେ ହିଁ ନାନା ମୁନିଙ୍କର ନାନା ମତ ଦେଖାଦିଏ ।

ଜାତିର ଜନକ ଗାନ୍ଧିଜୀ ଆଧୁନିକ ଶିକ୍ଷା ପଦ୍ଧତି ବଦଳରେ ମୌଳିକ ଶିକ୍ଷା ବା ବେସିକ୍ ଏଡୁକେଶନ ପ୍ରବର୍ତ୍ତନ କରିବାକୁ ମତ ଦେଇଥିଲେ ।

ପରମ ଯୋଗୀ ଅରବିନ୍ଦ ଓ ଶ୍ରୀ ମା ପୂର୍ଣ୍ଣାଙ୍ଗ ଶିକ୍ଷା ବା ଇଣ୍ଟିଗ୍ରେଟେଡ୍ ଏଡୁକେଶନର ଗୋଟିଏ ସାଧାରଣ ରୂପରେଖ ଦେଇଯାଇଛନ୍ତି ।

ଦାର୍ଶନିକ ରାଧାକୃଷ୍ଣନ୍ ଓ ତାଙ୍କ କମିଶନର ଶିକ୍ଷାବିତ୍‌ମାନେ ତଥା ବୈଜ୍ଞାନିକ କୋଠାରି ଓ ତାଙ୍କ କମିଶନ୍‌ର ଶିକ୍ଷାବିତ୍‌ମାନେ ଆଧୁନିକ ଶିକ୍ଷାର କେବଳ ସଂସ୍କାର ଉପରେ ଗୁରୁତ୍ୱ ଦେଇଛନ୍ତି ।

ଦେଶର ଅନ୍ୟାନ୍ୟ ଅନେକ ହିତୈଷୀ ଅତୀତର ଗୁରୁଆଶ୍ରମ ଶିକ୍ଷାପରମ୍ପରାକୁ ଫେରିଯିବାକୁ ମତ ଦିଅନ୍ତି ।

ଶିକ୍ଷାପଦ୍ଧତି ଆଜି ଏ ଗୋଲକ ଧନ୍ଦାରେ ।

# ଚାଲି ନ ଜାଣି

ଆଧ୍ୟାତ୍ମିକ ଚେତନାରେ ଉଦ୍ଭାସିତ ଓ ଜ୍ଞାନର ଗାରିମାରେ ଗରୀୟାନ୍ ଭାରତର ଅତୀତ ଅତ୍ୟନ୍ତ ଗୌରବମୟ । କିନ୍ତୁ ସେ ଗୌରବମୟ ଅତୀତର ଶିକ୍ଷାପଦ୍ଧତି ଯେ ସମ୍ପୂର୍ଣ୍ଣ ତ୍ରୁଟିହୀନ ଓ ଦୋଷଶୂନ୍ୟ ଥିଲା ଏବଂ ସେ ପଦ୍ଧତି ବର୍ତ୍ତମାନ ମଧ୍ୟ ଗ୍ରହଣୀୟ, ସେ ମତ ସହଜରେ ଗ୍ରହଣ କରିହୁଏନାହିଁ ।

କୌଣସି ଜାତୀୟ ଶିକ୍ଷାପଦ୍ଧତି ଯେ କେବଳ ବ୍ୟକ୍ତିବିଶେଷଙ୍କ ପ୍ରତିଭାର ଚରମ ବିକାଶ ସାଧନକରିବା ପାଇଁ କ୍ଷମହେବ ସେତିକି ନୁହେଁ - ଏପରି ଶିକ୍ଷାପଦ୍ଧତି ସର୍ବସାଧାରଣଙ୍କର ଶିକ୍ଷାର ମାନକୁ ଉନ୍ନତ କରିବା ସଙ୍ଗେସଙ୍ଗେ ସମାଜ ତଥା ଦେଶର ସର୍ବବିଧ ଉନ୍ନତି ଓ ବିକାଶର ସହାୟକ ହେବା ଆବଶ୍ୟକ । ଏହି ମାନଦଣ୍ଡ ନେଇ ଆମ ଅତୀତର ଶିକ୍ଷାପଦ୍ଧତି ପର୍ଯ୍ୟାଲୋଚନା କରାଯାଇପାରେ ।

ବ୍ରିଟିଶ ରାଜତ୍ୱ ଆରମ୍ଭର ଅବ୍ୟବହିତ ପୂର୍ବରୁ ସିରାଜଉଦ୍ଦୌଲାଙ୍କ ତଣ୍ଟି କାଟିବା ପାଇଁ ମିରଜାଫର ଯେତେବେଳେ ତା'ର କୁଚକ୍ରାନ୍ତ ଆରମ୍ଭ କରିଦେଇଥିଲା; କିମ୍ବା ତହିଁର ଅନେକ ପୂର୍ବରୁ ଯେଉଁ ସମୟରେ ସହାୟହୀନ ଓ ଆଶ୍ରୟବିହୀନ ଦାରା ତାଙ୍କ ସ୍ତ୍ରୀ ଓ ପିଲାଛୁଆମାନଙ୍କୁ ଧରି ପ୍ରାଣବିକଳରେ ବଣଜଙ୍ଗଲରେ ଲୁଚି ବୁଲିଲାବେଳେ ବନ୍ୟଜନ୍ତୁ ଶିକାର କଲା ପରି ସାନଭାଇ ଆଉରଙ୍ଗଜେବ ସେମାନଙ୍କ ପଛରେ ଗୋଡ଼ାଇ ଗୋଡ଼ାଇ ମାରି ଦେବାକୁ ଉଦ୍ୟମ କରୁଥିଲେ, ସେ ଦିନର ଭାରତରେ କୌଣସି ଉଚ୍ଚକୋଟୀର ଶିକ୍ଷାପଦ୍ଧତି ପ୍ରଚଳିତ ଥିଲା ବୋଲି ପ୍ରମାଣ ମିଳେନାହିଁ ।

ମହମ୍ମଦ ତୋଗ୍‌ଲକ୍ ଯେତେବେଳେ ଦିଲ୍ଲୀରୁ ଦୌଲତାବାଦ୍ ଓ ପରେ ଦୌଲତାବାଦ୍‌ରୁ ଦିଲ୍ଲୀକୁ ରାଜଧାନୀ ବଦଳାଉଥିଲେ ଓ ଜଣେ ଛୋଟାଲୋକ ଏତେବାଟ ଚାଲି ନ ପାରିବାରୁ ତାକୁ ଘୋଡ଼ା ଲାଞ୍ଜରେ ବାନ୍ଧି ଘୋଷାଡ଼ି ନେବାକୁ ଆଦେଶ ଦେଇଥିଲେ ସେ ଦିନର ଭାରତରେ ଭାରତୀୟ ନାଗରିକ ଶାରୀରିକ

ମାନସିକ ତଥା ଆଧ୍ୟାତ୍ମିକ ଶିକ୍ଷାରେ ସୁଶିକ୍ଷିତ ଥିଲାବୋଲି କଦାପି କହିହେବନାହିଁ ।

ଯେଉଁଦିନ ଜୟଚନ୍ଦ୍ର ପୃଥ୍ୱୀରାଜଙ୍କୁ ହରାଇବା ପାଇଁ ମହମ୍ମଦ ଘୋରୀକୁ ନିମନ୍ତ୍ରଣ କରି ଆଣିଲା - ସେଦିନର ଭାରତ କିମ୍ବା ତା' ପୂର୍ବରୁ ମହମ୍ମଦ ଗଜନୀ ସୋମନାଥ ମନ୍ଦିର ଧ୍ୱଂସ କରୁଥିବା ଦିନର ଭାରତରେ ଯେ ଶିକ୍ଷାପଦ୍ଧତି ଭଲଥିଲା ତାହା ମଧ୍ୟ ସ୍ୱୀକାର କରିବା ଅତ୍ୟନ୍ତ କଷ୍ଟକର ।

ଗୁପ୍ତ ସାମ୍ରାଜ୍ୟର ସ୍ୱର୍ଣ୍ଣଯୁଗ ତଥା ନାଳନ୍ଦା, ତକ୍ଷଶୀଳା, ବିକ୍ରମଶୀଳା, ପରିମଳଗିରି, ରତ୍ନଗିରି ପ୍ରଭୃତି ବିଶ୍ୱବିଦ୍ୟାଳୟମାନଙ୍କ ସାମୟିକ ସ୍ଥିତିର ସୂଚନାକୁ ଛାଡ଼ିଦେଲେ ପୁରୁଙ୍କ ବିରାଟ ସେନାକୁ ଗୋଟିଏ ଛୋଟ ସୁଶୃଙ୍ଖଳ ଗ୍ରୀକ୍‌ସେନା ଯେଉଁଦିନ ଧ୍ୱସ୍ତବିଧ୍ୱସ୍ତ କରି ଦେଇଥିଲା ସେହି ଦିନଠାରୁ ବ୍ରିଟିଶ ରାଜତ୍ୱର ଆଦିପର୍ବ ପର୍ଯ୍ୟନ୍ତ ଭାରତରେ ଶୃଙ୍ଖଳିତ ସାର୍ବଜନୀନ ଜନଶିକ୍ଷାର ପ୍ରଚଳନସମ୍ବନ୍ଧରେ ବିଶେଷ କିଛି ଆଭାଷ ମିଳେନି ।

ମହାଭାରତକାଳୀନ ଭାରତର ଶିକ୍ଷାପଦ୍ଧତି ମଧ୍ୟ ତ୍ରୁଟିହୀନ ଥିଲା ବୋଲି କୁହାଯାଇ ନ ପାରେ ।

ଦ୍ରୋଣାଚାର୍ଯ୍ୟଙ୍କୁ ଗୁରୁବୋଲି ମନରେ ମାନିନେଇ ଜଣେ ଶବର ପୁଅ ଅସ୍ତ୍ରଶିକ୍ଷା ପାଇବା ଉଦ୍ଦେଶ୍ୟରେ ଯେତେବେଳେ ଦ୍ରୋଣଗୁରୁଙ୍କ ପାଖରେଯାଇ ପହଞ୍ଚିଲା, ନୀଚ କୁଳଜାତ ବୋଲି କହି ଦୁର୍ଯ୍ୟୋଧନ ଦୁଃଶାସନ ପ୍ରଭୃତି ଅନେକ ଶିଷ୍ୟ ସେହି ଗୁରୁଙ୍କ ସାମନାରେ ତାକୁ ଗଳାଧକ୍‌କା ଦେଇ ବାହାର କରିଦେଲେ । ଦ୍ରୋଣଗୁରୁ ତହିଁରେ କୌଣସି ଆପତ୍ତି ମଧ୍ୟ କଲେନି । ସେହି ଶିଷ୍ୟ ପରେ ମାଟିର ଦ୍ରୋଣଙ୍କୁ ଗୁରୁବୋଲି ମାନି ଦୂରରୁ ଗୁରୁଙ୍କ ଶିକ୍ଷା ଲକ୍ଷ୍ୟକରି ନିଜେନିଜେ ଅସ୍ତ୍ରସାଧନା କଲାବେଳେ କୌରବମାନେ କିପରି ତା' ସ୍ତ୍ରୀକୁ ଅପମାନ ଦେବାକୁ ଯାଇ ଶେଷରେ ଯୁଦ୍ଧରେ ମରି ଶୋଇଥିଲେ, ଗୁରୁଙ୍କ ଆଦେଶରେ କୌରବମାନଙ୍କୁ ରକ୍ଷା କରିବାକୁ ଯାଇ ଅର୍ଜୁନଙ୍କୁ କିପରି ସେହି ଦଶା ହୋଇଥିଲା ଓ ଶେଷରେ ଗୁରୁଙ୍କ ଇଚ୍ଛାମତେ ସମସ୍ତଙ୍କୁ ଛିଆଇଁଦେଇ ଗୁରୁଦକ୍ଷିଣା ସ୍ୱରୂପ ନିଜ ବୃଦ୍ଧାଙ୍ଗୁଷ୍ଠି କାଟି ଦେଲା ପରେ ସେ ଶବରପୁଅ ଏକଲବ୍ୟ ନାମରେ ପରିଚିତ ହୋଇଥିଲେ, ସେହି ଦୁଃଖପ୍ରଦ କାହାଣୀ ସମସ୍ତଙ୍କୁ ଜଣା । ଦୁଷ୍ଟ ଚରିତ୍ର କୌରବମାନଙ୍କୁ ପରେ କେବେ ପ୍ରାଣରେ ମାରି ଦେଇପାରେ ସେଇ ଆଶଙ୍କାରେ ହିଁ ସେମାନଙ୍କୁ ରକ୍ଷାକରିବାକୁ ଯାଇ ଦ୍ରୋଣଗୁରୁ ବୃଦ୍ଧାଙ୍ଗୁଷ୍ଠି ଦକ୍ଷିଣା ମାଗି ଜଣେ ନିରୀହ ଶିଷ୍ୟଙ୍କୁ ପ୍ରାୟ ପଙ୍ଗୁ କରିଦେଇଥିଲେ ।

ମହାଦାନୀ କର୍ଣ୍ଣଙ୍କ ଶିକ୍ଷାର କାହାଣୀ ମଧ୍ୟ ସେପରି ଦୁଃଖପୂର୍ଣ୍ଣ । ଅସ୍ତ୍ରଶସ୍ତ୍ର ସମ୍ବନ୍ଧୀୟ ସମସ୍ତ ଜ୍ଞାନ ଦାନ କରିସାରିଲାପରେ ମହାଯଶା ପରଶୁରାମ ଯେତେବେଳେ ଜାଣି ପାରିଲେ ଯେ କର୍ଣ୍ଣ ଜଣେ କ୍ଷତ୍ରିୟ ସନ୍ତାନ ଓ ବ୍ରାହ୍ମଣପୁତ୍ର ନୁହନ୍ତି, ସେ ଅଭିଶାପ ଦେଲେ ଯେ ଠିକ୍ ଘଡ଼ିସନ୍ଧିବେଳେ କର୍ଣ୍ଣ ସବୁ ଶିକ୍ଷା ପାସୋରି ଯିବେ । ସେହି ଅଭିଶାପ ହିଁ ଶେଷରେ କର୍ଣ୍ଣଙ୍କ କାଳ ହେଲା । ମିଥ୍ୟାର ଆଶ୍ରୟନେଇ ଶିଷ୍ୟତ୍ୱ ଗ୍ରହଣ କରିଥିବାରୁ କର୍ଣ୍ଣ ଅବଶ୍ୟ ଦୂଷିତ - କିନ୍ତୁ ଶିକ୍ଷାଦାନରେ ଏପରି ଜାତିଭେଦ ବିଚାରର ଯଥାର୍ଥତା ବୁଝିହୁଏନି ।

ସେଦିନର ଶିକ୍ଷା ଯେ ସମସ୍ତଙ୍କୁ ଅର୍ଥ ଉପାର୍ଜନକ୍ଷମ କରୁଥିଲା ଆଉ ଏକା ଗୁରୁଙ୍କ ପାଖରୁ ଶିକ୍ଷାଲାଭ କରିଥିବା ସବୁଶିଷ୍ୟ ଶାରୀରିକ, ମାନସିକ ଓ ଆଧ୍ୟାତ୍ମିକ କ୍ଷେତ୍ରରେ ସମାନ ସିଦ୍ଧ ଲାଭ କରୁଥିଲେ ସେ କଥା ମଧ୍ୟ କହି ହୁଏନି । ସାନ୍ଦିପନୀ ଋଷିଙ୍କ ଶିଷ୍ୟ ହୋଇ ମଧ୍ୟ ଶ୍ରୀକୃଷ୍ଣଙ୍କ ସହପାଠୀ ସୁଦାମାଙ୍କ ଆର୍ଥିକ ଅବସ୍ଥା କ'ଣ ଥିଲା ସେ କଥା ସମସ୍ତଙ୍କୁ ଜଣା ।

ରାମାୟଣ ଯୁଗର ସାଧାରଣ ଶିକ୍ଷାସମ୍ବନ୍ଧରେ ମଧ୍ୟ ଠିକ୍ ସେପରି ସନ୍ଦେହ ଦେଖା ଦିଏ । ରାମାୟଣରେ ଶ୍ରୀରାମଙ୍କ ବନବାସ ପୂର୍ବରୁ ବିଶ୍ୱାମିତ୍ରଙ୍କ ଆଶ୍ରମ, ବନବାସ ଭିତରେ ଭରଦ୍ୱାଜ ଋଷି ଓ ଅନ୍ୟାନ୍ୟ ଋଷିଙ୍କ ଆଶ୍ରମ ଓ ପରିଶେଷରେ ସୀତାଙ୍କ ବନବାସବେଳେ ବାଲ୍ମୀକି ଆଶ୍ରମ ବର୍ଣ୍ଣନା ଦେଖିବାକୁ ମିଳେ । ଋଷିପୁତ୍ର ତଥା ଋଷି କନ୍ୟାମାନଙ୍କ ସମ୍ବନ୍ଧରେ ମଧ୍ୟ ସେଥିରୁ ଆମେ କିଛିକିଛି ଜାଣିବାକୁ ପାଉ । ମହାଜ୍ଞାନୀ ହନୁମାନଙ୍କୁ ଭେଟୁ, ସେତୁବନ୍ଧ ଯୋଜନା ପ୍ରସ୍ତୁତକାରୀ କାରିଗରୀ ବିଦ୍ୟାନିପୁଣ ନଳ ଓ ନୀଳ, ଭେଷଜ ବିଜ୍ଞାନୀ ସୁଷେଣ ଓ ଯୁଦ୍ଧବିଦ୍ୟା ବିଶାରଦ ଜାମ୍ବବାନଙ୍କୁ ଦେଖୁ । କିନ୍ତୁ ସେ ସଙ୍ଗରେ ଦେଖିବାକୁ ମିଳେ ଶବରପଲ୍ଲୀ, ରାକ୍ଷସ ବିଧ୍ୱସ୍ତ ଦଣ୍ଡକାରଣ୍ୟ, କପି ଭଲ୍ଲୁକଙ୍କ ସାମ୍ରାଜ୍ୟ । ରାମ ରାଜ୍ୟରେ ମଧ୍ୟ ଧୋବା ଓ ଧୋବଣୀଙ୍କ ପରି ନାଗରିକ ଦେଖାଯା'ନ୍ତି ଯେଉଁମାନଙ୍କ କଟୂକ୍ତି ଫଳରେ ସତୀ ସାଧ୍ୱୀ ସୀତାଙ୍କୁ ତପସ୍ୱିନୀ ହେବାକୁ ପଡ଼େ । ଡ଼ି.ଏମ.କେ. ଦଳର ମତରେ ସଂସ୍କୃତ ଭାଷାରେ ଶିକ୍ଷିତ ଆର୍ଯ୍ୟମାନେ ତାମିଲ ଭାଷୀ ଦ୍ରାବିଡ଼ମାନଙ୍କୁ କପି ଓ ଭଲ୍ଲୁକ ବୋଲି ବର୍ଣ୍ଣନା କରିଛନ୍ତି ।

ଏସବୁ ଭିତରେ ଉପନିଷଦକାଳୀନ ପ୍ରାଚୀନ ଭାରତର ଶିକ୍ଷା ତରଳ ସୁନା ପରି ଜଳି ଉଠେ ଓ ଆଖି ଝଲସାଇ ଦିଏ ।

ଛାନ୍ଦୋଗ୍ୟ ଉପନିଷଦର ଦିଓଟି ଆଖ୍ୟାନ ଏଠାରେ ଉଲ୍ଲେଖନୀୟ ।

ସତ୍ୟକାମ ଯେତେବେଳେ ଗୌତମଙ୍କ ପାଖକୁ ଯାଇ ତାଙ୍କୁ ଶିଷ୍ୟରୂପେ ଗ୍ରହଣ କରିବାକୁ ଅନୁରୋଧ କଲେ, ଗୌତମ ସତ୍ୟକାମକୁ ତାଙ୍କର ବଂଶ ପରିଚୟ ମାଗିଲେ । ସତ୍ୟକାମ କହିଲେ - "ଭଗବାନ୍, ମୁଁ ମୋ ମା'ଙ୍କୁ' ଯେତେବେଳେ ମୋ ପିତାଙ୍କ ପରିଚୟ ମାଗିଲି ସେ କହିଲେ, ମୋ ପିତା କିଏ ସେ ନିଜେ ଜାଣି ନାହାନ୍ତି - ତେଣୁ ମା'ଙ୍କ ନାମ ଓ ମୋ ନାମକୁ ମିଶାଇ ଜାବାଲାଙ୍କ ପୁତ୍ର ସତ୍ୟକାମ ଜାବାଳ ବୋଲି ପରିଚୟ ଦେବାକୁ କହିଛନ୍ତି ।' ଗୌତମ ଉତ୍ତର ଦେଲେ - "ସତ୍ୟକାମ, କେବଳ ପ୍ରକୃତ ବ୍ରାହ୍ମଣ ହିଁ ବିନା ଦ୍ୱିଧାରେ ଏପରି ସତ୍ୟ ପ୍ରକାଶ କରିପାରେ, ଯାଅ, ସମିଧ ସଂଗ୍ରହ କର, ମୁଁ ତୁମକୁ ଶିଷ୍ୟ ରୂପେ ଗ୍ରହଣ କଲି ।"

ଛାନ୍ଦୋଗ୍ୟର ଆଉ ଗୋଟିଏ ବର୍ଣ୍ଣନା ।

ନାରଦ ସନତ କୁମାରଙ୍କ ପାଖକୁଯାଇ ତାଙ୍କୁ ଶିକ୍ଷାଦେବାକୁ ଅନୁରୋଧ କଲେ । ସନତ କୁମାର ପଚାରିଲେ - "ତମେ କ'ଣ ସବୁ ପଢ଼ିସାରିଛ ଓ ଜାଣ ସେ କଥା ଆଗ କହ - ତା' ଶୁଣିଲା ପରେ ମୁଁ ତୁମକୁ କ'ଣ ଶିକ୍ଷା ଦେବି ସେ ବିଷୟରେ ନିଷ୍ପତ୍ତି କରିବି ।"

ନାରଦ କହିଲେ - "ଭଗବାନ୍, ମୁଁ ଚାରୋଟି ଯାକ ବେଦ, ପୁରାଣ, ଇତିହାସ, ବ୍ୟାକରଣ, ରାଶି ନକ୍ଷତ୍ର ବିଜ୍ଞାନ, ଗଣିତ ଶାସ୍ତ୍ର, ତର୍କ ଶାସ୍ତ୍ର, ନ୍ୟାୟ ଶାସ୍ତ୍ର, ରାଜନୀତି, ବ୍ରହ୍ମବିଦ୍ୟା, ଭୂତ ବିଦ୍ୟା, ସର୍ପ ବିଦ୍ୟା, ସୂକ୍ଷ୍ମ କଳା ପ୍ରଭୃତି ଅଧ୍ୟୟନ କରିସାରିଛି - କିନ୍ତୁ ସେ ସବୁ ପଢ଼ି ମଧ ମୁଁ ଆତ୍ମା ସମ୍ବନ୍ଧରେ ଅନଭିଜ୍ଞ । ସମସ୍ତେ କହନ୍ତି ଯେ ଯେଉଁ ଲୋକ ଆତ୍ମଜ୍ଞାନ ଜାଣେ, ସେ କେବଳ ଦୁଃଖସମୁଦ୍ର ପାରିହୋଇଯାଏ । ମୁଁ ଜଣେ ଦୁଃଖୀ - ମୋତେ ଏ ଦୁଃଖ ସମୁଦ୍ର ପାରିହେବାରେ ସାହାଯ୍ୟ କରନ୍ତୁ ।' ଏ କଥା ଶୁଣି ସାରିଲା ପରେ ସନତକୁମାର ତାଙ୍କ ଶିକ୍ଷା ଆରମ୍ଭକଲେ ।

ଅତୀତର ଶିକ୍ଷା ଯେ ଅତି ଉଚ୍ଚକୋଟୀର ଥିଲା ଏଥିରେ ସନ୍ଦେହ ନାହିଁ । କିନ୍ତୁ ସେ ଶିକ୍ଷା ସାର୍ବଜନୀନ ନ ଥିଲା । ଜିଜ୍ଞାସୁ ଛାତ୍ର ଜ୍ଞାନୀ ଶିକ୍ଷକଙ୍କ ପାଖକୁ ନିଜେ ଯାଇ ତାଙ୍କୁ ଶିଷ୍ୟ ରୂପରେ ଗ୍ରହଣ କରିବାକୁ ଅନୁରୋଧ କରୁଥିଲା । ଏଥିରେ ସଂଖ୍ୟାର ପ୍ରଶ୍ନ ନ ଥିଲା - ଦାବି କିମ୍ବା ହକ୍‌ର ପ୍ରଶ୍ନ ନ ଥିଲା - ଉପାଧି ଅର୍ଜନର ପ୍ରଶ୍ନ ନ ଥିଲା; କିମ୍ବା ଅର୍ଥ ଉପାର୍ଜନ, କ୍ଷମତାଲାଭର ପ୍ରଶ୍ନ ନଥିଲା । ଜ୍ଞାନ ଆହରଣ ହିଁ ଥିଲା ସେ ଶିକ୍ଷାର ଏକମାତ୍ର ଲକ୍ଷ୍ୟ । ଏପରି ଶିକ୍ଷା ଆଜି ମଧ ଆମ ଦେଶରେ ଦେଖିବାକୁ ମିଳେ । ବମ୍ବେ ପାଓ୍ୱାଇରେ ଥିବା ସ୍ୱାମୀ ଚିନ୍ମୟାନନ୍ଦଙ୍କ

ସନ୍ଦିପନୀ ସାଧନାଳୟ, କଙ୍ଗଡ଼ିର ଗୁରୁକୁଳ, ପଣ୍ଡିଚେରୀର ଅରବିନ୍ଦ ଆଶ୍ରମ, ଉତ୍ତର କାଶୀରେ ଥିବା ସ୍ୱାମୀ ଶିବାନନ୍ଦ, ତପୋବନ ମହାରାଜ, ମହର୍ଷି ମହେଶ ଯୋଗୀ ଓ ଅନ୍ୟାନ୍ୟ ସାଧୁମାନଙ୍କ ଆଶ୍ରମ ପ୍ରଭୃତି ଏଥିର ଦୃଷ୍ଟାନ୍ତ । ସେହି ମହାନ୍ ପରମ୍ପରା ଅନୁସରଣ କରି ସ୍ୱାମୀ ବିବେକାନନ୍ଦ ରାମକୃଷ୍ଣ ପରମହଂସଙ୍କ, ସନ୍ଥ ବିନୋବାଜୀ, ମହାତ୍ମା ଗାନ୍ଧିଙ୍କ ଓ ଅନ୍ୟାନ୍ୟ ଅନେକ ଜିଜ୍ଞାସୁ ରମଣ ମହର୍ଷି, ଅନୁକୁଳଚନ୍ଦ୍ର ଠାକୁର, ଅରବିନ୍ଦ ଓ ଶ୍ରୀ ମା ତଥା ଅନ୍ୟାନ୍ୟ ସିଦ୍ଧ ପୁରୁଷଙ୍କ ଶିଷ୍ୟ ହୋଇଥିଲେ । ଆଜି ମଧ୍ୟ ଅନେକ ସତ୍ୟସାଇ ବାବା, ଆନନ୍ଦମୟୀ ମା ଓ ଅନ୍ୟାନ୍ୟ ଜ୍ଞାନୀମାନଙ୍କ ପାଖକୁ ଯାଆନ୍ତି । ଏ ଧରଣର ଶିକ୍ଷା କିନ୍ତୁ ବ୍ୟକ୍ତିଗତ ଜ୍ଞାନ ଆହରଣର ଉତ୍କର୍ଷତା ପାଇଁ ସର୍ବଶ୍ରେଷ୍ଠ ହେଲେ ହେଁ ସାର୍ବଜନୀନ ହୋଇ ନପାରେ । ଅତୀତର ଯେ ଶିକ୍ଷାକୁ ଆଜିର ଗବେଷଣାତ୍ମକ ଶିକ୍ଷାସାଙ୍ଗରେ ତୁଳନା କରାଯାଇ ପାରେ - ସାଧାରଣ ଶିକ୍ଷା ସାଙ୍ଗରେ ନୁହେଁ । ଅତୀତର ଶିକ୍ଷାପଦ୍ଧତି ତେଣୁ ଆଜିର ପରିପ୍ରେକ୍ଷୀରେ ଖାପଛଡ଼ା ହେବା ସ୍ୱାଭାବିକ ।

ଯେକୌଣସି ବିଷୟବସ୍ତୁର ଗୁଣାତ୍ମକ ବିଶ୍ଳେଷଣ ବୈଜ୍ଞାନିକ ପ୍ରଣାଳୀରେ କରିବାକୁ ହେଲେ ବିଷୟବସ୍ତୁର ମୂଳ ଉପାଦନ ସବୁ ପ୍ରଥମେ ନିରୂପଣ କରିବାକୁ ହୋଇଥାଏ ଓ ସେ ସବୁ ଉପାଦାନର ପାରସ୍ପରିକ ଘାତ ପ୍ରତିଘାତ ଜନିତ ଫଳାଫଳ ନିର୍ଣ୍ଣୟ କରିବାକୁ ହୁଏ । ଶିକ୍ଷାପଦ୍ଧତି ସମ୍ବନ୍ଧରେ ଯଦି ସେପରି ବିଶ୍ଳେଷଣ କରାହୁଏ ତେବେ ଦେଖିବାକୁ ମିଳେ ଯେ, ଏଥିରେ ଛାତ୍ର, ଶିକ୍ଷକ, ଅଭିଭାବକ, ସମାଜ ଓ ସରକାର ପରିବର୍ତ୍ତନୀୟ ଉପାଦାନ (variables) ଏବଂ ଶିକ୍ଷା ସମ୍ବନ୍ଧୀୟ ଯାବତୀୟ ଉପକରଣ ଅପରିବର୍ତ୍ତନୀୟ ଉପାଦାନ (constant) ।

ଏ ପରିବର୍ତ୍ତନୀୟ ଉପାଦାନ ଅର୍ଥାତ୍ ଛାତ୍ର, ଶିକ୍ଷକ, ଅଭିଭାବକ, ସମାଜ ଓ ସରକାରଙ୍କ ସମୂହ ସହଯୋଗର ସମର୍ଥନ ବିନା କୌଣସି ସାର୍ବଜନୀନ ଶିକ୍ଷାପଦ୍ଧତି ସଫଳ ହୋଇ ନପାରେ । ଏ ଭିତରୁ ଯେକୌଣସି ଉପାଦାନ କଳଙ୍କିତହେଲେ ତାହା ଶିକ୍ଷାପଦ୍ଧତିକୁ ନିଶ୍ଚୟ ଦୂଷିତ କରିଦେବ । ଶିକ୍ଷକ ଓ ଅଭିଭାବକଙ୍କ ଯାବତ୍ ଆଗ୍ରହ ସତ୍ତ୍ୱେ ଛାତ୍ର ଯଦି ଶିକ୍ଷାପ୍ରତି ଉଦାସୀନ ରହେ କିମ୍ବା ଅଭିଭାବକ, ସମାଜ ଓ ସରକାରଙ୍କ ପୂର୍ଣ୍ଣ ସହଯୋଗ ମିଳୁଥିଲା ବେଳେ ଓ ଛାତ୍ର ଶିକ୍ଷା ପ୍ରେମୀ ହେଲେ ମଧ୍ୟ ଆଦର୍ଶ ଶିକ୍ଷକ ଯଦି ନ ମିଳନ୍ତି ତେବେ ଶିକ୍ଷାପଦ୍ଧତି ଯେତେ ଭଲହେଲେ ବି ନିଶ୍ଚୟ ବିଫଳ ହେବ ।

ଛାତ୍ର ଯଦି ଦେଖେ ଯେ ସମାଜର ତଥାକଥିତ ଶ୍ରେଷ୍ଠ ବ୍ୟକ୍ତି ତଥା ନିଜ ଅଭିଭାବକଙ୍କ ମଧ୍ୟରେ ଜୀବନର କୌଣସି ମୂଲ୍ୟବୋଧ ନାହିଁ ଓ ସେମାନେ

ଯେନ ତେନ ପ୍ରକାରରେ ଧନ ଉପାର୍ଜନ କରୁଛନ୍ତି ଓ ସେଥିପାଇଁ କ୍ଷମତାର ଅସଦ୍ ବ୍ୟବହାର ହେଉଛି - ସେ ନିଶ୍ଚୟ ସେଥିରେ ପ୍ରଭାବିତ ହେବ ଓ ନିଜେ ସେପରି ଆଚରଣ କରି ବସିବ ।

ସରକାର ସବୁବେଳେ ପରୋକ୍ଷରେ ଶିକ୍ଷାକୁ ଦିଗ୍‌ଦର୍ଶନ ଓ ଆଭିମୁଖ୍ୟ ଦିଅନ୍ତି । ଧନ୍ଦାମୂଳକ ଶିକ୍ଷା ପ୍ରଚଳନ ସପକ୍ଷରେ ମତ ଦେଉଥିଲେ ହେଁ ସରକାର ଯଦି ସବୁଠାରୁ ବଡ଼ବଡ଼ ସର୍ବଭାରତୀୟ ଚାକିରି ଯଥା ଆଇ.ଏ.ଏସ୍. ପ୍ରଭୃତିର ପ୍ରତିଯୋଗିତାମୂଳକ ପରୀକ୍ଷାରେ ମଧ୍ୟଯୁଗର ଇତିହାସ, ଇଉରୋପର ଇତିହାସ, ରାଜନୀତି ବିଜ୍ଞାନ, ଇଂରାଜୀ ପ୍ରଭୃତି ବିଷୟବସ୍ତୁକୁ ଡାକ୍ତରୀ, ଇଞ୍ଜିନିୟରିଂ, କୃଷି ବିଜ୍ଞାନ ଓ ଅନ୍ୟାନ୍ୟ ଧନ୍ଦାମୂଳକ ବିଷୟବସ୍ତୁଠାରୁ ବେଶି ଗୁରୁତ୍ୱ ଦିଅନ୍ତି ଓ ବେଶଭୂଷା, ଚାଲିଚଳଣ ତଥା ଢଙ୍ଗଢାଙ୍ଗ ଉପରେ ଅଧିକ ଗୁରୁତ୍ୱଦେଇ ଶାରୀରିକ ଶିକ୍ଷା ଓ ଆଧ୍ୟାତ୍ମିକ ଶିକ୍ଷା ଉପରେ କୌଣସି ଗୁରୁତ୍ୱ ଦିଅନ୍ତିନି, ତେବେ ସର୍ବସାଧାରଣ କଲେଜ ଶିକ୍ଷା ସେଇ ଢଙ୍ଗର ଛାତ୍ର ପ୍ରସ୍ତୁତି ପାଇଁ ନିଶ୍ଚୟ ଚେଷ୍ଟିତ ହେବ ।

ଅତୀତର ଶିକ୍ଷାଗୁରୁ ଆଶ୍ରମ କେନ୍ଦ୍ରିକ ଥିବାରୁ ଅଭିଭାବକ, ସମାଜ ଓ ସରକାରଙ୍କ ପାଖରୁ ଦୂରେଇ ରହି କେବଳ ଛାତ୍ର ଓ ଶିକ୍ଷକ ସର୍ବସ୍ୱ ହେଉଥିଲା । ମନେହୁଏ ଯେ ଗାନ୍ଧିଜୀଙ୍କ ମୌଳିକ ଶିକ୍ଷା ସମାଜ ଭିତରେରହି ମଧ୍ୟ କେବଳ ଛାତ୍ର ଓ ଶିକ୍ଷକ-ସର୍ବସ୍ୱ ହେବାକୁ ଚେଷ୍ଟା କରିବା ଫଳରେ ସଫଳ ହୋଇ ପାରିଲାନି । ଅରବିନ୍ଦଙ୍କ ଦର୍ଶିତ ପଦ୍ଧତି ପ୍ରାଚ୍ୟ ଓ ପାଶ୍ଚାତ୍ୟ ଶିକ୍ଷାର ସୁସମ୍ମିଶ୍ରଣ ହେଲେ ମଧ୍ୟ ଯଦି ପଣ୍ଡିଚେରୀ ଆଶ୍ରମରୁ ବାହାରି ଆସି ସାର୍ବଜନୀନ ହେବାକୁ ଚେଷ୍ଟାକରେ ତେବେ ତାକୁ ମଧ୍ୟ ଆଜିର କଳୁଷିତ ସମାଜ, ଡିପ୍ଲୋମା ସର୍ବସ୍ୱ ଅଭିଭାବକ ତଥା ଅର୍ଥ ଅଭାବରେ ସର୍ବଦା ଜର୍ଜରିତ ସରକାରଙ୍କ ସମ୍ମୁଖୀନ ହେବାକୁ ପଡ଼ିବ । ଫଳରେ ଲାଇବ୍ରେରୀ, ଲାବୋରେଟରୀ, ଛାତ୍ରଙ୍କ ହଷ୍ଟେଲ, ଶିକ୍ଷକଙ୍କ ବାସଗୃହ ଓ ବ୍ୟାୟାମଶାଳା ତଥା ଅବସର ବିନୋଦନ ପ୍ରଭୃତି ଶିକ୍ଷାର ଉପକରଣ ଅଭାବରେ ଆଜିର ଶିକ୍ଷାପଦ୍ଧତିଠାରୁ ଆଉ ବିଶେଷ ଭିନ୍ନହୋଇ ରହିପାରିବନି ।

ଏପରି ଅବସ୍ଥାରେ ସ୍କୁଲ କଲେଜମାନଙ୍କରେ ସର୍ବନିମ୍ନ ଶିକ୍ଷା ସମ୍ବନ୍ଧୀୟ ଯାବତୀୟ ଉପକରଣ ନ ଯୋଗାଇ କେବଳ ଶିକ୍ଷାପଦ୍ଧତିକୁ ବଦଳାଇବା ଚେଷ୍ଟା ରେଳଡ଼ବାର ତୃତୀୟ ଶ୍ରେଣୀକୁ କେବଳ ନାମ ବଦଳାଇ ଦ୍ୱିତୀୟ ଶ୍ରେଣୀ କଲାପରି ହେବ । ଏସବୁ ଦୃଷ୍ଟିରୁ ମନେହୁଏ ଯେ ଆଜିର ପରିପ୍ରେକ୍ଷୀରେ ବର୍ତ୍ତମାନର ଶିକ୍ଷାପଦ୍ଧତିକୁ ରାଧାକ୍ରିଷ୍ଣନ୍ କମିଶନ ଓ କୋଠାରି କମିଶନ ଦର୍ଶାଇଥିବା ପଥ ଅନୁସାରେ ସଂସ୍କାର କରିନେବା ହିଁ ଶ୍ରେୟସ୍କର ହେବ ।

# ଧନ ନୁହେଁ ମନ

ଶୁଣାଯାଏ ଯେ କେତେବର୍ଷ ତଳେ କୌଣସି ଜଣେ ରାଜାଙ୍କର ଦେହ ବହୁତ ଖରାପ ଥିଲା । କଲିକତାରୁ ବିଶେଷଜ୍ଞ ଡାକ୍ତର ଆସି ତାଙ୍କ ଦେହ ପରୀକ୍ଷା କରିସାରିଲା ପରେ କଲିଜାର ଅବସ୍ଥା ଦେଖି ପରାମର୍ଶ ଦେଲେ ଯେ ରାଜାସାହେବ ଯଦି ବଞ୍ଚିବାକୁ ଚାହାଁନ୍ତି ତେବେ ତାଙ୍କୁ ମଦ୍ୟପାନ ଛାଡ଼ିଦେବାକୁ ପଡ଼ିବ । ରାଜା ମହାଶୟ କୁଆଡ଼େ ଏହା ଶୁଣି ଜବାବ ଦେଲେ ଯେ ଯଦି ମଦ୍ୟପାନ ଛାଡ଼ି ଦିଅନ୍ତି ତେବେ ସେ ବଞ୍ଚିବାକୁ ଚାହିଁବେ କାହିଁକି ?

ସେତେବେଳେ ଏ କଥା ଶୁଣି ସମସ୍ତେ ଯେତେ ହସିଥିଲେ, ଏପରି ଅଦ୍ଭୁତ ମନୋଭାବ ପାଇଁ ତା'ଠାରୁ ବେଶି ଆଶ୍ଚର୍ଯ୍ୟ ହୋଇଥିଲେ । ଏବେ କିନ୍ତୁ ସମୟ ବଦଳି ଯାଇଛି । ସେପରି ମନୋଭାବରେ କିଛି ଅସ୍ୱାଭାବିକତା ଥିଲାପରି ଆଜି ଆଉ ଜଣା ପଡୁ ନାହିଁ । ଆଜିର ଏହି ତଥାକଥିତ ଆଧୁନିକ ସମାଜର ଅଧିକାଂଶଙ୍କ ମନୋବୃତ୍ତି ଠିକ୍ ସେହି ଧରଣର ବୋଲି ହିଁ ମନେହୁଏ ।

ଜୀବନର କିଛି ଗୋଟିଏ ଉଦ୍ଦେଶ୍ୟ ତଥା ଲକ୍ଷ୍ୟ ଯେ ଥାଇପାରେ ଏ ସମ୍ବନ୍ଧରେ ଯେଉଁମାନେ ସନ୍ଦିହାନ ଏବଂ ବୈଜ୍ଞାନିକର ସନ୍ଦିଗ୍ଧ ଚକ୍ଷୁ ନେଇ ସ୍ପଷ୍ଟ ପ୍ରମାଣଅଭାବରେ ମରଣ ପରେ ମଧ୍ୟ ଜୀବନର କ୍ରମାନ୍ୱୟତାକୁ ଯେଉଁମାନେ ବିଶ୍ୱାସ କରିବାକୁ କୁଣ୍ଠିତ, ସେମାନେ ଏହି କ୍ଷଣଭଙ୍ଗୁର ଜୀବନର ସୀମିତ ସମୟକୁ ଭୋଗ ବିଳାସ ତଥା ସୁଖ ସ୍ୱାଚ୍ଛନ୍ଦ୍ୟରେ ଖୁନ୍ଦିଦେବାକୁ ଚାହିଁବା ସ୍ୱାଭାବିକ କଥା । ତେଣୁ ସେପରି ଲାଳସା ଭରା ସୁଖର ଅଭାବରେ ସେମାନେ ବଞ୍ଚି ରହିବାକୁ ଚାହିଁବେ ବା କାହିଁକି ?

ଏ ରକମର ଚିନ୍ତାଧାରା କିନ୍ତୁ ଭାରତୀୟ ପରମ୍ପରା ବିରୋଧୀ ଏଥିରେ ସନ୍ଦେହ ନାହିଁ । ଶୁଣାଯାଏ ଯେ କେବଳ ଚାର୍ବାକଙ୍କୁ ଛାଡ଼ିଦେଲେ ଅନ୍ୟକେହି ଭାରତୀୟ ମନୀଷୀ ଏପରି ମନୋଭାବର ପକ୍ଷପାତୀ ନଥିଲେ । ତେଣୁ ଏପରି ମନୋବୃତ୍ତି ପାଶ୍ଚାତ୍ୟ ସଭ୍ୟତାର ପ୍ରଭାବ ତଥା ପାଶ୍ଚାତ୍ୟ ଶିକ୍ଷାର ପରିଣତି ବୋଲି ହିଁ ମନେହୁଏ ।

ଆମ ସ୍କୁଲ କଲେଜମାନଙ୍କରେ ଭାରତୀୟ ଐତିହ୍ୟ, ପରମ୍ପରା ଓ ଚିନ୍ତାଧାରା ସମ୍ବନ୍ଧରେ କୌଣସି ଶିକ୍ଷାର ବ୍ୟବସ୍ଥା ନଥିବା ଯୋଗୁଁ ଏହି ପାଶ୍ଚାତ୍ୟ ମନୋବୃତ୍ତିର ଭ୍ରମ ପ୍ରମାଦ ଓ ହୀନତା ତଥା ପ୍ରାଚ୍ୟ ସଭ୍ୟତାର ଉତ୍କର୍ଷତା ସମ୍ବନ୍ଧରେ ସଚେତନ ହେବାପାଇଁ ଆମ ଯୁବସମାଜ ସୁଯୋଗ ହିଁ ପାଏନି । ତେଣୁ ସବିଶେଷ ଜ୍ଞାନ ନ ଥିଲେ ମଧ୍ୟ ଏ ସମ୍ବନ୍ଧରେ ସାଧାରଣ ଭାବରେ କିଛି ଆଲୋଚନା କରିବା ଉଚିତ ବୋଲି ମନେହୁଏ ।

ଅନ୍ୟ ପ୍ରଗତିଶୀଳ ଦେଶମାନଙ୍କ ସଙ୍ଗେ ସମକକ୍ଷକରି ଆମ ଦେଶକୁ ଗଢ଼ିବାକୁ ହେଲେ ଶିକ୍ଷା, କୃଷି, ବାଣିଜ୍ୟ, ଶିଳ୍ପ, ବିଜ୍ଞାନ ପରି ପ୍ରତ୍ୟେକ କ୍ଷେତ୍ରରେ ଆମକୁ ଆଗେଇ ଯିବାକୁ ପଡ଼ିବ ଓ ଦେଶକୁ ସମୃଦ୍ଧିଶାଳୀ କରିବାକୁ ହେବ ଏଥିରେ ସନ୍ଦେହ ନାହିଁ । ଏଥି ନିମନ୍ତେ ଆମର ବ୍ୟକ୍ତିଗତ ଓ ସମଷ୍ଟିଗତ ଜୀବନର ମାନ ତଥା ଜୀବନଧାରଣ ପ୍ରଣାଳୀକୁ ଆଧୁନିକ ସଭ୍ୟତାର ମାପକାଠି ଅନୁଯାୟୀ ଉନ୍ନତ କରିବାକୁ ହେବ, ଏଥିରେ ମଧ୍ୟ ଦୁଇ ମତ ହୋଇ ନ ପାରେ । ଏଥିପାଇଁ ଆର୍ଥିକ ସ୍ୱଚ୍ଛଳତା ଦରକାର, ଏଥିରେ ମଧ୍ୟ ଭିନ୍ନ ମତ ପୋଷଣ କରିବାର ଅବକାଶ ନାହିଁ । ଯେଉଁ ଦେଶରେ ଲକ୍ଷ୍ମୀ ଘରେ ଘରେ ପୂଜା ପାଆନ୍ତି, ସେ ଦେଶର ସଂସ୍କୃତି ଓ ପରମ୍ପରା ମଧ୍ୟ ସାଧୁ ଉପାୟରେ ଧନ ଅର୍ଜନର ପରିପନ୍ଥୀ ହୋଇ ନ ପାରେ ।

ଭାରତୀୟ ସଭ୍ୟତା କିନ୍ତୁ ଚିରଦିନ କହି ଆସିଛି ଯେ ଧନ ଭୋଗବିଳାସ ଦେଇପାରେ, ସ୍ୱାଚ୍ଛନ୍ଦ୍ୟମୟ ଜୀବନ ଦେଇପାରେ, ସାମୟିକ ସୁଖ ଦେଇପାରେ ଓ ଏପରିକି ସୁଖମୟ ଜୀବନର ବିରୋଧୀ ମଧ୍ୟ ହୋଇ ନ ପାରେ; କିନ୍ତୁ ଧନ ଓ ସୁଖମୟ ଜୀବନ ଅଥବା ଅର୍ଥ ଓ ଆନନ୍ଦ ଭିତରେ କୌଣସି ଓତଃପ୍ରୋତ ସମ୍ବନ୍ଧ ନାହିଁ । ଉଦାହରଣ ସ୍ୱରୂପ କୁହାଯାଇପାରେ ଯେ ଧନ ସାଙ୍ଗରେ ସୁଖର ଯଦି ସିଧାସଳଖ ସମ୍ବନ୍ଧ ଥାଆନ୍ତା ତେବେ ହାଇଦ୍ରାବାଦ ନିଜାମ ଭାରତବର୍ଷରେ ସବୁଠାରୁ ସୁଖୀ ଲୋକ ହୋଇଥାଆନ୍ତେ ଓ ତା'ପରେ କ୍ରମାନ୍ୱୟରେ ସୁଖୀ ହୋଇଥାଆନ୍ତେ ଟାଟା, ବିରଳା ପ୍ରଭୃତି । ଓଡ଼ିଶାରେ ମଧ୍ୟ ଇନକମ୍ ଟାକ୍ସ ରିଟର୍ଣ୍ଣ ଅନୁଯାୟୀ ସୁଖୀ ଲୋକଙ୍କ ଗୋଟିଏ ତାଲିକା କରି ଦିଆଯାଇ ପାରନ୍ତା । ଆମ କଲେଜମାନଙ୍କରେ ଲେକ୍‌ଚରର୍‌ମାନେ ଯେତେ ସୁଖୀ ହୁଅନ୍ତେ ରିଡ଼ରମାନେ ତା'ଠାରୁ ପ୍ରାୟ ଦୁଇଗୁଣ ସୁଖୀ ଓ ପ୍ରଫେସରମାନେ ତା'ର ଦୁଇଗୁଣ ସୁଖୀ ହୋଇଥାଆନ୍ତେ । ଅଧ୍ୟକ୍ଷମାନଙ୍କ କଥା ତ ଛାଡ଼ ।

ଏଥିରୁହିଁ ପ୍ରମାଣ ମିଳେ ଯେ ଅର୍ଥ ଉପାର୍ଜନ ଓ ସୁଖମୟ ଜୀବନ ଭିତରେ କୌଣସି ସିଧାସଳଖ ସମ୍ବନ୍ଧ ନାହିଁ । ଲାଳସା ତୃପ୍ତି ଓ ଆନନ୍ଦ ପ୍ରାପ୍ତି ଭିତରେ ମଧ ସେପରି କୌଣସି ସମ୍ବନ୍ଧ ନ ଥିଲାପରି ମନେହୁଏ ।

ଅନେକ ସମୟରେ ଦେଖିବାକୁ ମିଳେ ଯେ କଲେଜମାନଙ୍କର ସାଂସ୍କୃତିକ ସମାରୋହମାନଙ୍କରେ ଛାତ୍ରସମାଜ ଗୋଟିଏ ଦିଓଟି ଶାସ୍ତ୍ରୀୟ ସଙ୍ଗୀତ ଶୁଣିସାରିଲା ପରେ 'ବୋର୍' ହୋଇଯାଆନ୍ତି ଓ 'ଆଧୁନିକ' ଶୁଣିବାକୁ ଦାବି କରନ୍ତି । ୨/୪ଟି 'ଆଧୁନିକ' ପରେ ପୁଣି ସେଇ ଅବସ୍ଥା । ନୃତ୍ୟ କାର୍ଯ୍ୟକ୍ରମ ଯେତେବେଳେ ଆସେ - ଭାରତ ନାଟ୍ୟମ୍ ଦେଖି ପ୍ରଥମେ କରତାଳି ଧ୍ୱନି ଶୁଣିଲାପରେ ଦ୍ୱିତୀୟ ନୃତ୍ୟ ବେଳକୁ 'ବୋର୍ ବୋର୍' ଧ୍ୱନି ଶୁଣିବାକୁ ମିଳେ । ଓଡ଼ିଶୀ ଓ ସମ୍ବଲପୁରୀ ନୃତ୍ୟର ମଧ ଠିକ୍ ସେପରି ଅବସ୍ଥା ହୁଏ । ଅନେକ ଛାତ୍ର ଶେଷରେ ଚିଟାହୋଇ ସେକେଣ୍ଡ-ଶୋ ସିନେମା ଦେଖିବାକୁ ଯାଆନ୍ତି । ଏଥିରୁ ପ୍ରମାଣ ମିଳେ ଯେ ଖାଦ୍ୟପେୟ, ନୃତ୍ୟଗୀତ, ମଉଜମଜଲିସ୍ କିଛିକ୍ଷଣ ପାଇଁ ସୁଖକର ହେଲେହେଁ ମାତ୍ରା ଟିକିଏ ବେଶି ହୋଇଗଲେ ବୋର୍ ବା ଚିଟା ଲାଗେ ଓ ସେଥିରୁ ହିଁ କ୍ଷଣିକସୁଖର ଅବସାନହୁଏ । ମଣିଷ ପୁଣି ନୂତନ ସୁଖର ସନ୍ଧାନରେ ଘୂରିବୁଲେ ।

ଅନ୍ୟଦିଗରେ ଆମ ନିଜନିଜ ଘରେ ଘରର ଗୃହିଣୀ ବା ଘରର ଆଉ ଗୋଟିଏ ନୂତନ ଦିଗ ଦେଖିବାକୁ ପାଉ । ମା' କେତେବେଳେ ଶୋଇବାକୁ ଯାଏ ଜାଣି ହୁଏନି, ଯେହେତୁ ସେ ଶୋଇବାକୁ ଗଲାବେଳକୁ ଘରର ସମସ୍ତେ ଶୋଇ ସାରି ଥାଆନ୍ତି । ସେ କେତେବେଳେ ଉଠେ ତାହା ବି ଜାଣି ହୁଏନି, ଯେହେତୁ ସମସ୍ତେ ଉଠିଲାବେଳକୁ ସେ ତା'ର ନିତ୍ୟକର୍ମ ସାରି କାହାପାଇଁ ଦାନ୍ତକାଠି, ପାଣି ଠିକ୍ କରୁଥାଏ ଓ କାହାପାଇଁ ଚା' ତିଆରି କରୁଥାଏ । କାହାକୁ ଦୁଧପିଆଇ ଟିକିଏ ଗେଲକରି ଦେଉଥାଏ ତ କାହାକୁ ଜୋତା ମୋଜା ପିନ୍ଧାଇଦେଇ ବହିବସ୍ତାନୀ କାନ୍ଧରେ ଝୁଲାଇ ରାସ୍ତାକଡ଼କୁ ନେଇ ଆସୁଥାଏ । ଖାଇଲାବେଳେ କେହି କୌଣସି ଜିନିଷ ଭଲପାଉଛି ଦେଖିଲେ ସବୁତକ ସେଇଠି ବାଣ୍ଟିକୁଣ୍ଟିଦେଇ ନିଜେ ପଖାଳ ଓ ତେନ୍ତୁଳି ଧରି ବସେ, ଆଉ ପଚାରିଲେ ହସିଦେଇ କହେ ଯେ ସେ ତ ରାନ୍ଧୁଛି ସେ କ'ଣ ଆଉକେବେ ଖାଇବନି ? ଘରର ସମସ୍ତଙ୍କ ସେବା ଶୁଶ୍ରୂଷାରେ ହିଁ ସେ ଆନନ୍ଦ ପାଏ । ସମସ୍ତଙ୍କ ସନ୍ତୋଷରେ ହିଁ ତା'ର ଆନନ୍ଦ ।

ଏସବୁ ଅଭିଜ୍ଞତା ତଥା ବିଶ୍ଳେଷଣର ସିଦ୍ଧାନ୍ତରୁ ଆମର ମହାନ୍ ସଂସ୍କୃତି ଶିକ୍ଷା ଦିଏ ଯେ ସ୍ଥାୟୀ ସୁଖ ବା ଆନନ୍ଦ ମନସାଙ୍ଗରେ ଜଡ଼ିତ - ଧନସଙ୍ଗରେ ନୁହେଁ ।

ଏହି ସଂସ୍କୃତି କହେ ଯେ ଭୋଗ ଅପେକ୍ଷା ତ୍ୟାଗରେ ଆନନ୍ଦ ମିଳେ । ନିର୍ଯ୍ୟାତନା ଅପେକ୍ଷା ସେବାରେ ହିଁ ପରମ ସୁଖ ଓ ସନ୍ତୋଷ ଲାଭହୁଏ । ଗୁରୁଜନମାନଙ୍କୁ ତାଚ୍ଛଲ୍ୟ କରିବା ଅପେକ୍ଷା ସେମାନଙ୍କୁ ସମ୍ମାନ ଦେବାରେ ମାନସିକ ଶାନ୍ତି ମିଳେ, ଆଉ ଆତ୍ମ ଚିନ୍ତା ଓ ସ୍ୱାର୍ଥ ସାଧନ ଅପେକ୍ଷା ଅନ୍ୟମାନଙ୍କ ହିତସାଧନରେ ମନମଧ୍ୟରେ ଚିରନ୍ତନୀ ତୃପ୍ତି ଆସେ ।

ଯେଉଁମାନେ ଭାରତୀୟ ସଂସ୍କୃତିକୁ ନିନ୍ଦାକରିବାକୁ ଭଲପାଆନ୍ତି ସେମାନେ ଆମ ପରମ୍ପରାକୁ ଗୃହତ୍ୟାଗୀ ସନ୍ନ୍ୟାସୀର ପଳାୟନବାଦ ରୂପରେ ଦେଖନ୍ତି ଓ ଆମ ଋଷି ମୁନିମାନଙ୍କ ପ୍ରଦର୍ଶିତ ଭକ୍ତି ଓ ଜ୍ଞାନ ମାର୍ଗର ସମାଲୋଚନା କରିଥାଆନ୍ତି, ସେମାନେ କିନ୍ତୁ ଭୁଲି ଯାଆନ୍ତି ଯେ ରାଜା ଜନକ ଆମ କର୍ମଯୋଗର ପ୍ରତୀକ ।

ରାଜଋଷି ଜନକଙ୍କ ସମ୍ବନ୍ଧରେ ଅନେକ ଶିକ୍ଷଣୀୟ ଗପ ଶୁଣିବାକୁ ମିଳେ ।

ଥରେ କୁଆଡ଼େ ରାଜାଙ୍କର ଶିକ୍ଷକ ତଥା ଗୁରୁ ଅଷ୍ଟବକ୍ର ଋଷି ତାଙ୍କର କୌପୀନଧାରୀ ଅନେକ ଶିଷ୍ୟମାନଙ୍କୁ ନେଇ ରାଜାଙ୍କର ପ୍ରାସାଦରେ ରହି କେତେ କ୍ଲାସ ନେଉଥିଲେ । ଲେଙ୍ଗୁଟିବାଲା କେତେ ଶିଷ୍ୟ ତାଙ୍କ ସହପାଠୀ ଜନକଙ୍କ କୋଠାବାଡ଼ି ଧନ ଦଉଲତ, ହାତୀ ଘୋଡ଼ା ସବୁ ଦେଖି ମନେମନେ ହିଂସା କରୁଥିଲେ । ଜନକ ବେଳେ ବେଳେ କ୍ଲାସକୁ ଡେରିରେ ଆସନ୍ତି । ଅନ୍ୟ ଶିଷ୍ୟମାନେ ଏମିତି ଡେରିକଲେ ଅଷ୍ଟବକ୍ର ସେମାନଙ୍କୁ ଗାଳି ଦିଅନ୍ତି, କିନ୍ତୁ ଜନକଙ୍କୁ କିଛି କହନ୍ତିନି - ବରଂ ବେଳେବେଳେ ପଢ଼ା ହୋଇଥିବା ପାଠ ତାଙ୍କ ସୁବିଧା ପାଇଁ ଦୋହରାଇ ଦିଅନ୍ତି; ଆଉ କେବେ କେବେ ଜନକଙ୍କ ଆଗମନକୁ ଅପେକ୍ଷା କରି ରହନ୍ତି । ହିଂସାପରାୟଣ ଶିଷ୍ୟମାନେ ଧର୍ମଘଟର ମସୁଧା ନ କଲେ ମଧ୍ୟ ଭାବି ନିଅନ୍ତି ଯେ ଜନକଙ୍କ ଧନ ଓ ରାଜ କ୍ଷମତା ଯୋଗୁଁହିଁ ଗୁରୁ ତାଙ୍କୁ ଏପରି ଖାତିର କରୁଛନ୍ତି ।

ଥରେ ପାଠପଢ଼ା ଚାଲିଥାଏ, ଏପରି ସମୟରେ ଜଣେ କେହି ଧାଇଁ ଆସି ରାଜାଙ୍କୁ ଖବରଦେଲା ଯେ ନଅରର ଚାରିଆଡ଼େ ନିଆଁ ଲାଗିଯାଇଛି ଆଉ ଯଜ୍ଞ ଓ ପାଠଶାଳା ମଧ୍ୟ ନିଆଁ ଘେର ଭିତରେ ପଡ଼ିଯିବା ଉପରେ ।

ପ୍ରତ୍ୟେକ ଶିଷ୍ୟଙ୍କର ପାଳଟା ବସ୍ତ୍ର ହିସାବରେ ବ୍ୟବହାର କରାଯାଉଥିବା ବଳକା କୌପୀନ ଖଣ୍ଡିଏ ଲେଖାଏଁ ପାଖ ରହିବା ଘରେ ଥାଏ । ନିଆଁ ଲାଗିଥିବା ଖବର ଶୁଣିଲା କ୍ଷଣି ସବୁ ଶିଷ୍ୟ ସେ ଘରକୁ ଦଉଡ଼ି ଗଲେ ଏବଂ କୌପୀନ

ସାଙ୍ଗରେ ନିଜେ ନିଜେ ସଂଗ୍ରହ କରିଥିବା ଅନ୍ୟ ଯାହା କିଛି ସାମଗ୍ରୀ ସେମାନଙ୍କର ଥିଲା ସେ ସବୁ ତରବରରେ କାଖରେ ଜାକି କିମ୍ବା ବୁଜୁଳା ବାନ୍ଧି ହାତରେ ଧରି ଗୋଟିଏ ନିରାପଦ ସ୍ଥାନକୁ ଦଉଡ଼ି ଗଲେ। ଜନକ କିନ୍ତୁ ସେହି ଯଜ୍ଞଶାଳାରେ ଅଡ଼ି ବସିଲେ ଯେ ଅଷ୍ଟବକ୍ର ନିଶ୍ଚୟ ତାଙ୍କ କାନ୍ଧରେ ବସିବେ ଓ ତାଙ୍କୁ ନିରାପଦ ସ୍ଥାନରେ ପହଞ୍ଚାଇ ଦେଇସାରିଲା ପରେ ହିଁ ସେ ନିଜେ ରାଜ ନଅରକୁ ଯାଇ ନିଜ ନଅର ଓ ଭଣ୍ଡାରର ଯତକିଞ୍ଚିତ୍ ଉଦ୍ଧାରର ଚେଷ୍ଟା କରିବେ। ଏଣେ ଅଷ୍ଟବକ୍ର ନିଜେତ ଦୌଡ଼ି ପାରିବେ ନାହିଁ। ଜିଦ୍‌ଧରି ବସିଥିଲେ ଯେ ତାଙ୍କୁ ନେବାକୁ ଯାଇ ଡେରି କଲେ ଜନକ ନିଜେ ବିପଦରେ ପଡ଼ିବେ, ତେଣୁ ସେ ଏକୁଟିଆ ଶୀଘ୍ର ସେଠାରୁ ଚାଲିଯିବା ଉଚିତ।

ଶେଷରେ ଜନକଙ୍କ କଥାହିଁ ରହିଲା। ନିରାପଦ ସ୍ଥାନରେ ଅଷ୍ଟବକ୍ର ଅନ୍ୟ ଶିଷ୍ୟମାନଙ୍କ ପାଖରେ ପହଞ୍ଚି ଜନକଙ୍କ କାନ୍ଧରୁ ଓହ୍ଲାଇଲା ପରେ ଜନକ ଯେତେବେଳେ କ୍ଷିପ୍ର ଗତିରେ ନଅର ଆଡ଼କୁ ଚାଲିଗଲେ, ହଠାତ୍ ଦେଖାଗଲା ଯେ ନିଆଁ ଆପେ ଆପେ ଲିଭି ଯାଇଛି। ଏ ଅଦ୍ଭୁତ ଘଟଣା ଦେଖି ଶିଷ୍ୟମାନେ ଆଶ୍ଚର୍ଯ୍ୟ ହୋଇଗଲେ। ଅଷ୍ଟବକ୍ର ହସି ହସି ସେମାନଙ୍କୁ କହିଲେ, ‘‘ଏଥର ବୁଝିଲ, ମୁଁ କାହିଁକି ଜନକକୁ ସ୍ୱତନ୍ତ୍ର ସମ୍ମାନ ଦିଏ ! ଏତେ ଧନ ଥାଇ ମଧ୍ୟ ସେ ଜଣେ ମହାନ୍ ସନ୍ନ୍ୟାସୀ - ରାଜ ଋଷି। ଐଶ୍ୱର୍ଯ୍ୟରେ ତା’ର ଆସକ୍ତି ନାହିଁ - ତେଣୁ ଭଣ୍ଡାରଘର ରକ୍ଷା ଅପେକ୍ଷା ଗୁରୁଙ୍କ ଜୀବନରକ୍ଷାକୁ ସେ ଆଜି ପ୍ରଥମ ସ୍ଥାନ ଦେଲା। ସେ ଚିର ଶାନ୍ତ, ଧୈର୍ଯ୍ୟବାନ ଓ କର୍ତ୍ତବ୍ୟ ପରାୟଣ - ଯେତେବେଳେ ଯଜ୍ଞଶାଳାକୁ ଡେରିକରି ଆସେ, ମୁଁ ଧରିନିଏଁ ଯେ ରାଜକର୍ମର ଗୁରୁକର୍ତ୍ତବ୍ୟ ସେ ଯଥା ସମୟରେ ସାରିପାରି ନାହିଁ। ସାମାନ୍ୟ ଖଣ୍ଡିଏ ପାଳଟା କୌପୀନର ଅଧିକାରୀ ହେଲେ ହେଁ ତୁମ ମନର ତୃଷ୍ଣା ଯାଇନି - ଗୃହ ତ୍ୟାଗୀ ହୋଇଛ, କିନ୍ତୁ ଆସକ୍ତି ତୁମକୁ ଜାବୁଡ଼ି ଧରିଛି।’

ଏ ଗପ ଭାରତର ମହାନ୍ ପରମ୍ପରାର ଇଙ୍ଗିତ ଦିଏ। ଆମ ସଂସ୍କୃତି ଐତିହ୍ୟ ତଥା ପରମ୍ପରା ପାଇଁ ଆମମାନଙ୍କର ଗର୍ବକରିବାର ଯଥେଷ୍ଟ କାରଣ ରହିଛି।

# ତିନି ତୁଣ୍ଡରେ

ଅନେକ କହନ୍ତି ଯେ ଶାସନ ପଦ୍ଧତିଗୁଡ଼ିକ ମଧ୍ୟରେ ଗଣତନ୍ତ୍ର ହିଁ ସର୍ବୋତ୍କୃଷ୍ଟ।

'ଗଣଙ୍କ ଦ୍ୱାରା', 'ଗଣଙ୍କ ପାଇଁ', 'ଗଣଙ୍କର ଶାସନ'କୁ କୁଆଡ଼େ ଗଣତନ୍ତ୍ର କୁହାଯାଏ।

ଶାସନ କହିଲେ ଶାସନ ବା ଲୋକଙ୍କ ଉପରେ ଶାସନକୁ ହିଁ ବୁଝାଏ - ନିଜ ସ୍ତ୍ରୀ କିମ୍ବା ପୁଅ ଝିଅଙ୍କ ଉପରେ ମାଲିକାନା ଜାହିର କରିବା ନୁହେଁ। ତେଣୁ 'ଗଣଙ୍କର ଶାସନ' ବୋଲି କହିବାରେ କିଛି ବିଶେଷ ଅର୍ଥ ଥିଲାପରି ମନେହୁଏନି। ପୁଣି ନିଶ ଉପୁଡ଼ା ରାଜରାଜୁଡ଼ା ଶାସନଠାରୁ ଆରମ୍ଭ କରି ଆଚାର ଭ୍ରଷ୍ଟ 'ମ'କାର ବ୍ୟଭିଚାର ଗ୍ରସ୍ତ ଯାହିୟା ସାମରିକ ଏକଛତ୍ରବାଦ ପର୍ଯ୍ୟନ୍ତ ପ୍ରତ୍ୟେକ ଶାସନ ଡିଣ୍ଡିମ ପିଟି ଘୋଷଣା କରି କହେ ଯେ ତାଙ୍କ ପ୍ରବର୍ତ୍ତିତ ଶାସନ ଗଣଙ୍କ ସମୂହ ହିତପାଇଁ। ତେଣୁ କେବଳ ଗଣତନ୍ତ୍ର ଶାସନ ଯେ 'ଗଣଙ୍କ ପାଇଁ' ବା ଗଣଙ୍କ ହିତ ପାଇଁ, ସେ କଥା କହିବାରେ ମଧ୍ୟ ବିଶେଷ ତାତ୍ପର୍ଯ୍ୟ ନାହିଁ। ଅତଏବ 'ଗଣଙ୍କ ଦ୍ୱାରା' ଶାସନହିଁ ଗଣତନ୍ତ୍ରର ପ୍ରକୃତ ଓ ପ୍ରଧାନ ବିଶେଷତ୍ୱ ବୋଲି କୁହାଯାଇ ପାରେ। ଏଥିରୁ ବୁଝିବାକୁ ମିଳେ ଯେ ଗଣତନ୍ତ୍ର ଶାସନର ଲୋକେ ନିଜେ ନିଜକୁ ଶାସନ କରନ୍ତି। ଅନ୍ୟ ଅର୍ଥରେ, ଏଥିରେ ଶାସକ ଓ ଶାସିତ ଏକ ଓ ଅଭିନ୍ନ। ସେଥିପାଇଁ ଏ ଶାସନରେ ପ୍ରଭୁ କିମ୍ବା ଦାସ, ଶୋଷକ କିମ୍ବା ଶୋଷିତର କଳ୍ପନା କରାଯାଇ ନପାରେ। ତେଣୁ ସାମାଜିକ ନ୍ୟାୟ, ଅର୍ଥନୈତିକ ସମତା, ବ୍ୟକ୍ତିଗତ ଅଧିକାର ଓ ବ୍ୟକ୍ତିଗତ ସ୍ୱାଧୀନତା ଲାଭ ସଙ୍ଗେସଙ୍ଗେ ସମଷ୍ଟିଗତ ପ୍ରଗତି ଏ ଶାସନର ସ୍ୱାଭାବିକ ପରିଣତି ବୋଲି ଯୁକ୍ତି କରାଯାଏ।

ଆମ ଦେଶର ଜନସାଧାରଣଙ୍କ ଅଭିଜ୍ଞତାରୁ କିନ୍ତୁ ମନେହୁଏ ଯେ ଏପରି ପର୍ଯ୍ୟାଲୋଚନା କେବଳ ତାତ୍ତ୍ୱିକ ଓ ପୋଥିଗତ। ଛୁଆଁ ଅଛୁଆଁର ପୀଠସ୍ଥଳୀ ଭାରତରେ ସାମାଜିକ ନ୍ୟାୟ ଲଙ୍କାରେ ହରିଣଦ ପରି। ପୁଞ୍ଜିପତିର ବିଶାଳ ପ୍ରାସାଦ ଓ ଭିକାରିର ପତ୍ରକୁଡ଼ିଆ ତଥା ରାସ୍ତାକଡ଼ ମଧ୍ୟରେ ଅର୍ଥନୈତିକ

ସମତାର ଆଶା କେବଳ କଳ୍ପନାର ବିଳାସ । କୁସଂସ୍କାରପୂର୍ଣ୍ଣ ସାଧାରଣ ଶିକ୍ଷା ବିହୀନ ସମାଜରେ ବ୍ୟକ୍ତିଗତ ଅଧିକାର ଚିଲିକା ମାଛ ପରି ସ୍ୱପ୍ନିଳ ଓ ଦୁଷ୍ପ୍ରାପ୍ୟ, ଆଉ ସମଷ୍ଟିଗତ ପ୍ରଗତି ଆକାଶ କଇଆଁ ପରି କପୋଳ କଳ୍ପିତ । ମନରେ ତେଣୁ ପ୍ରଶ୍ନ ଉଠେ ଯେ ଗଣତନ୍ତ୍ରକୁ ଯାହା ବୋଲି ଘୋଷଣା କରାଯାଏ ସତରେ କ'ଣ ତାହା ନୁହେଁ ?

ଏପରି ସନ୍ଦେହ କିନ୍ତୁ ଅନ୍ୟାୟପୂର୍ଣ୍ଣ ବୋଲି ମନେହୁଏ ।

'ଗଣଙ୍କ ଦ୍ୱାରା' ଶାସନର ଅର୍ଥ ନୁହେଁ ଯେ ଜନତାର ସମସ୍ତେ ବ୍ୟକ୍ତିଗତ ଭାବରେ ସିଧାସଳଖ ଶାସନକର୍ତ୍ତା ହେବେ ଓ ନିଜେ ନିଜକୁ ଶାସନ କରି ବସିବେ । ଏପରି ବ୍ୟବସ୍ଥା କାର୍ଯ୍ୟକାରୀ ହେବା ଅସମ୍ଭବ । ତେଣୁ ଗଣତନ୍ତ୍ରରେ ଜନତା ଦ୍ୱାରା ଜନତାର ଶାସନ ପ୍ରତ୍ୟକ୍ଷ ନ ହୋଇ ପରୋକ୍ଷ ହେବାହିଁ ସ୍ୱାଭାବିକ । ସିଧାସଳଖ ଭାବରେ ଶାସନକର୍ତ୍ତା ହୁଅନ୍ତି ଏଇ ଜନତାର ପ୍ରତିନିଧି, ଯାହାଙ୍କୁ ସେମାନେ ନିଜେ ବାଛନ୍ତି ଓ ଯାହାଙ୍କ ହାତରେ ଶାସନକ୍ଷମତା ଓ ଶାସନର ଭାର ଜାଣିଶୁଣି ନିଜେ ସମର୍ପି ଦିଅନ୍ତି । ଲୋକପ୍ରତିନିଧି ମନୋନୟନ ତେଣୁ ଗଣତନ୍ତ୍ରର ମେରୁଦଣ୍ଡ ।

ଯେଉଁ ଦେଶର ଲୋକେ ଶାସନ ସମ୍ବନ୍ଧୀୟ ଜ୍ଞାନରେ ସୁଶିକ୍ଷିତ, ନିଜ ନାଗରିକ ଅଧିକାର ତଥା ପ୍ରତିନିଧି ବାଛିବାର ଗୁରୁତ୍ୱ ସମ୍ବନ୍ଧରେ ସଚେତନ, ସେ ଦେଶମାନଙ୍କରେ ଭୋଟ ଦାତାମାନେ ଲୋକପ୍ରତିନିଧି ହେବାପାଇଁ ତ ଉପଯୁକ୍ତ । ପ୍ରତ୍ୟେକ ବ୍ୟକ୍ତି ବିଶେଷଙ୍କ ଦୋଷଗୁଣ, କ୍ରିୟାକଳାପ, ଚିନ୍ତାଧାରା ଓ ମାନସିକ ଦୃଷ୍ଟିକୋଣ, ସାଧୁତା ଓ ସଚ୍ଚୋଟପଣିଆ ତଥା କାର୍ଯ୍ୟଦକ୍ଷତା ସମ୍ବନ୍ଧରେ ବ୍ୟକ୍ତିଗତ ଭାବରେ ଜ୍ଞାନ ସଂଗ୍ରହ କରି ଉପଯୁକ୍ତ ବ୍ୟକ୍ତିକୁହିଁ ପ୍ରତିନିଧି ରୂପରେ ବାଛି ନିଅନ୍ତି । ଆଉ ଯେଉଁ ଦେଶର ଜନତା ନିଜ ଅଧିକାର ତଥା କର୍ତ୍ତବ୍ୟ-ଜ୍ଞାନ ସମ୍ବନ୍ଧରେ ଅଜ୍ଞ, ସେ ଦେଶମାନଙ୍କରେ ଗୁଣ ଅପେକ୍ଷା ପ୍ରୋପାଗାଣ୍ଡାହିଁ ବିଶେଷ ଭାବରେ କାମକରେ । ଏପରି ଦେଶମାନଙ୍କରେ କେତେ ବିରାଡ଼ି ବୈଷ୍ଣବ ଶାସନ କ୍ଷମତା ପାଇବା ଲୋଭରେ ଜନତାର ପ୍ରତିନିଧି ହେବାକୁ ବାହାରି ପଡ଼ନ୍ତି, ଆଉ ନିଜେ ନିଜର ପେଁକାଳୀ ବଜାଇ, ସଭା ସମିତିରେ ଛାତି ପିଟି ବାହାସ୍ଫୋଟ ମାରି, ଧୂଆଁବାଣ ଛାଡ଼ି ଭଡ଼ାଟିଆ ଲୋକଙ୍କ ସାହାଯ୍ୟରେ ଡ୍ରମ ବାଡ଼େଇ, ଧନ କାର୍ପଣ୍ୟ ଓ ସେବାର ସାମୟିକ ଆଶ୍ରୟ ନେଇ ପ୍ରତିଦ୍ୱନ୍ଦ୍ୱମାନଙ୍କ କୁତ୍ସା ରଟନା କରି, ସେମାନଙ୍କ ଲୋକଙ୍କୁ ଭୟ ଦେଖାଇ ପ୍ରଚାର ବଳରେ ଧଳାକୁ କଳା ଓ କଳାକୁ ଧଳା କରିବାକୁ ଚେଷ୍ଟା କରନ୍ତି ।

ଭଲ-ମନ୍ଦ ଚିହ୍ନିବାର ଯୋଗ୍ୟତା ଯେଉଁଠି ନାହିଁ ସେଠାରେ ମୁଖ୍ୟତଃ ପ୍ରୋପାଗାଣ୍ଡାରହିଁ ଜୟ ହୁଏ । ପ୍ରୋପାଗାଣ୍ଡା ଯେ କ'ଣ କରିପାରେ ସେ ସମ୍ବନ୍ଧରେ ଆମର ପୁରୁଣା ଓ ଜଣାଶୁଣା 'ତିନି ତୁଣ୍ଡରେ ଛେଳି କୁକୁର' ମଜାଗପ ମନେପଡ଼େ ।

କଳା ମଚ୍‌ମଚ୍ ଦେହ, କହରା ନିଶ, ମେହଗାନି କାଠରେ କୁନ୍ଦିଲାପରି ହାତ ଆଉ ଫୁଲ୍‌କା ରୁଟିପରି ଫୁଲି ଉଠିଥିବା ଚୌଡ଼ା ଛାତି - ଲାଠି ହାତରେ ଆକୃତିଟି ଯେତେବେଳେ ରାସ୍ତା ଉପରକୁ ଉଠି ଆସିଲା, ବ୍ରାହ୍ମଣ ଗୋସାଇଁଙ୍କ ଆଖି ତାଳୁକୁ ଖୋସି ହୋଇଗଲା, ଆଉ ଦେହରୁ ଗମ୍‌ଗମ୍ ଝାଳ ବୋହିଗଲା । ଆଗନ୍ତୁକକୁ ଚିହ୍ନିପାରି ଥଥମତ ଗଳାରେ ପୁରୋହିତ ପଚାରିଲେ - 'ପାଣ୍ଡୁ କିରେ ?'

ପାଣ୍ଡୁ ଟିକିଏ ମୁରୁକି ହସ ହସି ଦେଇ ଓଳିକି କରୁକରୁ କହିଲା - 'ଗୋସାଇଁ ମହାପୁରୁ ! ଏଇ ଭୋର୍ ଭୋର୍ କୁକୁରଟିଏ କାନ୍ଧରେ ବୋହି କୁଆଡ଼ିକି ଚାଲିଛନ୍ତି ?' ଗୋସାଇଁ ମହାରାଜ ସପ୍ରତିଭ ହୋଇ ସାରିଥିଲେ । କହିଲେ, 'ହଇରେ ପାଣ୍ଡୁ, ସତରେ କ'ଣ ୬୦ ବର୍ଷ ନ ପୂରିଲେ ତମମାନଙ୍କର ବୁଦ୍ଧି ହୁଏନି ? ଛେଳି କିଏ କୁକୁର କିଏ ଚିହ୍ନି ପାରୁନୁ ? ଯଜମାନ ଛେଳିଟିଏ ଦାନ କଲେ - ସାଙ୍ଗରେ ଆଣିଲାବେଳକୁ ଛେଳିଟା ଭିଡ଼ି ଓଟାରି ହେଉଥିଲା - ବୋହି ନେଇ ଯାଉଛି ।'

ପାଣ୍ଡୁ ସୁନା ଖିଲି ପିଟା ଦାନ୍ତ ଦି'ଟାକୁ ଭଲକରି ନିକୁଟାଇ ବାଟକାଟି ଯାଉଯାଉ ଆଉ ଥରେ ବାହ୍ମଣଙ୍କ କାନ୍ଧଉପରୁ ଆଖି ବୁଲାଇ ଆଣି ଟିପ୍‌ପଣୀ ଛାଡ଼ି ଦେଲା, ଯେଡ଼େ ମୂର୍ଖ ହେଲେ ବି କୁକୁରଟାକୁ ଆଉ ଚିହ୍ନି ହେବନି ? ବଡ଼ ଲୋକଙ୍କୁ ଜବାବ ନାହିଁ ପରା !'

ଅଗ୍ନାଅଗ୍ନି ବନସ୍ତ ନ ହେଲେ କ'ଣ ହେଲା, ବେଶ୍ ବୁଦିବୁଦିକିଆ ଜଙ୍ଗଲ । ଚାରି ଆଡ଼ିକି ପାହାଡ଼ର ଘେର । ଚଢ଼େଇର ଥଣ୍ଟ ଆଉ କୁର୍‌ହାଡ଼ିର ବେଣ୍ଟ ମଝି ମଝିରେ ଶୁଣା ଯାଉଛି, ଆଉ ପୁରୋହିତ ଆଗେଇ ଚାଲିଛନ୍ତି - ଭାବନାର ଅନ୍ତ ନାହିଁ । ପାଣ୍ଡୁକୁ ଦେଖି ସତରେ ସେ ଘବରାଇ ଯାଇଥିଲେ । ଏଇ ଜଙ୍ଗଲ ବାଟଦେଇ ଗଲେ ଗାଁ ଟିକିଏ ପାଖ ପଡ଼େ । ଛେଳିର ବୋଝହିଁ ତାଙ୍କୁ ଖାଇଲା - ବୁଲାବାଟ ବରଂ ଭଲ ଥିଲା ।

ହଠାତ୍ ଚମକି ଉଠିଲେ । ଠିକ୍ ପାଣ୍ଡୁପରି ଆଉ ଜଣେ କିଏ । ମସ୍ତବଡ଼ ଠେଙ୍ଗାଟିଏ ଧରି କେଉଁ ବୁଦା ଉହାଡ଼ରୁ ରାସ୍ତା ଉପରକୁ ଉଠି ଆସିଲା ।

ପୁରୋହିତଙ୍କ ଛାତିରେ ପବନ ଅଟକି ଗଲା । ଥରିଲା ହାତରୁ ଛେଳିଟି ଖସି ପଡ଼ୁଁ ପଡ଼ୁଁ କେମିତି ରହିଗଲା ।

ଆଗନ୍ତୁକ ଫିକ୍ କରି ଦି'ଫାଳିଆ ହସଟିଏ ହସି ଦେଇ ପ୍ରଣାମ କରୁ କରୁ କହିଲା - 'ନନା - କୁକୁରଟାକୁ କ'ଣ କାନ୍ଧରେ ବୋହିଛନ୍ତି ? କଳିଯୁଗ ବୋଲି କ'ଣ ସବୁ ଆଚାର ବିଚାର ଗଲା ?'

ପୁରୋହିତ ଟିକିଏ ଅଡୁଆରେ ପଡ଼ିଲେ । କ'ଣ କହିବେ କିଛି ଠିକ୍‌କରି ପାରିଲେନି । ଛେଳିକୁ କାନ୍ଧରୁ ତଳକୁ ଓହ୍ଲାଇ ଖୁବ ଟିକିଏ ପରଖି ନେଲେ । ନିଜ ଆଖି ଦି'ଟାକୁ ଭଲକରି ମକଚି ଛେଳିର ଲାଞ୍ଜଟିକୁ ହଲାଇ ଦେଖିଲେ । ବୋହି ଆଣିଲା ବେଳେ କେଉଁଠି ମେଁ ମେଁ କରିଥିଲା ନା ନାହିଁ ମନେ ପକାଇବାକୁ ଚେଷ୍ଟା କଲେ, ଆଉ କହିଲେ, 'କିରେ ରାଧୁ - ଛେଳିଟାକୁ ଚିହ୍ନି ପାରୁନୁ କିରେ ?'

ରାଧୁ ବାଟ କାଟି ଯାଉ ଯାଉ ପଦେ ଶୁଣାଇ ଦେଇ ଗଲା, 'ଛେଳି, ନା ବାଛୁରୀ, ହଁ - ସରଗକୁ ନିଶୁଣୀ ନାହିଁ ଆଉ...' କ'ଣ କହିଲା ଠିକ୍ ଶୁଣା ଗଲାନି ।

ପୁରୋହିତ ମହାଶୟ ଏଥର ଗଭୀର ଚିନ୍ତାରେ ମଜ୍ଜି ଯାଇଥିଲେ । ଯଜମାନ ସତରେ ଗୋଟାଏ କୁକୁର ଦେଇନି ତ ! କଳିକାଳ - କିଏ ବା ଦୃଢ଼ କରି କହିବ ?

ବୁଦା ବଣ ଏ ଭିତରେ ସରିଯାଇଛି । ଆଗକୁ ଖୋଲା ରାସ୍ତା । ଗାଁ ବି ଦୂରରୁ ଦିଶିଲାଣି । ଇଏ ପୁଣି କିଏ ? ହଠାତ୍ ଜଣେ ବିରାଟକାୟ ପୁରୁଷ ଆଉ ଚାରିହାତିଆ ଠେଙ୍ଗାର ଆବିର୍ଭାବ ହେଲା । ପୁରୋହିତେ ଚିହ୍ନି ପାରିଲେ । ପାଖ ଗାଁ'ର ଅଗାଧୁ ।

ଅଗାଧୁ ଭକ୍ତିପୂର୍ଣ୍ଣ ପ୍ରଣାମଟିଏ କଲା ଆଉ ଆଶୀର୍ବାଦ ଗ୍ରହଣ କରୁ କରୁ ସାପ ଉପରେ ଗୋଡ଼ ପଡ଼ିଲା ପରି ଚମକି ଉଠି କହିଲା, 'ଅବଧାନେ - ଏମିତି ଜାତିଆ କୁକୁରଟାଏ କୋଉଠୁ ପାଇଲେ ? କିଏ ବି ଛେଳି ବୋଲି ଭୁଲ କରି ବସିବ । ଭଲ ଭୁକୁଛି ନା ?'

ଯଥେଷ୍ଟ ହୋଇସାରିଥିଲା । ପୁରୋହିତ ସେଇଠି ଛେଳିଟିକୁ ରାସ୍ତା ଉପରେ ଠିଆ ଠିଆ କଚାଡ଼ି ଦେଲେ । ରାଗରେ, ଲାଜରେ ଆଉ ଭଲ ଚଷମା ହଳଟିଏ ନ କିଣି, ଏମିତି ହଟହଟା ହୋଇଥିବା ଯୋଗୁଁ ଦୁଃଖରେ ନିଜ କରମକୁ ନିନ୍ଦି,

ଯଜମାନଙ୍କୁ ଅଭିଶାପ ଦେଇ ଦେଇ ଗାଁ ଆଡ଼କୁ ଖଣ୍ଡ ଦଉଡ଼ ଦେବାକୁ ଆରମ୍ଭ କଲେ ।

ଅଗାଧୁ ଛେଳିଟିକୁ ଆଦରରେ ଛାତି ପାଖରେ ଜାବୁଡ଼ି ଧରି ତା'ର ଅନ୍ୟ ଦି' ସାଙ୍ଗ ପାଣୁ ଆଉ ରାଧୁ ପାଖକୁ ଖୁସି ମନରେ ଚାଲିଗଲା ।

ଆଜି ଆମ ଦେଶରେ ଅଗଣିତ ପାଣୁ, ରାଧୁ ଆଉ ଅଗାଧୁ ବାହାରି ପଡ଼ିଛନ୍ତି ଛେଳିକୁ କୁକୁର ଆଉ କୁକୁରକୁ ଛେଳି କରିବା ଉଦ୍ଦେଶ୍ୟରେ । ତିନି ଦୁଣ୍ଡ ସାଙ୍ଗକୁ ସେମାନଙ୍କ ପାଖରେ ପ୍ରଚାର ପତ୍ର, କାନ୍ଥ ବାଡ଼ ଲେଖା, ସିନେମା ହଲର ପର୍ଦ୍ଦା, ରେଡ଼ିଓ, ଟେଲିଭିଜନଠାରୁ ଆରମ୍ଭ କରି ପାଲା ଦାଶକାଠିଆ, ସଭା ସମିତି, ଶୋଭାଯାତ୍ରା ପର୍ଯ୍ୟନ୍ତ ଅନେକ ନୂତନ ଓ ଆଧୁନିକ ଢଙ୍ଗର ପ୍ରଚାର ଅସ୍ତ୍ର ଜମାହେଲାଣି । ସେମାନଙ୍କ ପାଖରେ ଧନର ମଧ ଅଭାବ ନାହିଁ ।

ଯେଉଁଠି ଶିକ୍ଷିତ ଭୋଟଦାତା ମଧ ଉଦାସୀନ, ସେଇଠି ଅନେକ କ୍ଷେତ୍ରରେ ଏମାନଙ୍କର ହିଁ ଜୟହେଉଛି ।

ଏପରି କେବଳ ପ୍ରଚାର ଶକ୍ତି ବଳରେ ଜିଣିଥିବା ଗୁଣହୀନ ଓ ନୀତିହୀନ କେତେକ ପ୍ରତିନିଧି ଯେତେବେଳେ ନିଜ ହାତରେ କ୍ଷମତା ପାଇ ଯାଉଛନ୍ତି, ସେମାନେ ଗରିବ ଦେଶର ବିବାଦୀ ଜନତାଙ୍କ ମଧରେ ସୀମିତ ସୁବିଧା ବାଣ୍ଟିଲାବେଳେ ମାଙ୍କଡ଼ ଦୁଇ ବିରାଡ଼ିଙ୍କ ମଧରେ ପିଠାବାଣ୍ଟିଲା ନ୍ୟାୟରେ ତରାଜୁର ଦି'ପାଖ ଓଜନ ସମାନ କରୁ କରୁ ଗୋଟିଏ ପଟରୁ ପୁଳାଏ ଉଦରସ୍ଥ କିମ୍ୱା ପକେଟସ୍ଥ କଲା ପରେ ଅନ୍ୟ ପାଖ ଯେତେବେଳେ ବେଶି ଓଜନିଆ ହୋଇ ଯାଉଛି, ସେପଟରୁ ପୁଳେ କାଢ଼ିଆଣି ପକେଟରେ ଭର୍ତ୍ତି କରି ଦେଉଛନ୍ତି । ତରାଜୁର ଦି'ପାଖ ଶେଷରେ ଖାଲି ହୋଇଯାଉଛି, ଆଉ ଜନତା ଜନାର୍ଦ୍ଦନ ଦୁଇ ବିରାଡ଼ିଙ୍କ ପରି ଖାଲି ଓଠ ଚାଟି ଏହି ପ୍ରତିନିଧିମାନଙ୍କୁ ମିଟି ମିଟି କରି ଅନାଇ ରହୁଛନ୍ତି । ଯେଉଁ ପ୍ରତିନିଧିମାନଙ୍କୁ ତରାଜୁ ଧରିବାର ସୁଯୋଗ ମିଳୁନି ସେମାନଙ୍କ ମଧରୁ କେତେ ମାଙ୍କଡ଼ଚିଡି ମାରି ରାଜନୈତିକ ପଟ୍ଟ ପରିବର୍ତ୍ତନ କରୁଛନ୍ତି । ତା'ପରେ ଆରମ୍ଭ ହେଉଛି ବାଉଁଶ ରାଣୀ ଖେଳ । କେଉଁ ନେତା ଲାଠିଟିଏ ଧରି, ଆଉ କିଏ ବା ରଙ୍ଗ ବେରଙ୍ଗର ଛତାଟିଏ ଧରି ଦୁଇ ବାଉଁଶ ଖୁଣ୍ଟ ମଧରେ ବନ୍ଧାହୋଇଥିବା ତା'ର ଦଉଡ଼ିରେ କାରସାଦି ଦେଖାଉ ଦେଖାଉ ବେଳେ ବେଳେ

ବିଚିତ୍ର ଗତିରେ ଗୋଟିଏ ଗୋଡ଼ରେ ଭଅଁର ଖେଳି ଦିଗ ପରିବର୍ତ୍ତନ କରି ନେଉଛନ୍ତି ।

ଯଥା ସମୟରେ ଖେଳ ଭାଙ୍ଗି ଯାଉଛି ।

ପୁଣି ନୂତନ ଅଭିନୟ ଆରମ୍ଭ ହେଉଛି ଠିକ୍ ସେଇ ଢଙ୍ଗରେ । ସେହି ଜନତା - ସେଇ ପ୍ରତିନିଧି, ସେଇ ଖେଳ । ବ୍ୟବଧାନ କେବଳ ସମୟ ।

ଗଣତନ୍ତ୍ର ଏଥିପାଇଁ ଦୋଷୀ ହେବ କାହିଁକି ? ଗଧିଆ ଯଦି ମେଣ୍ଢାର ପୋଷାକରେ ମେଣ୍ଢାଙ୍କ ଗହଣରେ ମେଣ୍ଢାଶାଳ ଭିତରେ ପଶି ଗୋଟିକ ପରେ ଗୋଟିଏ ମେଣ୍ଢା ଖାଇବାକୁ ଆରମ୍ଭ କରିଦିଏ ସେଥିପାଇଁ ଦୋଷୀ ହେବ କିପରି ?

ଗଣତନ୍ତ୍ର ଶାସନ ଯେ ଶ୍ରେଷ୍ଠ ଶାସନ ଏଥିରେ ସନ୍ଦେହ ନାହିଁ । କିନ୍ତୁ ବେଳେ ବେଳେ ମନଭିତରେ ସ୍ୱାଭାବିକଭାବରେ ପ୍ରଶ୍ନଉଠେ - ଆମେ କଣ ଗଣତନ୍ତ୍ର ଶାସନ ପାଇଁ ନିଜେ ଉପଯୁକ୍ତ ?

କଥାରେ କହନ୍ତି, ଯିଏ ଯେଉଁ ଶାସନ ପାଇଁ ଉପଯୁକ୍ତ, ସେ ସେଇୟାହିଁ ପାଏ । ତେଣୁ ଆଜି ଆମର ଏ ଅବସ୍ଥା ପାଇଁ ଆମେ ନିଜେହିଁ ଦାୟୀ ।

ଗଣଶିକ୍ଷା ଓ ଗଣ ଚେତନାର ଅଭାବ ଥିବା ଯାଏ ଗଣତନ୍ତ୍ରର ସଫଳତା ଆଶା କରିବା ବିଡ଼ମ୍ବନା ମାତ୍ର ।

# ରାଜା ବିନୁଁ

ସେ କାଳ ଓ ଏ କାଳ ।

ରହସ୍ୟାବୃତ ଓ ପ୍ରହେଳିକାମୟ ସେ କାଳରେ ମୁଖ୍ୟତଃ ରାଜାମାନେ ରହୁଥିଲେ । ସେ ଦିନର କାହାଣୀ ଆଉ ଇତିହାସ କେବଳ ଏ ରାଜାମାନଙ୍କର ତଥା ସେମାନଙ୍କ ମାଳ ମାଳ ମହିଷୀଙ୍କର ଜୀବନ ଇତିବୃତ୍ତି ।

ଧର୍ମ ସେତେବେଳେ ଥିଲା ରାଜାଙ୍କର ଅନୁଗତ । ପ୍ରଜାଙ୍କ ଆଖିରେ ରାଜା ଥିଲେ ନରରୂପୀ ନାରାୟଣ - ସେମାନଙ୍କ ହର୍ତ୍ତା, କର୍ତ୍ତା ଓ ଭାଗ୍ୟବିଧାତା ।

କେଉଁ ରାଜା କେତେବଡ଼ ତାହା ତାଙ୍କ ହାତୀ, ଘୋଡ଼ା, ରଥ ସୈନ୍ୟସାମନ୍ତ ଆଉ ପୋଇଲି ପରିବାରୀଙ୍କ ସଂଖ୍ୟାରୁ ଜଣାପଡୁଥିଲା । ପୋଖରୀମାନଙ୍କରେ ବଡ଼ମାଛ ସାନମାଛକୁ ଗିଳିବାକୁ ସତତଃ ଚେଷ୍ଟା କଲାପରି ବଡ଼ବଡ଼ ରାଜାମାନେ ସାନସାନ ରାଜାଙ୍କୁ ଅନବରତ ଆକ୍ରମଣ କରୁଥିଲେ ଆଉ ତାଙ୍କ ହାତୀ ଘୋଡ଼ା ପୋଇଲି ପରିବାରୀଙ୍କ ସାଙ୍ଗରେ ରାଜଜେମାମାନଙ୍କୁ ମଧ୍ୟ ନେଇଯାଉଥିଲେ । କେହିକେହି ଲକ୍ଷେ ରାଜାଙ୍କୁ ବନ୍ଦୀକରି ରଖୁଥିଲେ ମଧ୍ୟ । 'ଜିଣିବାକୁ ନାହିଁ ଆଉ ଧରାଖଣ୍ଡ' ଅବସ୍ଥାକୁ ଆସିଲେ କୌଣସି କୌଣସି ରାଜା କୁଆଡ଼େ ସ୍ୱର୍ଗକୁ ଧାଡ଼ି ଦେଉଥିଲେ । ଇନ୍ଦ୍ରଙ୍କ ଆସନ ସବୁବେଳେ ଟଳମଳ ହେଉଥିଲା । ବୃତ୍ତ୍ରାସୁରା ପରି ଜଣେଅଧେଙ୍କୁ ଛାଡ଼ିଦେଲେ ଇନ୍ଦ୍ର ସବୁବେଳେ ଯୁଦ୍ଧରେ ହାରୁଥିଲେ ଆଉ ବ୍ରହ୍ମାଙ୍କ ସଙ୍ଗରେ ଦେବଗଣଙ୍କୁ ଧରି ବିଷ୍ଣୁଙ୍କ ପାଖରେ ଅନ୍ୟାୟ ବିରୁଦ୍ଧରେ ଗୁହାରି କରୁଥିଲେ । ଶଚୀଦେବୀ ଓ ପୃଥିବୀର ବିକଳ ସହି ନପାରି ବିଷ୍ଣୁ ଦେଖାଦେଉଥିଲେ ଧରାଧାମରେ ।

ରାଜାଙ୍କ ଭିତରେ କେତେ ଭଲ ରାଜାଥିଲେ । ପ୍ରଜାଙ୍କ ହିତପାଇଁ ସେମାନେ ତାଙ୍କର ସର୍ବସ୍ୱ ତ୍ୟାଗକରିବାକୁ ପ୍ରସ୍ତୁତଥିଲେ । ଅନ୍ୟମାନଙ୍କର କର୍ତ୍ତବ୍ୟ ସାଧନାରେ ଯେ କେହି ବାଧାବିଘ୍ନ ସୃଷ୍ଟିକଲେ ତାକୁ ଦଣ୍ଡ ଦେଉଥିଲେ । ସେମାନଙ୍କ ରାଜ୍ୟରେ କୌଣସି ରକମର ଅନ୍ୟାୟ ହେଉ ନଥିଲା । ଯଥାସମୟରେ ବୃଷ୍ଟି ନହେଲେ ଇନ୍ଦ୍ରଙ୍କୁ ମଧ୍ୟ ଅନୁତାପ କରିବାକୁ ପଡୁଥିଲା । ଏପରି ରାଜାମାନଙ୍କର ଶାସନରେ ବାଘ ଆଉ ମିରିଗ ଏକା ଘାଟରେ ପାଣି ପିଉଥିଲେ ।

ଆଉ ଥିଲେ ଦୁଷ୍ଟରାଜା । ଏହି ଦୁଷ୍ଟଙ୍କ ଭିତରୁ କେହିକେହି ନିଜ ପୁଅକୁ ମଧ ହାତୀ ମଡ଼ାଇ, ନିଆଁରେ ଫିଙ୍ଗି, ସମୁଦ୍ରରେ ଭସାଇ ମାରିଦେବାକୁ ଚେଷ୍ଟାକରୁଥିଲେ ତ କେହି ପରସ୍ତ୍ରୀ ଚୋରାଇ ନେଉଥିଲେ । କେହି ନିଜ କୁଳବୁଆଷୁଅଣୀଙ୍କୁ ସର୍ବସମ୍ମୁଖରେ ବିବସନା କରାଇବାକୁ ଚେଷ୍ଟା କରୁଥିଲେ ତ ଆଉ କେହି ନିଜ ପିତାଙ୍କୁ ନଗରର ଚୌକିଦାର କରି ଖଟାଉଥିଲେ ।

ପୁଣି ଥିଲେ କେତେ 'ଅନ୍ଧେର ନଗରୀର ଅବୁଝା ରାଜା' । ସେମାନଙ୍କ ରାଜ୍ୟରେ ଭାଜିଶାଗ ସେର ଟଙ୍କାଏ ତ ଖଜାଲଡୁ ସେର ମଧ ଟଙ୍କାଟିଏ ହେଉଥିଲା ।

ସେ କାଳରେ ରାଜାବିନୁ ଦେଶର ଅସ୍ତିତ୍ୱ କଳ୍ପନା ବହିର୍ଭୂତ ଥିଲା । ତେଣୁ ପଶୁଜଗତ ଓ ଇତର ଜୀବଜଗତରେ ମଧ ରାଜାମାନେ ଦେଖାଦେଉଥିଲେ ।

ବଣର ରାଜା ହୋଇଥିଲା ପଶୁରାଜ ସିଂହ । ରାଜକ୍ଷମତା ବଳରେ ପ୍ରାପ୍ୟ ତା'ର ପଶୁ ମାରି ଖାଇବାର ଅଧିକାରକୁ ବଣର ପଶୁଜଗତ ବିନାପ୍ରତିବାଦରେ ମାନି ନେଇଥିଲା । ତେଣୁ ଯେତେବେଳେ ସୁଶାସନ ପ୍ରବର୍ତ୍ତନ ଉଦ୍ଦେଶ୍ୟରେ ପଶୁରାଜ ରାଜି ହୋଇଗଲେ ଯେ ସେ ଦିନକୁ ମାତ୍ର ଗୋଟାଏ ପଶୁ ବଧ କରିବେ - ସେ ଉଦାର ନିଷ୍ପତ୍ତିକୁ ବଣ ପଶୁସମାଜ ସ୍ୱାଗତ କରିଥିଲା । ନିଜର ଜୀବନରକ୍ଷା କରିବାକୁ ଯାଇ ଠେକୁଆ କିପରି କୂଅ ଭିତରେ ଆଉ ଗୋଟିଏ ନୂଆ ରାଜା ଆବିଷ୍କାର କଲା ଓ ପଶୁରାଜଙ୍କୁ ଏ ନୂଆ ରାଜାର ଆହ୍ୱାନ କଥା ଶୁଣାଇଥିଲା - ସେ କଥା ସମସ୍ତଙ୍କୁ ଜଣା ।

ବେଙ୍ଗରାଇଜରେ ମଧ ଥରେ ରାଜା ନ ଥିବାରୁ ବିଶୃଙ୍ଖଳା ଦେଖାଦେଇଥିଲା । ବେଙ୍ଗମାନେ ତାଙ୍କ ପୋଖରୀ ପାଇଁ ଗୋଟିଏ ଭଲ ଉଦାରମନା ରାଜା ଯୋଗାଇ ଦେବା ନିମନ୍ତେ ଇନ୍ଦ୍ରଙ୍କୁ ଅନୁରୋଧ କରିଥିଲେ । ଇନ୍ଦ୍ର ଖଣ୍ଡିଏ କାଠଗଡ଼କୁ ପୋଖରୀର ରାଜା କରି ଥାପି ଦେଲେ । ବେଙ୍ଗମାନେ ପ୍ରଥମେ ଭକ୍ତିପୂତ ପ୍ରଣାମ ସହ କାଠଗଡ଼ ରାଜାଙ୍କ ଗୁଣକୀର୍ତ୍ତନ କଲେ ଆଉ ବଡ଼ବେଙ୍ଗଙ୍କ ଅତ୍ୟାଚାରରୁ ସାନବେଙ୍ଗଙ୍କୁ ରକ୍ଷାକରିବା ପାଇଁ ତାଙ୍କ ପାଖରେ ଗୁହାରି କଲେ । କିନ୍ତୁ ରାଜାଙ୍କ ଉଦାସୀନତା ଲକ୍ଷ୍ୟ କରି ଶେଷରେ ସ୍ୱ ସ୍ୱ ଜଣାଣ ଅତି ନିକଟରୁ ନିବେଦନ କରିବା ଉଦ୍ଦେଶ୍ୟରେ ପାଖକୁ ଯାଇ ସର୍ବଶେଷରେ କାଠଗଡ଼ ଉପରେ ଚଢ଼ି ବସିଲେ । ଯଥାସମୟରେ ବେଙ୍ଗସମାଜ ଜଣେ ପରାକ୍ରମଶାଳୀ ରାଜା ପାଇଁ ଅନୁରୋଧ କଲା ଓ ଇନ୍ଦ୍ର ଦେବତା ଯୋଗାଇ ଦେଲେ ଗୋଟିଏ ଥଣ୍ଟୁଆ ବଗ । କାଠଗଡ଼ ରାଜାଙ୍କୁ ଖାତିର କରୁ ନଥିବା

ବେଙ୍ଗମାନେ ଏଥର ଯେତେବେଳେ ଏହି ବଗରାଜାଙ୍କ ପାଖକୁ ଯାଇ ତାଙ୍କ ପିଠିଉପରେ ଛଡ଼ିବାକୁ ଉଦ୍ୟମକଲେ ବଗରାଜା ସେମାନଙ୍କୁ ଗୋଟା ଗୋଟା ଗିଳି ଦେଇଗଲା । ବେଙ୍ଗମାନେ ଏଥର ଜାଣିଲେ ଯେ ସେମାନେ ଗୋଟିଏ ରାଜାଧିରାଜ ପାଇଛନ୍ତି । ଯଥାସମୟରେ ପୋଖରୀରେ ବେଙ୍ଗ ଶୂନ୍ୟ, ଶାନ୍ତିବିରାଜମାନ କଲା ।

ପିତାକୁ ବନ୍ଦୀକରି, ଭାଇମାନଙ୍କୁ ମାରି ଅଥବା କୁଟକପଟତା ଓ ବିଶ୍ୱାସଘାତକତା କରି ମଧ କେହିକେହି ସେ କାଳରେ ରାଜା ହେଉଥିଲେ । ଅତ୍ୟାଚାର ସହି ନପାରି ବେଳେବେଳେ ପ୍ରଜାମାନେ ବିଦ୍ରୋହ କରୁଥିଲେ । କିନ୍ତୁ ରାଜାଙ୍କର କ୍ରୂର ପାଶବିକ ଶକ୍ତି ସେ ବିଦ୍ରୋହ ସବୁକୁ ସହଜରେ ଦମନ କରୁଥିଲା । କେବେ କେଉଁଠି ବିଦ୍ରୋହ ସଫଳ ହେଉଥିଲା, ଆଉ ବିଦ୍ରୋହୀ ନେତା ଯଥା ସମୟରେ ନିଜେ ରାଜା ହୋଇଯାଉଥିଲେ ଆଉ ତାଙ୍କ ପରେ ରାଜା ହେଉଥିଲେ ତାଙ୍କ ପୁଅ ।

ସେ କାଳର ଅବସାନ ଘଟିଲା ଓ ଆସିଲା ଏକାଳ ।

ଶୋଷଣ ବିରୁଦ୍ଧରେ ଦେଖାଦେଲା ଜନତାର ସଂଗ୍ରାମ - ପାଶବିକ ଶକ୍ତି ବିରୁଦ୍ଧରେ ଠିଆହେଲା ମାନବିକତା, ଅସତ୍ୟ, ଅନ୍ୟାୟ ଓ ହିଂସା ବିରୁଦ୍ଧରେ ସତ୍ୟ ଓ ଅହିଂସା । ଯେଉଁ ସମ୍ରାଟ୍‌ଙ୍କ ସାମ୍ରାଜ୍ୟରେ ସୂର୍ଯ୍ୟ ଅସ୍ତ ଯାଉ ନଥିଲେ ସେ ସମ୍ରାଟ୍‌ଙ୍କ ବିରୁଦ୍ଧରେ ଠିଆ ହେଲେ ଜଣେ 'ମିକି ମାଉଚ୍' - ଆଣ୍ଠୁଯାଏ ଓସାର ଖଣ୍ଡିଏ ଖଦୀ, ଖୋଲା ଦେହ, ହଳେ ଚପଲ ଓ ହାତରେ ଗୋଟାଏ ଠେଙ୍ଗା । କମାଣ ବଦଳରେ ଥିଲା ମୁଠାଏ ଲୁଣ ।

ବାଧ ହୋଇ ରାଜପଣ ଛାଡ଼ି ଫେରିଗଲେ ସାତ ସମୁଦ୍ର ତେର ନଈ ପାରହୋଇ ଆସି ଆମ ଦେଶରେ କୁଚକ୍ରାନ୍ତ କରି ରାଜା ହୋଇଥିବା ବିଦେଶୀ ବେପାରୀ । ଆଉ ବେପାରୀ ରାଜାଙ୍କ ସଙ୍ଗରେ ପୁଡ଼ା ପୁଟୁଳା ବାନ୍ଧି ବିଦାୟନେଲେ ତାଙ୍କ ବନ୍ଧୁ ବର୍ଗ - କେତେ ଶହ ଦେଶୀୟ ରାଜା ।

ବିଦ୍ରୋହୀ ନେତା କିନ୍ତୁ ଏଥର ନିଜେ ରାଜା ହେଲେନି । ରାଜା ହେବା ପରିବର୍ତ୍ତରେ ସେ ହେଲେ ସମସ୍ତଙ୍କ ବାପୁ । ରାଜାଙ୍କ ଯୁଗ ଗଲା ଓ ଆସିଲା ଜନତାର ଯୁଗ ।

ସେ କାଳର ନିରୀହ ପ୍ରଜା ଏ କାଳର ଶକ୍ତିଶାଳୀ ଜନତାରେ ପରିଣତ ହେଲା । ସ୍ୱରାଜ ସଙ୍ଗରେ ଆସିଲା ବ୍ୟକ୍ତିଗତ ସ୍ୱାଧୀନତା । ରାଜା ଶାସନ ବଦଳରେ ଆସିଲା ଗଣ ଶାସନ ।

ବାପୁ କହୁଥିଲେ, ତାଙ୍କ ଭାରତରେ ଅନ୍ୟାୟ, ଅତ୍ୟାଚାର ଓ ଶୋଷଣ ରହିବନି । ସମସ୍ତେ ଦି' ଓଳି ପେଟପୂରା ଖାଇବାକୁ ପାଇବେ । ମୁଣ୍ଡ ଗୁଞ୍ଜିବାକୁ ସମସ୍ତଙ୍କର କିଛି ଆଶ୍ରା ରହିବ । ରହିବ ଲଜ୍ଜା ଢାଙ୍କିବା ପାଇଁ କନା । ଶିକ୍ଷା ଓ କର୍ମ ଓତପ୍ରୋତ ଭାବରେ ଜଡ଼ିତ ହୋଇଯିବ । ବୁଢ଼ା ବୁଢ଼ୀ, ବିଧବା, ପଙ୍ଗୁ ସମେତ ସବୁ ଲୋକଙ୍କୁ କାମ ଯୋଗାଇ ଦେବା ପାଇଁ ହସ୍ତଶିଳ୍ପ ଓ କୁଟୀରଶିଳ୍ପ ଉପରେ ଗୁରୁତ୍ୱ ଦିଆଯିବ - କାରଖାନା କେବଳ କେତୋଟି ଗୁରୁଶିଳ୍ପ ଭିତରେହିଁ ସୀମିତ ରହିବ ।

ଏ କାଳ ଆସିଲା, କିନ୍ତୁ ବାପୁଙ୍କର ସେ ସ୍ୱପ୍ନର ଭାରତ ଆସିଲାନି ।

ଭୋକିଲା ଜନତାର ଦୁଃଖଦୁର୍ଦ୍ଦଶା ଦେଖିବାକୁ ସେ ଆଜି ଆଉ ନାହାନ୍ତି ।

ବାପୁଙ୍କ ସଙ୍ଗରେ କୁଟୀରଶିଳ୍ପ ବିଦାୟ ନେଇଛି । ଗାଁ'ମାନଙ୍କରେ ଆଉ ପହିଲି କୁକୁଡ଼ା ଡାକିବା ବେଳର ଢେଙ୍କି ଶବ୍ଦ ଶୁଣିବାକୁ ମିଳୁନି । ଗରିବ ବୋହୂ ଭୁଆଷୁଣୀଙ୍କ ଢେଙ୍କି କୁଟାରୁ ପ୍ରାପ୍ୟ ମୁଠାଏ ଖୁଦ ଚାଉଳ ଆଜି ଧାନବସ୍ତା ସଙ୍ଗରେ ଚାଲି ଯାଉଛି ମିଲ ଓ ହଲର ମାଲିକମାନଙ୍କ ପାଖକୁ - ଲେଭି ନାଁ'ରେ ଅଥବା ସିଧା ସଳଖ । ଭାଜିଶାଗ ଓ ଖଜାଲଡୁର ସମାନ ଦର ପରି ଢେଙ୍କି ଚାଉଳ ଓ ମିଲ ଚାଉଳ ଭିତରେ ଆଉ କିଛି ଫରକ ନାହିଁ ।

ଖରାଦିନିଆଁ ଗାଁ ଆମ୍ବତୋଟାରେ ଆଉ ସେ କାଠୁରିଆର କାଠ କରତିବା କରତ ଶବ୍ଦ ଶୁଭୁ ନାହିଁ - କରତ ନାହିଁ କି ଆମ୍ବ ତୋଟା ନାହିଁ । କରତ ଯାଇଛି ସ-ମିଲକୁ ଆଉ ଜମିର ସିଲିଂ ସଙ୍ଗରେ ଯାଇଛି ଆମ୍ବତୋଟା ।

ବାଡ଼ିବଗିଚାର କପାଗଛ ଓ ବୁଢ଼ାବୁଢ଼ୀଙ୍କ ଅରଟ ଚିର ବିଦାୟ ନେଇଛନ୍ତି ମିଲ ସୂତା ସଙ୍ଗରେ ଯୋଡ଼ ଦେଇ ନପାରି । ମିଲ୍ ସୂତାରେ ଏଇଠି ସେଇଠି ଖଣ୍ଡିଏ ଅଧେ ତନ୍ତ ଲୁଗା ବୁଣା ହେଉଛି - କିନ୍ତୁ ଗାଁ' ଦାଣ୍ଡରେ ସେ ତନ୍ତର ଧାଡ଼ି ଆଉ ନାହିଁ ।

ଗାଁ' ମୁଣ୍ଡର କଇଁ ଓ ପଦ୍ମଫୁଲ ଭରା ପୋଖରୀ ଶୁଖି ଯାଇଛି । ମନ୍ଦିରର ସ୍ଥାନ ନେଇଛି ସରପଞ୍ଚଙ୍କ ପଞ୍ଚାୟତ ଘର ।

ରାଜା ଚାଲିଯାଇଛନ୍ତି କିନ୍ତୁ ମେଣ୍ଢା ପୋଷାକରେ ସଜିତ ଗଧିଆ ରାଜା ପଣପଣ ଦେଖା ଦେଇଛନ୍ତି । ସେ ଭିତରୁ କେହି 'ମୁଁ ଜଙ୍ଗଲର ରାଜା' ଫରେଷ୍ଟ ଗାର୍ଡ଼ କହୁଛି ତ କିଏ କହୁଛି ମୁଁ ତମ ରାଜା 'ପୋଲିସ କନଷ୍ଟେବଲ୍' । କିଏ ବସ୍ ଭିତରେ କଣ୍ଡକ୍ଟର ହୋଇ ରାଜା ବନିଛି ତ କିଏ ରାସ୍ତାରେ ଚେକ୍‌ଗେଟ୍‌ରେ ରାଜା

ସାଜିଛି । ଆଉ ହାକିମମାନେ ହୋଇଛନ୍ତି ଏ ରାଜାମାନଙ୍କ ଉପରେ ରାଜାଧିରାଜା ମହାରାଜା ।

ଗାଁ'ରେ ମୂଲ ଖଟୁଥିବା ମୂଲିଆ ଏ ଖରାଦିନେ ତା'ର ପୁରୁଣା ଜଙ୍ଗଲରୁ ବାଉଁଶ ଦି'ଗଛ କିମ୍ବା କାଠ ବୋଝାଏ ଆଣି ବିକିଭାଙ୍ଗି ଖାଇବା ଦିନ ଆଉ ନାହିଁ । ଜମିରେ ଯେଉଁମାନେ ମାଟି କାମ କରାଉ ଥିଲେ ସେମାନେ ସିଲିଂ ଯୋଗୁଁ କେତେ ଜମି ରହିବ ନ ଜାଣି କାମ ବନ୍ଦ କରି ଦେଇଛନ୍ତି । ପୋଖରୀ ଖୋଳି ଧର୍ମକରିବା ଦିନ ଚାଲିଗଲାଣି । ପଞ୍ଚମ ଯୋଜନାର ନିଷ୍ପତ୍ତି ବିନା ସରକାରୀ କାମ ଆରମ୍ଭ ହେବାକୁ ଡେରି, ଧାନ କୁଟିଲେ ଯେଉଁ ଖୁଦ ଚାଉଳ ଟିକକ ମିଳୁଥିଲା ତାହା ବି ଗଲା । ଭୋକିଲା ଜନତା କାମବିନା ତା'ର ବାସନ କୁସନ, ଗହଣାଗାଣ୍ଠି, ଗାଇ ବଳଦ ବିକି ସାରିଲା ପରେ ନିଜ ପୁଅ ଝିଅଙ୍କୁ ବିକିବାକୁ ଆରମ୍ଭ କରିଛି । ଆହା କରିବାକୁ କେହି ନାହିଁ ।

ଶିକ୍ଷିତ ଜନତା ନାନା ରଙ୍ଗର ପତାକା ସହ ତା'ର ବିରାଟ ପଟୁଆର ନେଇ ସ୍ଲୋଗାନ୍ ଦେଇଦେଇ ସହରର ଦାଣ୍ଡମାନଙ୍କରେ ମାର୍ଚ୍ଚ କଲାବେଳେ ହାତମୁଠା ଟାଣ କରି ଚିତ୍କାର କରୁଛି - 'ଆହୁରି ବେଶି ଦରମା ଦିଅ - ମହଙ୍ଗା ଭତ୍ତା ବଢୁ ।' ସେମାନଙ୍କ ସମୟ କାହିଁ ଯେ ସେମାନେ ଏ ଭୋକିଲା ଲୋକଙ୍କୁ ଦେଖିବେ ?

ଜାତିର ପ୍ରାଣକେନ୍ଦ୍ର - ଛାତ୍ରସମାଜ ତାଙ୍କ ନିଜ କଳିକଜିଆ ତଥା ଶିକ୍ଷକ ଓ ବିଶ୍ୱବିଦ୍ୟାଳୟ ବିରୋଧୀ ଅଭିଯାନରେ ବ୍ୟସ୍ତ ଅଥବା ସିନେମା ଦେଖାରେ ମସଗୁଲ୍ । ସେମାନଙ୍କ ଆଖି ବା ଏଆଡ଼ିକି ଯିବ କାହିଁକି ?

ବାପୁ ନାହାନ୍ତି କି ସେ ଗୋପବନ୍ଧୁ ନାହାନ୍ତି । କା' ଆଖିରୁ ପାଣି ଝରିବ ?

ଜନତାର ଆର୍ତ୍ତ 'ମୁନ୍ଦିଏ ପାଣିଦିଅ' ଡାକ ଧୀରେ ଧୀରେ ଅସ୍ପଷ୍ଟ ହୋଇ ଆସୁଛି ।

ମନେହୁଏ ଯେ ସେ କାଳ ଆଉ ଏ କାଳ ଭିତରେ କିଛି ବିଶେଷ ପାର୍ଥକ୍ୟ ନାହିଁ । ରାଜା ଥାଉ ବା ନଥାଉ - ମଣିଷ ସବୁଦିନ ସେଇ ମଣିଷ - ଭଲ ଓ ମନ୍ଦ ମିଶାମିଶି ।

ନାଟକରେ କେହିଜଣେ ମଣିଷ ଯେପରି କେତେବେଳେ 'ମହାରଥୀ କର୍ଣ୍ଣ' ସାଜେ ଓ କେତେବେଳେ 'ମୃତ ସୈନିକ' ବନିଯାଏ, ମଣିଷ କେଉଁ କାଳରେ 'ପ୍ରଜା' ହୁଏ ତ କେଉଁ କାଳରେ ହୁଏ 'ଜନତା' ।

ତଫାତ୍ କିଛି ନାହିଁ । କେବଳ କାଳର ବିଡ଼ମ୍ବନା ।

# କୀର୍ତ୍ତିମୟୀ ମାଆ ମୋର

ଆମ ଜନ୍ମଭୂମି ଉତ୍କଳକୁ ମରୁଡ଼ି ଆସେ - ତା'ପରେ ଆସେ ବନ୍ୟା । ବେଳେ ବେଳେ ବନ୍ୟା ପରେ ବନ୍ୟା ଆସେ, ମରୁଡ଼ି ଉପରେ ମରୁଡ଼ି ଆସେ, ଆଉ ବନ୍ୟା ଓ ମରୁଡ଼ି ମଝିରେ ଦେଖା ଦିଏ ବାତ୍ୟା - ବନ୍ୟା ଆଉ ମରୁଡ଼ି ଦାଉରୁ ଯାହାକିଛି ଉବୁରି ରହିଥାଏ ତାକୁ ଉଡ଼ାଇ ନେଇ ଚକାଚକା ଭଉଁରୀ ଖେଳିବା ପାଇଁ । ଚକାଡୋଳାଙ୍କ ଚକ ପରି ଆଖିତଳେ ଓଡ଼ିଆଜାତି ସବୁଦିନ ଛଟପଟ ହେଉଥାଏ ।

କାଳଚକ୍ରର ଆବର୍ତ୍ତନରେ ମଣିଷ ସୁଖ ଓ ଦୁଃଖ ଭୁଞ୍ଜେ ବୋଲି କେତେ ମନୀଷୀ କହନ୍ତି । ଏହି କାଳଚକ୍ର ଯେ ଠିକ୍ କ'ଣ ଓ ତା'ର ଆବର୍ତ୍ତନ କେଉଁ ନିୟମ ଅନୁଯାୟୀ ହୁଏ ସେ କଥା କିନ୍ତୁ କେହି କହି ଯାଇନାହାନ୍ତି । କେହି କହନ୍ତି ଯେ ପ୍ରକୃତିର ନିୟମ ଅନୁଯାୟୀ ରାତ୍ରିର ଯେପରି ଶେଷ ହୁଏ ଓ ଦିନ ଆସେ, ଠିକ୍ ସେପରି ଦୁଃଖର ଅବସାନ ଘଟେ ଓ ସୁଖ ଆସେ । ପ୍ରକୃତିର ନିୟମରେ ଆବଦ୍ଧ ପୃଥିବୀର ଘୂର୍ଣ୍ଣନ ଓ ଏହି କାଳଚକ୍ରର ଆବର୍ତ୍ତନ ଯଦି ଏକା ଧରଣର ହୋଇଥାଆନ୍ତା ତେବେ ମଣିଷ ଜୀବନରେ ସୁଖ ଓ ଦୁଃଖ ପ୍ରାୟ ସମାନ ସମାନ ବା ଅଧାଅଧି ହୁଅନ୍ତା । କିନ୍ତୁ ଦେଖାଯାଏ ଯେ କାହାକାହା ଜୀବନରେ ଦୁଃଖ ପରେ ସୁଖର ବଦଳରେ ପୁନର୍ବାର ଦୁଃଖ ହିଁ ଆସେ ଓ ତା'ପରେ ପୁଣି ଦେଖାଦିଏ ନୂତନ ଦୁଃଖ - ଗୋଟିକର ଶେଷ ନହେଉଣୁ ଆଉଗୋଟିଏ ପହଞ୍ଚିଯାଏ । ଦୁଃଖର ଅବିରାମଧାରା ଚାଲିଥାଏ ଅସରନ୍ତି ରୂପରେ - ଅନନ୍ତମୁଖୀ ହୋଇ । ଏହି ହତଭାଗ୍ୟ ଓ ହତଭାଗିନୀମାନଙ୍କ ଜୀବନରେ ରାତ୍ରି ପରେ କେବଳ ରାତ୍ରି ହିଁ ଆସେ ଗଭୀରରୁ ଗଭୀରତର ହୋଇ । ଦିନ ଆସିବା ତ ଦୂରର କଥା, ସିନ୍ଦୂରା ବି ଫାଟେନି । ଅନ୍ଧକାରର ଗଭୀରତା ମଝିରେ ଯେଉଁ ଆଲୋକ ଟିକିଏ କାହିଁ କେଉଁଠି ଦେଖାଦିଏ, ସେ ଆଲୋକ କେବଳ ଜ୍ୟୋତିରିଙ୍ଗଣର ଆଲୁଅ ।

ଭାରତରେ ମା'ମାନଙ୍କ ଜୀବନ ବୋଧହୁଏ ଏଇ ଧରଣର । ଭାରତର ମାତୃ ଜାତିର ପ୍ରତୀକ ସତୀ ସାଧ୍ୱୀ ସୀତାଙ୍କ ଦୁଃଖମୟ ଜୀବନ କାହାଣୀ ଏ ସମ୍ବନ୍ଧରେ ମନେପଡ଼େ ।

ମିଥିଳା ପୁରୀର ରାଜନନ୍ଦିନୀ ଅଲିଅଳ ଜାନକୀ । ରଘୁକୁଳର ବଧୂ, କୋଦଣ୍ଡଧାରୀ ରାମଚନ୍ଦ୍ରଙ୍କ ପତ୍ନୀ, ରାଜା ଦଶରଥ ଓ ରାଜରାଣୀ କୌଶଲ୍ୟାଙ୍କ ଦୁଲାଳୀ ସୀତା ।

ରାମଚନ୍ଦ୍ର ଯୁବରାଜ ହେବେ ଓ ସେ ହେବେ ଯୁବରାଣୀ ।

ଅଭିଷେକ ଲଗ୍ନ ପାଖେଇ ଆସୁଛି । ରାମ ଓ ସୀତା ନିତ୍ୟକର୍ମ ସାରି ପ୍ରସ୍ତୁତ ହେଉଛନ୍ତି, ରାଜାଙ୍କ ଡାକରା ଆସିଲା । ଲଗ୍ନ ବେଳ ତ ଆସିନି - ଯିବା ପାଇଁ ହଠାତ୍ ଏମିତି ଡାକରା । ରାମଚନ୍ଦ୍ର ଆଶ୍ଚର୍ଯ୍ୟ ହେଲେ । ହେଇ ଆସୁଛି ବୋଲି ସୀତାଙ୍କୁ କହି ତରତରରେ ବାପାଙ୍କପାଖକୁ ଚାଲିଗଲେ । କିଛିସମୟ ପରେ ଫେରିଆସି ସେ ଯେତେବେଳେ କହିଲେ ଯେ ସେ ଚଉଦବର୍ଷ ପାଇଁ ବନବାସ ଯିବେ, ସତ୍ୟସନ୍ଧ ଶ୍ରୀରାମଙ୍କ ମୁଖରୁ ଏପରି ଗୋଟିଏ ପରିହାସର କଥା ସୀତା ପ୍ରଥମରେ ବିଶ୍ୱାସ କରିପାରିଲେନି । ଅଭିଷେକ ବଦଳରେ ଆରମ୍ଭ ହେଲା ବନବାସ । ରାଜ ଦୁଲାଳୀ ସୀତା କୈକେୟୀଙ୍କ ପାଖକୁ ଯେତେବେଳେ ବିଦାୟ ନେବାକୁ ଗଲେ ଗହଣା ଗାଣ୍ଠିତ ଦୂରର କଥା, ପାଲଟିବା ପାଇଁ ଆଉ ଖଣ୍ଡିଏ ଶାଢ଼ି ମଧ ସାଙ୍ଗରେ ନେବାକୁ କୈକେୟୀ ଆପତ୍ତି କଲେ । କଣ୍ଟା ବଣ, ଗୋଜିଆ ପଥର, ରୁଗୁଡ଼ି ମାଟି, ଚିକିଟା କାଦୁଅ ଉପରଦେଇ ଖାଲିପାଦରେ ବୁଲା ଜୀବନ ଆରମ୍ଭ କଲେ ବିଦେହର ରାଜକନ୍ୟା ବୈଦେହୀ । ବର୍ଷବର୍ଷ ଧରି ବଣ ଫଳମୂଳ ହେଲା ତାଙ୍କର ଆହାର । ମାଟି ଉପରେ ଖଡ଼ କିମ୍ବା ପତର ବିଛା ହୋଇଥିବା ଶଯ୍ୟା ହେଲା ତାଙ୍କର ପଲଙ୍କ ସୁପାତି ।

ଦୁଃଖଭିତରେ ସୁଖର ଝଲକ ହୋଇ ହଠାତ୍ ଦେଖାଦେଲା ସୁବର୍ଣ୍ଣର ମୃଗ । ତୃଷ୍ଣାର ଆକର୍ଷଣୀ ଶକ୍ତିରୁ ଅନେକ ଦୂରରେ ଥାଇ ମଧ କାଳଚକ୍ରର ଆବର୍ତ୍ତନରେ ସୀତା ସେହି ସୁନା ହରିଣ ଆଡ଼କୁ ହାତ ବଢ଼ାଇଲେ । ହରିଣ ପଛରେ ଗୋଡ଼ାଇ ଗଲେ ରାମ ଓ ରାମଙ୍କ ପଛରେ ଗଲେ ଲକ୍ଷ୍ମଣ । ସୀତାଙ୍କ ସେ ହାତକୁ ଟାଣି ନେଇଗଲା ଲଙ୍କାର ରାବଣ ।

ଦୁଃଖ ଦୁର୍ଦ୍ଦଶାର ଚରମ ମୁହୂର୍ତ୍ତରେ ଆଶାର ଆଲୋକରୂପରେ ଦେଖାଦେଲା ଜଟାୟୁ । ମାତୃଜାତିର ମଥାମଣିଙ୍କୁ ରକ୍ଷା କରିବାକୁଯାଇ ମହାପ୍ରତାପୀ ରାବଣର ବାଟ ଓଗାଳିଲା ସାମାନ୍ୟ ଗୋଟିଏ ପକ୍ଷୀ । ପକ୍ଷୀ ଜାଣିଥିଲା ଯେ ବିଶ୍ୱବିଜୟୀ ଦଶାନନର ଦୁର୍ଦ୍ଦାନ୍ତ ଶକ୍ତି ସମ୍ମୁଖରେ ତା'ର ନଖ ଓ ଚଞ୍ଚୁର ସାମର୍ଥ୍ୟ ଅତ୍ୟନ୍ତ କ୍ଷୀଣ, ତଥାପି ଦୁର୍ବଳ ଉପରେ ସବଳର ଏପରି ଅତ୍ୟାଚାରକୁ ବିରୋଧ କରିବା

ତା'ର କର୍ତ୍ତବ୍ୟ ବୋଲି ସେ ମନେକରିଥିଲା । କିନ୍ତୁ ପାରିଲାନି । ଜୀବନଦେଇ କେବଳ ଆଦର୍ଶ ରଖି ଦେଇଗଲା ।

ଶେଷରେ ରାବଣର ସର୍ବନାଶ ହେଲା । କିନ୍ତୁ ସୀତାଙ୍କ ଦୁଃଖର ଶେଷ ହେଲାନି - ଦୁଃଖର ଯେତେବେଳେ ଅନ୍ତ ହେବାକଥା ସେତିକି ବେଳେ ଶ୍ରୀରାମ ଚାହିଁଲେ ଅଗ୍ନି ପରୀକ୍ଷା । ଅଗ୍ନି ପରୀକ୍ଷା ହେଲା - ତଥାପି ସୀତା ହେଲେ ଶେଷରେ ନିର୍ବାସିତା । ସୀତାଙ୍କର ତପସ୍ୱିନୀ ଜୀବନ ଶେଷରେ ଯେତେବେଳେ ସେ ଆଉଥରେ ଶ୍ରୀରାମଚନ୍ଦ୍ରଙ୍କ ଦର୍ଶନଲାଭ କଲେ ଶ୍ରୀରାମ ଚାହିଁଲେ ସମସ୍ତଙ୍କ ସମ୍ମୁଖରେ ଆଉଥରେ ପରୀକ୍ଷା । ସତୀଙ୍କ ଦୁଃଖରେ ପୃଥିବୀ ମଧ୍ୟ ଫାଟିଗଲା - ସେ ଭିତରେ ଶେଷଆଶ୍ରୟ ନେଲେ ସାଧ୍ୱୀ ସୀତା । ଦୁଃଖର ଅବସାନ ହେଲା ଏପରି ଭାବରେ ।

ବନ୍ୟା, ବାତ୍ୟା ଓ ମରୁଡ଼ି ପ୍ରପୀଡ଼ିତା ଉତ୍କଳ ଜନନୀର ଦୁଃଖ କାହାଣୀ ମଧ୍ୟ ଠିକ୍ ଏଇ ଧରଣର ବୋଲି ମନେହୁଏ ।

କଳା ଓ ଭାସ୍କର୍ଯ୍ୟର ଗାରିମାରେ ଗାରିମାମୟ ଏ ଉତ୍କଳ । ମହୋଦଧି ତା'ର ଚରଣ ଧୌତ କରେ, ମହାନଦୀ, ବ୍ରାହ୍ମଣୀ, ବୈତରଣୀ ପରି ମହାମହା ନଦୀ ତା'ର କେଶ ପଖାଳେ, ଚିଲିକାର ନୀଳ ଦର୍ପଣରେ ସେ ମୁହଁ ଦେଖେ । ଖଣିଜ ଓ ପ୍ରାକୃତିକ ସମ୍ପଦରେ ଭରା ଏ ଉତ୍କଳ ସିଂହଳଠାରୁ ସୁଦୂର ଜାଭା ସୁମାତ୍ରା ବୋର୍ଣ୍ଣିଓ ପର୍ଯ୍ୟନ୍ତ ବିସ୍ତୃତ ଅଞ୍ଚଳର ଦିନେ ସେ ଥିଲା ମଥାମଣି ।

ତଥାପି ତା'ର ଦୁଃଖ ଦୁର୍ଦ୍ଦଶାର କରୁଣ କାହାଣୀ ସୀତାଙ୍କ ଦୁଃଖମୟ ଜୀବନ କାହାଣୀ ପରି ।

ଏ ଦୁଇ କାହାଣୀ ମଧ୍ୟରେ କିନ୍ତୁ ବିଶେଷ ପାର୍ଥକ୍ୟ ରହିଛି । ସୀତାଙ୍କ ଦୁଃଖ ଦୁର୍ଦ୍ଦଶା ମଣିଷର ଆୟତ୍ତାଧୀନ ନଥିଲା । ବନ୍ୟା ଓ ମରୁଡ଼ି କୌଣସି କାଳଚକ୍ର ଆବର୍ତ୍ତନର ପରିଣତି ହେଲେ ମଧ୍ୟ ମଣିଷର ଆୟତ୍ତାଧୀନ ।

ରାବଣ କୁମ୍ଭକର୍ଣ୍ଣରୂପି ଏହି ରାକ୍ଷସମାନଙ୍କୁ ଗୋଟିଏମାତ୍ର ଜଟାୟୁ ଅଟକାଇ ରଖି ନପାରେ । କିନ୍ତୁ ଉପଯୁକ୍ତ ଅଧିନାୟକତ୍ୱରେ ମାଙ୍କଡ଼ ଓ ଭାଲୁଙ୍କ ଦଳ ରାକ୍ଷସମାନଙ୍କୁ ହନ୍ତସନ୍ତ ଓ ବ୍ୟତିବ୍ୟସ୍ତ କରିଦେଲା ପରି ଓଡ଼ିଆ ଜାତି ଯେ ଏଇ ଭୟଙ୍କରରୂପି ବନ୍ୟା ମରୁଡ଼ି ଦାନବମାନଙ୍କୁ ଆକଟ କରିପାରେ ସେଥିରେ ସନ୍ଦେହ ନାହିଁ । ହୀରାକୁଦ ବନ୍ଧ ତହିଁର ଏକ ଉଜ୍ଜ୍ୱଳ ଦୃଷ୍ଟାନ୍ତ ।

ପ୍ରଳୟଙ୍କରୀ ମହାନଦୀ ବନ୍ୟାର ସ୍ଥାୟୀ ପ୍ରତିକାର ଯେତେବେଳେ କଳ୍ପନା କରାଗଲା ସେତେବେଳେ ହୀରାକୁଦ ବନ୍ଧ ସଙ୍ଗରେ କଳ୍ପନା କରାଯାଇଥିଲା ଟିକରପଡ଼ା ଓ ନରାଜ ବନ୍ଧ ଯୋଜନା । ହୀରାକୁଦ ବନ୍ଧ ଥିଲା ଯୋଜନାର ପ୍ରଥମ ପର୍ଯ୍ୟାୟ ।

ଓଡ଼ିଶାର ଗଙ୍ଗା ଏଇ ମହାନଦୀ । ମହାନ୍ ତା'ର ଭୈରବୀ ମୂର୍ତ୍ତି । ସମ୍ବଲପୁର ପାଖରେ ପହଞ୍ଚିଲାବେଳକୁ ୩୨,୦୦୦ ବର୍ଗ ମାଇଲ ବିଶାଳ ଭୂଖଣ୍ଡରୁ ଜଳ ସଂଗ୍ରହ କରି ସେ ଧରିଛି କାଳୀୟ ନାଗର ଭୟଙ୍କରୀ ରୂପ । ଫୁତ୍କାର ସହ ଶିଳାମାନଙ୍କରେ ଫଣା କଚାଡ଼ି କଚାଡ଼ି 'ରାମପାଦ' ପାଖରେ ତା'ର ବିଷସବୁ ଢାଳିଦେଇ ଜଳକୁ କରିଛି ଫେନିଳ । ନାଉରୀ ସେ ପାଖ ଦେଇ ନାଆ ବାହି ନେବାକୁ ସାହସ କରେନି । 'ଗଙ୍ଗାମାୟୀ'ଙ୍କ ଦୟା ବିନା ଯାତ୍ରୀ ଜୀବନଧରି ନଇର ଗୋଟିଏ କୂଳରୁ ପ୍ରାୟ ମାଇଲିଏ ଦୂରର ଅନ୍ୟ କୂଳକୁ ଯାଇପାରେନି । ପ୍ରାଣ ବିକଳରେ ସେ ଯାଚେ ନଡ଼ିଆ ସାଙ୍ଗରେ କେତେ ଜୀବନ୍ତ ପଶୁବଳି । ସେଇ ନଦୀ ପୁଣି ବନ୍ଧା ହେବ । ମଣିଷର ଏଇ ଅଦ୍ଭୁତ ସାହସକୁ ସେ ଦିନର କେତେ ବିଶ୍ୱାସ ମଧ୍ୟ କରିପାରି ନଥିଲେ ।

ବାଘ, ଭାଲୁ ଓ ବଣୁଆ ହାତୀ ଉପଦ୍ରୁତ ବୁର୍ଲା ଓ ହୀରାକୁଦ ଅଞ୍ଚଳର ନିବିଡ଼ ଅରଣ୍ୟ ଭିତରେ ବନ୍ଧର ସର୍ବଶ୍ରେଷ୍ଠ ସ୍ଥାନ ନିରୂପଣ କରିବା ପାଇଁ ସର୍ଭେ ସାଙ୍ଗରେ ବିଭିନ୍ନ ସ୍ଥାନମାନଙ୍କରେ ପରୀକ୍ଷା ସବୁ ଯେତେବେଳେ ଚାଲିଥିଲା କୌତୂହଳୀ ଲୋକେ ଦଳଦଳ ହୋଇ ଦେଖିବାକୁ ଆସୁଥିଲେ, ବନ୍ଧର ସ୍ଥାନକୁ ନୁହେଁ, ମହାନଦୀ ବାନ୍ଧିବାକୁ ସାହସ କରୁଥିବା କେତେକ ପାଗଳଙ୍କୁ, ପ୍ରଶ୍ନ ଛଳରେ ପରିହାସ କରୁଥିଲେ । ବେଳେ ବେଳେ କଥାବାର୍ତ୍ତା ଏପରି ଭାବରେ ଚାଲୁଥିଲା -

... ବାବୁ ଏ ନଦୀକୁ ବାନ୍ଧିବ ?

... ହଁ ।

... ଏ ପାହାଡ଼ରୁ ସେ ପାହାଡ଼କୁ ବାନ୍ଧିଦେବ ?

... ହଁ ।

... ତମର ତ ଲାଙ୍ଗୁଡ଼ ନାହିଁ ।

... ଲାଙ୍ଗୁଡ଼ କାହିଁକି ?

... ହନୁମାନ ସମୁଦ୍ରକୁ ବାନ୍ଧିଥିଲା । ତା'ର ଲାଙ୍ଗୁଡ଼ ଥିଲା ।

ଅନ୍ୟମାନେ ହସି ହସି ଉତ୍ତର ଦେଉଥିଲେ - 'ଆଉ କେତେଦିନ ଗଲେ ବାବୁଙ୍କର ଲାଞ୍ଜ ବାହାରିବ ଯେ ।'

ଆଉ କେହି କେହି ବା ପୁରୁଣା ଖବରକାଗଜ ଖଣ୍ଡିଏ ବାହାର କରି ସାଙ୍ଗ ସାଥୀଙ୍କୁ ଶୁଣାଇ ମିଛରେ ପଢୁଥିଲେ - 'ଯୁବକ ନିରୁଦ୍ଦିଷ୍ଟ । ବର୍ଣ୍ଣ ଶାବନା - ଉଚ୍ଚତା ପାଞ୍ଚଫୁଟ ଆଠଇଞ୍ଚ - ନାକରେ ଗହୀରିଆ ବସନ୍ତ ଦାଗ । ଖାକି ପେଣ୍ଟ ଖଣ୍ଡିଏ ପିନ୍ଧିଛି । ମସ୍ତିଷ ବିକୃତି ଯୋଗୁଁ କେତେମାସହେଲା ଘରଛାଡ଼ି ଚାଲିଯାଇଛି ।' ଏତିକିବେଳେ ଅନ୍ୟ କେହି ସମବେଦନା ଜଣାଇ ପରାମର୍ଶ ହେଉଥିଲା 'ବାବୁ - ପ୍ରଥମ ଅବସ୍ଥାରେ କୁଆଡ଼େ ରାଞ୍ଚିରେ ଭଲ ହୋଇଯାଉଛନ୍ତି... ।'

ଆଉ କେତେ ବୈଜ୍ଞାନିକ ଦୃଷ୍ଟିକୋଣ ନେଇ ନୀତିଗତ ସଂଶୟ ପ୍ରକାଶ କରୁଥିଲେ । ଗୋଟିଏ ଅଞ୍ଚଳକୁ ବନ୍ୟା ବିପଦରୁ ରକ୍ଷା କରିବାକୁ ଯାଇ ଆଉ ଗୋଟିଏ ଅଞ୍ଚଳକୁ ଚିରଦିନ ବୁଡ଼ାଇ ଦେବା କେତେଦୂର ଯୁକ୍ତିଯୁକ୍ତ ତାହାହିଁ ଥିଲା ସେମାନଙ୍କ ମୌଳିକ ପ୍ରଶ୍ନ । ସେମାନେ ପୁଣି ଦର୍ଶାଉଥିଲେ ଯେ ପଟୁମାଟି ଯୋଗୁଁ ହୀରାକୁଦ ବନ୍ଧ ୪୦/୫୦ ବର୍ଷ ଭିତରେ ପୋତି ହୋଇଯିବ ।

ସ୍ୱାଧୀନ ଭାରତର ପ୍ରଥମ ମନ୍ଦିର ହୀରାକୁଦ ବନ୍ଧ ତିଆରି ଶେଷ ହେଲା, କିନ୍ତୁ ମହାନଦୀ ଉପତ୍ୟକା ଉନ୍ନୟନ ଯୋଜନାର ଦ୍ୱିତୀୟ ପର୍ଯ୍ୟାୟ ଆରମ୍ଭ ମଧ୍ୟ ହେଲାନି । ହୀରାକୁଦ ବନ୍ଧ ବନ୍ୟାର ପ୍ରତିକାର କରି ନପାରିଲେ ମଧ୍ୟ ଆଂଶିକ ଭାବରେ ବନ୍ୟାର ନିୟନ୍ତ୍ରଣ କରି ଓ ଆଖପାଖ ଅଞ୍ଚଳ ମରୁଡ଼ି ପ୍ରପୀଡ଼ିତ ହେଲେ ମଧ୍ୟ ତା'ର ଜଳସେଚିତ ଅଞ୍ଚଳକୁ ଶସ୍ୟ ଶ୍ୟାମଳା କରି ପ୍ରମାଣିତ କରିଛି ଯେ ବନ୍ୟା ଓ ମରୁଡ଼ି ମଣିଷର ଆୟତ୍ତାଧୀନ । ଓଡ଼ିଶାର ଅନ୍ୟାନ୍ୟ ଅଞ୍ଚଳକୁ ମଧ୍ୟ ଏପରି ଭାବରେ ମରୁଡ଼ିରୁ ମୁକ୍ତ କରାଯାଇପାରେ । ଏପରି ରାକ୍ଷସମାନଙ୍କୁ ଆୟତ୍ତ କରିବା ପାଇଁ କିନ୍ତୁ ଲୋଡ଼ା ଜଟାୟୁର ତ୍ୟାଗ, ଗୁଣ୍ଡୁଚି ମୂଷାର ଅଧ୍ୟବସାୟ - ମାଙ୍କଡ଼ ଓ ଭାଲୁଙ୍କ ମିଳିତ ଉଦ୍ୟମ ଓ ଯୂଥପତିଙ୍କ ସୁଦକ୍ଷ ପରିଚାଳନା ।

ଦୁଃଖ ପରେ ସୁଖ ନଆସି ଯଦି ଦୁଃଖ ହିଁ ଆସେ ତେବେ ସେହି କାଳଚକ୍ର ଆବର୍ତ୍ତନର ନିୟମରେ ଓଡ଼ିଆ ଜାତିପାଇଁ ସୁଖପରେ ସୁଖ ଓ ତା'ପରେ ପୁଣି ସୁଖ ଆସିବ ନାହିଁ କାହିଁକି ?

# ପାହିଲାଣି ଏବେ

ଉତ୍‌ଥାନ ଓ ପତନ ଧରାର ରୀତି ।

ଯେକୌଣସି ଜାତିର ଜୀବନରେ ମଧ୍ୟ ଏ ନିୟମ ସମାନ ଭାବରେ ପ୍ରଯୁଜ୍ୟ । ତେଣୁ ଓଡ଼ିଆ ଜାତି ଓ ଓଡ଼ିଆ ଭାଷାର ଇତିହାସରେ ଏହାର ବ୍ୟତିକ୍ରମ ହେବ ବା କିପରି ? ତଥାପି ଖାରବେଳଙ୍କ ଓଡ଼ିଶା, କଳିଙ୍ଗ ଯୁଦ୍ଧରେ ଚଣ୍ଡାଶୋକଙ୍କୁ ଧର୍ମାଶୋକରେ ପରିଣତ କରିଥିବା ଓଡ଼ିଶା, ଜଗନ୍ନାଥ ଧର୍ମର ପୀଠସ୍ଥଳୀ ଓଡ଼ିଶା, ବିଶୁ ମହାରଣା - ଧରମା-ବାଇମୁଣ୍ଡିଙ୍କ ଓଡ଼ିଶା, ସମୁଦ୍ର ବୁକୁର ଦୂର ଦୂରାନ୍ତରେ ଇତିହାସ ସୃଷ୍ଟି କରିଥିବା ଆ-କା-ମା-ଭୈର ଓଡ଼ିଶା, ସୁରେନ୍ଦ୍ର ସାଏ ଓ ବକ୍ସି ଜଗବନ୍ଧୁଙ୍କ ଓଡ଼ିଶା ଯେ ଦିନେ ତା'ର ସ୍ୱାତନ୍ତ୍ର୍ୟ ହରାଇ ବସିବ ସେ ଆଶଙ୍କା ଆମ ପୂର୍ବପୁରୁଷମାନଙ୍କ ମନରେ କୌଣସି କାଳେ ସ୍ଥାନ ପାଇ ନଥିବ ।

ଆଞ୍ଚଳିକ ଭାଷାରେ ଯେ ସାହିତ୍ୟ ସୃଷ୍ଟି କରାଯାଇ ପାରେ ସେ ଭାବନା ଯେତେବେଳେ ଭାରତର ଅନେକ ଅଞ୍ଚଳରେ କବିମାନଙ୍କ ମନରେ ସ୍ଥାନସୁଦ୍ଧା ପାଇ ନ ଥିଲା, ଶୂଦ୍ରମୁନି ଓଡ଼ିଆରେ ମହାଭାରତ ଲେଖି ସାରିଥିଲେ । ସଂସ୍କୃତ ହିଁ ଏକମାତ୍ର ଆର୍ଯ୍ୟ ଭାଷା ଓ ପ୍ରାକୃତ ଭାଷା କେବଳ ଶୂଦ୍ର ଭାଷା, ମ୍ଲେଚ୍ଛ ଭାଷା ତଥା ତୁଚ୍ଛ ଭାଷା ବୋଲି ଯେତେବେଳେ ସ୍ୱନାମଧନ୍ୟ କବିମାନେ କହୁଥିଲେ, ସେତେବେଳେ ଜଗନ୍ନାଥ ଦାଶଙ୍କ ଭାଗବତ ଓଡ଼ିଆଙ୍କ ଘରେ ଘରେ ପୂଜାପାଇ ଭାରତୀୟ ସଂସ୍କୃତି କ୍ଷେତ୍ରରେ ବିପ୍ଲବ ସୃଷ୍ଟି କରି ସାରିଥିଲା । ବଳରାମ ଦାସ, ଅଚ୍ୟୁତାନନ୍ଦ ଦାସ, ଯଶୋବନ୍ତ ଦାସ, ଅନନ୍ତ ଦାସ, ଚୈତନ୍ୟ ଦାସ, ଭକ୍ତ ଚରଣ ଦାସ ଓଡ଼ିଆରେ ସେମାନଙ୍କ ଅମର କୃତୀ ଦେଇ ସାରିଥିଲେ । ଆମ ପଡ଼ୋଶୀ ରାଜ୍ୟମାନେ ଯେଉଁ ସମୟରେ ଓଡ଼ିଆ ଭାଷାର ଚମତ୍କାରିତାରେ ଆଶ୍ଚର୍ଯ୍ୟ ହୋଇ ବିସ୍ଫୋରିତ ନେତ୍ରରେ ଚାହିଁ ରହିଥିଲେ, କବି ସମ୍ରାଟ୍ ଉପେନ୍ଦ୍ର ଭଞ୍ଜ ଓଡ଼ିଆ ସାହିତ୍ୟରେ ନୂତନ ଯୁଗ ଆରମ୍ଭ କରିଦେଇଥିଲେ - ପାଲା, ଦାସକାଠିଆ ଓ ଗୋଟିପୁଅଙ୍କ ମୁହଁରେ କବିସୂର୍ଯ୍ୟଙ୍କ ଚମ୍ପୂ, ଅଭିମନ୍ୟୁ, ଦୀନକୃଷ୍ଣ, ଭକ୍ତଚରଣଙ୍କ ଛାନ୍ଦ ଗାଁ ଦାଣ୍ଡରେ ଝଙ୍କାରି ଉଠୁଥିଲା - କୋଇଲି ଓ ଚଉତିଶା ଯୋଗୀମାନଙ୍କର

କେନ୍ଦରାରେ ମୂର୍ଚ୍ଛନା ତୋଳୁଥିଲା ଆଉ ଶଗଡ଼ ଦଣ୍ଡାରୁ ଶଗଡ଼ିଆର 'ଗଲାଣିତ ଗଲା କଥାରେ ସଙ୍ଗାତ...' ବଣ ଜଙ୍ଗଲ କମ୍ପାଇ ଦେଉଥିଲା ।

ଊନବିଂଶ ଶତାବ୍ଦୀର ଶେଷଭାଗରେ ଓ ବିଂଶ ଶତାବ୍ଦୀର ଆରମ୍ଭରେ ସେହି ଓଡ଼ିଆ ଭାଷା ଗୋଟିଏ ସ୍ୱତନ୍ତ୍ର ଭାଷା ଓ ଓଡ଼ିଆ ଜାତି ଗୋଟିଏ ସ୍ୱତନ୍ତ୍ର ଜାତି କି ନୁହେଁ ସେ ସମ୍ବନ୍ଧରେ ପ୍ରଶ୍ନ ଉଠିଥିଲା ।

ଭାଗ୍ୟର କି ବିଡ଼ମ୍ବନା !

ସେତେବେଳକୁ ଓଡ଼ିଶା ଖଣ୍ଡ ଖଣ୍ଡ ହୋଇସାରିଥିଲା, ଆଉ ଓଡ଼ିଶା ବୋଲି କୌଣସି ପ୍ରଦେଶ ନଥିଲା । କବିସମ୍ରାଟ୍ ଜନ୍ମସ୍ଥଳୀ ଗଞ୍ଜାମ ତଥା କୋରାପୁଟ ଜିଲ୍ଲାକୁ ତେଲୁଗୁ ଭାଷାଭାଷୀ ଅଞ୍ଚଳ ବୋଲି ସେ ଦିନର ସରକାର ମାଡ୍ରାସ ପ୍ରେସିଡେନ୍‌ସିରେ ମିଶାଇ ଦେଇଥିଲେ । ସୁରେନ୍ଦ୍ର ସାଏଙ୍କ କ୍ରୀଡ଼ାଭୂମି ସମ୍ବଲପୁର ଓ ଆଖପାଖ ଗଡ଼ଜାତ ଅଞ୍ଚଳ ସବୁ ହିନ୍ଦୀ ଭାଷାଭାଷୀ ଅଞ୍ଚଳ ବୋଲି ମଧ୍ୟପ୍ରଦେଶ ସହ ସମ୍ପୃକ୍ତ ଥିଲା । ବାକି ଯେଉଁ ଖଣ୍ଡକ ବଙ୍ଗଳାରେ ମିଶିକରି ଥିଲା ତାକୁ ବଙ୍ଗ ଭାଷାଭାଷୀ ବୋଲି ଆମ ସେ ଦିନର 'ଉପକାରୀ' ବନ୍ଧୁଗଣ କହିବାକୁ ଆରମ୍ଭ କରି ଦେଇଥିଲେ ।

ଜାତିର ସେହି ଘୋର ଦୁର୍ଦ୍ଦିନରେ ଉତ୍କଳ ଜନନୀଙ୍କ କୋଳରେ ଯେଉଁ ଅମର ସନ୍ତାନ ସବୁ ଦେଖା ଦେଇଥିଲେ ସେ ସମସ୍ତେ ଓଡ଼ିଆ ଜାତିର ଚିର ନମସ୍ୟ ।

ଉତ୍କଳଗୌରବ ମଧୁସୂଦନ, ଉତ୍କଳମଣି ଗୋପବନ୍ଧୁ, ଆଚାର୍ଯ୍ୟ ହରିହର, ପଣ୍ଡିତ ଗୋଦାବରୀଶ, ପଣ୍ଡିତ ନୀଳକଣ୍ଠ, ବିଚିତ୍ରାନନ୍ଦ, ପ୍ରଚାରକ ଶ୍ରୀବସ୍ତ ପଣ୍ଡା, ଅନନ୍ତ ପଣ୍ଡା, କର୍ମବୀର ଗୌରୀଶଙ୍କର, ସାର୍ ସୁଢ଼ଳ ଦେବ, ବ୍ରଜମୋହନ ପଟ୍ଟନାୟକ, ଶ୍ରୀପତି ମିଶ୍ର, ମହନ୍ତ ବିହାରୀ ଦାସ, ବଳଭଦ୍ର ସୂପକାର, ମଦନମୋହନ ମିଶ୍ର, ଚନ୍ଦ୍ରଶେଖର ବେହେରା, ବୈକୁଣ୍ଠ ନାଥ ପୂଜାରୀ ଓ ବରେଣ୍ୟ କୃଷ୍ଣଚନ୍ଦ୍ର ଗଜପତିଙ୍କୁ ଆଜି ଏହି ଏପ୍ରିଲ ମାସ ଏକ ତାରିଖରେ ମନେପଡ଼େ ।

ଆହୁରି ମନେପଡ଼େ କବିବର ରାଧାନାଥ, ଭକ୍ତକବି ମଧୁସୂଦନ, ସ୍ୱଭାବ କବି ଗଙ୍ଗାଧର, ବ୍ୟାସକବି ଫକୀର ମୋହନ ଓ ପଲ୍ଲୀକବି ନନ୍ଦକିଶୋରଙ୍କୁ, ମାୟାଧର ମାନସିଂହଙ୍କୁ ।

ଓଡ଼ିଶାର ଏହି କୃତିସନ୍ତାନ ଓ ଉତ୍କଳ ଜନନୀଙ୍କ ସେବାରେ ନିଜ ଜୀବନକୁ ଉତ୍ସର୍ଗ କରିଥିବା ଅନେକ ମହାମନାଙ୍କ ଉଦ୍ୟମ ଫଳରେ ୧୯୩୬ ଏପ୍ରିଲ ୧

ତାରିଖରେ ଓଡ଼ିଶା ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ ହେଲା । ସିଂହଭୂମି, ମେଦିନୀପୁର, ରାୟଗଡ଼, ଶାରଙ୍ଗଗଡ଼, ବସ୍ତର ଆଉ ଅନ୍ୟାନ୍ୟ ଅନେକ ଅଞ୍ଚଳ ଓଡ଼ିଶା ବାହାରେ ରହିଗଲା ସତ, ତଥାପି ସେଦିନ ଓଡ଼ିଆ ଜାତି ଓ ଓଡ଼ିଆ ଭାଷା ଜୀବନ୍ୟାସ ପାଇଥିଲା - ନୂତନ ଚେତନା ନେଇ ଜାଗି ଉଠିଥିଲା ।

ଓଡ଼ିଶା ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ ହେବାର ପୂର୍ବାବସ୍ଥା ମଧ୍ୟ ଆଜି ମନେ ପଡ଼େ । କଲେଜ କହିଲେ ସେତେବେଳେ କେବଳ ରେଭେନ୍ସା କଲେଜକୁ ହିଁ ବୁଝାଉଥିଲା । ୧୯୩୯ ବିହାର-ଓଡ଼ିଶା ପ୍ରଦେଶର ଓଡ଼ିଶା ଅଞ୍ଚଳରେ ମେଡ଼ିକେଲ କଲେଜ, ଇଞ୍ଜିନିୟରିଂ କଲେଜ, ଟ୍ରେନିଂ କଲେଜ କିମ୍ୱା କୌଣସି ମହିଳା କଲେଜ ନଥିଲା । ପୁଅ କଲେଜ କହ କି ଝିଅ କଲେଜ କହ, ସାଧାରଣ କଲେଜ କହ କି ବୈଷୟିକ କଲେଜ କହ - ସେଇ ଏକମାତ୍ର ରେଭେନ୍ସା କଲେଜ । ଆଜିର ସମ୍ୱଲପୁର ବିଶ୍ୱବିଦ୍ୟାଳୟ ପରିସରଭୁକ୍ତ ଅଞ୍ଚଳରୁ ସେଦିନ ଯେତେ କଲେଜ ଛାତ୍ର ସେହି ରେଭେନ୍ସା କଲେଜରେ ପଢୁଥିଲେ ସେମାନଙ୍କ ସଂଖ୍ୟା ଆଙ୍ଗୁଠିରେ ଗଣିହୋଇ ଯାଉଥିଲା - ବେଶି ହେଲେ ହାତ ଆଙ୍ଗୁଠିରୁ ଗୋଡ଼ ଆଙ୍ଗୁଠି ଯାଏ । କଲେଜ ପାଠୁଆ ଝିଅ ସଂଖ୍ୟା ଥିଲା ପ୍ରାୟ ଶୂନ । ୧୯୩୭ରେ ଏ ଅଞ୍ଚଳର ପ୍ରଥମ କଲେଜ ପାଠୁଆ ଝିଅ ରେଭେନ୍ସା କଲେଜରେ ନାଁ ଲେଖାଇଥିଲେ ।

ସେଦିନ ସଙ୍ଗେ ତୁଳନା କଲେ ଆଜି ଓଡ଼ିଶା ଅନେକ ଆଗେଇ ଯାଇଛି । ଗୋଟିଏ କଲେଜ ଜାଗାରେ ୪ଟି ବଶ୍ୱବିଦ୍ୟାଳୟ । ଏ ଅଞ୍ଚଳର ଗୋଟିଏ ମାତ୍ର କଲେଜ ପାଠୁଆ ଝିଅଙ୍କ ସ୍ଥାନରେ ଆଜି କେବଳ ସମ୍ୱଲପୁର ଓ ବୁର୍ଲା ସହରରେ ପ୍ରାୟ ୧୦୦୦ କଲେଜ ପାଠୁଆ ଝିଅ । ଭାରତର ଅନେକ ବିଶ୍ୱବିଦ୍ୟାଳୟମାନଙ୍କରେ ଓଡ଼ିଆ ଛାତ୍ର ସୁନାମ ଅର୍ଜନ କରି ସାରିଛନ୍ତି, ସର୍ବଭାରତୀୟ ପ୍ରତିଯୋଗିତାମୂଳକ ପରୀକ୍ଷାମାନଙ୍କରେ ଓଡ଼ିଆ ଛାତ୍ର ନିଜ ବୁଦ୍ଧିମତ୍ତାର ଯଥେଷ୍ଟ ପରିଚୟ ଦେଇଛି ।

ତଥାପି ଅନେକ ପରେ ଉଠିଥିବା ଆନ୍ଧ୍ର ପ୍ରଦେଶର ତୁଳନାରେ ବିଭାଜିତ ବଙ୍ଗ ତୁଳନାରେ - ଏ ଜାତି ଏତେ ପଛରେ ପଡ଼ିରହିଛି କାହିଁକି ?

ଏ ସମ୍ୱନ୍ଧରେ ଗୋଟିଏ କଥା ମନେପଡ଼େ ।

ଶୁଣାଯାଏ ଯେ, ଥରେ କେହି ଜଣେ ଅତି ଉଚ୍ଚ ପଦସ୍ଥ ସର୍ବଭାରତୀୟ ହାକିମ ଉଚ୍ଚ ସ୍ତରରେ ଲୋକ ନିଯୁକ୍ତି କରୁଥିଲେ । ଜଣେ ରେଡ଼୍ଡ଼ି ଓ ଜଣେ ମିଶ୍ରଙ୍କୁ ଉପଯୁକ୍ତ ପ୍ରାର୍ଥୀ ବୋଲି ଭାବି ସେମାନଙ୍କ ଉପଯୋଗିତା ସମ୍ୱନ୍ଧରେ କିଛି ଜାଣିବା

ଉଦ୍ଦେଶ୍ୟରେ ତାଙ୍କ ଚିହ୍ନା ଜଣେ ତେଲଗୁ ଓ ଜଣେ ଓଡ଼ିଆ ବନ୍ଧୁଙ୍କୁ ଏହି ରେଡ୍‌ଡ଼ି ଓ ମିଶ୍ର ସମ୍ବନ୍ଧରେ ପଚାରିଲେ । ତେଲୁଗୁ ଭଦ୍ରଲୋକଙ୍କୁ ଯେତେବେଳେ ରେଡ୍‌ଡ଼ି କେମିତି ଲୋକ ବୋଲି ପଚରାଗଲା, ସେ ସାଙ୍ଗେ ସାଙ୍ଗେ ଜବାବ ଦେଲେ - 'ରେଡ୍‌ଡ଼ି ? ଆବ୍‌ବା... ଏମିତି ବଢ଼ିଆ ଲୋକ - ଯିଏ ତାକୁ କର୍ମଚାରୀ କରି ପାଇବ ସେ ଭାଗ୍ୟବାନ୍ । କି ବୁଦ୍ଧି ! କି ବିଚକ୍ଷଣତା ! କି ଶୃଙ୍ଖଳା ଜ୍ଞାନ ! ଗଧ ପରି ଖଟି ପାରେ, ଆଉ ଭାରୀ ବିଶ୍ୱାସୀ...'

ଆଉ ଜଣେ ଏ ସବୁ ଶୁଣୁଥିଲେ । ସେ ପରେ ନିଭୃତରେ ଏ ଭଦ୍ରଲୋକଙ୍କୁ ପଚାରିଲେ - ''ଆଚ୍ଛା, ଆପଣ ତ ଦିଲ୍ଲୀରେ ରହନ୍ତି, ଆନ୍ଧ୍ର ପ୍ରଦେଶର କେଉଁ କୋଣରେ ରହୁଥିବା ଏ ରେଡ୍‌ଡ଼ି ବିଷୟରେ ଏତେ କଥା ଆପଣ ଜାଣିଲେ କେମିତି ?' ତେଲୁଗୁ ଭଦ୍ରଲୋକ ହସି ହସି ଜବାବ ଦେଲେ, ''ଆରେ - ଆନ୍ଧ୍ରରେ ଲକ୍ଷ ଲକ୍ଷ ରେଡ୍‌ଡ଼ି ଅଛନ୍ତି, ମୁଁ କାହିଁକି ଏ ରେଡ୍‌ଡ଼ିକୁ ଜାଣିବି ? ତେବେ ସବୁତେଲୁଗୁ ବୁଦ୍ଧିମାନ୍ - ବିଚକ୍ଷଣ - ବିଶ୍ୱାସୀ... । ମୁଁ କ'ଣ ମୋର ଜଣେ ତେଲୁଗୁ ଭାଇ ସମ୍ବନ୍ଧରେ କହିଥାଆନ୍ତି ଯେ ମୁଁ ତାକୁ ଜାଣିନି କି ସେ ଭଲ ନୁହେଁ ?''

ଓଡ଼ିଆ ଭଦ୍ରଲୋକ ମିଶି ବାବୁଙ୍କ ସମ୍ବନ୍ଧରେ ମନ୍ତବ୍ୟ ଦେଲେ - 'କିଏ ? ସେ ମିଶ୍ର ତାକୁ ନେବେ ? ରାମ୍ ରାମ୍ - ସେମିତି ଭୁଲ କରିବେ ନି । ସେଇଟା ଅପଦାର୍ଥ ଅଳସୁଆ କଜିଆଖୋର୍ - କଥାପଦେବି ଭଲ କରି କହି ଜାଣେନି... ।'

ତାଙ୍କୁ ଯେତେବେଳେ ପୁଣି ନିଭୃତରେ ଉପରୋକ୍ତ ଭଦ୍ରଲୋକ ପଚାରିଲେ ଯେ ସେ କେମିତି ମଫସଲର ଏ ମିଶ୍ରଙ୍କୁ ଜାଣିଲେ, ସେ ଜବାବ୍ ଦେଲେ ଯେ ସେ ଏ ମିଶ୍ରଙ୍କୁ ଜାଣି ନାହାନ୍ତି, ତେବେ ଓଡ଼ିଆ ମାତ୍ରକେ ସେମିତି । ଏଇ ମିଶ୍ର ଏଇଠିକି ଆସିଲେ ତାଙ୍କ ବିରୁଦ୍ଧରେ କହି ବୁଲିବ । ତିନି ଜଣ ହେଲେ ତିନିଟା ପାର୍ଟି ସୃଷ୍ଟି କରିବେ ।'

ଜଣେ ବଙ୍ଗାଳୀ ଲଣ୍ଡନରେ ମଧ୍ୟ ଆଉ ଜଣେ ବଙ୍ଗାଳୀକୁ ଦେଖିଲେ ତା'ର ଛାତି କୁଣ୍ଢେମୋଟ ହୋଇଯାଏ ଓ ସେ ବଙ୍ଗଳା ଦି' ପଦ କହି ଦିଏ - ଯେଉଁ ମାତୃଭାଷା ପ୍ରେମ ଯୋଗୁଁ ଆଜି ବଙ୍ଗଳାଦେଶ ପାକିସ୍ତାନରୁ ଅଲଗା ହୋଇଗଲା । ଜଣେ ମାରୁଆଡ଼ି ଆଉ ଜଣେ ଗରିବ ମାରୁଆଡ଼ିକୁ ଦେଖିଲେ ତା' ନିଜ ଗୋଡ଼ରେ ଠିଆ ହୋଇ ବ୍ୟବସାୟ କରିବାକୁ ଅକୁଣ୍ଠିତ ଚିତ୍ତରେ ଟଙ୍କା ସାହାଯ୍ୟ ଦିଏ - ଜଣେ ପଞ୍ଜାବୀ ଆଉଜଣେ ପଞ୍ଜାବୀକୁ ଦେଖିଲେ ନିଜ ତନ୍ଦୁରି ରୋଟି

ଭେଣ୍ଡି ଭଜାକୁ ଦି' ଭାଗ କରେ, ଜଣେ ତେଲୁଗୁ କର୍ମଚାରୀ ଆଉ ଜଣେ ଅଚିହ୍ନା ଚାକିରି ଖୋଜୁଥିବା ତେଲୁଗୁ ଆଗନ୍ତୁକ ପାଇଁ ଖୁସିରେ ନିଜ ଘରେ ମଶିଣା ବିଛାଇ ଦେଇ ନିଜ ଘରକୁ ଧର୍ମଶାଳାରେ ପରିଣତ କରେ । ଆଉ ଓଡ଼ିଆ... !

ଜଣେ ଓଡ଼ିଆ ଠିଆ ହୋଇଥିଲେ ଅନ୍ୟ ଜଣେ ଓଡ଼ିଆ ପଛପଟୁ ଯାଇ ଗୋଡ଼ ଟାଣି ଦେବାକୁ ଭଲ ପାଏ ।

ମନେହୁଏ ଯେ ଆଜି ଅବସ୍ଥା ବଦଳିବାକୁ ଆରମ୍ଭ କରିଛି । ଚକ୍ରବାଳରେ ନୂତନ ପ୍ରଭାତର ଉଜ୍ଜ୍ୱଳ ରଶ୍ମିରେଖା ଦେଖା ଦେଲାଣି ।

ଉତ୍କଳଗୌରବ ସେ ଦିନ ମନ ଦୁଃଖରେ ଗାଇଥିଲେ -

'ମାଆ ମାଆ ବୋଲି କେତେ ମୁଁ ଡାକିଲି ମାଆକୁ ପାଇଲି ନାହିଁ
ଭାଇ ଭାଇ ବୋଲି କେତେ ମୁଁ ଖୋଜିଲି ନ ଦେଲେ ଉତ୍ତର କେହି ।'

ଓଡ଼ିଆ ଜାତି ତା'ର ମାଆକୁ ପାଇ ସାରିଛି । ଆଜି ଓଡ଼ିଆ ଭାଇର ଡାକ ମଧ୍ୟ ଅନ୍ୟ ଓଡ଼ିଆ ଭାଇମାନେ ଶୁଣିବାକୁ ଆରମ୍ଭ କଲେଣି । ନୈରାଶ୍ୟର କୌଣସି କାରଣ ନାହିଁ ।

# ସତ୍ୟର ପଥ

ବିପରୀତ ଧର୍ମୀ ଭାବଧାରା ଓ ପରସ୍ପର ବିରୋଧୀ ପରିବେଶର ଅଦ୍ଭୁତ ସମାବେଶ ତଥା ସେ ସବୁର ସହଜ ଓ ସରଳ ସହାବସ୍ଥାନକୁ ଲକ୍ଷ୍ୟକରି ପାଶ୍ଚାତ୍ୟ ପଣ୍ଡିତମାନେ ଅନେକ ସମୟରେ ମନ୍ତବ୍ୟ ଦିଅନ୍ତି ଯେ ଭାରତ ଏବଂ ଭାରତୀୟଙ୍କୁ ଚିହ୍ନିବା ସହଜ ନୁହେଁ ।

ଏକ ଦିଗରେ ନଭଶ୍ଚୁମ୍ବୀ ହିମାଳୟ ପର୍ବତମାଳା - ଅନ୍ୟ ଦିଗରେ ମହାସାଗରର ଦିଗନ୍ତ ବିସ୍ତାରୀ ନୀଳ ଅମ୍ବୁରାଶି; ଏକ ପାଖରେ ସୁଜଳା ସୁଫଳା ଶସ୍ୟ ଶ୍ୟାମଳା ସିନ୍ଧୁ, ଗଙ୍ଗା ଓ ବ୍ରହ୍ମପୁତ୍ରର ସମତଳ ଉପତ୍ୟକା - ଅନ୍ୟ ପାଖରେ ବିନ୍ଧ୍ୟ ଓ ନୀଳଗିରି ଅଧିତ୍ୟକାର ବନ୍ଧୁର ପ୍ରସ୍ତରମୟ ଭୂଖଣ୍ଡ, ପ୍ରକୃତିହିଁ ଏହି ପାଶ୍ଚାତ୍ୟ ପଣ୍ଡିତମାନଙ୍କ ଉକ୍ତିକୁ କେତେକାଂଶରେ ସମର୍ଥନ କରୁଥିଲାପରି ମନେହୁଏ । କିନ୍ତୁ ପ୍ରକୃତିର ଏପରି ସହାସବସ୍ଥାନ ଅନ୍ୟ ଦେଶମାନଙ୍କରେ ମଧ ଭଣା ଅଧିକେ ଦେଖିବାକୁ ମିଳେ । ତେଣୁ ଏଥିରେ ବିଚିତ୍ରତା କିଛି ନାହିଁ । ସେଥିପାଇଁ ପଣ୍ଡିତମାନେ ପାଶ୍ଚାତ୍ୟ ହୁଅନ୍ତୁ ବା ପ୍ରାଚ୍ୟ ହୁଅନ୍ତୁ ଖୁସି ହେବେ ସିନା ଆଶ୍ଚର୍ଯ୍ୟ ହେବେ କାହିଁକି ?

ଆମ ଦେଶରେ ବିରାଟ ପ୍ରାସାଦର ପ୍ରାଚୁର୍ଯ୍ୟ ଓ ଆଡ଼ମ୍ବର ପୂର୍ଣ୍ଣ ସୌଖୀନତା ଭିତରେ ବେଲୁନ ପରି ଫୁଲି ଉଠିଥିବା କୋଟିପତି ଓ ରାସ୍ତାକଡ଼ରେ ଛିଣ୍ଡା ଅଖା ଭିତରେ ଢାକିଢୁକି ହୋଇ ଭୋକ ଉପାସରେ ଶୋଇ ରହିଥିବା ଜୀର୍ଣ୍ଣ ଶୀର୍ଣ୍ଣ ମଣିଷ ରୂପୀ କଙ୍କାଳର ସହାବସ୍ଥାନ ଦେଖି ସେମାନେ ଅବଶ୍ୟ ଆଶ୍ଚର୍ଯ୍ୟ ହେଉଥିବେ ।

ଷ୍ଟାଣ୍ଡାର୍ଡ଼, ଫିଏଟ, ଆମ୍ବାସାଡ଼ର ଓ ବିଦେଶୀୟ ଲାଇମୋସିନ ସାଙ୍ଗରେ ମଣିଷ ଟଣା ରିକ୍ସା ଓ ବେଳେବେଳେ କାଠ ଚକ ଉପରେ କାଠ ତବା ଭିତରେ ଗୋଡ଼, ହାତ, ନାକ ଛିଣ୍ଡି ପଡ଼ିଥିବା ପଙ୍ଗୁର ଠେଲାଗାଡ଼ି ଦେଖି ସେମାନେ ଅବଶ୍ୟ ଚମକି ଉଠୁଥିବେ ।

ଅଶୋକା ହୋଟେଲ ପରି ହୋଟେଲ ଆଉ ନାଇଟ୍ କ୍ଲବ୍‌ମାନଙ୍କରେ ପଲାଉ ମାଂସ ଓ ଅନ୍ୟାନ୍ୟ ଖାଦ୍ୟପେୟର ସୁସଜ୍ଜିତ ଟେବୁଲ ସାଙ୍ଗକୁ ଅର୍କେଷ୍ଟ୍ରାର ତାଳେ ତାଳେ କାବାରେ ଡାନ୍ସ ଚାଲିଥିଲା ବେଳେ ବାହାରେ କେଉଁଠି ଅଇଁଠା ପତ୍ର ପାଇଁ କୁକୁର ଓ ମଣିଷ ଭିତରେ ଟଣା ଓଟରା ଲାଗିଥିବା ଦେଖି ନିଶ୍ଚୟ ଚକିତ ହେଉଥିବେ ।

ଦିନେ ସର୍ବଗ୍ରାସୀ ପ୍ରଳୟଙ୍କରୀ ବନ୍ୟାରେ ଗାଁ ଗଣ୍ଡା ଭାସିଗଲା ପରେ ଆଉ ଦିନେ ଶୁଖା ମରୁଡ଼ିରେ ପାଣିବିନା ମଣିଷର ହାହାକାର ଶୁଣି, ସ୍ୱର୍ଣ୍ଣପ୍ରସୂ ଭାରତରେ ଦାରିଦ୍ର୍ୟର ତାଣ୍ଡବଲୀଳା ଦେଖି, ପ୍ରାକୃତିକ ସମ୍ପଦର ଗନ୍ତାଘରେ ଯୁବକଙ୍କ କର୍ମହୀନତା ଓ ବେକାରି ଲକ୍ଷ୍ୟ କରି ସେମାନେ ନିଶ୍ଚୟ ବିସ୍ମିତ ହେଉଥିବେ । ତେବେ ଅନ୍ୟାନ୍ୟ ଦରିଦ୍ର ଓ ବିକାଶମୁଖୀ ଦେଶମାନଙ୍କରେ ମଧ୍ୟ ଏପରି ଦୃଶ୍ୟ ସବୁ ଦେଖିବାକୁ ମିଳେ - ତେଣୁ ଭାରତର ଏ ଦୁଃଖ ଦାୟକ ଅର୍ଥନୈତିକ ପରିସ୍ଥିତିକୁ ବୁଝି ନ ପାରିବେ କାହିଁକି ?

ଏହି ପାଶ୍ଚାତ୍ୟ ପଣ୍ଡିତମାନଙ୍କ ମଧ୍ୟରୁ ଅନେକ ବେଦ ଓ ଉପନିଷଦ୍‌ର ଜନ୍ମସ୍ଥଳୀ ଭାରତକୁ ଜ୍ଞାନର ଅନୁସନ୍ଧାନରେ ହିଁ ଆସିଥା'ନ୍ତି । ଏଠାକୁ ଆସି ଯେତେବେଳେ ଦେଖନ୍ତି ଯେ ଏଠାରେ ଆଦର୍ଶ ଓ ବାସ୍ତବତା ଭିତରେ, କଥା ଓ କ୍ରିୟାକଳାପ ମଧ୍ୟରେ ଆକାଶ ପାତାଳର ବ୍ୟବଧାନ, ସେତେବେଳେ ହିଁ ସେମାନେ ବୋଧହୁଏ କିଛି ବୁଝି ପାରନ୍ତିନି ।

ବଶିଷ୍ଠ, ବେଦବ୍ୟାସ, ମହାବୀର, ବୁଦ୍ଧଙ୍କ ଦେଶରେ ସେମାନେ ଦେଖିବାକୁ ପାଆନ୍ତି ଯେ ଲୋକେ ଗାଇକୁ ମା' ବୋଲି କହି ଖାଇବାକୁ ଗଣ୍ଡିଏ ମଧ୍ୟ ନଦେଇ ତା'ର ଶୁଖିଲା ପହ୍ନାରୁ ଶେଷ ବିନ୍ଦୁ ଦୁଧ ଦୁହିଁବାକୁ ଚେଷ୍ଟା କରନ୍ତି । ଏକଲବ୍ୟଙ୍କର ଦେଶରେ ଛାତ୍ର ଶିକ୍ଷକକୁ ଗୁରୁ ବୋଲି କହେ ସତ, କିନ୍ତୁ ବେଳେବେଳେ ସେହି ଗୁରୁଙ୍କୁ ବିଧା ଗୋଇଠା ଦକ୍ଷିଣା ଦେବାକୁ ପଛାଏନି । ଯେଉଁ ଦେଶର ଲୋକେ ବିଶ୍ୱାସ କରନ୍ତି ଯେ ପ୍ରତ୍ୟେକ ଦିନ ମହାପାଞ୍ଜିକାରେ ଚିତ୍ରଗୁପ୍ତ ପ୍ରତ୍ୟେକଙ୍କର କ୍ରିୟାକଳାପ ସମ୍ବନ୍ଧରେ ପାଞ୍ଜି ଲେଖେ ଯଥା ସମୟରେ ସେ ସବୁର ବିଚାର ପାଇଁ, ସେ ଦେଶରେ ଯଜ୍ଞ ଓ ଧର୍ମ ନାମରେ ଯେଉଁମାନେ ହଜାର ହଜାର ଟଙ୍କା ଖର୍ଚ୍ଚ କରନ୍ତି, ସେହିମାନେହିଁ ବେଳେ ବେଳେ ବିନା ଦ୍ୱିଧାରେ ଖାଦ୍ୟ ଦ୍ରବ୍ୟ ଓ ଔଷଧରେ ଅପମିଶ୍ରଣ କରିବାକୁ କୁଣ୍ଠାବୋଧ କରନ୍ତିନି । ଯେଉଁ ଦେଶରେ ବିଶ୍ୱାସ ଅଛି ଯେ ଅନନ୍ତ ଶୟନରେ ଥାଇ ମଧ୍ୟ ବିଷ୍ଣୁଙ୍କ ହାତରେ ସୁଦର୍ଶନ ଚକ୍ର, ବନବାସୀ

ଶ୍ରୀରାମଙ୍କ ହାତରେ କୋଦଣ୍ଡ, ଯୋଗରତ ମହାଯୋଗୀ ଶିବଙ୍କ ପାଖରେ ତ୍ରିଶୂଳ, ମା' ଭବାନୀ ମହାଶକ୍ତି ଧାରିଣୀ, ଯେଉଁ ଦେଶର ପ୍ରତ୍ୟେକ ଦେବାଦେବୀଙ୍କ ହାତରେ ଅସ୍ତ୍ରଶସ୍ତ୍ର ଏପରିକି ମୂଷିକ ବାହାନ ଗଣେଶଙ୍କ ହାତରେ ମଧ୍ୟ ପାଶ ଓ ଅଙ୍କୁଶ, ସେ ଦେଶର ଲୋକେ ଯୁଗ ଯୁଗ ଧରି ପରାଧୀନ ରହନ୍ତି। ଯେଉଁ ଦେଶରେ ମହାଜ୍ଞାନୀ, ମହାବଳୀ ହନୁମାନ ଓ ଗାଣ୍ଡୀବଧାରୀ ପରନ୍ତପ ଅର୍ଜୁନ ଭକ୍ତଙ୍କର ଆଦର୍ଶ, ସେ ଦେଶର ଭକ୍ତମାନେ ଶତ୍ରୁ ଭୟରେ ଜଗନ୍ନାଥଙ୍କ ପ୍ରତିମାକୁ ଲୁଚାଇ ବୁଲନ୍ତି। ଆଉ ଯେଉଁ ଦେଶର ବେଦାନ୍ତକୁ ଜ୍ଞାନର ଅନ୍ତବୋଲି କୁହାଯାଏ, ଯେଉଁଠି 'ସୋହଂ', 'ତତ୍ତ୍ୱମ୍ ଅସି' ମହାବାଣୀ ପ୍ରଚାରିତ, ସେହି ଦେଶର ମଣିଷ ବେଳେବେଳେ ଅନ୍ୟ ମଣିଷକୁ ଛୁଇଁବାକୁ ମଧ୍ୟ ଘୃଣା କରେ। ବାହାରର ଲୋକେ ସେଥିପାଇଁ ଏସବୁ ଦେଖି କିଛି ବୁଝିପାରନ୍ତିନି, ଆଉ ସମୟ ସମୟରେ ଭୁଲକରି ବସନ୍ତି।

ଶୁଣାଯାଏ ଯେ ଥରେ କେହିଜଣେ ପାଶ୍ଚାତ୍ୟ ପଣ୍ଡିତ ଦକ୍ଷିଣ ଭାରତରେ ରେଳଗାଡ଼ିରେ ଯାଉଥିଲେ। ସେ ତ ଆଗରୁ ଶୁଣିଥିଲେ ଯେ ଭାରତର ଲୋକେ ବଡ଼ ଧାର୍ମିକ ଓ ସୂର୍ଯ୍ୟୋଦୟବେଳେ ସୂର୍ଯ୍ୟ ନମସ୍କାର କରନ୍ତି, ତେଣୁ ଯେତେବେଳେ ରେଳଗାଡ଼ିରୁ ଦେଖିଲେ ଯେ ସକାଳୁ ଅନେକ ଲୋକ ପ୍ରାୟ ଧାଡ଼ିବାନ୍ଧି ରେଳଲାଇନ ପାଖରେ ବସି ଯାଇଛନ୍ତି, ସେ ଧରିନେଲେ ଯେ ସେ ସମସ୍ତେ ସୂର୍ଯ୍ୟ ନମସ୍କାର ପାଇଁ ସୂର୍ଯ୍ୟୋଦୟକୁ ଅପେକ୍ଷା କରି ବସିଛନ୍ତି। ଖୁସିରେ ଭାରତୀୟ ଜୀବନଧାରାର ମହନୀୟତାକୁ ପ୍ରଶଂସା କରୁ କରୁ ଅନେକଙ୍କ ପାଖରେ ଗୋଟିଏ ଲେଖାଏଁ ପାଣି ପାତ୍ର ଥୁଆ ହୋଇଥିବା ଦେଖି ଆଶ୍ଚର୍ଯ୍ୟ ହୋଇ ପାଖରେ ବସିଥିବା ଜଣେ ଭାରତୀୟଙ୍କୁ ସେ ତା'ର କାରଣ ପଚାରିଲେ। ଭାରତୀୟ ଭଦ୍ରଲୋକଙ୍କ ପ୍ରତିକ୍ରିୟା କ'ଣ ହୋଇଥିବ ତାହା କେବଳ ଅନୁମାନ କରାଯାଇପାରେ।

ଜ୍ଞାନ ଓ ଆଲୋକର ପୀଠସ୍ଥଳୀ ଭାରତରେ ଅଜ୍ଞାନ ଓ ଅନ୍ଧାରର ଏପରି ଚରମ ପରିପ୍ରକାଶ ସମସ୍ତଙ୍କୁ ବିସ୍ମିତ କରିଦିଏ। ସ୍ୱାଭାବିକ ଭାବରେ ତେଣୁ ମନରେ ପ୍ରଶ୍ନ ଉଠେ ଯେ ଏପରି ଅଘଟଣ କଥା ଘଟିଲା କିପରି ?

ଏଥିର ଠିକ କାରଣ ଖୋଜି ବାହାର କରିବା ସହଜ ନୁହେଁ। ତଥାପି ମନେହୁଏ ଯେ ଆମ ଅବଚେତନ ମନର ମାନସିକ ଦ୍ୱନ୍ଦ୍ୱ ଓ ମାନସିକ ସଂଘର୍ଷହିଁ ଏହାର ପ୍ରଧାନ କାରଣ।

ବିଦେଶୀୟ କେତେ ମନୀଷୀ କହନ୍ତି ଯେ ସତ୍ୟର ପଥ ଏକ। ସେ ଦେଶମାନଙ୍କରେ ସତ୍ୟର ସନ୍ଧାନୀକୁ ତେଣୁ ଏକ ଦର୍ଶିତ ମାର୍ଗରେହିଁ ଯିବାକୁ ପଡ଼େ। ସେହି ମାର୍ଗରେ ଶେଷରେ କ'ଣ ଅଛି ସେ କଥା କେହି ଜାଣନ୍ତି ନି ସତ, ମାର୍ଗଟି ପ୍ରକୃତରେ ଠିକ୍ କି ଭୁଲ ସେ କଥା ପ୍ରମାଣ କରି କହିବା ଉପାୟ ନାହିଁ, କିନ୍ତୁ ସେ ଦେଶମାନଙ୍କରେ ଏ ସମ୍ବନ୍ଧରେ ପ୍ରଶ୍ନ ମଧ୍ୟ ଉଠେନି ଯେହେତୁ ସେଇଠି ସମସ୍ତେ ବିଶ୍ୱାସ କରନ୍ତି ଯେ ସେହି ଦର୍ଶିତ ମାର୍ଗହିଁ ସତ୍ୟର ମାର୍ଗ। ସନ୍ଦେହୀ ଓ ଅବିଶ୍ୱାସୀର ସେଠାରେ ସ୍ଥାନ ନଥାଏ।

ଆମ ଦେଶର ଜ୍ଞାନୀମାନେ କିନ୍ତୁ କହି ଯାଇଛନ୍ତି ଯେ ସତ୍ୟ ଏକ ହେଲେ ମଧ୍ୟ ପଥ ଅନେକ - ଠିକ କୌଣସି ଗୋଟିଏ ସହରକୁ ପହଞ୍ଚିବାକୁ ହେଲେ ଯେପରି ଭିନ୍ନ ଭିନ୍ନ ଦିଗରୁ ବିଭିନ୍ନ ପଥ ଦେଖିବାକୁ ମିଳେ। ସହରକୁ ଯାଉଥିବା ଯାତ୍ରୀ କେଉଁ ଦିଗରୁ ଓ ସ୍ଥାନରୁ ତା'ର ଯାତ୍ରା ଆରମ୍ଭ କରିଛି ସେ ଉପରେ ହିଁ ତା'ର ଯାତ୍ରା ପଥ ନିର୍ଭର କରେ। ଜଣେ ଯାତ୍ରୀର ପଥ ଅନ୍ୟ ଯାତ୍ରୀ ପାଇଁ ଠିକ ହୋଇପାରେ ଅଥବା ଭୁଲ ହୋଇପାରେ, ତେଣୁ କେହି ଯଦି କହେ ଯେ ସେ ଯେଉଁ ବାଟଦେଇ ସହରକୁ ଆସିଛି ସେହି ବାଟହିଁ ଗୋଟିଏ ମାତ୍ର ବାଟ ଆଉ ସହରକୁ ଆସୁଥିବା ସମସ୍ତଙ୍କୁ ସେହି ବାଟଦେଇହିଁ ଆସିବାକୁ ପଡ଼ିବ ତେବେ ତାହା ଠିକ ହେବନି। ସେପରି ସତ୍ୟ ଅନୁସନ୍ଧାନର ପଥ ମଧ୍ୟ ଭିନ୍ନ ଭିନ୍ନ ମଣିଷ ପାଇଁ ବିଭିନ୍ନ ବୋଲି ଏହି ଜ୍ଞାନୀମାନେ ମତ ଦିଅନ୍ତି।

ସାଧାରଣ ମଣିଷ କିନ୍ତୁ ଏ ବିଭିନ୍ନ ମାର୍ଗ ଦେଖି ବାଟ ବଣା ହୋଇଯାଏ। ସେ ଯେତେବେଳେ ତା'ର ଯାତ୍ରା ଆରମ୍ଭ କରେ ନାନା ଲୋକେ ନାନା ବାଟ ଦେଖାଇ ବସନ୍ତି। କିଏ କହେ ଏହା ଜ୍ଞାନମାର୍ଗ - ଏଇ ମାର୍ଗହିଁ ପ୍ରକୃତ ମାର୍ଗ, ଆଉ କିଏ କହେ - ଇଏ ଭକ୍ତି ମାର୍ଗ, କିଏ ଅବା ଧ୍ୟାନ ମାର୍ଗ ଦେଖାଏ, କିଏ କହେ କର୍ମ, କିଏ କହେ ନାମ କୀର୍ତ୍ତନ, ଆଉ କିଏ କହେ ଓଷା, ବ୍ରତ, ଭୋଗ ରାଗ।

ଏହି ଟଣା ଓଟରା ଫଳରେ ସେ କୁଆଡ଼େ ଯିବ କିଛି ସ୍ଥିର କରି ପାରେନି।

କୌଣସି ଅସହାୟ ମଣିଷକୁ ଦେଖି କେହି ଜଣେ ଯେତେବେଳେ କହେ ତାକୁ ସାହାଯ୍ୟ କର, ଆଉଜଣେ କହେ ତାକୁ ତା'ର ପୂର୍ବ ଜନ୍ମର କର୍ମଫଳ ଭୋଗିବାକୁ ଦିଅ। ଜଣେ ଯେତେବେଳେ କହେ ଯେ ପ୍ରତ୍ୟେକ ମଣିଷ ଭିତରେ ଭଗବାନଙ୍କ ସତ୍ତା ନିହିତ - ତେଣୁ ସବୁ ମଣିଷ ସମାନ, ଆଉ ଜଣେ କହେ ଯେ ଜନ୍ମ

ଜନ୍ମାନ୍ତରର ଆରମ୍ଭ ଧରି ମଣିଷ ଆଗେଇ ଚାଲିଛି ଆଉ ପ୍ରତ୍ୟେକ ମଣିଷ କୌଣସି ନା କୌଣସି ସ୍ତରରେ ଆସି ପହଞ୍ଚିଛି । ମଣିଷ ମଣିଷ ଭିତରେ ସୋପାନର ସୃଷ୍ଟି ହୁଏ ଆଉ ତାହା ଲମ୍ବିଯାଇ ଛୁଆଁ ଅଛୁଆଁ ଆଡ଼କୁ ଗତିକରେ ।

ଜଣେ ଯେତେବେଳେ ଗୁଣାତୀତ, କାମନାରହିତ ହୋଇ କର୍ତ୍ତବ୍ୟ କର୍ମକରି ଯିବାକୁ ଶିକ୍ଷା ଦିଏ, ଆଉଜଣେ କର୍ମ ଅର୍ଥ କର୍ମକାଣ୍ଡର କର୍ମକର୍ମାଣି ବୋଲି କହି ପୁତ୍ର, ପୌତ୍ର, ଧନ, ଯଶ ଆଦି ପାଇଁ ଗଣନାୟକଙ୍କୁ ପ୍ରାର୍ଥନା କରିବାକୁ ଶିଖାଏ । ଏପରି ପ୍ରତ୍ୟେକ କ୍ଷେତ୍ରରେ ଜ୍ଞାନର ଭିନ୍ନ ଭିନ୍ନ ଅର୍ଥ ମାନସିକ ସଂଘର୍ଷର ସୂତ୍ରପାତ କରେ । ଅହିଂସା ଓ କାପୁରୁଷତା ଭିତରେ ତଫାତ୍ ଜଣା ପଡ଼େନି । ଅପରିଚ୍ଛନ୍ନତା ସରଳତା ପରି ଦିଶେ ।

ଆକାଶ ଉପରୁ ଉଠିଗଲେ ମଣିଷ ଯେପରି ପୃଥିବୀ ପୃଷ୍ଠର ଘୂର୍ଣ୍ଣୀବାତ୍ୟାରୁ ଦୂରେଇ ଯାଏ ସେହିପରି ଯେଉଁମାନେ ଜ୍ଞାନର ଉପର ସ୍ତରକୁ ଉଠିଯାଆନ୍ତି ସେମାନେ ଏ ପରସ୍ପର ବିରୋଧୀ ବିଭିନ୍ନତାରୁ ଦୂରେଇଯାଇ ଐକ୍ୟର ସନ୍ଧାନ ପାଆନ୍ତି । ସାଧାରଣ ମଣିଷ କିନ୍ତୁ ଏହି ଜ୍ଞାନ ଜାଲରେ ଛନ୍ଦି ହୋଇଯାଏ ଆଉ ଅଜ୍ଞାନକୁ ଜ୍ଞାନ ବୋଲି ଭାବି ଭୁଲ କରି ବସେ । ସେଥିପାଇଁ ହିଁ ଅଜ୍ଞାନରୁ ଜ୍ଞାନକୁ ଚିହ୍ନାଇ ଦେବାପାଇଁ ଭାରତୀୟ ପରମ୍ପରା ଯୁଗେ ଯୁଗେ ଗୁରୁଙ୍କ ଆବଶ୍ୟକତା ଦର୍ଶାଇ ଆସିଛି ଓ ଗୁରୁଙ୍କୁ ସବୁଦିନ ଉଚ୍ଚ ଆସନ ଦେଇଛି ।

ହଜାର ହଜାର ବର୍ଷ ତଳେ ମଣିଷ ମନର ଏ ମାନସିକ ଦ୍ୱନ୍ଦ୍ୱ ସୁନ୍ଦର ଭାବରେ ଅବତାରଣା କରାଯାଇଥିଲା ଗୋଟିଏ ମହାଯୁଦ୍ଧର ପଟ୍ଟଭୂମିରେ ।

ସାରା ପାଣ୍ଡବସେନା ଯେତେବେଳେ କେବଳ ଅର୍ଜୁନଙ୍କ ଶକ୍ତି ଓ ସାମର୍ଥ୍ୟ ଉପରେ ନିର୍ଭର କରି ଭୀଷ୍ମ, ଦ୍ରୋଣ, କର୍ଣ୍ଣଙ୍କ ପରି ମହା ମହା ରଥୀମାନଙ୍କ ବିରୁଦ୍ଧରେ ଯୁଦ୍ଧ କରିବା ପାଇଁ ଠିଆ ହୋଇଥିଲା, ଠିକ ସେତିକିବେଳେ ଅଜ୍ଞାନରେ ହେଉ, ଭୟରେ ହେଉ ଅବା, ମୋହାନ୍ଧହୋଇ ହେଉ ମାନବଜାତିର ପ୍ରତୀକ ସେହି ଅର୍ଜୁନ ଧନୁଶର ଛାଡ଼ି ଦେଇ ହିମାଳୟକୁ ତପସ୍ୟା କରି ଯିବାପାଇଁ ବାହାରି ପଡ଼ିଥିଲେ ଜ୍ଞାନର ଦ୍ୱାହିଦେଇ । ତାଙ୍କ ସାରଥି ଓ ସଖା ଶ୍ରୀକୃଷ୍ଣ ଯୁଦ୍ଧ କରିବା ପାଇଁ ତାଙ୍କୁ ବୁଝାଇଲେ, କିନ୍ତୁ ସେ ଅଭିଯୋଗ କଲାପରି ପଚାରି ବସିଲେ 'କର୍ମ ଅପେକ୍ଷା ଜ୍ଞାନ ଶ୍ରେୟସ୍କର ବୋଲି କହିସାରିଲା ପରେ ମୋତେ ଏ ଯୁଦ୍ଧପରି ଭୟଙ୍କର କର୍ମ କରିବାକୁ କିପରି କହୁଛନ୍ତି ?' ଆଉ କହିଲେ, 'ଏପାଖ ସେପାଖ ଓଲଟା କଥା ସବୁ କହି ଆପଣ ମୋ ମନ ଭିତରେ ଏପରି

ଦ୍ୱନ୍ଦ ସୃଷ୍ଟି କରୁଛନ୍ତି ଯେ ମୁଁ କ'ଣ କରିବି କିଛି ଠିକ କରିପାରୁନି । ଦୟାକରି ସିଧାସଳଖ ଗୋଟିଏ କଥା କୁହନ୍ତୁ ଯାହାକଲେ ମୋର ମଙ୍ଗଳ ହେବ ।'

ଏପରି ସିଧାସଳଖ ଗୋଟିଏ କଥା ଅଥବା 'ସତ୍ୟର ପଥ କେବଳ ଗୋଟିଏ' ଏହି ଧାରଣା କେବଳ ଅନ୍ଧବିଶ୍ୱାସ ଜାଗ୍ରତ କରାଇବ ଏହା ଭାବି ବୋଧହୁଏ ମାନବ ଜାତିର ସର୍ବଶ୍ରେଷ୍ଠ ବନ୍ଧୁ ଓ ଜଗତର ଗୁରୁ ସେଦିନ ମାନସିକ ଦ୍ୱନ୍ଦ ଆଣୁଥିବା ପ୍ରତ୍ୟେକ ପ୍ରଶ୍ନର ଉତ୍ତର ଗୋଟିଏ ପରେ ଗୋଟିଏ ଦେଇ ଅର୍ଜୁନଙ୍କ ମୋହ ଦୂର କରିଥିଲେ ।

ଆଜି ମଧ୍ୟ ଲିପିବଦ୍ଧ ହୋଇ ମନୁଷ୍ୟର ସେହି ଅମୂଲ୍ୟ ସମ୍ପଦ ଆମପାଖରେ ରହିଛି ।

କିନ୍ତୁ ବିଂଶ ଶତାବ୍ଦୀର ଅତ୍ୟାଧୁନିକ ମଣିଷ ଆମେ - ପଛକୁ ଚାହିଁବାକୁ ବୋଧହୁଏ ଲଜ୍ଜାବୋଧ କରୁଛୁଁ । ଭୁଲିଯାଉଛୁଁ ଯେ ସତ୍ୟ ତଥା ସତ୍ୟ ସମ୍ବନ୍ଧୀୟ ଜ୍ଞାନ କେବେ ପୁରୁଣା ହୁଏନି ।

# ସଭ୍ୟତା ଓ ସଂସ୍କୃତି

ସଭ୍ୟତା ଓ ସଂସ୍କୃତି ଭିତରେ କୌଣସି ନିର୍ଦ୍ଦିଷ୍ଟ ସୀମାରେଖା ଟାଣିବା ସହଜ ନୁହେଁ । ବେଳେବେଳେ ମନେହୁଏ ଯେ ଏ ଦୁଇଟି ଏକ ଓ ଅଭିନ୍ନ । ଅନ୍ୟ ସମୟରେ ଗୋଟିଏ ଅନ୍ୟଟିର ପରିପୂରକ ପରି ଜଣାପଡ଼େ । ଆଉ କେତେବେଳେ ବା ମନେହୁଏ ଯେ ଏ ଦୁଇଟି ସମଭାବାପନ୍ନ ଜଣା ପଡୁଥିଲେହେଁ ସମ୍ପୂର୍ଣ୍ଣ ବିଭିନ୍ନ ।

ପ୍ରାଚ୍ୟ ଓ ପାଶ୍ଚାତ୍ୟ ସଭ୍ୟତା, ମିଶରୀୟ କିମ୍ବା ବେବିଲୋନୀୟ ସଭ୍ୟତା, ଦ୍ରାବିଡ଼ କିମ୍ବା ଆର୍ଯ୍ୟ ସଭ୍ୟତା, ପ୍ରାଚୀନ ଓ ଆଧୁନିକ ସଭ୍ୟତା ତଥା ପ୍ରସ୍ତର ଯୁଗର ସଭ୍ୟତା, ଲୌହ ଯୁଗର ସଭ୍ୟତା, ଯନ୍ତ୍ର ଯୁଗର ସଭ୍ୟତା ପ୍ରଭୃତି ବିଭିନ୍ନ ସଭ୍ୟତା ସମ୍ବନ୍ଧରେ ଶୁଣା ଯାଉଥିଲେ ମଧ ସଭ୍ୟତା କହିଲେ ଠିକ କ'ଣ ବୁଝାଏ ଓ ସଭ୍ୟତାର ପ୍ରକୃତ ରୂପରେଖ କ'ଣ ସେ କଥା କହିବା କଠିନ । ସାହିତ୍ୟ, କଳା, ଦର୍ଶନ ପ୍ରଭୃତି ସଭ୍ୟତାର ଅଙ୍ଗ ବୋଲି ଧରା ଯାଉଥିଲେ ହେଁ ସାଧାରଣ ଭାବରେ ସଭ୍ୟତା କହିଲେ ବେଶଭୂଷା, ଢଙ୍ଗରଙ୍ଗ, ଚାଲି ଚଳଣ ତଥା ଜୀବନ ଧାରଣ ପ୍ରଣାଳୀକୁ ହିଁ ବୁଝାଏ । ସଭ୍ୟ ମାନବର ଚିତ୍ର କଳ୍ପନା କଲେ ମନ ଭିତରେ ଉଙ୍କି ମାରେ ଗୋଟିଏ ପେଣ୍ଟ, କୋଟ୍, ହେଟ୍, ବୁଟ୍ ପିନ୍ଧା, ଟାଇ ଭିଡ଼ା ଭଦ୍ରଲୋକ - ମୁହଁରେ ସିଗାରେଟ୍, ପାଇପ୍ ଅଥବା ସିଗାର୍, ଆଖିରେ ରଙ୍ଗୀନ ଚଷମା, ହାତରେ ବାଡ଼ି । ଆଖି ଆଗରେ ନାଚି ଉଠେ, କୋଟ୍ ପକେଟ୍‌ରୁ ଉଙ୍କି ମାରୁଥିବା ରୁମାଲ୍, ଗୋଡ଼ର ନାଇଲନ୍ ମୋଜା, ଡାହାଣ ହାତର ଘଡ଼ି, କାନ୍ଧର କେମେରା, ପିଠିର ଟେପ୍‌ରେର୍କଡ଼ର୍, ଲମ୍ବା ବାଳ, ତ୍ରିକୋଣ ଦାଢ଼ି, ନାନା ରଙ୍ଗର ଜ୍ୟାମିତିକ ଚିତ୍ର କରା କଲି ।

ଆଉ ସଭ୍ୟତାର ପ୍ରତୀକ ରୂପରେ ଦେଖାଦିଏ ଧୂଳିଆ ଧୂସର ଦେହର ଅଣ୍ଟା ପାଖରେ ଝୁଲୁଥିବା ଚାରି ଆଙ୍ଗୁଳିଆ ଲେଙ୍ଗୁଟି, ମାଛ କାତିଆ ପାଦ ଅଥବା ବେକରେ ଲମ୍ବିଥିବା କେତେ କେରା ପୋହଳା ମାଳ, ହାତର ପିତଳ କିମ୍ବା କଂସା ଖଡୁ, ଚିତା କୁଟା ଦେହ ।

ମଣିଷର ସଭ୍ୟତା କେବେ ଆଉ କେଉଁ ଭାବରେ ଜନ୍ମ ନେଇଥିଲା ସେ କଥା କହିବା ସହଜ ନୁହେଁ । ପାଶ୍ଚାତ୍ୟ ଜଗତର ଆଦି ଗ୍ରନ୍ଥ ବାଇବେଲର କଥନ ଅନୁସାରେ ଶୟତାନର ପ୍ରରୋଚନାରେ ପଡ଼ି ଇଭ୍ ଓ ପରେ ପରେ ଆଦମ୍ ଯେତେବେଳେ ଇଡ଼େନ୍‌ର ନିଷିଦ୍ଧ ଫଳ ଖାଇପକାଇଲେ ସେମାନଙ୍କ ମନରେ ଲଜ୍ଜାର ଆବିର୍ଭାବ ହେଲା ଓ ନିଜର ଫୁଙ୍ଗୁଳା ଦେହ ଦେଖି ସେମାନେ ଡିମିରି ପତ୍ର ସାହାଯ୍ୟରେ ଲଜ୍ଜା ଢାଙ୍କିବାକୁ ଚେଷ୍ଟା କଲେ । ମନେହୁଏ ଯେ ସେହି ମୁହୂର୍ତ୍ତରେ ହିଁ ମଣିଷ ସଭ୍ୟତା ଆରମ୍ଭ କରିଥିଲା ପ୍ରାଣୀ ଜଗତରେ ତା'ର ବିଜୟର ଜୟଯାତ୍ରା । ସେହି ଦିନଠାରୁ ପ୍ରକୃତିର ସନ୍ତାନ ମଣିଷ ସେହି ପ୍ରକୃତି ପାଖରୁ ଦୂରେଇ ଯିବାକୁ ଆରମ୍ଭ କଲା ।

ସଭ୍ୟତାର ସୋପାନ ଆରୋହଣ କଲାବେଳେ ମଣିଷ ଯେଉଁ ସବୁ ପଦକ୍ଷେପ ନେଇଥିଲା ସେ ସବୁର ଧାରାବାହିକ ବିବରଣୀ କେଉଁଠି ଲିପିବଦ୍ଧ ହୋଇନି । ଏ ସମ୍ବନ୍ଧରେ କିନ୍ତୁ କେତେ କୌତୂହଳପୂର୍ଣ୍ଣ କାହାଣୀ ଶୁଣିବାକୁ ମିଳେ ।

ଶୁଣାଯାଏ ଯେ ଜୀବଜଗତର ଅନ୍ୟାନ୍ୟ ମାଂସାସୀ ପ୍ରାଣୀ ପରି ସଭ୍ୟତାର ଆଦି ଯୁଗରେ ମଣିଷ ବି କଞ୍ଚା ମାଂସ ଖାଉଥିଲା ଓ ମେଣ୍ଢା ରଖିବା ଶିଖି ସାରିଥିଲା । ମେଣ୍ଢାମାନେ ଯେପରି କୁଆଡ଼େ ଚାଲି ନ ଯିବେ କିମ୍ବା ଅନ୍ୟ କେହି ଯେପରି ସେମାନଙ୍କୁ ଖାଇ ନ ଯିବ ସେଥିପାଇଁ ମେଣ୍ଢାଶାଳ ତିଆରି ହେଉଥିଲା ଓ ମେଣ୍ଢା ଜଗୁଆଳ ମଧ ରହୁଥିଲେ । ମଣିଷ କିନ୍ତୁ ନିଆଁର ବ୍ୟବହାର ଜାଣି ନ ଥିଲା କିମ୍ବା ରାନ୍ଧି ଖାଇବା ଅଥବା ସିଝାଇ ଖାଇବା ଶିଖି ନ ଥିଲା ।

ଦିନେ ଗୋଟିଏ ମେଣ୍ଢାଶାଳରେ ନିଆଁ ଲାଗିଗଲା । ଶାଳରେ ଯେଉଁ କେତୋଟି ମେଣ୍ଢା ଥିଲେ ସେଥିରୁ କେତେ ରକ୍ଷା ପାଇଗଲେ, ଆଉ ଗୋଟିଏ ଦିଓଟି ଜୀବନ୍ତ ଦଗ୍ଧ ହୋଇଗଲେ । ମେଣ୍ଢାଶାଳର ରକ୍ଷକ ଗୋଟିଏ ପୋଡ଼ା ମେଣ୍ଢାକୁ ଧରି ବାହୁନି ବାହୁନି କାନ୍ଦି ବସିଲା ଓ ସେ ଦିନର ପ୍ରଥା ଅନୁଯାୟୀ କାନ୍ଦିଲା ବେଳେ ମେଣ୍ଢା ଦେହରେ ଥରେ ଓ କପାଳରେ ଥରେ ହାତ ବାଡ଼େଇବାକୁ ଲାଗିଲା । ଏପରି କରୁଁ କରୁଁ ହଠାତ୍ ତା' ହାତ ପାପୁଲି ଗୋଟିଏ ଦେଖି ପୋଡ଼ି ଯାଇଥିବା ଅତ୍ୟନ୍ତ ନରମ ମାଂସ ଉପରେ ପଡ଼ିଗଲା, ଫଳରେ କିଛି ସିଝା ମାଂସ ଆଙ୍ଗୁଠିରେ ଲାଗିଗଲା । ଅତ୍ୟଧିକ ଉତ୍ତାପ ଯୋଗୁଁ ଆଙ୍ଗୁଠି ଜ୍ୱଳନରୁ ରକ୍ଷାପାଇବାକୁ ଯାଇ ସେ ପ୍ରକୃତି ବଶତଃ ଆଙ୍ଗୁଠିକୁ ସିଝା ମାଂସ ଲାଗିଥିବା ଅବସ୍ଥାରେ ପାଟି ଭିତରେ ପୂରାଇ ଦେଲା । ଗୋଟିଏ ନୂତନ ଆସ୍ୱାଦନରେ ତା'

ଦେହ ପୁଲକିତ ହେଲା ଓ ସେ ତହିଁର କାରଣ ଠିକ୍ ବୁଝି ପାରିଲାନି । କାହ୍ନୁ କାହ୍ନୁ ସେ ଅବସ୍ଥାର ପୁନରାବୃତ୍ତି ହେଲା ଆଉ ସିଝା ମାଂସ ଲଗା ଆଙ୍ଗୁଠି ପାଟି ଭିତରକୁ ଯିବାରେ ପୁନର୍ବାର ସେହି ଆସ୍ୱାଦନର ଅନୁଭୂତି ହେଲା । ଜଗୁଆଳୀର ସନ୍ଦେହ ହେଲା - କାଳେ ସେ ସିଝା ମାଂସ ସେପରି ଭଲ ଲାଗୁଛି । ଏଥର ସେ ଜାଣି ଶୁଣି ଆଙ୍ଗୁଠିକୁ ସେଇଠି ଗେଞ୍ଜି ଦେଲା ଓ ସିଝା ମାଂସ ଲଗା ଆଙ୍ଗୁଠିକୁ ପାଟିରେ ଭର୍ତ୍ତି କରି ବୁଝି ପାରିଲା ଯେ ସତକୁ ସତ ସେହି ସିଝା ମାଂସ ହିଁ ଏତେ ରଚିକର ହୋଇଛି । ତା'ପରେ ସେ କାହ୍ନୁ କାହ୍ନୁ ଘନ ଘନ ସେହି ପୋଡ଼ା ଜାଗାରେ ଆଙ୍ଗୁଠି ପୂରାଇବାକୁ ଲାଗିଲା ।

ମେଣ୍ଢାଶାଳର ମରାମତି ହେଲା, କିନ୍ତୁ ଅନ୍ୟ ମାସ ଠିକ ସେପରି ଜହ୍ନ ରାତିରେ ସେହି ମେଣ୍ଢାଶାଳରେ ଆଉଥରେ ନିଆଁ ଲାଗିଲା । ରକ୍ଷକ ଠିକ ଆଗ ପରି ଗୋଟିଏ ପୋଡ଼ା ମେଣ୍ଢାର ଭଲ ସିଝିଥିବା ଅଂଶରେ ଆଙ୍ଗୁଠି ପୂରାଇ ବାହୁନି ବାହୁନି କାନ୍ଦିଲା ବେଳେ ପାଟିରେ ମଧ୍ୟ ଆଙ୍ଗୁଠି ପୂରାଇବାକୁ ଭୁଲିଲାନି ।

ତା' ପର ମାସରେ ମଧ୍ୟ ସେହି ଜହ୍ନ ରାତିରେ ମେଣ୍ଢାଶାଳରେ ଯେତେବେଳେ ନିଆଁ ଲାଗିଲା - ସନ୍ଦିଗ୍ଧ ମାଲିକ ଲୁଚି ଲୁଚି ଏ ଘଟଣା ନିରୀକ୍ଷଣ କରି ପୋଡ଼ା ମାଂସ ଖାଉଥିବା ଜଗୁଆଳୀକୁ ଡାହାଣୀ ଲାଗିଛି ବୋଲି ପ୍ରଥମେ ଧରି ନେଲା । ଜଗୁଆଳୀ କିନ୍ତୁ ପ୍ରାଣଭୟରେ ପ୍ରକୃତ ଘଟଣା ପ୍ରକାଶ କଲା ଓ ମାଲିକ ସତ୍ୟାସତ୍ୟ ଅନୁସନ୍ଧାନ କରିବାକୁ ଯାଇ ନିଜେ ସେପରି ସିଝା ମେଣ୍ଢା ଦେହରେ ଆଙ୍ଗୁଠି ପୂରାଇ କାନ୍ଦିବାକୁ ଆରମ୍ଭ କଲା ଓ ମେଣ୍ଢା ମାଂସ ଶେଷ ହେବା ପର୍ଯ୍ୟନ୍ତ ବାହୁନିବାକୁ ଲାଗିଲା ।

ଏଥର ପ୍ରତିମାସ ସେହି ଜହ୍ନରାତି ପାଳିରେ ମେଣ୍ଢାଶାଳରେ ନିଆଁ ଲାଗିଲାବେଳେ ସମସ୍ତେ ଜଗୁଆଳୀ ଓ ମାଲିକ ଉଭୟଙ୍କୁ ଏକାଠି ଦେଖିବାକୁ ପାଇଲେ ଯଥା ସମୟରେ ସନ୍ଦେହୀ ମଣିଷମାନଙ୍କ ନିଜ ନିଜ ମେଣ୍ଢାଶାଳମାନଙ୍କରେ ମଧ୍ୟ ନିଆଁ ଲାଗିବା ଆରମ୍ଭ ହେଲା ଓ ସାମାନ୍ୟ କେତେ ମାସ ଭିତରେ ଏହି ନିଆଁ ଲଗା ରୋଗ ପାଖ ଆଖ ଅନ୍ୟ ଗାଁର ମେଣ୍ଢାଶାଳଗୁଡ଼ିକୁ ମଧ୍ୟ ବ୍ୟାପିଗଲା ।

କିଛିକାଳ ପରେ ଏସବୁ ଘଟଣା ବିଶେଷଭାବରେ ଅନୁଧ୍ୟାନ କରିଥିବା ଜଣେ ଅତ୍ୟନ୍ତ ବିଜ୍ଞବ୍ୟକ୍ତି ଘୋଷଣା କଲେ ଯେକୌଣସି ନିର୍ଦ୍ଦିଷ୍ଟ ଜହ୍ନରାତିରେ ନିଆଁ ଲାଗିଥିବା ମେଣ୍ଢାଶାଳର ଗୋଟିଏ ଦଗ୍ଧ ମେଣ୍ଢାର ମାଂସ ଯେ ସୁଆଦିଆ ତା'

ନୁହେଁ, କଞ୍ଚା ମାସ ଅପେକ୍ଷା ଯେକୌଣସି ଦିନ ଅବା ରାତିରେ ମେଣ୍ଢାଶାଳରେ ଅଥବା ଶାଳ ବାହାରେ ଅଜାଣତରେ ଦଗ୍ଧ ହେଉଥିବା କିମ୍ବା ଜାଣିଶୁଣି ଦଗ୍ଧୀଭୂତ କରାଯାଇଥିବା ମେଣ୍ଢାର ସିଝା ମାଂସ ସୁସ୍ୱାଦୁକର ।

ବେଶଭୂଷା ସମ୍ବନ୍ଧୀୟ ପ୍ରଗତି ମଧ୍ୟ ଏପରି ଅଦ୍ଭୁତ ପଥ ସବୁ ଦେଇ ଗତି କରିଛି ବୋଲି ଶୁଣାଯାଏ ।

ଡିମ୍ବିରି ପତ୍ର ଛାଡ଼ି ମଣିଷ କେବେ ଗଛର ବକଳ ପିନ୍ଧିଲା ଓ ପରେ କପା ଓ ରେଶମରେ ତିଆରି ଲୁଗାପଟାରେ ନିଜର ଦେହ ସଜାଇଲା ସେ କଥା ଠିକ୍ ଜଣା ନାହିଁ । କିନ୍ତୁ ଶୁଣାଯାଏ ଯେ କେହି ଜଣେ ରାଜା ଯେତେବେଳେ ମନ୍ତ୍ରୀଙ୍କୁ ଆଦେଶ ଦେଲେ ଯେ ସେ ଖରାବେଳେ ସହରର ବହୁଦୂରରେ ଥିବା କୌଣସି ମନ୍ଦିରକୁ ପାଦରେ ଚାଲିକରି ଯିବେ ଓ ତାଙ୍କୁ ଖରା କାଟିଲେ ମନ୍ତ୍ରୀଙ୍କ ଶିରଚ୍ଛେଦ ହେବ, ସେତେବେଳେ ଏତେ ଗାଲିଚା କେଉଁଠୁ ପାଇବେ ବୋଲି ମନ୍ତ୍ରୀ ଭାଳେଣି କରି ଦୁଃଖରେ ଶୋଇଥିଲାବେଳେ ତାଙ୍କ ସାନ ଝିଅ ତାଙ୍କୁ ରାସ୍ତାଯାକ ଗାଲିଚା ନ ବିଛାଇ ରାଜାଙ୍କ ପାଦ ଦିଓଟିକୁ ଗାଲିଚାରେ ଗୁଡ଼ାଇ ଦେବା ବୁଦ୍ଧି ବତାଇ ଦେଇଥିଲା । ସେଥିରୁହିଁ ଜୋତାର ଆବିଷ୍କାର ହେଲା । ପଗଡ଼ି, ଟୋପି, ଛତା ମଧ୍ୟ ସେପରି ଭାବରେ ଆବିଷ୍କୃତ ହୋଇଥିଲା ବୋଲି କେହି କେହି କହନ୍ତି । ବେକର ଘା'କୁ ଢାଙ୍କିବାକୁ ଯାଇ ଜଣେ ଭଦ୍ରଲୋକ ଗଳାବନ୍ଧର କଳ୍ପନା କରୁଁ କରୁଁ ସମ୍ମାନସୂଚକ ଓ କ୍ରୁଶ ଚିହ୍ନ ବ୍ୟଞ୍ଜକ ନେକ୍‌ଟାଇ ସୃଷ୍ଟି କରିଥିଲେ ବୋଲି ମଧ୍ୟ ଶୁଣାଯାଏ ।

ଏ ବେଶଭୂଷା ତଥା ଖାଇବା ପିଇବାର ଢଙ୍ଗ ସଭ୍ୟତାର ବାହ୍ୟରୂପ ହେଲେ ମଧ୍ୟ ତାହାହିଁ ପାଶ୍ଚାତ୍ୟ ସଭ୍ୟତାବୋଲି କହିବା ସମ୍ପୂର୍ଣ୍ଣ ଭୁଲ । ପାଶ୍ଚାତ୍ୟ ସଭ୍ୟତା ବସ୍ତୁବାଦୀ ହେଲେହେଁ ସେ ଭିତରେ ଜୀବନ ଦର୍ଶନ ରହିଛି । ଭାରତୀୟ ଦର୍ଶନର କର୍ମଯୋଗହିଁ ଏହି ପାଶ୍ଚାତ୍ୟ ଜୀବନ ଦର୍ଶନର ମୂଳବୀଜ ବୋଲି ମନେହୁଏ । ଇଂରାଜୀରେ ଗୋଟିଏ ପ୍ରବାଦ ଅଛି ଯେ, ଏଟନ୍‌ର କ୍ରିକେଟ୍ ପଡ଼ିଆରେହିଁ ନେପୋଲିୟନଙ୍କର ପରାଜୟ ଘଟିଥିଲା । ଏ କଥାର ସାରମର୍ମ ହେଲା ଯେ କ୍ରିକେଟ୍ ଖେଳ ଇଂରେଜ ଜାତିକୁ ଯେଉଁ ଧୈର୍ଯ୍ୟ ଓ ନିରବଚ୍ଛିନ୍ନ ଅଧ୍ୟବସାୟ ଶିକ୍ଷା ଦେଲା ଓ ହାରିଗଲେ ମଧ୍ୟ ଖେଳୁଆଡ଼ର ମନୋବୃତ୍ତି ନେଇ ପରାଜୟର ଗ୍ଲାନି ବିନା ସାଧନାରତ ହେବା ପାଇଁ ପ୍ରେରଣା ଦେଲା ତାହାହିଁ ଇଂରେଜ ଜାତିକୁ ଶେଷରେ ଜୟଯୁକ୍ତ କରାଇ ପାରିଥିଲା ।

ବ୍ୟକ୍ତିଗତ ଜୀବନର ଉତ୍କର୍ଷ ସାଧନ କରିବା ସଙ୍ଗେ ସଙ୍ଗେ ସେ ଜୀବନକୁ ବିନା ଦ୍ୱିଧାରେ ଜାତି, ଦେଶ, ଧର୍ମ ଓ ଜ୍ଞାନପାଇଁ ଉତ୍ସର୍ଗ କରିବା ପାଶ୍ଚାତ୍ୟ ସଭ୍ୟତାର ମୂଳଭିତ୍ତି । ସେଥିପାଇଁ ଏସିଆ ଓ ଆଫ୍ରିକାର ଦୁର୍ଗମ ବଣ ଜଙ୍ଗଲ ଭିତରେ ମଧ୍ୟ ନିଜ ଧର୍ମର ପ୍ରଚାର ପାଇଁ ଜୀବନ ଉତ୍ସର୍ଗ କରିଥିବା ମିଶନାରୀମାନେ ଦେଖାଯାଆନ୍ତି । ଏହି ମିଶନାରୀମାନେ ଅନେକ ସମୟରେ ମିଶନାରୀ ହସପିଟାଲର ଡାକ୍ତର ଭାବରେ ରୋଗୀଙ୍କ ସେବାକରି, ବେଳେ ବେଳେ ଶିକ୍ଷାନୁଷ୍ଠାନମାନଙ୍କରେ ଶିକ୍ଷକ ଭାବରେ ଛାତ୍ରମାନଙ୍କୁ ଶିକ୍ଷାଦାନ କରି ସେ ସଙ୍ଗରେ ନିଜ ଧର୍ମ ମଧ୍ୟ ପ୍ରଚାର କରନ୍ତି । ଜ୍ଞାନ ଆହରଣ ପାଇଁ ଜୀବନ ଉତ୍ସର୍ଗ କରିବା ଏ ସଭ୍ୟତାର ବୈଶିଷ୍ଟ୍ୟ । କିମ୍ବଦନ୍ତୀ ଅଛି ଯେ ଜଣେ ପ୍ରସିଦ୍ଧ ରସାୟନବିଦ୍ ଯେତେବେଳେ ପୋଟାସିୟମ ସାଇନାଇଡ୍ ଆବିଷ୍କାର କଲେ ସେ ଜାଣି ପାରିଥିଲେ ଯେ ସେହି ସାଇନାଇଡ୍ ଏଡ଼େ ଭୟଙ୍କର ବିଷ ଯେ ଟିକିଏ ପାଟିରେ ଦେଲାକ୍ଷଣି ମଣିଷ ମରିଯିବ । ତଥାପି ତା'ର ଗୁଣ ସମୂହ ନିରୂପଣ କରିବାକୁ ଯାଇ ସେ ତା'ର ସ୍ୱାଦ ଜାଣିବାକୁ ଚାହିଁଥିଲେ । ଖଣ୍ଡିଏ ନୋଟ୍‌ବହି ପାଖରେ ରଖି କଲମ ହାତରେ ଧରି ଲେଖିବାକୁ ପ୍ରସ୍ତୁତ ରହି ସେ ସାଇନାଇଡ୍‌କୁ ଜିଭରେ ଦେଲେ । ଆଦ୍ୟ ଅକ୍ଷର 'ଏସ୍ (s)' ଲେଖିବାକ୍ଷଣି ସେ ମରିଯାଇଥିଲେ । 'ଏସ୍ (s)' ଟି ଇଂରାଜୀର ସୁଇଟ୍ କି ସାଓ୍ୱାର ବ୍ୟଞ୍ଜକ ଜଣା ପଡ଼ିଲାନି । ତାଙ୍କ ସ୍ତ୍ରୀ ଏଥର ସେମିତି ସେହି ନୋଟ୍‌ବୁକ ପାଖରେ ରଖି 'ଏସ୍' ପାଖରେ ପୁଣି କିଛି ଲେଖିବାକୁ ପ୍ରସ୍ତୁତ ହୋଇଯାଇ ସାଇନାଇଡ୍ ଜିଭରେ ଦେଲେ । 'ଏସ୍' ପାଖରେ 'ଡବ୍ଲ୍ୟୁ' (w)' ଲେଖି ସେ ମଧ୍ୟ ନିଜ ଜୀବନ ହରାଇଲେ । ବିଜ୍ଞାନ ଏଥର ଜାଣିଲା ଯେ ପୋଟାସିୟମ ସାଇନାଇଡ୍ ସୁଇଟ୍ ବା ମିଠା । ଏପରି ଜ୍ଞାନର ଅଦମ୍ୟ ପିପାସା ନେଇ କେହି ମେରୁ ପ୍ରଦକ୍ଷିଣ କରିବାକୁ ଯାଇ ଜୀବନ ଦେଇଛି ତ, କେହି ଆଫ୍ରିକା ମହାଦେଶର ଅନ୍ତର ପ୍ରଦେଶ ଆବିଷ୍କାର କରିବାକୁ ଯାଇ ହିଂସ୍ର ବନ୍ୟଜନ୍ତୁ ତଥା ଭୟଙ୍କର ଲୋକଙ୍କ ଖାଦ୍ୟ ହୋଇପଡ଼ିଛି । କେହି ଛୋଟ ଡଙ୍ଗାଟିଏ ଧରି ଆଟଲାଣ୍ଟିକ ମହାସାଗର ପାରିହେବାକୁ ଚେଷ୍ଟା କରିଛି, ତ କେହି ଗୋଟିଏ ଛୋଟ ଉଡ଼ାଜାହାଜରେ ଏକୁଟିଆ ପୃଥିବୀ ପ୍ରଦକ୍ଷିଣରେ ବାହାରିଛି - ଆଉ କେହି ଚନ୍ଦ୍ରପୃଷ୍ଠରେ ଏକାକୀ ଓହ୍ଲାଇ ପଡ଼ିଛି । ଏହି ସଭ୍ୟତା ମଣିଷକୁ ସୃଷ୍ଟିର ଶ୍ରେଷ୍ଠ ଜୀବ ଭାବରେ ବଞ୍ଚିବାକୁ ପ୍ରେରଣା ଦେଇଛି । ଫଳରେ ଆମେ ଦେଖିବାକୁ ପାଉ ଯେ ଜଣେ ଜର୍ମାନ ସଂସ୍କୃତଜ୍ଞ ମେକ୍ସମୁଲର ଆମ ବେଦ ଉପନିଷଦକୁ ଅନୁବାଦ କରି ପୃଥିବୀର

ଦୃଷ୍ଟି ଆକର୍ଷଣ କରିଛନ୍ତି ତ, ଆଉଜଣେ ଇଂରେଜ ହଣ୍ଟରସାହେବ ଓଡ଼ିଶାର ଇତିହାସ ଲେଖି ଯାଇଛନ୍ତି । କେହି ଗଡ଼ଜାତମାନଙ୍କର ଅଗମ୍ୟ ଅଞ୍ଚଳ ଭିତରେ ଥିବା ଗିରିକନ୍ଦର, ନଈ ନାଳର ଭୌଗୋଳିକ ଚିତ୍ର ଅଙ୍କନ କରିଛନ୍ତି ତ, କେହି ଘୋଡ଼ା ପିଠିରେ ବସି ସାରା ମହାନଦୀ ଉପତ୍ୟକାର ଅରଣ୍ୟାନୀ ଭିତରେ ଘୂରିବୁଲି ବଢ଼ିପାଣି ତଥା ମେଘ ଓ ଝଡ଼ର ସଞ୍ଚାର ସମ୍ବନ୍ଧରେ ସର୍ବଶ୍ରେଷ୍ଠ ତଥ୍ୟ ଉପସ୍ଥାପିତ କରି ଯାଇଛନ୍ତି ।

ମାନବର ସଖା ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କହିଥିଲେ, ‘‘ଜିଣିଲେ ପୃଥିବୀ ଭୋଗ କରିବୁ, ମଲେ ତୋର ସ୍ୱର୍ଗପ୍ରାପ୍ତି ହେବ । ତେଣୁ ଜୟ ପରାଜୟ ପ୍ରତି ଭ୍ରୂକ୍ଷେପ ନ କରି ଯୁଦ୍ଧ କରିଯା ।’’ ଏହି ଉପଦେଶହିଁ ପାଶ୍ଚାତ୍ୟ ଜୀବନ ଦର୍ଶନର ମୂଳମନ୍ତ୍ର ବୋଲି ମନେହୁଏ ।

ଦୁର୍ଭାଗ୍ୟର କଥା ଯେ ଆମେ ଆଜି ଏହି ପାଶ୍ଚାତ୍ୟ ସଭ୍ୟତାର ଖୋଳପାକୁ ଦେଖି ତାହାହିଁ ପାଶ୍ଚାତ୍ୟ ଜୀବନ ବୋଲି ଧରି ନେଉଛୁଁ । ଫଳରେ ସେମାନଙ୍କ ବେଶଭୂଷା ପିନ୍ଧୁଛୁ ସତ, ସେମାନଙ୍କ ପରି ଖାଇବା ପିନ୍ଧିବା ମଉଜ ମଜଲିସ କରିବାକୁ ଶିଖିଛୁ - ହିପ୍‌ପୀ ସାଜିଛୁ, କିନ୍ତୁ ସେମାନଙ୍କ ସମୟାନୁବର୍ତ୍ତିତା, କର୍ତ୍ତବ୍ୟବୋଧ ଓ ଶୃଙ୍ଖଳାଜ୍ଞାନ ତଥା ନିରବଚ୍ଛିନ୍ନ ଅଧ୍ୟବସାୟ ଆଡ଼କୁ ଆଖି ବୁଜିଦେଇଛୁ ।

ପୋକମାନେ ଆଲୁଅ ଆଡ଼କୁ ଧସେଇ ପଶିଲାପରି ଆଜି ପାଶ୍ଚାତ୍ୟ ସଭ୍ୟତାର ବାହ୍ୟରୂପଆଡ଼କୁ ଆମର ଅନେକେ ଅଣନିଃଶ୍ୱାସୀ ହୋଇ ଧାଇଁଛନ୍ତି - ନଳୀ ପେଣ୍ଟ କିମ୍ବା ବେଲବଟ୍ ସଙ୍ଗରେ ଗେରୁଆ ପଞ୍ଜାବୀ ପିନ୍ଧି, ରୁଦ୍ରାକ୍ଷମାଳା ପକାଇ ଓ ସିନେମାର ଛଳନାମୟ ‘ହରେକୃଷ୍ଣ ହରେରାମ’ ଗୀତ ମୁହଁରେ ଧରି ।

ପୋକମାନଙ୍କ ପରି ସେମାନଙ୍କର ମଧ୍ୟ ଡେଣା ଛିଣ୍ଡି ଯାଉଛି - ତଥାପି ଅନ୍ୟ ପୋକମାନେ ଆଲୁଅ ଖୁଣ୍ଟପାଖକୁ ଉଡ଼ି ଚାଲିଲାପରି ସେ ସମସ୍ତେ ମୋହାନ୍ଧ ହୋଇ ଧାଇଁଛନ୍ତି ।

ଏ ମୋହଗ୍ରସ୍ତ ଧାବନର ଶେଷ କେଉଁଠି କେଜାଣି ?

# ସଖା ଶ୍ରୀକୃଷ୍ଣ

ଶୁଣାଯାଏ ଯେ ପରମାଣୁ ବୋମାରେ ହୀରୋସିମା ଓ ନାଗାସାକୀ ସହର ଧ୍ୱଂସ ପାଇଯିବା ପୂର୍ବରୁ ଯୁକ୍ତରାଷ୍ଟ୍ର ଆମେରିକାରେ ଯେତେବେଳେ ବୋମା ନିର୍ମାଣ ପ୍ରଣାଳୀର କାର୍ଯ୍ୟକାରିତା ତଥା ବିସ୍ଫୋରଣର ତେଜସକ୍ରିୟତା ସମ୍ବନ୍ଧରେ ପରୀକ୍ଷା କରାଯାଉଥିଲା, ସେତେବେଳେ ଅଣୁବିଦ୍ ବୈଜ୍ଞାନିକମାନଙ୍କ ମଧ୍ୟରେ ପରମାଣୁ ବୋମାର ଜନକ ଓପେନ୍‌ହେମାର ମଧ୍ୟ ଦୂରରୁ ବୋମାର ପ୍ରଥମ ବିସ୍ଫୋରଣକୁ ଚାହିଁ ରହିଥିଲେ । ବିସ୍ଫୋରଣ ଯେତେବେଳେ ଘଟିଲା ସେତେବେଳେ କୁଆଡ଼େ ପୃଥିବୀ ଓ ଆକାଶ ଝଲସି ଉଠିଥିଲା ଓ ମନେହୋଇଥିଲା ସତେଯେପରି ସମଗ୍ର ବିଶ୍ୱ ସେହି ତେଜରେ ହିଁ ଧ୍ୱଂସ ପାଇଯିବ। ଠିକ୍ ପରେ ପରେ ଓପେନ୍‌ହେମାରଙ୍କୁ ଯେତେବେଳେ ସେହି ମହା ବିସ୍ଫୋରଣ ଦେଖି ତାଙ୍କର ମାନସିକ ପ୍ରତିକ୍ରିୟା କ'ଣ ହେଲା ଓ ସେ କ'ଣ ଭାବିଲେ ବୋଲି ପଚରାଗଲା ସେ ମନ୍ତ୍ରମୁଗ୍ଧ ପରି ଭଗବତଗୀତାର ବିଶ୍ୱରୂପ ଦର୍ଶନ ଯୋଗର 'ଦିବି ସୂର୍ଯ୍ୟ ସହସ୍ରସ୍ୟ ଭବେଦ୍‌ଯୁଗପଦୁତ୍ଥିତା । ଯଦି ଭାଃ ସଦୃଶୀ ସା ସ୍ୟାଭାସ୍‌ସ୍ତସ୍ୟ ମହାତ୍ମନଃ ।।' ଶ୍ଳୋକଟି ମନରୁ ଗାଇ ଯାଇଥିଲେ ।

ଆଇନଷ୍ଟାଇନ୍ ଓପେନ୍‌ହେମାର୍ ପ୍ରମୁଖ ପୃଥିବୀର ଅନେକ ମହାନ୍ ବୈଜ୍ଞାନିକ ଓ ରୋମାରୋଲାଁଙ୍କପରି ଅନେକ ଦାର୍ଶନିକ ଭଗବଦ୍‌ଗୀତାରୁ ପ୍ରେରଣା ପାଉଥିଲେ ଓ ଅନେକେ ଆଜି ମଧ୍ୟ ପାଉଛନ୍ତି । ତାହା ଜାଣି ମଧ୍ୟ ଆଜିର ଆମ ତଥାକଥିତ ଆଧୁନିକ ସମାଜରେ ଗୀତା ସମ୍ବନ୍ଧରେ କିମ୍ବା ଗୀତାର ସ୍ରଷ୍ଟା ଶ୍ରୀକୃଷ୍ଣଙ୍କ ବିଷୟରେ କିଛି ଆଲୋଚନା କଲେ 'ପୁରୁଣା କାଳିଆ, ମାନ୍ଧା ଦଳିଆ' ପ୍ରଭୃତି ଆଖ୍ୟା ପାଇବା ଭୟରେ ଏପରି ଆଲୋଚନା କରିବାକୁ ସାହସ ହୁଏନି । ଅନ୍ୟଦିଗରେ ଏପରି କରୁକରୁ ଧରାବନ୍ଧା ମତରୁ ଟିକିଏ ଏପାଖ ସେପାଖ ହେଲେ, ଆମ ଅସହିଷ୍ଣୁ ଧର୍ମଯାଜକମାନେ ଯେ ବେକ ମୋଡ଼ିଦେବାକୁ ବାହାରି ପଡ଼ିପାରନ୍ତି ସେ ଭୟ ମଧ୍ୟ ରହିଛି । ତଥାପି ମନୁଷ୍ୟର ସର୍ବଶ୍ରେଷ୍ଠ କୃତିର କର୍ତ୍ତାଙ୍କ ସମ୍ବନ୍ଧରେ କିଛି ସୂଚନା ଦେବା ଉଚିତ ବୋଲି ମୁଁ ମନେହୁଏ ।

ପ୍ରାୟ ୩୨ ବର୍ଷ ତଳର କଥା । ଗାନ୍ଧିଜୀ ସେତେବେଳେ ହିନ୍ଦୁ ଓ ମୁସଲମାନମାନଙ୍କ ମଧ୍ୟରେ ଭଲ ବୁଝାମଣା ଆଣିବା ପାଇଁ ଆପ୍ରାଣ ଉଦ୍ୟମ କରୁଥାଆନ୍ତି; କିନ୍ତୁ ଗୋଟାଏ ଦିଗରେ ମୁସଲିମ ଲିଗ୍ ଓ ଅନ୍ୟ ଦିଗରେ ହିନ୍ଦୁ ମହାସଭା ସେ ଉଦ୍ୟମକୁ ଭଣ୍ଡୁର କରିବାକୁ ଜୋରସୋରରେ ଲାଗିପଡ଼ି ଥାଆନ୍ତି; ଆଉ ତହିଁର ଶିକାର ହୋଇ ଥାଆନ୍ତି ନିଜେ ଗାନ୍ଧିଜୀ । ସେହି ସମୟରେ ହିନ୍ଦୁ ମହାସଭାର ଜଣେ ଖ୍ୟାତନାମା ନେତା ଡକ୍ଟର ମୁଞ୍ଜେ ଥରେ ଗୋଟିଏ ସାଧାରଣ ସଭାରେ କହିଥିଲେ, "ଗାନ୍ଧିଜୀ ମଣିଷ ନୁହନ୍ତି, ସେ ଜଣେ ଦେବତା - ସ୍ୱୟଂ ଭଗବାନ । ତାଙ୍କୁ ପୂଜାକର, କିନ୍ତୁ ତାଙ୍କ କଥା କେହି ଶୁଣନା - ତାଙ୍କୁ କିଛି କହିବାକୁ ଦିଅନା । ଆମର ଦେବତା ଓ ଭଗବାନ କଥା କହନ୍ତିନି ।"

ଡକ୍ଟର ମୁଞ୍ଜେଙ୍କ ମନ୍ତବ୍ୟ ପରିହାସ ବ୍ୟଞ୍ଜକ ହୋଇଥିଲେ ହେଁ ସେ ଭିତରେ ଯେ ଅନେକ ପରିମାଣରେ ବାସ୍ତବତାର ଗୂଢ଼ତଥ୍ୟ ଛପିରହିଛି ସେଥିରେ ସନ୍ଦେହ ନାହିଁ । ଜଣେ ସାଧାରଣ ମଣିଷ ଯାହାଙ୍କ ପାଖରେ ତା'ର ନିଜ ଆଦର୍ଶ ଗୁଣସବୁ ଠୁଳ ହୋଇଥିବା ଦେଖେ, ତାଙ୍କୁ ସେ ନିଜର ଗୁରୁବୋଲି ଅନ୍ତରଭିତରେ ମାନିନିଏ ଓ ସେପରି ଗୁରୁଙ୍କ ଦର୍ଶିତ ପଥ ଅନୁସରଣ କରିବାକୁ ଚେଷ୍ଟାକରେ । ଏପରି ଆଦର୍ଶସ୍ଥାନୀୟ ମଣିଷ ବା ଗୁରୁ ଯେତେବେଳେ ଦେବତା କିମ୍ବା ଭଗବାନ ପାଲଟି ଯାଆନ୍ତି, ସାଧାରଣ ମଣିଷ ସେହି ଗୁରୁଙ୍କ ନାମ କୀର୍ତ୍ତନକରେ ସିନା, ସେପରି ଦେବତା କିମ୍ବା ଭଗବାନଙ୍କ ଚଲାବାଟରେ ଆଉ ଯିବାକୁ ସାହସ କରିପାରେନି, ଯେହେତୁ ସେ ଧରିନିଏ ଯେ ଯାହା ଭଗବାନଙ୍କ ପକ୍ଷରେ ସମ୍ଭବ ତାହା ସାଧାରଣ ମଣିଷପକ୍ଷରେ ସମ୍ଭବ ନୁହେଁ । ତେଣୁ ମଣିଷ ଭଗବାନ ପାଲଟିଗଲାକ୍ଷଣି ଅନ୍ୟ ମଣିଷମାନଙ୍କ ପାଖରୁ ଦୂରେଇ ଯାଏ ।

ମାନବ ସମାଜରେ ସେ ଯୁଗରେ ଯୀଶୁଖ୍ରୀଷ୍ଟ ଓ ମହମ୍ମଦ ଓ ଏ ଯୁଗରେ ଲେନିନ୍‌ଙ୍କ ପ୍ରଭାବ ସଙ୍ଗେ ଭଗବାନ ରୂପରେ ପରିଣତ ହେଲା ପରେ ଭାରତରେ ବୁଦ୍ଧଙ୍କ ପ୍ରଭାବ ବିଷୟ ବିଚାରକୁ ନେଲେ ଏହାର ସତ୍ୟତା ଜଣାପଡ଼େ ।

ମନେହୁଏ କେତେ ହଜାର ବର୍ଷତଳେ ଭାରତର କେତେକ କ୍ଷମତାସୀନ ନେତୃସ୍ଥାନୀୟ ବ୍ୟକ୍ତି ଠିକ୍ ଏହିପରି ବାସୁଦେବ ଶ୍ରୀକୃଷ୍ଣଙ୍କ ବହୁମୁଖୀ ପ୍ରତିଭା, ବୈପ୍ଲବିକ ଚିନ୍ତାଧାରା, ଜ୍ଞାନର ଗାରିମା ତଥା ଶକ୍ତି ଓ ସାମର୍ଥ୍ୟ ସହ ବେଦର ସମାଲୋଚନା ପ୍ରଭୃତି ଲକ୍ଷ୍ୟକରି ସମାଜରେ ତାଙ୍କର ପ୍ରଭାବକୁ କ୍ଷୁର୍ଣ୍ଣକରିବା ଉଦ୍ଦେଶ୍ୟରେ ତାଙ୍କୁ ଭଗବାନ ରୂପରେ ପରିଣତ କରିଦେଇଥିଲେ ।

ପୃଥିବୀର ଅନେକେ ଭଗବାନଙ୍କ ଅସ୍ତିତ୍ୱରେ ହିଁ ବିଶ୍ୱାସ କରନ୍ତିନି । ତେଣୁ ଭଗବାନ୍ ପାଲଟି ଯିବା ଫଳରେ ଶ୍ରୀକୃଷ୍ଣ ଏପରି ନାସ୍ତିକମାନଙ୍କର ବିଦ୍ରୂପର ପାତ୍ର ହେଲେ । ଭଗବାନ୍‌ଙ୍କ ଅସ୍ତିତ୍ୱରେ ବିଶ୍ୱାସ କରୁଥିଲେ ମଧ୍ୟ ଖ୍ରୀଷ୍ଟିୟାନ ଓ ମୁସଲମାନ ଧର୍ମାବଲମ୍ବୀ ପରି ଯେଉଁମାନେ ସାକାର ଭଗବାନଙ୍କୁ ବିଶ୍ୱାସ କରନ୍ତିନି ସେମାନଙ୍କ ଆଖିରେ ପିତୁଳାପୂଜା କରୁଥିବା ହିନ୍ଦୁମାନଙ୍କ ଭଗବାନ ଶ୍ରୀକୃଷ୍ଣ ଗୋଟିଏ ହାସ୍ୟାସ୍ପଦ ପିତୁଳାରେ ହିଁ ପରିଣତ ହେଲେ । ହିନ୍ଦୁଙ୍କ ମଧ୍ୟରେ ମଧ୍ୟ ଶୈବ ଓ ଶାକ୍ତମାନେ ଶ୍ରୀକୃଷ୍ଣଙ୍କୁ ଯଥୋଚିତ ଆସନ ଦେଲେନି । ଶ୍ରୀକୃଷ୍ଣ ହେଲେ କେବଳ ବୈଷ୍ଣବଙ୍କ ଭଗବାନ୍ ସେଥିରେ ମଧ୍ୟ ବିଷ୍ଣୁଙ୍କ ଅନେକ ଅବତାର ମଧ୍ୟରେ ଶ୍ରୀକୃଷ୍ଣ ଗୋଟିଏ ଅବତାର ହୋଇ ରହିଲେ ଓ ସେହି ଅବତାରର ଅଂଶୀଦାର ହେଲେ ବଳରାମ, ପ୍ରଦ୍ୟୁମ୍ନ ଓ ଅନିରୁଦ୍ଧ ।

ଏପରି ଭାବରେ ବନ୍ଦୀଶାଳାର ପଥରଘରେ ପୃଥିବୀର ଯେଉଁ ସର୍ବଶ୍ରେଷ୍ଠ ମହାମାନବ ଜନ୍ମ ନେଇଥିଲେ, ତାଙ୍କ ମୃତ୍ୟୁର କେତେ ହଜାର ବର୍ଷ ଭିତରେ ମନୁଷ୍ୟର ସେହି ସାଥୀ, ସାରଥୀ, ବନ୍ଧୁ ଓ ସଖା, ଜଗଦ୍‌ଗୁରୁ ମହାଯୋଗୀ ଶ୍ରୀକୃଷ୍ଣ ପଥରଘରେ ହିନ୍ଦୁର ମନ୍ଦିର ଭିତରେ ବନ୍ଦୀ ହୋଇଗଲେ ।

କେତେ ପଣ୍ଡିତଙ୍କ ମତରେ ଅଗ୍ନିର ସ୍ଫୁଲିଙ୍ଗ ଯେପରି ଅଗ୍ନିଠାରୁ ଭିନ୍ନ ନୁହେଁ, ଜଳବିନ୍ଦୁ ଯେପରି ସାଗରଠାରୁ ଭିନ୍ନ ନୁହେଁ, ଜୀବ ଠିକ ସେପରି ଭଗବାନଙ୍କଠାରୁ ଅଭିନ୍ନ । ପାର୍ଥକ୍ୟ ଯାହା, ତାହା ବୋଧହୁଏ ମାତ୍ରାରେ, ଗୁଣରେ ନୁହେଁ । ଯେଉଁ କ୍ଷେତ୍ରରେ ଗୁଣ ସାଙ୍ଗରେ ମାତ୍ରାର ମଧ୍ୟ ଆଧିକ୍ୟ ଦେଖିବାକୁ ମିଳେ ସେଠାରେ ମଣିଷ ଓ ଭଗବାନ ଏକ ହୋଇଯାଆନ୍ତି ବୋଲି ଶୁଣାଯାଏ । ତେଣୁ ପାଣ୍ଡବ ଭିତରେ ଧନଞ୍ଜୟ ଓ ଯାଦବଙ୍କ ଭିତରେ ବାସୁଦେବ ମଣିଷ ହୋଇମଧ୍ୟ ଭଗବାନ ହୋଇପାରନ୍ତି । ତେବେ ଅର୍ଜୁନ ଯଦି ଆମ ଆଖିରେ ମଣିଷ ହୋଇ ରହିଲେ, ଶ୍ରୀକୃଷ୍ଣ ମଣିଷ ହୋଇ ରହିବେ ନାହିଁ କାହିଁକି ବୋଲି ମନଭିତରେ ସ୍ୱାଭାବିକ ପ୍ରଶ୍ନ ଜାଗିଉଠେ । ମତ୍ସ୍ୟ, କୂର୍ମ, ବରାହ ଓ ନୃସିଂହ ଅବତାରରେ ଭଗବାନ୍ ନିଜେ ନିଜକୁ ପ୍ରକାଶ କରିଥିଲେ ବୋଲି ଶୁଣାଯାଏ । ଶ୍ରୀକୃଷ୍ଣ କିନ୍ତୁ ଗୋଟିଏ ସାଧାରଣ ପରିବାରରେ ଓ ବନ୍ଦୀଶାଳାରେ ଜନ୍ମଗ୍ରହଣ କରିଥିଲେ, ଅତ୍ୟାଚାରୀ ରାଜାଙ୍କ ଆକ୍ରୋଶରୁ ରକ୍ଷା କରିବା ପାଇଁ ଜନ୍ମକାଳରୁ ହିଁ ତାଙ୍କୁ ତାଙ୍କ ବାପା ଦୂରରେ ଅନ୍ୟ ଜଣକର ଘରେ ଲୁଚାଇ ରଖିଥିଲେ ।

ରାମଚନ୍ଦ୍ର ସଶରୀରରେ ସ୍ୱର୍ଗକୁ ଯାଇଥିଲେ ଓ ପରଶୁରାମ ଅମର ବୋଲି ଶୁଣାଯାଏ । ମର ଶରୀରରେ ଯୀଶୁଖ୍ରୀଷ୍ଟ ଓ ଗାନ୍ଧୀଙ୍କ ପରି ଯେଉଁ

ମହାମାନବମାନେ ଆତତାୟୀଙ୍କ ଦ୍ୱାରା ନିହତ ହୋଇଛନ୍ତି, ଶ୍ରୀକୃଷ୍ଣ ସେମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ ।

ପିଲାଦିନେ ଶ୍ରୀକୃଷ୍ଣ କୁଆଡ଼େ ଆମପରି ମାଟି ଖାଉଥିଲେ, ଧୂଳି ଖେଳୁଥିଲେ ଆଉ ସୁବିଧା ଦେଖି କେତେବେଳେ ଦୁଧସର, କେତେବେଳେ ଦହି, ଛେନା ଚୋରିକରି ଖାଉଥିଲେ, ଆଉ ସାଙ୍ଗସାଥୀଙ୍କ ଭିତରେ, ବିରାଡ଼ି ମାଙ୍କଡ଼ଙ୍କ ଭିତରେ ବାଣ୍ଟୁ ଥିଲେ, ଆଉ ତାଙ୍କ ମା'ଙ୍କ ପାଖରୁ ନିର୍ଘୁମ ମାଡ଼ ଖାଉଥିଲେ । ତାଙ୍କ ବିରୁଦ୍ଧରେ ତାଙ୍କ ବାପା ମା'ଙ୍କ ପାଖରେ ଗାଁବାଲାଙ୍କ ସବୁବେଳେ କମ୍ପ୍ଲେନ - କେତେବେଳେ କା' ଘରେପଶି ହାଣ୍ଡି ଭାଙ୍ଗିଲେଣି ତ କିଏ ଗାଧୋଇଲା ବେଳେ ଲୁଗାପଟା ନେଇ କେଉଁଠି ଲୁଚାଇ ଦେଲେଣି । ଭୟଙ୍କର ଦୁଷ୍ଟ । କେଉଁଠି ସାପର ଲାଞ୍ଜ ଧରିଲେଣି ତ କେଉଁଠି ଷଣ୍ଢର ଶିଙ୍ଗ ଧରି ତା' ପିଠିରେ ବସିଲେଣି; ଆଉ କେଉଁଠି କାମୁଡ଼ା ଘୋଡ଼ା ମୁହଁରେ ହାତ ପୂରାଇ ସାରିଲେଣି ।

ଶ୍ରୀକୃଷ୍ଣ ଥିଲେ ଠିକ ଆମରିପରି ଜଣେ ମଣିଷ । ଗାଁରେ ସେ ସମସ୍ତଙ୍କର ପ୍ରିୟ ଥିଲେ । ବାପା ମା'ଙ୍କ ଅଲିଅଳ ପୁଅ, ବଡ଼ଭାଇ ବଳରାମଙ୍କ ଅତି ପ୍ରିୟ ସାନଭାଇ - ଟିକିଏ ଛାଡ଼ି ରହି ପାରିବେନି । ଗାଁ'ର ସବୁ ପୁଅଝିଅଙ୍କ ପ୍ରାଣ-ପରମ ସଖା ।

ସେ ସବୁ ବିଷୟରେ ପାରଙ୍ଗମ ଥିଲେ । ଗୀତ, ନାଚ, ଖେଳ କୁଦ, କୁସ୍ତି କସରତ ସବୁଥିରେ ସେ ଥିଲେ ସର୍ବଶ୍ରେଷ୍ଠ । ପିଲାଦିନରୁହିଁ ତାଙ୍କର ବୈପ୍ଳବିକ ଚିନ୍ତାଧାରା ପ୍ରକାଶ ପାଇଥିଲା । ସେ ଦେବତା ପୂଜା ଓ କର୍ମକାଣ୍ଡ ବନ୍ଦ କରିବାକୁ ଗାଁବାଲାଙ୍କୁ ମତାଇ ଦେଇଥିଲେ ।

ଶ୍ରୀକୃଷ୍ଣ ଯେତେବେଳେ ବୃନ୍ଦାବନ ଛାଡ଼ି ମଥୁରା ଗଲେ ତାଙ୍କର ବୟସ କୁଆଡ଼େ ୯ ବର୍ଷ ଥିଲା । କେହି କେହି ୧୨ ମଧ୍ୟ କହନ୍ତି । (ନିନ୍ଦୁକମାନେ ଏହି ୯ କିମ୍ୱା ୧୨ ବର୍ଷ ବୟସର ବାଳକକୁହିଁ ଲମ୍ପଟ ଓ ଗୋପୀକାବଲ୍ଲଭ ବୋଲି କହିଥାଆନ୍ତି ।)

ମଥୁରାରେ କୃଷ୍ଣଙ୍କ କାର୍ଯ୍ୟାବଳୀ ଶୁଣିଲେ ଆଜିକାଲିର ଛାତ୍ର ବିଶୃଙ୍ଖଳା କଥାହିଁ ମନେପଡ଼େ । କେଉଁଠୁ ରାଜାଙ୍କ ଫୁଲ ଛଡ଼ାଇ ନେଲେଣି ତ କେଉଁଠୁ ରାଜାଙ୍କ ଲୁଗାପଟା ନେଇ ଗଲେଣି । ବିନା ଟିକେଟରେ ସିନେମା ଦେଖିଲା ପରି ବିନା ଅନୁମତିରେ ଧନୁଘରକୁ ପଶିଗଲେଣି । ଫଳରେ ସବୁଠାରେ ରାଜାଙ୍କର ସେ ଦିନର ପୋଲିସ ସାଙ୍ଗେ ତାଙ୍କର ସାଙ୍ଗସାଥୀମାନଙ୍କ ଧ୍ୱସ୍ତାଧ୍ୱସ୍ତି ହେଉଥିଲା ।

ସେ ଥିଲେ ଠିକ ଆମରି ପରି । ଯାହାକୁ ଭଲ ପାଉଥିଲେ ତାକୁ ସାହାଯ୍ୟ କରିବା ପାଇଁ ବେଳେ ବେଳେ ଗୋଟିଏ ଅଧେ ମିଛ ମଧ୍ୟ କହି ଦେଉଥିଲେ ।

କୁନ୍ତୀ ଆଉ ପାଣ୍ଡବମାନଙ୍କୁ ଗୁପ୍ତରେ ଜତୁଗୃହରୁ ଖସାଇ ଦେଇ ସେମାନେ ପୋଡ଼ିମଲେ ବୋଲି ସେ ହିଁ ସବୁଠାରୁ ବେଶି କାନ୍ଦିଥିଲେ । ମଣିଷ ହେଉ ବା ହାତୀ ହେଉ ଅଶ୍ୱତ୍‌ଥମା ମରିଗଲା ବୋଲି ଯୁଧିଷ୍ଠିରଙ୍କୁ କହିବାକୁ କହି, ତାହା କହିଲାବେଳେ ଏଡ଼େ ଜୋରରେ ଶଙ୍ଖ ଫୁଙ୍କି ଦେଲେ ଯେ 'ମଣିଷ ହେଉ ବା ହାତୀ ହେଉ' ଆଦୌ ଶୁଣା ଗଲାନି । ମହାଭାରତ ଯୁଦ୍ଧରେ ନିଜେ ଯୁଦ୍ଧ କରିବେନି କହି ଭୀଷ୍ମଙ୍କୁ ଦିନେ ମାରି ଗୋଡ଼ାଇଥିଲେ ।

ସେ ଥିଲେ ମଣିଷ ପରି ଜଣେ ମଣିଷ । ସାଙ୍ଗ, ସଖା ଛାତିରେ ଲାତ ମାରିଲେ ବି ସହି ଯାଉଥିଲେ, କିନ୍ତୁ ଶିଶୁପାଳ ପରି ଶତ୍ରୁ ପାଇଁ ସହିବାର ଗୋଟିଏ ସୀମା ରହୁଥିଲା । ସେ ଯେମିତି ସାହସୀ ଥିଲେ, ସେମିତି ବଳବାନ୍ ଓ ଜ୍ଞାନୀ ମଧ୍ୟ ଥିଲେ ।

ପାଣିନୀ କେତେ ହଜାର ବର୍ଷ ତଳେ ତାଙ୍କୁ ଜଣେ ପ୍ରଚାରକ ବୋଲି କୁଆଡ଼େ ବର୍ଣ୍ଣନା କରି ଯାଇଛନ୍ତି । ସେ କିନ୍ତୁ କୌଣସି ଉଚ୍ଚ ଆସନରୁ କୌଣସି ମତ ପ୍ରଚାର କରି ନଥିଲେ । ଏକା ଥାଳିରେ ଖାଇ, ଗୋଟାଏ ଖଟରେ ଶୋଇ, ରଥରେ ସାରଥୀ କାମ କରି ଅର୍ଜୁନଙ୍କୁ ଯୁଦ୍ଧବେଳେ ଯାହା ସବୁ ବୁଝାଇଥିଲେ ତାହାହିଁ ଭଗବଦ୍‌ଗୀତା ରୂପରେ ମାନବ ଜାତିର ଜ୍ଞାନର ଭଣ୍ଡାର ହୋଇ ରହିଛି ।

ଶ୍ରୀକୃଷ୍ଣଙ୍କୁ ବୁଝିବା ସହଜ ପରି ମନେହୁଏ । ସେ ଆମକୁ ଘରଦ୍ୱାର ଛାଡ଼ି ହିମାଳୟର କେଉଁ ଗୁମ୍ଫା ଭିତରେ ତପସ୍ୟା କରିବାକୁ କହି ନାହାନ୍ତି । ଭଲ ଓ ମନ୍ଦର ଉଚିତ ବିବେଚନା କରି ଆମର ଯାହା କର୍ତ୍ତବ୍ୟ ତାହାହିଁ ବିନା ଲାଳସା ଓ ବିନା ଭୟରେ ସୁଚାରୁ ରୂପେ କରିଯିବାକୁ ସେ ଶିକ୍ଷା ଦେଇଯାଇଛନ୍ତି । ତାଙ୍କ ମତରେ କର୍ମରେ କୁଶଳତାହିଁ ଯୋଗ, ଆଉ ଜୀବନ ସଂଗ୍ରାମରୁ ପଳାୟନ କାପୁରୁଷତା ।

କର୍ମ ବିମୁଖ ଓ ପଳାୟନବାଦୀ ପରମ୍ପରାରେ ଜଡ଼ିତ ଭାରତୀୟ ସମାଜରେ ଶ୍ରୀକୃଷ୍ଣ ଚିନ୍ତାଧାରା ଅତ୍ୟାଧୁନିକ ପରି ହିଁ ମନେହୁଏ ।

ତେଣୁ ବୈପ୍ଳବିକ ଚିନ୍ତାଧାରାରେ ବିଶ୍ୱାସୀ ଆଜିର ଯୁବସମାଜ ଗୀତାରେ ଯେ ତାଙ୍କର ଚରମ ସନ୍ତୋଷ ପାଇ ପାରିବେ ଏଥିରେ ସନ୍ଦେହ ନାହିଁ । ଯେଉଁମାନେ ଶ୍ରୀକୃଷ୍ଣଙ୍କୁ ଭଗବାନ୍ ବୋଲି ଭାବି ଭଗବତଗୀତାକୁ ଗୋଟିଏ ଧର୍ମଗ୍ରନ୍ଥ ହିସାବରେ ଆଜି ପର୍ଯ୍ୟନ୍ତ ଦୂରେଇ ରଖିଛନ୍ତି ସେମାନେ ଗୀତା ପଢ଼ିସାରିଲା ପରେ ଶ୍ରୀକୃଷ୍ଣଙ୍କୁ ସଖା କୃଷ୍ଣ କିମ୍ବା କମ୍ରେଡ୍ କୃଷ୍ଣ ଭାବରେ ନୂଆ ରୂପରେ ଦେଖି ପାରିବେ ବୋଲି ଆଶା ।

# ଶକ୍ତି ଓ ଜ୍ଞାନ

ଦୁର୍ବଳ ଉପରେ ସବଳର ଅତ୍ୟାଚାର କେବଳ ଯେ ପଶୁପକ୍ଷୀଜଗତର ନିୟମ ତାହା କଦାପି କୁହାଯାଇ ନ ପାରେ । ମଣିଷ ମଧ୍ୟ ଏ ନିୟମର ବ୍ୟତିକ୍ରମ ନୁହେଁ । ବେଙ୍ଗ ବିଚରା କେବେ କାହାର କ'ଣ କ୍ଷତି କରିଥିଲା କେଜାଣି, ମଣିଷ ଚିରଦିନ ତା' ଉପରେ ଅତ୍ୟାଚାର କରି ଆସିଛି ।

ଚାହାଳୀ ଓ ସ୍କୁଲ ପିଲାମାନେ 'ଦୁଇ' ଯିବା ବାହାନାରେ ବେଳ ଓ ଅବେଳରେ ପୋଖରୀ କୂଳକୁ ଯାଇ ବେଙ୍ଗମାନଙ୍କ ଉପରକୁ ଟେକା ପକାଇ ସେମାନଙ୍କ କାଳ ହୋଇଛନ୍ତି । କଲେଜ ଛାତ୍ରମାନେ ଲେବୋରେଟରୀମାନଙ୍କରେ ବେଙ୍ଗକୁ ଖଣ୍ଡ ଖଣ୍ଡ କରି କାଟିଛନ୍ତି । ବଡ଼ ବଡ଼ ହୋଟେଲରେ ବେଙ୍ଗର ଗୋଡ଼କୁ ରୋଷ୍ଟ କରାଯାଇଛି । କେଉଁ କେଉଁ ଦେଶରେ ଜୀଅନ୍ତା ବେଙ୍ଗ ଗିଳିବା ପ୍ରତିଯୋଗିତା ଆରମ୍ଭ ହୋଇଗଲାଣି । ଭଲକରି ପାଦପକାଇ ଜାଣୁ ନଥିବା ଛୋଟ ଛୁଆଟିଏ ମଧ୍ୟ ଘରେ ବେଙ୍ଗଟିଏ ଦେଖିଲେ କାଠି ଖଣ୍ଡିଏ ଧରି ତାକୁ କେଞ୍ଚିବାକୁ ଚେଷ୍ଟା କରିଛି ।

ଏପରି ଅନ୍ୟାୟ ଅତ୍ୟାଚାର କରିସାରିଲା ପରେ ଯେ ମଣିଷ ସନ୍ତୁଷ୍ଟ ହୋଇ ଯାଇଛି ତା' ନୁହେଁ - ବେଙ୍ଗକୁ ଅଯଥା ବିଦ୍ରୂପ କରିଛି ମଧ୍ୟ ।

ସେ ଯେତେବେଳେ ଟୁପୁରୁଟାପୁରୁ ବର୍ଷେ, ଜନପ୍ରାଣୀ ସମସ୍ତେ ସ୍ୱାଭାବିକ ରୀତିରେ କୌଣସି ଛତ୍ର ତଳର ଆଶ୍ରା ଖୋଜି ବସନ୍ତି । ବାଟୋଇ କାଖତଳୁ ତା'ର ଛତା ବାହାରକରି ନିଜ ମୁଣ୍ଡଉପରେ ଟେକିଧରେ । କ୍ଷେତରେ ହଳକରୁଥିବା ଚାଷୀ ପିଠି ଆଡ଼ିକି ଝୁଲୁଥିବା ଛତୁରୀକୁ ଟାଣି ଅଥବା କ୍ଷେତ ହୁଡ଼ାରୁ ଓଟାରି ଆଣି ମୁଣ୍ଡରେ ଭଲକରି ଭିଡ଼ିନିଏ । ପଡ଼ିଆରେ ଚରୁଥିବା ଗାଈଗୋରୁଙ୍କୁ ଧରି ଗାଈଜଗାଳିମାନେ କୌଣସି ଝଙ୍କାଳିଆ ଗଛତଳର ଆଶ୍ରାନିଅନ୍ତି । ସହର ଦାଣ୍ଡରେ ଘୂରିବୁଲୁଥିବା ବୁଲାଷଣ୍ଢ ମଧ୍ୟ କାହାର ବାରଣ୍ଡା ଉପରକୁ ଉଠିଯାଏ । ତେଣୁ ଏପରି ଅବସ୍ଥାରେ, କେଶୁର ଗଛ ମାରୁ ବା ନମାରୁ, ବେଙ୍ଗଟିଏ ଯଦି ସାରୁଗଛ ତଳର ଆଶ୍ରୟ ନେଲା ସେଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ବା ଥାଇପାରେ ?

ହୁଏତ ସାରୁପତ୍ରର ଛତ୍ରତଳେ ଆସୀନ ଏହି ବେଙ୍ଗଟି ତା' ପୁଅ ଝିଅମାନେ କିଏ କେଉଁଠି ଆଶ୍ରୟ ପାଇଲେଣି ନା ନାହିଁ ସେ ସମ୍ବନ୍ଧରେ ଖୋଜଖବର ନେବା ଉଦ୍ଦେଶ୍ୟରେ ବଡ଼ ପାଟିକରି ଦି' ଚାରୋଟି ପ୍ରଶ୍ନ ପଚାରି ଦେଲା - ଅଥବା 'ଆମ ଆଡ଼ିକି ବେଶ୍ ବର୍ଷା ତମ ଆଡ଼ିକି କେମିତି ହେ ସମୁଧି' ବୋଲି ପାଖ ଗାଁ ଉଦ୍ଦେଶ୍ୟରେ କେତୋଟି ବିରାଟ କୁହାଟ ଛାଡ଼ି ଦେଲା -

ଏହା ମଧ୍ୟ ହୋଇପାରେ ଯେ, ମା'ମାନେ ଯେମିତି 'ଆ ଜହ୍ନମାମୁ ସରଗ ଶଶୀ, ମୋ କାହ୍ନୁ ହାତରେ ପଡ଼ୁ ଖସି' ଗାଇ ଗାଇ ଅଝଟ ଛୁଆମାନଙ୍କୁ ଖୁଆଇବାକୁ ଚେଷ୍ଟା କରନ୍ତି କିମ୍ବା ସେମାନଙ୍କ ମୁଣ୍ଡ ଥାପୁଡ଼େଇ ଥାପୁଡ଼େଇ ଗାଁ ମୁଣ୍ଡ ବରଗଛ ତଳର ଦାଢ଼ିଆ କାବୁଲି କେମିତି ତା ଝୁଲି ମୁଣିରେ କାନ୍ଦୁରା ପିଲାମାନଙ୍କୁ ଭର୍ତ୍ତିକରି ନେଇଯାଉଛି ସେକଥା କହି ''ଶୋଇ ଯା'ରେ ଧନ ମୋର...'' ଗୀତ ମେଲି ଦିଅନ୍ତି ସେମିତି, ଦି' ଚାରୋଟି ଝଡ଼ିପୋକ ଖୁଆଇ ଦେବା ଆଶାରେ ଅଥବା ଟପର ଟପର ବର୍ଷା ଶବଦରେ ଶୋଇପାରୁ ନଥିବା ଆଉ ଅଯଥା ଡେଇଁ ବୁଲୁଥିବା ଅଝଟ ବେଙ୍ଗ ଛୁଆମାନଙ୍କୁ ଶୁଆଇ ଦେବା ଉଦ୍ଦେଶ୍ୟରେ ବେଙ୍ଗୁଲୀ ତା'ର ରାତିର ଲମ୍ବା ଗୀତ ମେଲି ଦେଇଛି । ସେଥିରୁ କିପରି ପ୍ରମାଣ ମିଳିଲା ଯେ ବେଙ୍ଗଟି ସାରୁ ଗଛ ମୂଳେ ବସି ଆପେ ଆପଣାକୁ ରାଜା ବୋଲାଉଛି ? ବିଦ୍ରୂପ କରିବା ଛଡ଼ା ଏହାର ଆଉ କ'ଣ ବା ଅର୍ଥ ହୋଇପାରେ ?

ଏତିକି ନୁହେଁ । ମଣିଷ ପାଖରୁ ବେଙ୍ଗ ସାଧାରଣ ନ୍ୟାୟବିଚାର ମଧ୍ୟ ପାଇନି ।

ସରସୀ ଜଳରେ ନିରୀହ ମଣ୍ଡୁକ ଅହି କବଳରେ ପଡ଼ିଛି । ମଣ୍ଡୁକ ପ୍ରତି ମଣିଷର ଦୟା ନାହିଁ ସହାନୁଭୂତି ନାହିଁ କିମ୍ବା 'ଆହା' ଗୋଟିଏ ମଧ୍ୟ ନାହିଁ । ନିର୍ମମ ଯନ୍ତ୍ରଣା ଦେଇ ମଣ୍ଡୁକକୁ ତିଳତିଳ କରି ମାରୁଥିବା ଅହି କେବଳ 'କ୍ରୂର ଅହି' ପଦକ ଗାଳିରେ ଖସି ଯାଇଛି । କିନ୍ତୁ ସେହି ବେଙ୍ଗ ଯେତେବେଳେ ଖତେଇ ହେଲା ପରି ମୁହଁ ପାଖରେ ଉଡ଼ି ଯାଉଥିବା ଗୋଟିଏ କଙ୍କିକୁ ଗିଳି ଦେଇଛି, ସେ କଙ୍କିଟିକୁ କେବଳ ଯେ 'ଶିଶୁ କଙ୍କି' ବୋଲି କୁହାଯାଇଛି ତା' ନୁହେଁ, ବେଙ୍ଗଟି 'ଉହୁଙ୍କି' ଶିଶୁ କଙ୍କିକୁ ଗିଳିଦେଲା ବୋଲି ବର୍ଣ୍ଣନା କରାଯାଇଛି । ବେଙ୍ଗର ଅଧାରୁ ବେଶି ତ ସାପର ପାଟି ଭିତରେ, ସେ ବିଚରା ଉହୁଙ୍କିବ କିପରି ?

ନୀଳ ଆକାଶର ଛତ୍ର ତଳେ ନିଜକୁ ଜୀବଜଗତର ସମ୍ରାଟ୍ ବୋଲାଉଥିବା ମଣିଷ, ସୃଷ୍ଟିର ଶ୍ରେଷ୍ଠ ଜୀବ ବୋଲି ନିଜେ ନିଜର ଡିଣ୍ଡିମ ପିଟୁଥିବା ମଣିଷ,

ଦୟା, ଅହିଂସା ପରୋପକାର ଦ୍ୱାହି ଦେଉଥିଲେ ମଧ୍ୟ ଚିରଦିନ ଦୁର୍ବଳ ଉପରେ ଅତ୍ୟାଚାର କରିଆସିଛି । ଦୁର୍ବଳତାକୁ ହେୟଜ୍ଞାନ କରିଛି ଆତ୍ମଗାରିମା ଓ ଆତ୍ମଶ୍ଲାଘା ନେଇ ।

କେଉଁ ଅଜଣା ଅତୀତରୁ ଆଜିପର୍ଯ୍ୟନ୍ତ ମାନବସମାଜର ଦୁର୍ଯ୍ୟୋଧନ ଓ ଦୁଃଶାସନମାନେ ଦ୍ରୌପଦୀଙ୍କୁ ବିବସନା କରିବାକୁ ସତତ ଚେଷ୍ଟା କରିଆସିଛନ୍ତି । ଯେତେବେଳେ ପାଣ୍ଡବ ଶକ୍ତି ରକ୍ଷାକବଚ ହୋଇ ଦ୍ରୌପଦୀଙ୍କ ପାଖକୁ ଯିବାକୁ ଭରସି ପାରି ନାହାନ୍ତି, କିନ୍ତୁ ସେହି ଶକ୍ତି ଯେତେବେଳେ ମୁହ୍ୟମାନ ହୋଇ ପଡ଼ିଛି, ଦୁଃଶାସନ ଅବଳା ଦ୍ରୌପଦୀଙ୍କ କେଶ ଧରି ଘୋଷାରି ନେଇଛି - ସଭାରେ ସମସ୍ତଙ୍କ ସମ୍ମୁଖିରେ ଲାଞ୍ଛନା ଓ ଅପମାନ ଦେବାପାଇଁ । କେବେ କେଉଁଠି ଦ୍ରୌପଦୀଙ୍କ କେଶବନ୍ଧନ ହୋଇଛି; କିନ୍ତୁ ଅନେକ ସ୍ଥଳରେ ଏପରି ଅବଳାମାନଙ୍କ କେଶ ଚିର ମୁକୁଳା ରହିଯାଇଛି - ବାଂଲାଦେଶର ଲକ୍ଷଲକ୍ଷ ନିରୀହା ଅବଳାଙ୍କ ପରି ।

ଆବହମାନକାଳରୁ ମଣିଷ ଶକ୍ତିକୁ ସମ୍ମାନ ଦେଇ ଆସିଛି । ଏ ଶକ୍ତି ଯେତେବେଳେ ପାଶବିକ ଶକ୍ତିର ରୂପ ନେଇଛି, ମଣିଷ ତାକୁ ସମ୍ମାନ ଦେଇଛି ପ୍ରାଣର ଭୟରେ ଜୀବନର ଆକୁଳତାରେ - ଦେବତାମାନେ ରାବଣର ଆଳଟ ଚାମର ଢାଳିବା, ଲୁଗା ପଖାଳିବା ରୀତିରେ । ମହାବଳ ବାଘ ମଧ୍ୟ ମାମୁ ହୋଇଛି - ହିମାଳୟର ସନ୍ତାନ ହୋଇଥିବା ଯୋଗୁଁ ହିମାଳୟ ନନ୍ଦିନୀ ମା' ପାର୍ବତୀଙ୍କ ଭାଇ ଲେଖାରେ ।

ଏ ଶକ୍ତି ଯେତେବେଳେ ମଣିଷର ଉପକାର କରିବା ସଙ୍ଗେସଙ୍ଗେ ଧ୍ୱଂସର ତାଣ୍ଡବଲୀଳା ମଧ୍ୟ ସୃଷ୍ଟି କରିଛି, ମଣିଷ ସେ ଶକ୍ତିକୁ ଦୈବୀଶକ୍ତି ରୂପରେ ସନ୍ତୁଷ୍ଟ କରିବାକୁ ଚେଷ୍ଟା କରିଛି । ଅଗ୍ନି ଯେତେବେଳେ ତା'ର ଘର ଦ୍ୱାର ଜାଳି ପୋଡ଼ି ଛାରଖାର କରି ଦେଇଛି, ସେ ଡରରେ ଅଗ୍ନିକୁ ଦେବତା ବୋଲି କହି ତାଙ୍କୁ ସନ୍ତୁଷ୍ଟ କରିବା ଉଦ୍ଦେଶ୍ୟରେ ହୋମ ଯଜ୍ଞର ଭିଆଣ କରିଛି । ପବନ ଯେତେବେଳେ ଅଣଞ୍ଚାଶ ମୂର୍ତ୍ତିଧରି ମଣିଷର କ୍ଷୁଦ୍ର ସୃଷ୍ଟିକୁ କ୍ଷଣକରେ ଧୂଳିସାତ୍ କରିଦେଇଛି, କରାଳ ବନ୍ୟାରେ ଯେତେବେଳେ ଗାଁ ଗଣ୍ଡା ନିଶ୍ଚିହ୍ନ ହୋଇଯାଇଛି, ମଣିଷ ପବନ ଓ ବରୁଣଙ୍କୁ ଦେବତା ଆଖ୍ୟା ଦେଇ ସେମାନଙ୍କର ସ୍ତୋତ୍ର ଗାନ କରିଛି ।

ଆଉ ଏ ଶକ୍ତି ଯେତେବେଳେ କେବଳ ମଙ୍ଗଳମୟ ଓ ରକ୍ଷାକାରୀ ଶକ୍ତି ରୂପରେ ଦେଖା ଦେଇଛନ୍ତି, ମଣିଷ ସେ ଐଶୀ ଶକ୍ତିକୁ ପୂଜା କରିଛି - କୃତଜ୍ଞତାରେ -

କୃତଜ୍ଞତା ଜନିତ ଭକ୍ତିର ବିହ୍ୱଳତାରେ । ପ୍ରାଣର ଆବେଗରେ, ମନର ଆନନ୍ଦରେ ମଣିଷ ଏ ଶକ୍ତିକୁ କେତେବେଳେ ମା' ବୋଲି ଡାକିଛି, କେତେବେଳେ ପିତା ବୋଲି ସମ୍ବୋଧନ କରିଛି । କେତେବେଳେ ଗୁରୁ ବୋଲି କହିଛି ଆଉ କେତେବେଳେ ବନ୍ଧୁ ଓ ସଖା ବୋଲି ଆଦର କରିଛି ।

ଦୁର୍ବଳକୁ ରକ୍ଷା କରିବା ଯଥା ସାହାଯ୍ୟ କରିବା ପ୍ରତ୍ୟେକଙ୍କ କର୍ତ୍ତବ୍ୟ ବୋଲି ଆମ ପୂର୍ବପୁରୁଷମାନେ କହିଯାଇଛନ୍ତି । କିନ୍ତୁ ସେମାନେ ଦୁର୍ବଳତାକୁ ପ୍ରଶ୍ରୟ ଦେଇ ନାହାନ୍ତି, ବରଂ ସ୍ପଷ୍ଟ ଭାବରେ ନିନ୍ଦା କରି ଘୋଷଣା କରିଛନ୍ତି ଯେ ବଳହୀନ ଦ୍ୱାରା ଏ ଆତ୍ମା ପ୍ରାପ୍ୟ ନୁହେଁ । ଶକ୍ତିର ଆହରଣ ଓ ସଞ୍ଚୟ ଆମର ଧ୍ୟେୟହେବା ଉଚିତବୋଲି କହିବା ସଙ୍ଗେ ସଙ୍ଗେ ସେ ଶକ୍ତି ଯେପରି ପାଶବିକ ଶକ୍ତିର ରୂପ ନନିଏ ସେଥିପାଇଁ ଜ୍ଞାନର ଆବଶ୍ୟକତା ସୂଚାଇଦେବାକୁ ଯାଇ ଯେଉଁ ଆଦର୍ଶର ଇଙ୍ଗିତ ଦେଇଛନ୍ତି ପୃଥିବୀର ଅନ୍ୟତ୍ର ତା'ର ପଟାନ୍ତର ନାହିଁ ।

ପୁରାଣର କାହାଣୀମାନଙ୍କ ମାଧ୍ୟମରେ ସେମାନେ ଆମକୁ ଏସବୁ ଆଦର୍ଶର ଶିକ୍ଷା ଦେଇଯାଇଛନ୍ତି । ବିଶ୍ୱାମିତ୍ରଙ୍କ ସାଧନାର କାହାଣୀ କାଳ୍ପନିକ ହୋଇପାରେ - କିନ୍ତୁ ଏ ଆଦର୍ଶର ଗୋଟିଏ ସୁନ୍ଦର ପ୍ରତୀକ । ଏଠାରେ ତା'ର ସାଧାରଣ ବର୍ଣ୍ଣନା ଅପ୍ରାସଙ୍ଗିକ ହେବନି ।

ପ୍ରତାପୀ ରାଜା ବିଶ୍ୱାମିତ୍ର ସୈନ୍ୟବଳ ଧରି ଦିଗ୍‌ବିଜୟରେ ବାହାରିଥିଲେ । ସୈନ୍ୟମାନେ ଶ୍ରାନ୍ତ ଓ କ୍ଳାନ୍ତ, ରାଜାଙ୍କୁ ମଧ୍ୟ ଖୁବ୍ ଭୋକ ଓ ଶୋଷ - ସେମାନେ ବଶିଷ୍ଠଙ୍କ ଆଶ୍ରମ ଦେଖିବାପାଇଁ ସେଠାକୁ ଗଲେ । କେବଳ ତାଙ୍କ ପାଇଁ ନୁହେଁ, ସାରା ସୈନ୍ୟବଳ ପାଇଁ ବଶିଷ୍ଠ ସୁଖାଦ୍ୟର ଆୟୋଜନ ସହଜରେ କରି ଦେଇଥିବା ଦେଖି ରାଜା ଆଶ୍ଚର୍ଯ୍ୟ ହେଲେ ଓ ପଚାରି ଜାଣି ପାରିଲେ ଯେ ବଶିଷ୍ଠଙ୍କ ଗାଈ କାମଧେନୁ ଯୋଗୁଁହିଁ ତାହା ସମ୍ଭବପର ହୋଇଛି ।

ରାଜାଙ୍କର ମନରେ ଲୋଭ ଜନ୍ମିଲା । ଏପରି ଗାଈ କେବଳ ରାଜାଙ୍କର ଧନ ହେବା ଉଚିତ ଭାବି ସେ କାମଧେନୁକୁ ବଳାତ୍କାରରେ ସାଙ୍ଗରେ ନେଇଯିବାକୁ ସୈନ୍ୟମାନଙ୍କୁ ଆଦେଶ ଦେଲେ । ବଶିଷ୍ଠ ଅତ୍ୟନ୍ତ ଦୁଃଖିତ ହୋଇ ଏ ଅନ୍ୟାୟର ପ୍ରତିବାଦ କଲେ, କିନ୍ତୁ କିଛି ଫଳ ହେଲାନି । କାମଧେନୁକୁ ଚଲାଇ ସାଙ୍ଗରେ ନେଇ ନ ପାରିବାରୁ ସୈନ୍ୟମାନେ ଅନେକ ମାଡ଼ ମାରି ଚାରିଗୋଡ଼ ବାନ୍ଧି ରଥରେ ପକାଇ ନେଇଯିବାକୁ ଉଦ୍ୟମ କଲେ । ଗାଈପ୍ରତି ଏପରି ଅତ୍ୟାଚାର ଓ ତା'ର ବିକଳ କ୍ରନ୍ଦନ, ବଶିଷ୍ଠ ସମ୍ଭାଳି ପାରିଲେନି । କୁଶ ଖଣ୍ଡିଏ ମନ୍ତ୍ର କରି ଛାଡ଼ି

ଦେବା ଫଳରେ ବିଶ୍ୱାମିତ୍ରଙ୍କ ସୈନ୍ୟବଳର ସମୂଳ ବିନାଶ ହେଲା । ରାଜା ନିରସ୍ତ୍ର ହୋଇ ପଡ଼ିଲେ ଓ କାମଧେନୁ ମୁକୁଳି ଆସିଲେ ।

ଏତେବଡ଼ ପ୍ରତାପୀ ରାଜା ବିଶ୍ୱାମିତ୍ର ଏପରି ଭାବରେ ହାରି ଲଜ୍ଜା ଓ ଅପମାନରେ ସେଠାରୁ ପଳାଇଯାଇ ବଶିଷ୍ଠଙ୍କୁ ହରାଇବା ଉଦ୍ଦେଶ୍ୟରେ ଘୋର ତପସ୍ୟା ଆରମ୍ଭ କରିଦେଲେ । ଯଥା ସମୟରେ ସେ ବରପାଇ ସବୁ ଦେବଶର ଓ ବ୍ରହ୍ମଶରର ଅଧିକାରୀ ହେଲେ ଓ ପୁଣି ଥରେ ବଶିଷ୍ଠଙ୍କ ପାଖରୁ କାମଧେନୁ ଛଡ଼ାଇ ନେବା ଉଦ୍ଦେଶ୍ୟରେ ଆସିଲେ । କିନ୍ତୁ ଏଥର ମଧ ସବୁ ଚେଷ୍ଟା ବିଫଳ ହେଲା । ବ୍ରହ୍ମର୍ଷି ବଶିଷ୍ଠଙ୍କ ଦଣ୍ଡରେ ପଡ଼ି ବ୍ରହ୍ମଶର ମଧ ଲୀନ ହୋଇଗଲା । ବିଶ୍ୱାମିତ୍ର ବୁଝି ପାରିଲେ ଯେ ବ୍ରହ୍ମ ତେଜ ସମ୍ମୁଖରେ ପାଶବିକ ଶକ୍ତି କିଛି ନୁହେଁ ।

ସେ ରାଜ୍ୟଭାର ଅନ୍ୟ ହାତରେ ସମର୍ପି ଦେଇ ବ୍ରହ୍ମଜ୍ଞାନ ଲାଭ ଆଶାରେ ତାଙ୍କର ଅଭୂତପୂର୍ବ ତପସ୍ୟା ଆରମ୍ଭ କରିଦେଲେ । କାଳେ ଇନ୍ଦ୍ରପଦ ନେଇଯିବ, ଏଇ ଭୟରେ ଇନ୍ଦ୍ର ବିଶ୍ୱାମିତ୍ରଙ୍କ ତପଭଙ୍ଗ ପାଇଁ କିପରି ମେନକାଙ୍କୁ ପଠାଇଲେ, ଶକୁନ୍ତଳାଙ୍କ ଜନ୍ମ, ଚଣ୍ଡାଳ ତ୍ରିଶଙ୍କୁଙ୍କୁ ବିଶ୍ୱାମିତ୍ରଙ୍କ ସ୍ୱର୍ଗକୁ ପ୍ରେରଣ, ତ୍ରିଶଙ୍କୁଙ୍କ ନ ଯଯୌ ନ ତସ୍ଥୌ ଅବସ୍ଥା, ନୂତନ ସ୍ୱର୍ଗ ସୃଷ୍ଟି ପ୍ରଭୃତି ସମସ୍ତଙ୍କୁ ଜଣା ଅଧିକେ ଜଣା । ଏତେ ତପସ୍ୟା ପରେ ମଧ ସମ୍ପୂର୍ଣ୍ଣ ରୂପେ କ୍ରୋଧ ଦମନ କରିପାରି ନ ଥିବାରୁ, ଆଉ ଅହଙ୍କାର ଯୋଗୁଁ ବିଶ୍ୱାମିତ୍ର ଆଉ ଥରେ ବଶିଷ୍ଠଙ୍କ ପାଖରୁ ଯାଇ ନିଜକୁ ଅପମାନିତ ମନେକରିଥିଲେ । ଶେଷରେ ତାଙ୍କର ଯେତେବେଳେ ବ୍ରହ୍ମଜ୍ଞାନର ଉଦ୍ରେକ ହେଲା - ସେ ବଶିଷ୍ଠଙ୍କୁ ଦେଖାକଲେ ସହାସ୍ୟ ବଦନରେ । କ୍ରୋଧ କୁଆଡ଼େ ଚାଲି ଯାଇଥିଲା - ବଶିଷ୍ଠଙ୍କୁ ହରାଇବା ପ୍ରଶ୍ନ ଆଉ ନ ଥିଲା । ବଶିଷ୍ଠ ବ୍ରହ୍ମର୍ଷି ବିଶ୍ୱାମିତ୍ରଙ୍କୁ ସମ୍ମାନରେ ନିଜ ଆଶ୍ରମକୁ ପାଛୋଟି ନେଇଥିଲେ ।

ମହାତେଜସ୍ୱୀ ବ୍ରହ୍ମର୍ଷି ବିଶ୍ୱାମିତ୍ର ନିଜେ ଅତି ଶକ୍ତିମାନ ହୋଇମଧ ପରେ ଆଉ ଅସ୍ତ୍ର ଧାରଣ କରିନାହାନ୍ତି । ସୁବାହୁ, ମାରିଚ, ତାଡ଼କା ପ୍ରଭୃତି ରାକ୍ଷସମାନଙ୍କ ଦାଉରୁ ନିଜ ଆଶ୍ରମକୁ ରକ୍ଷା କରିବା ପାଇଁ ଦଶରଥଙ୍କ ପାଖକୁଯାଇ ରାମ-ଲକ୍ଷ୍ମଣଙ୍କୁ ସାଙ୍ଗରେ ନେଇ ଆସିଛନ୍ତି ଓ ସେମାନଙ୍କୁ ଧନୁର୍ବିଦ୍ୟା ଶିକ୍ଷା ଦେଇଛନ୍ତି ।

ଗାନ୍ଧିଜୀ ମଧ ଏପରି ଆଦର୍ଶ ଶିକ୍ଷା ଦେଇଯାଇଛନ୍ତି । ତାଙ୍କର ଅହିଂସା ଦୁର୍ବଳର ଅହିଂସା ନୁହେଁ, ତାହା ସବଳର ଅହିଂସା । ଥରେ ଛାତ୍ରମାନଙ୍କ ଗୋଟିଏ ସଭାରେ ଭାଷଣ ଦେଲାବେଳେ ସେ ଛାତ୍ରମାନଙ୍କ ଶୀର୍ଣ୍ଣ ଦୁର୍ବଳ ଶରୀର ସବୁକୁ

ଲକ୍ଷ୍ୟ କରି ସୁସ୍ଥ ଓ ସବଳ ଶରୀର ଗଠନ ପାଇଁ ଉପଦେଶ ଦେବାକୁ ଯାଇ ତାଙ୍କ ପାଖରେ ବସିଥିବା ଆଲିଭାଇ, ବିଶାଳକାୟ ମହମ୍ମଦ ଆଲିଙ୍କୁ ଦେଖାଇ ପରିହାସ ଛଳରେ କହିଥିଲେ ଯେ, ଏ ଆଲିଙ୍କ ଗାଲରେ ଯଦି କେହି ଚଟକଣାଟିଏ ମାରେ ଓ ସେ ଅନ୍ୟ ଗାଲ ଦେଖାଇ ଦିଅନ୍ତି ତେବେ ତାକୁ ହିଁ ଅହିଂସା କୁହାଯିବ, ଯେହେତୁ ଗୋଟିଏ ଚଟକଣା ଜାଗାରେ ଦିଓଟି ଚଟକଣା ଦେବା ପାଇଁ ତାଙ୍କର ଶକ୍ତି ଅଛି । ମୋ ଗାଲରେ କେହି ଯଦି ଚଟକଣାଟିଏ ମାରେ ଆଉ ମୁଁ ଅନ୍ୟ ଗାଲଟି ଦେଖାଇ ଦିଏଁ - ତା' ଅହିଂସା ହେବନି, କାରଣ ଚଟକଣା ମାରିଥିବା ଲୋକକୁ ଚଟକଣାଟିଏ ଦେବାର ଶକ୍ତି ଯେତେବେଳେ ନାହିଁ - ଅନ୍ୟ ଗାଲ ଦେଖାଇ ଦେବା ଛଡ଼ା ମୋର ଆଉ କି ଗତି ଅଛି ?

ଜ୍ଞାନ ବିନା ଶକ୍ତି ଯେପରି ପାଶବିକ ଶକ୍ତିର ରୂପ ନେଇପାରେ, ଶକ୍ତି ବିନା ଜ୍ଞାନ ସେପରି ପରିହାସର ସାମଗ୍ରୀ ହୋଇପାରେ । ସେଥିପାଇଁ ଜ୍ଞାନର ଗାରିମାରେ ଗରୀୟାନ ହେଲେ ହେଁ ଦୁର୍ବଳ ଭାରତ ପୃଥିବୀରେ ତା'ର ନ୍ୟାୟୋଚିତ ଆସନ ପାଇବା ତ ଦୂରେଥାଉ ଅନେକ ସମୟରେ ଉପହାସର ପାତ୍ର ହୋଇଛି ।

ଶକ୍ତି ଓ ଜ୍ଞାନର ସୁସମନ୍ୱୟ ହିଁ ଭାରତୀୟ ପରମ୍ପରାର ଆଦର୍ଶ । ତେଣୁ ଜ୍ଞାନର ପୀଠସ୍ଥଳୀ ଭାରତ ଆଜି ପରମାଣୁ ଶକ୍ତିର ଅଧିକାରୀ ହେବା ଫଳରେ ଭାରତର ଅର୍ଥନୈତିକ କ୍ଷେତ୍ରରେ ତା'ର ପ୍ରଭାବ ଯାହା ହେଉ ନା କାହିଁକି ମାନବ ସମାଜର ଯେ ମଙ୍ଗଳ ହୋଇଛି ଏଥିରେ ସନ୍ଦେହ ନାହିଁ ।

# ବିଜ୍ଞାନ ଓ ଦର୍ଶନ

ଆଜିର ଏହି ବୈଜ୍ଞାନିକଯୁଗରେ ମଣିଷ ଯେତେବେଳେ ଜହ୍ନମାମୁଙ୍କ ମାମୁତ୍ୱ ଉପରେ ବାରମ୍ବାର ପଦାଘାତ କରିଚାଲିଛି ଆଉ ବିବାହାଦି ଶୁଭ କାର୍ଯ୍ୟମାନଙ୍କରେ ଅରିଷ୍ଟ ଖଣ୍ଡନ ପାଇଁ ତଥା ସେମାନଙ୍କ ଶାନ୍ତି ଓ ପ୍ରୀତ୍ୟାର୍ଥେ ଯେଉଁ ମଙ୍ଗଳ, ବୁଧ, ବୃହସ୍ପତି ଆଦି ଗ୍ରହ ମହାଗ୍ରହମାନଙ୍କ ଉଦ୍ଦେଶ୍ୟରେ ମଣିଷ ହୋମ ଯଜ୍ଞ ପ୍ରଭୃତିର କର୍ମ ବିଧାନ କରୁଥିଲା, ସେହି ଗ୍ରହ ମହାଗ୍ରହମାନଙ୍କୁ ଯେତେବେଳେ ଶନିଦଶା ପଡ଼ି ମଣିଷର ପ୍ରୋବିଂ ରକେଟ ବିଦ୍ଧ କରିବାକୁ ବସିଲାଣି, ସେତିକିବେଳେ ଓ ସେହି ଯୁଗରେ ଦର୍ଶନ ସମ୍ବନ୍ଧୀୟ ଆଲୋଚନା କେତେଦୂର ଯୁକ୍ତିଯୁକ୍ତ ସେ ବିଷୟରେ ସ୍ୱାଭାବିକ ଭାବରେ ପ୍ରଶ୍ନ ଉଠେ ।

କେହି କେହି ସିଧାସଳଖ ମନ୍ତବ୍ୟ ଦିଅନ୍ତି ଯେ ଭାରତର ଆର୍ଥିକ ଓ ବିକାଶ ମୂଳକ ଅନଗ୍ରସରତା ପାଇଁ ଦର୍ଶନ ହିଁ ଦାୟୀ - ତେଣୁ ଏପରି ସ୍ୱପ୍ନିଳ, ଅନିଶ୍ଚିତ, ଅପ୍ରମାଣ୍ୟ ଓ ଭ୍ରମପ୍ରମାଦପୂର୍ଣ୍ଣ ଦର୍ଶନ ସମ୍ବନ୍ଧୀୟ ଆତ୍ମଚିନ୍ତା ତଥା ନୈତିକତା ସମ୍ବନ୍ଧରେ ସମୟ ନଷ୍ଟ ନ କରି ଭାରତୀୟ ଯୁବକ ଅର୍ଥନୈତିକ ପ୍ରଗତିକୁ ତ୍ୱରାନ୍ୱିତ କରିବା ଉଦ୍ଦେଶ୍ୟରେ ବୈଷୟିକ ବିଜ୍ଞାନପ୍ରତି ବିଶେଷ ଧ୍ୟାନଦେବା ଉଚିତ ।

ଏ ରକମର ଚିନ୍ତାଧାରା କେତେକାଂଶରେ ସତ ବୋଲି ଜଣାପଡୁଥିଲେ ହେଁ ବାସ୍ତବରେ ଭ୍ରମପୂର୍ଣ୍ଣ ବୋଲି ମନେହୁଏ ।

ଦର୍ଶନ ଓ ବିଜ୍ଞାନ ପରସ୍ପରର ପରିପୂରକ । କେତେକ କ୍ଷେତ୍ରରେ ଏ ଦୁହେଁ ଏକ ଓ ଅଭିନ୍ନ ବୋଲି ମଧ୍ୟ କୁହାଯାଇ ପାରେ । ଦାର୍ଶନିକ ଓ ବୈଜ୍ଞାନିକର ଜୀବନ ଓ ମୌଳିକ ଚିନ୍ତାଧାରା ବାହାରକୁ ଭିନ୍ନ ଦେଖା ଯାଉଥିଲେ ହେଁ ଅଧିକାଂଶରେ ସମାନ । ଦୁହେଁ ଅଜଣାର ଅନୁସନ୍ଧାନୀ । ସତ୍ୟର ସନ୍ଧାନ ଓ ପ୍ରକୃତିର ରହସ୍ୟ ଉଦ୍‌ଘାଟନ ହିଁ ଦୁହିଁଙ୍କର ମୂଳମନ୍ତ୍ର ।

ସାଧାରଣ ଭାବରେ କହିବାକୁ ଗଲେ ଜଣେ ମୁଖ୍ୟତଃ ବହିର୍ଜଗତ ତଥା ବସ୍ତୁ ଜଗତର ଜ୍ଞାନ ଆହରଣ କରେ । ତେଣୁ ତାକୁ ବହିର୍ଜ୍ଞାନୀ ବା ବିଜ୍ଞାନୀ କୁହାଯାଇ

ପାରେ । ଅନ୍ୟଜଣକ ଅନ୍ତର୍ଜଗତ ସମ୍ବନ୍ଧୀୟ ଜ୍ଞାନର ଅନୁସନ୍ଧାନ କରେ । ଏପରି ଅନ୍ତର୍ଜ୍ଞାନୀମାନଙ୍କୁ ସାଧାରଣ ଭାବରେ ଜ୍ଞାନୀ ବୋଲି କୁହାଯାଇଥାଏ । ବିଶେଷ ଭାବରେ ଜ୍ଞାନ ଆହରଣ କରିଥିବା ଜ୍ଞାନୀମାନଙ୍କୁ ମଧ୍ୟ ବିଜ୍ଞାନୀ ବୋଲି କୁହାଯାଏ । କବି ସମ୍ରାଟ୍ ଉପେନ୍ଦ୍ର ଭଞ୍ଜ ଏହି ଅର୍ଥରେ ରାମଚନ୍ଦ୍ରଙ୍କ ପାଦ ଧୋଇଥିବା କୈବର୍ତ୍ତକୁ 'ବିଜ୍ଞାନୀ କୈବର୍ତ୍ତ' ବୋଲି କହିଛନ୍ତି ।

କିଛି କାଳ ପୂର୍ବରୁ ବିଜ୍ଞାନ ଦର୍ଶନର ଏକ ଅଂଶ ବିଶେଷ ବୋଲି ହିଁ ଗଣା ଯାଉଥିଲା । ସେ ପରମ୍ପରା ଅନୁଯାୟୀ ଆଜି ମଧ୍ୟ ବୈଜ୍ଞାନିକ ତା'ର ଜ୍ଞାନର ସନ୍ତକ ରୂପରେ ବିଶ୍ୱବିଦ୍ୟାଳୟମାନଙ୍କରୁ ଡକ୍ଟରେଟ୍ ଅଫ୍ ଫିଲସଫି ଉପାଧି ପାଇଥାଏ ।

ଦାର୍ଶନିକ ଓ ବୈଜ୍ଞାନିକ କିପରି ଏକ ଓ ଅଭିନ୍ନ ସେ ସମ୍ବନ୍ଧରେ ଅନେକ ଦିନ ତଳର ଗୋଟିଏ ଜଣାଶୁଣା ଘଟଣା ଏଠାରେ ସାଧାରଣ ଭାବରେ ବର୍ଣ୍ଣନା କରାଯାଇ ପାରେ ।

ସୁବିଖ୍ୟାତ ଦାର୍ଶନିକ ଓ ରାଜ୍ୟସଭାର ସର୍ବଶ୍ରେଷ୍ଠ ପଣ୍ଡିତ ଆର୍କିମିଡ଼ିସ୍‌ଙ୍କୁ ଗ୍ରୀକ୍ ସମ୍ରାଟ୍ ଯେତେବେଳେ ଆଦେଶ ଦେଲେ ଯେ ସୁନାର ରାଜ ମୁକୁଟରେ ବଣିଆ କେତେ ରୂପା ମିଶାଇଛି ତାହା ତିନି ଦିନ ଭିତରେ ମୁକୁଟ ନ ଭାଙ୍ଗି ତାଙ୍କୁ କହିବାକୁ ପଡ଼ିବ, ସେ ଦିନ ଆର୍କିମିଡ଼ିସ୍‌ଙ୍କ ମୁଣ୍ଡରେ ଚଡ଼କ ପଡ଼ି ଯାଇଥିଲା । ଏପରି ଦୁଃସମୟ ବେଳେ ଭଗବାନ ହିଁ ଏକମାତ୍ର ସହାୟ ବୋଲି ଧରିନେଇ ସେ ରାତିଦିନ ଗଭୀର ଚିନ୍ତାମଗ୍ନ ହୋଇ ଭାବୁଥିଲେ ଏପରି ଜଟିଳ ପ୍ରଶ୍ନର ସମାଧାନ କରିବେ କିପରି ? ମୁକୁଟ ନ ଭାଙ୍ଗି ମୁକୁଟରେ କେତେ ରୂପା ମିଶିଛି ଜାଣିବେ କେମିତି ?

ଶେଷଦିନ ପହଞ୍ଚିଗଲା । ପାଶ୍ଚାତ୍ୟ ସଭ୍ୟତାର ଜନକ ଗ୍ରୀସ୍ ଦେଶର ସାମାଜିକ ପରମ୍ପରା ଅନୁଯାୟୀ ଆର୍କିମିଡ଼ିସ୍ ଗାଧୋଇବା ଘର କାନ୍ଥ ଖୁଣ୍ଟିରେ ଲୁଗାପଟା ଝୁଲାଇ ଦେଇ ଉଲଗ୍ନ ହୋଇ, ପାଣିକୁଣ୍ଡରେ ପଶି ଗାଧୋଉଥିଲେ, ଆଉ ସେଥି ସଙ୍ଗେସଙ୍ଗେ ସେହି ମୁକୁଟ ସମ୍ବନ୍ଧୀୟ ଚିନ୍ତାରେ ହିଁ ନିମଗ୍ନ ଥିଲେ । ବୋଧହୁଏ ଭାବୁଥିଲେ ଯେ ବୁଡ଼ି ନ ମରି ବଞ୍ଚିଛନ୍ତି କାହିଁକି । ହଠାତ୍ ତାଙ୍କର ଖିଆଲ ହେଲା ସେ ପାଣିଭିତରେ ବୁଡ଼ି ନ ଯାଇ ଭାସୁଛନ୍ତି କିପରି ? ପବନରେ ତ ଭାସି ପାରନ୍ତିନି । ତାଙ୍କ ଶରୀରର ଓଜନ ତା'ହେଲେ ଗଲା କୁଆଡ଼େ ? ପାଣି କ'ଣ ତା' ହେଲେ ତାଙ୍କୁ ଉପରକୁ ଠେଲୁଛି ? କେତେ ଶକ୍ତି ନେଇ ? ସେ କୁଣ୍ଡ ଭିତରେ ପଶିଲା ବେଳେ ଯେତେ ପାଣି କୁଣ୍ଡରୁ ଉଛୁଳିଉଠିଲା ସେତିକି ପାଣିର

ଓଜନ କ'ଣ ତାଙ୍କ ନିଜ ଶରୀରର ଓଜନରୁ କମିଗଲା ? ମୁକୁଟଟିକୁ ଯଦି ପାଣି ଭିତରେ ଓଜନ କରାଯାଏ ! ଯେତେ ଓଜନ କମି ଯିବ ସେଥିରୁ ତ ପାଣିର ଘନ ପରିମାଣ ଓ ତହିଁରୁ ମୁକୁଟର ଘନ ପରିମାଣ ଜଣାଯିବ। ସେଠାରୁ ମୁକୁଟର ଘନତ୍ୱ। ଆଉ ତାହା ଯଦି ସୁନାର ଘନତ୍ୱ ସଙ୍ଗେ ସମାନ ନ ହୁଏ !

ଆର୍କିମିଡ଼ିସ୍ କୁଣ୍ଡରୁ ଡେଇଁ ପଡ଼ିଲେ - କବାଟ ଖୋଲି ଏକ ମୁହାଁ ଦଉଡ଼ିବାକୁ ଲାଗିଲେ ରାଜଦରବାର ଆଡ଼କୁ। ସହରର ଦାଣ୍ଡ ଗହଳି ଦେଇ ଗଲାବେଳେ ସେ ଚିତ୍କାର କରୁଥାଆନ୍ତି 'ଇଉରେକା ଇଉରେକା...' ଜାଣିଗଲି, ଜାଣିଗଲି। ଆଉ ସହରର ବିରାଟ ଜନତା ଏ ସମ୍ମାନାସ୍ପଦ ଦାର୍ଶନିକଙ୍କ ଅଦ୍ଭୁତ ଓ ଅଶ୍ରୁତ ପୂର୍ବ କ୍ରିୟାକୁ ବିସ୍ଫାରିତ ନେତ୍ରରେ ଚାହିଁ ରହିଥିଲେ। ଆର୍କିମିଡ଼ିସ୍ ଲଙ୍ଗଳା ହୋଇ ହିଁ ରାଜଦରବାରକୁ ଦଉଡୁ ଥିଲେ। ସେ ଦିନ ଲୋକେ ଭାବିଥିଲେ ଆର୍କିମିଡ଼ିସ୍ ଜଣେ ପାଗଳ।

କିନ୍ତୁ ସେଦିନ ଦର୍ଶନ ଦେଇଥିଲା ମାନବ ସମାଜକୁ ଗୋଟିଏ ମହାନ ଅବଦାନ। ଆଉ ଜଳ ଓ ବାୟୁ ବିଜ୍ଞାନ ପାଇଥିଲା ତା'ର ଅମୂଲ୍ୟ ସମ୍ପଦ - 'ବୋଏନ୍‌ସି' ଓ ଆର୍କିମିଡ଼ିସ ପ୍ରିନ୍‌ସିପିଲ୍ - ଭାସମାନ କ୍ରିୟାର ମୂଳତତ୍ତ୍ୱ - ହୀରାକୁଦ ବନ୍ଧପରି ବନ୍ଧଠାରୁ ଆରମ୍ଭ କରି ଜଳଜାହାଜ, ବୁଡ଼ାଜାହାଜ, ଉଡ଼ାଜାହାଜ ପ୍ରଭୃତିର୍ ନିର୍ମାଣ କ୍ଷେତ୍ରରେ ଯେଉଁ ଜ୍ଞାନର ବ୍ୟବହାର ଦରକାର ପଡ଼େ।

ଗଣିତ ଶାସ୍ତ୍ରରେ ପ୍ରାଚୀନ ଭାରତର ଅବଦାନ, ଭାରତର ନୌବାଣିଜ୍ୟ ଓ ଜାହାଜ ତିଆରି କାରିଗରି, ଅଶୋକସ୍ତମ୍ଭମାନଙ୍କରେ କଳଙ୍କି ଲାଗୁ ନ ଥିବା ଲୁହାର ବ୍ୟବହାର, ହରପ୍ପା ମହେଞ୍ଜୋଦାରୋ ସଭ୍ୟତାରେ ସହର ନିର୍ମାଣ ପ୍ରଣାଳୀ, ଆୟୁର୍ବେଦ ଓ ଶଲ୍ୟ ଚିକିତ୍ସାର ବିକାଶ ଓ ଜ୍ୟୋତିର୍ବିଜ୍ଞାନ, ସେ ଦିନର ଭାରତୀୟ ବିଜ୍ଞାନ ତଥା ବୈଷୟିକ ବିଜ୍ଞାନର ବିକାଶ ସୂଚିତ କରେ।

ପୌରାଣିକ ଯୁଗରେ ମଧ୍ୟ ଭାରତରେ ବିଜ୍ଞାନର ଯଥୋଚିତ ବିକାଶ ଘଟିଥିଲା ବୋଲି ମନେହୁଏ। ହୋମକୁଣ୍ଡରୁ ତ୍ରିଶଙ୍କୁଙ୍କୁ ସଶରୀରରେ ସ୍ୱର୍ଗକୁ କ୍ଷେପଣ ଓ ମହାଶୂନ୍ୟରେ ତ୍ରିଶଙ୍କୁଙ୍କ 'ନ ଯଯୌ ନ ତସ୍ଥୌ' ଅବସ୍ଥା ବ୍ରହ୍ମର୍ଷି ବିଶ୍ୱାମିତ୍ରଙ୍କ ରକେଟ ସମ୍ବନ୍ଧୀୟ ଜ୍ଞାନର ଇଙ୍ଗିତ ଦିଏ। ମନେହୁଏ ଯେ ତ୍ରିଶଙ୍କୁ ପୃଥିବୀର ମାଧ୍ୟାକର୍ଷଣକୁ ଡେଇଁଗଲାପରେ ଅନ୍ୟ ଗ୍ରହର ମାଧ୍ୟାକର୍ଷଣ ଭିତରକୁ ପଶି ପାରିଲେ ନାହିଁ ଓ ମାଧ୍ୟାକର୍ଷଣ ଶୂନ୍ୟତାରେହିଁ ରହିଗଲେ। ଏହା ଯଦି କବିର କଳ୍ପନା - ତେବେ ଜଣେ ମହାନ୍ ବୈଜ୍ଞାନିକ କବିର କଳ୍ପନା।

ତଥାପି ଭାରତୀୟ ଦର୍ଶନରେ ବିଜ୍ଞାନ ଚିରଦିନ ଗୌଣସ୍ଥାନ ଅଧିକାର କରି ଆସିଛି । ଭେଷଜ ବିଜ୍ଞାନରେ ଚ୍ୟବନ ଓ ଶଲ୍ୟ ଚିକିତ୍ସାରେ ଚରକଙ୍କ ନାମ ଶୁଣାଯାଉଥିଲେ ହେଁ ବେଦ ମଧ୍ୟରେ ଅଥର୍ବ ବେଦର ସ୍ଥାନ ଗୌଣ । ବିଜ୍ଞାନ ସମ୍ବନ୍ଧୀୟ ଜ୍ଞାନର ଆଧାର ଅଥର୍ବ ବେଦକୁ କେହି କେହି ବେଦ ବୋଲି ସ୍ୱୀକାର କରୁ ନ ଥିବା କଥା ମଧ୍ୟ ଶୁଣାଯାଏ । ଏଥିରେ ଆଶ୍ଚର୍ଯ୍ୟ ହେବାର ମଧ୍ୟ କିଛି ନାହିଁ, ଯେହେତୁ ଭାରତୀୟ ପରମ୍ପରା ସବୁଦିନ ବୈଷୟିକ ବିକାଶ ଅପେକ୍ଷା ଆଧ୍ୟାତ୍ମିକ ବିକାଶକୁ ଉଚ୍ଚ ଆସନ ଦେଇଆସିଛି ।

ଶିଳ୍ପ-ବିପ୍ଳବ ପରେ ଇଉରୋପରେ ଯେତେବେଳେ ଶିଳ୍ପ ବୈଷୟିକ ବିଜ୍ଞାନର ଅଭୂତପୂର୍ବ ଦ୍ରୁତ ବିକାଶ ଘଟିଲା ଦର୍ଶନ ଓ ବିଜ୍ଞାନ ଭିତରେ ପରୋକ୍ଷ ଭାବରେ ଦ୍ୱନ୍ଦ୍ୱ ଦେଖା ଦେଲା । ବିଜ୍ଞାନକୁ ବସ୍ତୁବାଦୀ ଓ ଜଡ଼ ବୋଲି ଭର୍ତ୍ସନା କରୁଥିବା ଦର୍ଶନକୁ ବିଜ୍ଞାନ ଫମ୍ପା, ସ୍ୱପ୍ନିଳ, ଅବାସ୍ତବ ବୋଲି ତାଚ୍ଛଲ୍ୟ କରିବାକୁ ଆରମ୍ଭ କଲା, ଆଉ ଆଧ୍ୟାତ୍ମିକ ଚିନ୍ତାକୁ ହେୟଜ୍ଞାନ କଲା ।

ଏବେ କିନ୍ତୁ ଅବସ୍ଥା ଆଉଥରେ ବଦଳିଯିବାକୁ ବସିଲାଣି ।

ଆଇନ୍‌ଷ୍ଟାଇନ୍‌ଙ୍କ ଆପେକ୍ଷିକ ତତ୍ତ୍ୱହିଁ ଦର୍ଶନ ଓ ବିଜ୍ଞାନର ପୁନର୍ମିଳନର ସୂତ୍ରପାତ କରିଛି ଓ ବୈଜ୍ଞାନିକକୁ ଧୀରେ ଧୀରେ ନୂତନ ଦିଗ୍‌ଦର୍ଶନ ଦେବାରେ ଲାଗିଛି । ସେ ଆଜି ବୁଝୁଛି ଯେ ସେ ଯେତେ ପ୍ରକୃତିର ନୂତନ ତଥ୍ୟ ସଂଗ୍ରହକରୁଛି, ନୂତନ ନିୟମ ଆବିଷ୍କାର କରୁଛି, ସେତିକି ନୂଆ ନୂଆ ପ୍ରଶ୍ନର ଧାରା ଛୁଟୁଛି ।

ନିଉଟନ୍ ପ୍ରଥମକରି ଆତ କାହିଁକି ତଳକୁ ଖସିଲା ତା'ର ଅନୁସନ୍ଧାନ କରିଥିଲେ । ତା' ପୂର୍ବରୁ କେହି ବୋଧହୁଏ ଭାବି ନ ଥିଲେ ଯେ ଆମ୍ବଗଛକୁ ଫିଙ୍ଗା ହୋଇଥିବା ଟେକା ଖଣ୍ଡକ ଶୂନ୍ୟକୁ ଉଡ଼ି ନଯାଇ ପୃଥିବୀକୁ ଫେରିଆସୁଛି କାହିଁକି ? ମାଧ୍ୟାକର୍ଷଣ ଶକ୍ତି ଓ ବସ୍ତୁର ଓଜନ ସେଦିନ ନିଉଟନ୍ ଆବିଷ୍କାର କରିଥିଲେ । ପ୍ରତ୍ୟେକ ମଣିଷ ଏବେ ବୁଝିଛି ଯେ ପୃଥିବୀର ମାଧ୍ୟାକର୍ଷଣ ଶକ୍ତିର ଠିକ୍ ବାହାରକୁ ଚାଲିଗଲେ ମଣିଷ ଆକାଶରେ ଭାସେ - ସାଟେଲାଇଟ୍ ଭିତରର ଦୃଶ୍ୟ ଚିତ୍ରରେ ଅନେକେ ଦେଖି ସାରିଛନ୍ତି । ଆଇନଷ୍ଟାଇନ୍ ତାଙ୍କ 'ରିଲେଟିଭିଟି ତତ୍ତ୍ୱ' ଦେବା ପର୍ଯ୍ୟନ୍ତ ବୈଜ୍ଞାନିକ ଭାବିନେଇଥିଲା ଯେକୌଣସି ବସ୍ତୁର ଓଜନ ମାଧ୍ୟାକର୍ଷଣ ଶକ୍ତି ଅନୁଯାୟୀ କମବେଶୀ ହେଲେ ମଧ୍ୟ ବସ୍ତୁତ୍ୱ ବା ମାସ୍‌ର ପରିବର୍ତ୍ତନ ହୋଇ ନପାରେ । ଆପେକ୍ଷିକବାଦ ପ୍ରମାଣ କଲା ଯେ ବସ୍ତୁକୁ ଶକ୍ତି

ପ୍ରଦାନକଲେ ଗତି ସଙ୍ଗରେ ବସ୍ତୁତ୍ୱ ମଧ ବଢ଼ି ଚାଲେ ଓ ଅତ୍ୟନ୍ତ ଗତିଶୀଳ ବସ୍ତୁକୁ ପ୍ରଦତ୍ତ ଶକ୍ତି କ୍ରମେ କ୍ରମେ ଗତି ଅପେକ୍ଷା ବସ୍ତୁତ୍ୱକୁ ବେଶୀ ବଢ଼ାଏ । ସୂର୍ଯ୍ୟରଶ୍ମିର ସେକେଣ୍ଡକୁ ୧,୮୬,୦୦୦ ମାଇଲଠାରେ ବସ୍ତୁକୁ ଶକ୍ତି ଯୋଗାଇ ଦେଲେ କେବଳ ବସ୍ତୁତ୍ୱ ବଢ଼େ, ଗତି ଆଉ ବଢ଼ିପାରେନି । ଶୂନ୍ୟ ବସ୍ତୁତ୍ୱ ଥିବା ଫୋଟନ କଣା - ଯାହାକି ସୂର୍ଯ୍ୟରଶ୍ମି - କେବଳ ଏହି ବେଗରେ ଗତିକରେ । ତେଣୁ ଯେକୌଣସି ବସ୍ତୁ ସେକେଣ୍ଡକୁ ୧୮୬୦୦୦ ମାଇଲରୁ ବେଶି ବେଗରେ ଗତି କରିପାରିବନି, ଆଉ ଏପରି ଗତିରେ ମଧ ଧ୍ରୁବ ତାରାକୁ ପହଞ୍ଚିବାକୁ ହେଲେ ପ୍ରାୟ ୩୦୦ ବର୍ଷ ଲାଗିଯିବ । ହିସାବକରି କୁହାଯାଏ ଯେ, ଏହି ବେଗରେ ଗଲେ ଆମ ନକ୍ଷତ୍ର ମଣ୍ଡଳର ସବୁଠାରୁ ଦୂରରେ ଥିବା ତାରାକୁ ପହଞ୍ଚିବାକୁ ୭୫୦୦୦ ବର୍ଷ ଲାଗିବ ଓ ଆଣ୍ଡ୍ରୋମେଡ଼ା ନକ୍ଷତ୍ର ମଣ୍ଡଳକୁ ପହଞ୍ଚି ଫେରି ଆସିବାକୁ ହେଲେ ସେକେଣ୍ଡକୁ ୧୮୬୦୦୦ ମାଇଲ ବେଗରେ ଗଲେ ୫,୦୦,୦୦,୦୦ ବର୍ଷ ଲାଗିବ । ତାଠାରୁ ଆହୁରି ଦୂରରେ ମଧ ନକ୍ଷତ୍ର ରାଜି ରହିଛନ୍ତି । ସେଇ ଆଇନଷ୍ଟାଇନଙ୍କ ତତ୍ତ୍ୱ ଅନୁସାରେ ଆଜି ଶକ୍ତି ଓ ବସ୍ତୁତ୍ୱ ଏକ ଅଭିନ୍ନ ହୋଇଯାଇଛି । ସମୟ ଓ ସ୍ଥାନ ମଧ୍ୟରେ ପ୍ରଭେଦ ଦୂର ହୋଇଯାଇ କାଳ ଓ ଆକାଶର ଶୂନ୍ୟ ଅଥବା ଆରମ୍ଭ ବିନ୍ଦୁର ଅସ୍ତିତ୍ୱର ସ୍ଥିତି ଜଣାପଡ଼ିବା ଉପରେ । କାଳ ନାହିଁ, ସ୍ଥାନ ନାହିଁ, ବସ୍ତୁତ୍ୱ ନାହିଁ, କେବଳ ଶକ୍ତିହିଁ ଶକ୍ତି - ଏହି ଧାରଣା ବୈଜ୍ଞାନିକକୁ ଦାର୍ଶନିକରେ ପରିଣତ କରିଦିଏ । ଯେଉଁଠାରୁ କାଳର ଜନ୍ମ, ମହାକାଶ ଓ ମହାଶୂନ୍ୟର ଜନ୍ମ, ଯିଏ ଅନାଦି ଶକ୍ତିର ଉତ୍ସ ଓ ଆଧାର ତାକୁ ହିଁ ଦର୍ଶନ ସେଦିନ ବ୍ରହ୍ମ ବା ମହାଶକ୍ତି ନାମରେ ନାମିତ କରିଥିଲା ଓ କହିଥିଲା ଯେ ପ୍ରତ୍ୟେକ ବସ୍ତୁରେ ବ୍ରହ୍ମର ସତ୍ତା ନିହିତ ।

ବିଜ୍ଞାନ ଆଜି ପ୍ରମାଣ କରି ଦେଇଛି ଯେ ବସ୍ତୁତ୍ୱ ଥିବା କୌଣସି ବସ୍ତୁ ବିଶ୍ୱର ଗୋଟିଏ କୋଣରୁ ଅନ୍ୟ ଗୋଟିଏ କୋଣକୁ ଯାଇ ପାରିବନି । ବୈଜ୍ଞାନିକ ମତରେ 'ଟେକାୟନ' ପରି କୌଣସି ବିଯୁକ୍ତ ବସ୍ତୁ ଅବସ୍ଥୁ କିମ୍ବା ପ୍ରତିବସ୍ତୁର ସାହାଯ୍ୟ ନନେଲେ ମଣିଷ ସମଗ୍ର ବିଶ୍ୱର ଅନୁସନ୍ଧାନ କରି ନପାରେ । ଏହି ଟେକାୟନ କୁଆଡ଼େ ସୂର୍ଯ୍ୟ ରଶ୍ମିର ଗତିଠାରୁ ଆହୁରି ବେଶି ଗତିଶୀଳ ହୋଇ ପାରିବ । ବୈଜ୍ଞାନିକର ମତରେ ଏହି ଅବସ୍ଥୁ 'ଇମାଜିନେରୀ' ଅଥବା କାଳ୍ପନିକ ବୋଲି ଜଣା ଯାଉଥିଲେ ହେଁ ତା'ର ଅସ୍ତିତ୍ୱ ରହିଛି । ମନ ବା କଳ୍ପନା ତ ମୁହୂର୍ତ୍ତରେ ବ୍ରହ୍ମାଣ୍ଡ ବୁଲି ଆସେ; ତେବେ କ'ଣ ମନ ଏପରି ଗୋଟାଏ 'ଟେକାୟନ୍' ? ଦାର୍ଶନିକ ଶରୀର ପରେ ସୂକ୍ଷ୍ମ ଶରୀରର ଅସ୍ତିତ୍ୱ ସ୍ୱୀକାର କରେ ।

ଏହି ସୂକ୍ଷ୍ମ ଶରୀର କ'ଣ ଅବସ୍ଥୁ ଯାହା କି ସହଜରେ ଗ୍ରହ ନକ୍ଷତ୍ର ଭ୍ରମଣ କରି ଆସିପାରେ ?

ଦୁଇଟି ରେଡ଼ିଓ ଯନ୍ତ୍ରକୁ ରେଡ଼ିଓ କହିଲେ ମଧ୍ୟ ଗୋଟିଏ ଶକ୍ତିଶାଳୀ ରେଡ଼ିଓ ପୃଥିବୀର ସବୁ ଷ୍ଟେସନକୁ ଧରୁଥିଲେ ହେଁ ଅନ୍ୟ କମ୍ ଶକ୍ତି ବିଶିଷ୍ଟ ରେଡ଼ିଓ ହୁଏତ ସିଲୋନ୍ ବି ଧରି ପାରେନି । ସେପରି ମଣିଷ ଏକ ହେଲେ ହେଁ ସାଧାରଣ ମନ ଓ ମସ୍ତିଷ୍କବାଲା ମଣିଷ ଏ ବିରାଟତ୍ୱର ଅନୁସନ୍ଧାନ କରି ପାରିବ ତ ?

ଦର୍ଶନ ସେଥିପାଇଁ ଦିନେ କହିଥିଲା ଯେ ବିରାଟତ୍ୱର ଅନୁସନ୍ଧାନ କରିବାକୁ ହେଲେ ମଣିଷକୁ ଆଗ ନିଜ ଭିତରର ଯନ୍ତ୍ରପାତିକୁ ଶକ୍ତିଶାଳୀ କରିବାକୁ ପଡ଼ିବ ।

ମଣିଷର ମସ୍ତିଷ୍କ କୁଆଡ଼େ ଯେପରି ଗୋଟିଏ ରିସିଭିଂ ଷ୍ଟେସନ ବା ଆହରଣ କେନ୍ଦ୍ର, ସେପରି ଗୋଟିଏ ଟ୍ରାନ୍ସମିଟିଂ ଷ୍ଟେସନ ବା ବିକୀରଣ କେନ୍ଦ୍ର । ଏହି ଟ୍ରାନ୍ସମିଟିଂ ଷ୍ଟେସନର ଅବସ୍ଥୁ ତରଙ୍ଗ ମାଳା କେବେ କ'ଣ ବ୍ରହ୍ମାଣ୍ଡର ଅନୁସନ୍ଧାନ କରିପାରେ ?

ଏହି ଅସୀମ ଓ ଅଚିନ୍ତ୍ୟର ଅନୁସନ୍ଧାନ କରିବାରେ ସକ୍ଷମ ହେଲା ପରି ଶକ୍ତିଶାଳୀ ମସ୍ତିଷ୍କବାନ୍ ମଣିଷର ଆବିର୍ଭାବ ହେଉ ନାହିଁ ତ !

ଆଜି ବିଜ୍ଞାନ ପୁଣି ଦର୍ଶନର ଦ୍ୱାର ଦେଶରେ ।

୧୯୦୫ରେ ଆଇନଷ୍ଟାଇନ୍ ଦେଇଥିବା ଗାଣିତିକ ତତ୍ତ୍ୱ ଆଜି ଧୀରେ ଧୀରେ ବୈଜ୍ଞାନିକର ଗବେଷଣାଗାରରେ ପ୍ରମାଣିତ ହେଉଛି । ମନେହୁଏ, ଦିନ ଆସିବ ଯେତେବେଳେ ଦର୍ଶନ ତତ୍ତ୍ୱ ଉପସ୍ଥାପନ କରିବ ଓ ବିଜ୍ଞାନ ତା'ର ପ୍ରମାଣର ଭାର ନେବ । ଏପରି ଦର୍ଶନ ଓ ବିଜ୍ଞାନର ସୁସ୍ଥ ସମନ୍ୱୟ ହିଁ ମଣିଷକୁ ତା'ର ଚରମ ବିକାଶ ଦେଇପାରିବ ।

ଆଜିର ଅନୁସନ୍ଧିତ୍ସୁ, ତେଣୁ ବୈଷୟିକ ଓ ସାମାଜିକ ବିଜ୍ଞାନର ଗବେଷଣାରେ ରତ ଥିବା ସଙ୍ଗେ ସଙ୍ଗେ ବିଜ୍ଞାନର ଦୃଷ୍ଟିକୋଣନେଇ ନିଜ ଅନ୍ତର୍ହିତ ଶକ୍ତିର ଅନୁସନ୍ଧାନ କରିବା ଉଚିତ ବୋଲି ମନେହୁଏ । ଏଥିରେ କୌଣସି ଅନ୍ଧବିଶ୍ୱାସର ସ୍ଥାନ ନାହିଁ ।

# ଶିକ୍ଷାନୀତି ବନାମ ରାଜନୀତି

ରାଜନୀତି ଓ ଶିକ୍ଷାନୀତିକୁ ତୁଳନା କରିବା ସହଜ ନୁହେଁ, ତଥାପି କୌତୂହଳ ଚରିତାର୍ଥ କରିବା ପାଇଁ ଯଦି ଏ ଦୁଇଟିକୁ ତୁଳନା କରାଯାଏ ତେବେ କେତେକ ଉଲ୍ଲେଖଯୋଗ୍ୟ ତାରତମ୍ୟ ଦେଖିବାକୁ ମିଳେ ।

ଗଣସମର୍ଥନ ଉପରେ ନିର୍ଭର କରୁଥିବାରୁ ଓ ଆଶୁ ଫଳଲାଭ ଅଭିଳାଷ ରଖୁଥିବାରୁ ରାଜନୀତି ଭବିଷ୍ୟତ ଅପେକ୍ଷା ବର୍ତ୍ତମାନ ଉପରେ ବିଶେଷ ଗୁରୁତ୍ୱ ଦେଇଥାଏ । ଏହି ଗଣ ସମର୍ଥନ ପାଇବା ନିମନ୍ତେ ଦରକାର ପଡ଼ିଲେ ସମୂହ ସ୍ୱାର୍ଥ ପାଇଁ ରାଜନୀତି ବ୍ୟକ୍ତିବିଶେଷର ସ୍ୱାର୍ଥକୁ ଅକାତରରେ ବଳିଦିଏ; ଏପରିକି ବ୍ୟକ୍ତିବିଶେଷର ପୁଞ୍ଜିଭୂତ ଧନକୁ ସର୍ବସାଧାରଣ ଭିତରେ ବାଣ୍ଟିଦେବାକୁ କୁଣ୍ଠାବୋଧ କରେ ନାହିଁ । ସାଧାରଣଭାବରେ କହିବାକୁଗଲେ ରାଜନୀତି ସବୁବେଳେ ସହଜ ଓ ସୁଗମ ତଥା ସମୟୋପଯୋଗୀ ଜନପ୍ରିୟ ପନ୍ଥା ଅନୁସରଣ କରିଥାଏ ।

ଶିକ୍ଷାନୀତିର ଆଭିମୁଖ୍ୟ କିନ୍ତୁ ଭିନ୍ନ । କ୍ରମବିକାଶ ଯେତେ କଠିନ ଓ କଷ୍ଟସାଧ ହେଲେ ମଧ ଜନପ୍ରିୟ ହେବା ଆଶାରେ ଶିକ୍ଷାନୀତି ଭବିଷ୍ୟତକୁ ଜଳାଞ୍ଜଳି ଦେଇ କୌଣସି ସହଜ ପନ୍ଥାର ଆଶ୍ରୟ ନେଇପାରେ ନାହିଁ । ଜନସମାଜର ସମୂହ କଲ୍ୟାଣକୁ ସମ୍ମାନ ଦେଉଥିଲେ ମଧ ଶିକ୍ଷାନୀତି ବ୍ୟକ୍ତିବିଶେଷର ଜ୍ଞାନାର୍ଜନଶକ୍ତିକୁ କେବଳ ଯେ ବିଶେଷ ସମ୍ମାନ ଦିଏ ତାହା ନୁହେଁ, ପରନ୍ତୁ ଏପରି ବ୍ୟକ୍ତିବିଶେଷଙ୍କ ପାଇଁ ଉତ୍ତରୋତ୍ତର ଓ ସମ୍ପୂର୍ଣ୍ଣ ଜ୍ଞାନ ଆହରଣର ସୁଯୋଗ ଓ ସୁବିଧାର ବ୍ୟବସ୍ଥା କରିଥାଏ । ବ୍ୟକ୍ତି ଓ ବ୍ୟକ୍ତି ଭିତରେ ଜ୍ଞାନର ବ୍ୟବଧାନ ଶିକ୍ଷାନୀତିରେ ସର୍ବତ୍ର ଗ୍ରହଣୀୟ, ତେଣୁ କୌଣସି ବ୍ୟକ୍ତି ବିଶେଷର ପୁଞ୍ଜିଭୂତ ଜ୍ଞାନକୁ ସର୍ବସାଧାରଣଙ୍କ ଭିତରେ ସମାନ ଭାବରେ ଧନ ବାଣ୍ଟିଲା ଭଳି ବାଣ୍ଟିଦେବା ପ୍ରଶ୍ନ ଶିକ୍ଷାନୀତିରେ ଉଠେ ନାହିଁ । ରୋଗୀର ଔଷଧପରି ଭବିଷ୍ୟତର ମଙ୍ଗଳ ନିମନ୍ତେ ବର୍ତ୍ତମାନର ସୁଖ ସୁବିଧାକୁ ଜଳାଞ୍ଜଳି ଦେଉଥିବାରୁ ଶିକ୍ଷାନୀତି ଅନେକ କ୍ଷେତ୍ରରେ ଅପ୍ରିୟ ହୋଇଥାଏ ।

ଏହି ପୃଷ୍ଠଭୂମିରେ ମାତୃଭାଷା ମାଧ୍ୟମରେ ଶିକ୍ଷାଦାନ ସମ୍ବନ୍ଧରେ କିଛି ଅପ୍ରିୟ ସତ୍ୟ କୁହାଯାଇ ପାରେ ।

ମାତୃଭାଷା ମାଧ୍ୟମରେ ଶିକ୍ଷାଦାନ ଯେ ସର୍ବଦା ସ୍ପୃହଣୀୟ ଏଥିରେ ସନ୍ଦେହ ନାହିଁ । କୌଣସି ଛୋଟ ଶିଶୁକୁ ତା'ର ନିଜ ମାତୃଭାଷାରେ ଶିକ୍ଷା ଦେଲେ ସେ ଯେ ଶୀଘ୍ର କଥାଟି ଧରିନେଇପାରିବ ଓ ତା'ର ମନର ଚିନ୍ତାଧାରାକୁ ନିଜ ଭାଷାରେ ସହଜ ସରଳ ଓ ସ୍ପଷ୍ଟଭାବରେ ପ୍ରକାଶ କରିପାରିବ, ଏ କଥା ବୁଝିବା ପାଇଁ କୌଣସି ବୈପ୍ଳବିକ ଚିନ୍ତାଧାରାର ସେପରି ଆବଶ୍ୟକତା ନାହିଁ, ବିଷୟଟି ବୁଝାଇବା ପାଇଁ ମଧ୍ୟ କୌଣସି ଜୋର ଦବରଦସ୍ତିର ଅବକାଶ ନାହିଁ । କିନ୍ତୁ ମାତୃଭାଷା ଯଦି ବିଶେଷ ଭାବରେ ଉନ୍ନତ ହୋଇ ନ ଥାଏ ତେବେ ଶିକ୍ଷାର କେଉଁ ସ୍ତରରେ ଓ କେଉଁ ପରିମାଣରେ ମାତୃଭାଷାକୁ ଶିକ୍ଷାର ମାଧ୍ୟମ ରୂପରେ ପ୍ରଚଳନ କରାଯାଇ ପାରେ ସେ ସମ୍ବନ୍ଧରେ ପ୍ରଶ୍ନ ଉଠେ ଓ ଭିନ୍ନ ଭିନ୍ନ ମତ ପୋଷଣକରିବାର ସମ୍ଭାବନା ଦେଖାଦିଏ ।

ଜନନୀ ଓ ଜନ୍ମଭୂମି ସ୍ୱର୍ଗଠାରୁ ଗରୀୟସୀ ସତ, ତେବେ ମା' ଯେତେ ପ୍ରିୟ ହେଲେ ମଧ୍ୟ ଶିକ୍ଷା ଦେବା ପାଇଁ ଦରକାରୀ ଜ୍ଞାନ, ଶିକ୍ଷା ଦେବାର ପ୍ରଣାଳୀ ତଥା ପଦ୍ଧତି ଜାଣି ନ ଥିଲେ ଯେପରି ନିଜ ପୁଅ ଝିଅଙ୍କ ଶିକ୍ଷୟିତ୍ରୀ ହୋଇ ପାରନ୍ତି ନାହିଁ, ମାତୃଭାଷା ଠିକ୍ ସେହିପରି ଯେତେ ପ୍ରିୟ ହେଲେ ମଧ୍ୟ ଶିକ୍ଷାର ମାନ ତୁଳନାରେ ଉନ୍ନତ ହୋଇ ନଥିଲେ ଶିକ୍ଷାର ମାଧ୍ୟମ ହୋଇ ନପାରେ ।

ତେଣୁ ଓଡ଼ିଆ ମାଧ୍ୟମରେ ଶିକ୍ଷାଦାନ ବିଷୟ ବିଚାର କଲାବେଳେ ଭାବପ୍ରବଣ ନହୋଇ ଓଡ଼ିଆ ଭାଷାର ମାନକୁ ଦୃଷ୍ଟିଦେଇ ବିଷୟଟିର ବିଚାର କରିବା ଉଚିତ । ତଥା ଓଡ଼ିଆ ଭାଷାକୁ ବିଶ୍ୱବିଦ୍ୟାଳୟ ସ୍ତରରେ ଶିକ୍ଷାର ମାଧ୍ୟମ କରିବାକୁ ଗଲେ ଭାଷାର ମାନ କିପରି ବୃଦ୍ଧି କରାଯାଇ ପାରେ ସେ ବିଷୟରେ ଚିନ୍ତା କରିବା ଦରକାର ।

ଅନ୍ୟାନ୍ୟ ଭାରତୀୟ ଭାଷା ପରି ଓଡ଼ିଆ ଭାଷା ବର୍ତ୍ତମାନ ମାନ ଯାହା, ସେଥିରେ ନୂତନ ଶବ୍ଦ ଆହରଣ କିମ୍ବା ସୃଷ୍ଟି ନ କଲେ ଓଡ଼ିଆ ମାଧ୍ୟମରେ ବିଜ୍ଞାନ ଓ କାରିଗରୀ ବିଦ୍ୟା ତଥା ସ୍ନାତକୋତ୍ତର ଶିକ୍ଷା ଦେବା ସମ୍ଭବପର ନୁହେଁ ।

ଶୁଣାଯାଏ ଯେ ଆମର ଆଦିକବି ସାରଳା ଦାସ ଯେତେବେଳେ ଓଡ଼ିଆରେ ମହାଭାରତ ଲେଖୁଥିଲେ ପ୍ରାୟ ସେତିକିବେଳେ ଇଂଲଣ୍ଡରେ ଚସର୍ ଇଂରାଜୀ ସାହିତ୍ୟର ମୂଳଦୁଆ ଦେଉଥିଲେ । ମାତ୍ର ପାଞ୍ଚଶହ ବର୍ଷ ତଳେ ଓଡ଼ିଆ ସାହିତ୍ୟ

ଇଂରାଜୀ ସାହିତ୍ୟ ଅପେକ୍ଷା ଅନେକ ସମୃଦ୍ଧ ଥିଲା । କିନ୍ତୁ ଏହି ପାଞ୍ଚଶହ ବର୍ଷ ଭିତରେ ଇଂରାଜୀ ଭାଷା ଯେତେବେଳେ ପୃଥିବୀର ପ୍ରାୟ ସବୁ ଭାଷାରୁ ଜ୍ଞାନ ଆହରଣ କରିବା ସଙ୍ଗେସଙ୍ଗେ ନୂଆ ନୂଆ ଶବ୍ଦ ସଂଗ୍ରହ କରି ତା'ର ସାହିତ୍ୟ ତଥା ବିଜ୍ଞାନ ଓ ବିଭିନ୍ନ କାରିଗରୀ ବିଦ୍ୟାକୁ ସମୃଦ୍ଧ କରି ନେଲା ଓ ପୃଥିବୀର ସର୍ବଶ୍ରେଷ୍ଠ ଭାଷାରେ ପରିଣତ ହୋଇଗଲା, ଓଡ଼ିଆଭାଷା ଗୋଟିଏ ପ୍ରାକୃତଭାଷା ହୋଇ ମଧ୍ୟ ସଂସ୍କୃତକୁ ଜାବୁଡ଼ି ଧରି ତା'ର ସ୍ଥିତାବସ୍ଥାରେ ହିଁ ରହିଗଲା ଓ ସମୟର ଗତି ସଙ୍ଗେ ନିଜକୁ ଖାପଖୁଆଇ ନପାରି ପଛରେ ପଡ଼ିଗଲା । ଇଂରାଜୀ ଭାଷା ଯେତେବେଳେ ଭାରତୀୟ ଶବ୍ଦ ସବୁ ଏପରିକି ନୂତନ ସୃଷ୍ଟ 'ଘେରାଉ'କୁ ମଧ୍ୟ ତା'ର ଅଭିଧାନରେ ସ୍ଥାନ ଦେଲା, ଓଡ଼ିଆ ଭାଷା ଇଂରାଜୀ ଶବ୍ଦ ତ ଦୂରର କଥା ନିଜ ପ୍ରଦେଶର ପ୍ରାୟ ଅଧାଅଧି ଅଂଶରେ କୁହାଯାଉଥିବା ସମ୍ବଲପୁରୀ ଓଡ଼ିଆ ଶବ୍ଦକୁ ମଧ୍ୟ ଗ୍ରହଣ କରିବାରେ କୁଣ୍ଠାବୋଧ କଲା ।

ବିଜ୍ଞାନ, ଭେଷଜ ଓ ଇଞ୍ଜିନିୟରିଂ ପ୍ରଭୃତି କାରିଗରୀ ବିଦ୍ୟା ତଥା ବିଭିନ୍ନ ସାମାଜିକ ବିଜ୍ଞାନରେ ଉଚ୍ଚଶିକ୍ଷା ପାଇଁ ଓଡ଼ିଆ ଛାତ୍ରମାନଙ୍କୁ ଯେପରି ଓଡ଼ିଶା ବାହାରକୁ ଯିବାକୁ ପଡ଼ିବ, ଓଡ଼ିଶା ବାହାରର ଛାତ୍ରମାନଙ୍କୁ ସେହିପରି ଓଡ଼ିଶାକୁ ଆସିବାକୁ ପଡ଼ିବ । ଉଚ୍ଚଶିକ୍ଷା କ୍ଷେତ୍ରରେ ଶିକ୍ଷକମାନଙ୍କ ଆଦାନ ପ୍ରଦାନ ମଧ୍ୟ ନିତାନ୍ତ ବାଞ୍ଛନୀୟ ।

ସାରା ଇଉରୋପ, ଆମେରିକା ଓ ରୁଷିଆ ପ୍ରଭୃତି ଦେଶମାନଙ୍କରେ ଯେପରି ବୈଜ୍ଞାନିକ ଶବ୍ଦ ସବୁ ପ୍ରାୟ ଇଂରାଜୀ ଶବ୍ଦ ସଙ୍ଗେ ସମାନ, କଥିତ କିମ୍ୱା ଲିଖିତ ଭାଷାରେ ପ୍ରଚଳିତ ଶବ୍ଦର ଅଭାବ ଥିଲେ ଓଡ଼ିଆଭାଷା ତଥା ଭାରତର ଅନ୍ୟାନ୍ୟ ପ୍ରାକୃତଭାଷା ସବୁ ଯଦି ମୂଳ ସଂସ୍କୃତିରୁ ଶବ୍ଦ ସୃଷ୍ଟି ନ କରି ପ୍ରଚଳିତ ଇଂରାଜୀ ଶବ୍ଦକୁ ନିଜ ଭାଷାରେ ଗ୍ରହଣ କରି ନିଅନ୍ତି ତେବେ ଓଡ଼ିଆ ଭାଷା ମାଧ୍ୟମରେ ଶିକ୍ଷା ଦେବା ଯେପରି ସହଜ ହେବ, ଓଡ଼ିଆ ଛାତ୍ରମାନଙ୍କୁ ସେପରି ବାହାରକୁ କିମ୍ୱା ବିଦେଶକୁ ଉଚ୍ଚଶିକ୍ଷା ପାଇଁ ଗଲେ ନୂତନ ଶବ୍ଦ ଶିକ୍ଷା ଦରକାର ପଡ଼ିବ ନାହିଁ ଓ ଅଳ୍ପ ସମୟ ମଧ୍ୟରେ ଯେ କୌଣସି ଭାରତୀୟ ଭାଷା ତଥା ବିଦେଶୀୟ ଭାଷା ଶିଖିବାକୁ ସହଜ ହେବ ।

ଦୁଃଖର କଥା, ହିନ୍ଦୀ ଭାଷାର ତଥାକଥିତ ପ୍ରଗତିଶୀଳ ଜାତୀୟତାବାଦୀ ହିନ୍ଦୀଭାଷାନ୍ଧ ଶିକ୍ଷାବିତ୍‌ମାନେ ଏବେ ଶବ୍ଦ ଜାଲର ନୂତନ ସୃଷ୍ଟି ଆରମ୍ଭ କରିଦେଇଛନ୍ତି । ସେ ଜାଲରେ ଅନ୍ୟାନ୍ୟ ଭାରତୀୟ ଭାଷା ସହ ଓଡ଼ିଆ ଭାଷା

ମଧ୍ୟ ଛନ୍ଦି ହେବାକୁ ବସିଲାଣି । ନେକ୍‌ଟାଇକୁ କଣ୍ଠ ଲଙ୍ଗୋଟ, ସିମେଣ୍ଟକୁ ବଜ୍ରଚୂର୍ଣ୍ଣ, ଅକ୍ସିଜେନକୁ ପ୍ରାଣବାୟୁଠାରୁ ଆରମ୍ଭ କରି ଆସିଷ୍ଟାଣ୍ଟ ସର୍ଜନକୁ ବେସାମରିକ ସହାୟକ ଶଲ୍ୟ ଚିକିତ୍ସକ ପରି ହିନ୍ଦୀରେ ଯେପରି ନୂତନ ଶବ୍ଦର ସୃଷ୍ଟି ହେଲାଣି, ଓଡ଼ିଆରେ ସେଇପରି 'ପେଣ୍ଡୁ ନାଚ, ଯନ୍ତ୍ରୀ' ପ୍ରଭୃତି ଆକ୍ଷରିକ ଅନୁବାଦ ଦ୍ୱାରା ଉଦ୍ଭଟ ଶବ୍ଦ ସୃଷ୍ଟି ଆରମ୍ଭ ହୋଇଛି । ଶୁଣାଯାଏ ଯେ ରେଲ୍‌ୱେ ସିଗନାଲକୁ ହିନ୍ଦୀ ଭାଷା ବିଶାରଦମାନେ 'ଯାବତ ଆବତ ବାଷ୍ପୀୟ ଶକଟ ପଥ ନିର୍ଦ୍ଦେଶକ ଉଠତ ପଡ଼ତ ଲୌହଶଳାକା' ଓ ଟେନିସ ଖେଳ ପ୍ରତିଯୋଗିତାକୁ 'ଜମିନ୍‌କେ ଉପର, ଆସମାନ୍‌କେ ନୀଚେ, ଲେ ପଟାପଟ୍ ଦେ ପଟାପଟ୍ କ୍ରୀଡ଼ା ପ୍ରତିଯୋଗିତା' ବୋଲି ବର୍ଣ୍ଣନା କଲେଣି । ଆମେ ବି ଯଦି ଏପରି ଶବ୍ଦ ମାଳା ସୃଷ୍ଟି ଆରମ୍ଭ କରୁଁ ତେବେ ଆମକୁ ବିଜ୍ଞାନ, କାରିଗରୀ ବିଦ୍ୟା ତଥା ସ୍ନାତକୋତ୍ତର ଶିକ୍ଷା ବଦଳରେ ମେଟ୍ରିକୁଲେଶନ ପରେ କେତେବର୍ଷ ପାଇଁ ଅମରକୋଷ ପରି ଭାଷାକୋଷ ମାତ୍ର ଶିଖାଇବାକୁ ପଡ଼ିବ ।

ଏହା ପ୍ରଗତି ନା ପଶ୍ଚାଦ୍‌ଗତି ?

ଆମେ ଯଦି ଏ ଅବସ୍ଥାକୁ ବିନା ପ୍ରଶ୍ନରେ ଗ୍ରହଣ କରି ନେଉ ତେବେ ତାହା ଶିକ୍ଷାନୀତି ହେବ ନା ରାଜନୀତି ?

# ଏରଣ୍ଡୋପି

'ପାଦପ' ନ ଥିବା ଦେଶରେ 'ଏରଣ୍ଡ' ମଧ୍ୟ 'ଦ୍ରୁମାୟତେ' ବୋଲି ଗୋଟିଏ ପ୍ରବାଦ ରହିଛି । ପରର ଛିଦ୍ର ଖୋଜିବାରେ ଯେଉଁମାନେ ସଦାସର୍ବଦା ବ୍ୟସ୍ତ ତଥା ଅଭ୍ୟସ୍ତ ସେପରି ଛିଦ୍ରାନ୍ବେଷୀ ବା ଛିଦ୍ରିଆମାନେ ଯେ ଏ ପ୍ରବାଦର ସୃଷ୍ଟିକର୍ତ୍ତା ଏଥିରେ ସନ୍ଦେହ ନାହିଁ ।

ବଣଜଙ୍ଗଲପରିପୂର୍ଣ୍ଣ ଓ ପାଦପବହୁଳ ଅଞ୍ଚଳରେ ଥିବା ଜଡ଼ାଗଛ ଉପରେ ହଂସ କିମ୍ବା ଲୋଟଣୀ ପାରା ନବସିଲେ ମଧ୍ୟ ବେଳେବେଳେ କାଉଟିଏ, ବଣିଟିଏ ଅଥବା ବଗଟିଏ ବସେ । କ୍ଷେତହୁଡ଼ାର ତା'ର ସୀମିତ ଛାୟାତଳେ କୌଣସି ଶ୍ରାନ୍ତ ପଥିକ ବିଶ୍ରାମ ନନେଲେ ମଧ୍ୟ ଶାଗ ଓ ପଖାଳ କଂସା ଧରି କୃଷକ ଘରଣୀ ହଳ କରୁଥିବା ତା' ଗେରସ୍ତକୁ ଅନାଇ ରହିଲାବେଳେ କେବେକେବେ ସେ ଛାଇର ଆଶ୍ରା ନିଏ । ତେଣୁ ପାଦପ ଥାଉ ବା ନଥାଉ ଯେକୌଣସି ଦେଶରେ ଏରଣ୍ଡ ନ୍ୟାୟତଃ ଓ ସ୍ବୀୟ ଅଧିକାର ବଳରେ ଗୋଟିଏ ଗଛ - ଲତା ନୁହେଁ କି ଗୁଳ୍ମ ନୁହେଁ । ହୋଇପାରେ ତା'ର ଶାଖା ପ୍ରଶାଖା ଟିକିଏ ସରୁ - ଆଉ ଏହା ମଧ୍ୟ ହୋଇପାରେ ଯେ ବଟବୃକ୍ଷର ଜୀବନ ତୁଳନାରେ ତା' ଜୀବନ କ୍ଷଣସ୍ଥାୟୀ, ତଥାପି ବୃକ୍ଷସମାଜରେ ସେ ନିଜକୁ ହୀନ ମନେକରିବ କାହିଁକି ? ସର୍ବସାଧାରଣରେ ନିଜକୁ ଗୋଟିଏ ରୀତିମତ ଗଛ ବୋଲି ପରିଚିତ କରାଇବାକୁ ଚେଷ୍ଟା ନକରିବ କାହିଁକି ? ସେ ଚେଷ୍ଟାରେ ଦେଖେଇହେବାର ସୂଚନା କାହିଁ ଯେ ତାକୁ 'ଦ୍ରୁମାୟତେ'ର ଅପବାଦ ଦିଆହେବ ? ତଥାପି ତାକୁ ଯଦି ବିଦ୍ରୂପ କରାଗଲା ଓ ଅପବାଦ ଦିଆଗଲା, ସେଥିରେ ବିଚରା ଜଡ଼ାଗଛର ଚାରା କ'ଣ ? ସେ ନ୍ୟାୟରେ ତ ଜଣେ ସରୁ ମଣିଷକୁ କେହି ମୋଟା 'ମଣିଷାୟତେ' ବୋଲି ବିଦ୍ରୂପ କରିପାରେ ।

ସାହିତ୍ୟ ଜଗତରେ ପାଠକ ଏପରି ଗୋଟିଏ ଦ୍ରୁମାୟତେ ଅଭିଯୁକ୍ତ ଏରଣ୍ଡ କି କେବଳ ଗୋଟିଏ ମଧୁମକ୍ଷିକା କିମ୍ବା ଆଉ କିଛି, ସେ ସମ୍ବନ୍ଧରେ ନାନାବିଧ ମତ ଶୁଣିବାକୁ ମିଳେ ।

ସାହିତ୍ୟିକ ତା'ର ସୃଷ୍ଟି ଚେତନା ନେଇ କୁଆଡ଼େ ରସ ସୃଷ୍ଟିକରିଯାଏ। ସେହି ସୃଷ୍ଟି ଭିତରେ ସେ ଏପରି ନିମଜ୍ଜି ରହେ ଯେ କ'ଣ ଚିନ୍ତା କରୁଛି ବା କ'ଣ ଲେଖୁଛି ସେ କଥା ନିଜେ ମଧ୍ଯ ଜାଣିପାରେନି। ସ୍ରଷ୍ଟା ଓ ସୃଷ୍ଟି ଏକୀଭୂତ ହୋଇଯିବା ଫଳରେ ରସର ପ୍ରକାର ଗୁଣ ଅଥବା ଭେଦ ସମ୍ବନ୍ଧରେ ସେ ସମ୍ପୂର୍ଣ୍ଣ ଅଚେତନ ହୋଇପଡ଼େ। ତେଣୁ ତା'ର ସେ ସୃଷ୍ଟିରୁ ମକରନ୍ଦ ଗଲେ କି ବିଷ ଝରେ ସେ କଥା ନିଜେ ବି ବୁଝିପାରେନି। ସେଥିପାଇଁ ତା'ର ସାତଖୁଣ ମାଫ୍। ଏହି ସୁଯୋଗ ନେଇ ବେଳେବେଳେ କେହିକେହି ସାହିତ୍ୟିକ-କାଉ ଅନ୍ୟର ପୁଚ୍ଛ ଆଣି ନିଜ ଦେହରେ ଖଞ୍ଜିବାକୁ ଚେଷ୍ଟା କରନ୍ତି।

ସାହିତ୍ୟିକର ସୃଷ୍ଟି ଅମୃତ ପୂର୍ଣ୍ଣ କି ଗରଳଭରା - ସେ କଥା କହିବାକୁ କୁଆଡ଼େ ସମାଲୋଚକ ହିଁ ହକଦାର୍।

ସମାଲୋଚକ ଚଷମା ପିନ୍ଧିବା ବଦଳରେ ଗୋଟିଏ ଆଖିରେ ଅଣୁବୀକ୍ଷଣ ଯନ୍ତ୍ର ଓ ଅନ୍ୟ ଆଖିରେ ଦୂରବୀକ୍ଷଣ ଯନ୍ତ୍ର ଖଞ୍ଜି ତା'ର ଭାବ ଚେତନା ତଥା ଜ୍ଞାନର ଗଭୀରତା ବଳରେ ସାହିତ୍ୟିକର ସେହି ଅଚେତନ ସୃଷ୍ଟିକୁ ଛିନ୍ନଭିନ୍ନ କରି ଝୁଣି ପକାଏ ଓ ସେ ଭିତରେ ନିର୍ଲଜ୍ଜ ଭାବରେ ନାଚିକୁଦି ବୁଲୁଥିବା ଅଥବା ସଲଜ୍ଜ ବଦନରେ ଲୁଚି ରହିଥିବା ନାୟକର ବେଶଭୂଷା ଢଙ୍ଗରଙ୍ଗ ତଥା ନାୟିକାଙ୍କ ଚାଲିଚଳଣ ଆଉ ଏପରିକି ପଣତକାନିର ଡିଜାଇନ୍ ପର୍ଯ୍ୟନ୍ତ ବାହାରକରି ପଦାରେ ପକାଇବାକୁ ଚେଷ୍ଟାକରେ।

ବଣିଆ ଯେପରି ଗହଣାରେ କେତେ ସୁନା ଅଛି ଆଉ କେତେ ଖାଦ ମିଶିଛି କଷଟି ପଥର ସାହାଯ୍ୟରେ ଧରି ନିଏ, ଆଉ ବେଳେବେଳେ ଦେଖିଲାକ୍ଷଣି ମଧ୍ଯ ସେ କଥା ଜାଣିଯାଏ, ସମାଲୋଚକ ସେପରି କୌଣସି ଲେଖା ଯେତେ ଚକ୍‌ଚକ୍ କରୁଥିଲେ ମଧ୍ଯ ତାହା ଖାଣ୍ଟି କି କଲେଇ କରା, ଭଲ କି ଭେଜାଲ ସହଜରେ ଚିହ୍ନିପାରେ। ଅନ୍ୟ କୌଣସି ରସରେ ଆପ୍ଲୁତ ହୋଇ ଚେତନା ହରାଇଥିବା କୌଣସି ଭଣ୍ଡ ଯଦି ସୃଷ୍ଟି ରସରେ ଆପ୍ଲୁତ ଜଣେ ସାହିତ୍ୟିକ ବୋଲି ଛଳନା କରୁଥାଏ, ସେ ସମାଲୋଚକର ଶକ୍ତିଶାଳୀ ଅନ୍ତର୍ଦୃଷ୍ଟି ଏଡ଼ାଇ ପାରେନି - ଧରା ପଡ଼ିଯାଏ। ତେଣୁ ସମାଲୋଚକକୁ ସମସ୍ତେ ଯେତିକି ଖାତିର କରନ୍ତି ସେତିକି ଭୟ କରନ୍ତି ମଧ୍ଯ। ଦୁର୍ଭାଗ୍ୟକ୍ରମେ କେହିକେହି ସମାଲୋଚକ ଏହି ସୁବିଧାର ସୁଯୋଗ ନେଇ ଧଳାକୁ କଳା ଓ କଳାକୁ ଧଳା କରିବାର ଚେଷ୍ଟା କରନ୍ତି ଏବଂ ନିଜେ ଜଣେ ସାହିତ୍ୟିକ ହୋଇଥିଲେ ଅଥବା କୌଣସି ନିର୍ଦ୍ଦିଷ୍ଟ ଗୋଷ୍ଠୀର ସପକ୍ଷବାଦୀ ହୋଇଥିଲେ ଫାଇଦା ଉଠାଇବାକୁ ଚେଷ୍ଟା କରନ୍ତି।

ଆଉ ପାଠକ ?

ପୃଥିବୀର ପ୍ରାୟ ପ୍ରତ୍ୟେକ ଉନ୍ନତ ଭାଷାରେ ପାଠକର ସ୍ଥାନ ବିବାହ ଶୋଭାଯାତ୍ରାରେ ବରର ସ୍ଥାନ ସଦୃଶ ହେଲେ ହେଁ ଆମ ଓଡ଼ିଆ ପାଠକର ସ୍ଥାନ କୌଣସି ଭୋଜିରେ ଜଣେ ଅନିମନ୍ତ୍ରିତ ଭୋଜିଖିଆ ଲୋକଠାରୁ ମଧ୍ୟ ହୀନ । ସେ ଯଦି କୌଣସି ମନ୍ତବ୍ୟ ନ ଦେଇ ଲେଖାର ରସ ଆସ୍ୱାଦନ କରିଯାଏ ତେବେ ପଢ଼ିଲାବେଳେ ଗୁଣୁଗୁଣୁ କରୁ ବା ନକରୁ ସେ ହୁଏ ମଧୁମକ୍ଷିକା । ଯଦି, ବୁଝୁ ବା ନବୁଝୁ, ଲେଖାର ତାରିଫ୍ କରିଯାଏ ସେ ହୁଏ ବିଦଗ୍ଧ ପାଠକ, ସାହିତ୍ୟ ରସିକ, ସାହିତ୍ୟାନୁରାଗୀ ଓ ସାହିତ୍ୟ ପ୍ରେମୀ । ସେ ଯଦି କହେ ଯେ କୌଣସି ଲେଖା ଦୁର୍ବୋଧ ସେ ହୁଏ ଜରଦ୍‌ଗବ । ଆଉ ସେ ଯଦି କୌଣସି ଲେଖାକୁ ଅଲଣା, ପାଣିଚିଆ, ଲୁଣିଆ କିମ୍ବା ଆମ୍ବିଳିଆ ବୋଲି କହିଦିଏ ସେ ହୁଏ ନିଜକୁ ଦ୍ରୁମ ବୋଲି ମନେ କରୁଥିବା ଗୋଟିଏ ଏରଣ୍ଡ ।

ରନ୍ଧନ କ୍ରିୟାରେ ପାଚକ ତା'ର ସମଗ୍ର ସୃଷ୍ଟି ଚେତନା ନେଇ ଡାଲି, ତରକାରି, ବେସର, ଛେଞ୍ଚଡ଼ା ସୃଷ୍ଟି କରି ଚାଲେ । ସେ ଯଦି ସାହିତ୍ୟିକ ପରି ନିଜ ରସରେ ନିଜେ ଉବୁଟୁବୁ ହୋଇ ଲୁଣ ଦେଉଛି ତ ଦେଉଥାଏ କିମ୍ବା ଘାଣ୍ଟୁଛି ତ ଘଣ୍ଟା ଘଣ୍ଟା ଧରି ଘାଣ୍ଟୁଥାଏ ତେବେ ସେ ସୃଷ୍ଟିର ଫଳାଫଳ ସମ୍ବନ୍ଧୀୟ ବିଚାର ମୀମାଂସା କେବଳ ଭୋକ୍ତା ହିଁ କରେ । ଭୋକ୍ତା ତେଣୁ କେବଳ ଯେ ଉପଭୋଗୀ ତା' ନୁହେଁ, ସେ ହୁଏ ରନ୍ଧନର ଏକମାତ୍ର ଓ ସର୍ବଶେଷ ସମାଲୋଚକ, ସମୀକ୍ଷକ ତଥା ବିଚାରକ ।

ସାହିତ୍ୟ କ୍ଷେତ୍ରରେ କିନ୍ତୁ ପାଠକ ସାହିତ୍ୟର ରସଗ୍ରହୀତା ହେଲେ ମଧ୍ୟ ତା'ର ସମାଲୋଚନା କରିବାର ଅଧିକାରକୁ ଅସ୍ୱୀକାର କରାଯାଏ । ଏକଥା ନିଶ୍ଚିତ ଯେ 'ଜୀବନ ବିହୁନେ ଯେହ୍ନେ ଝଶ', ପାଠକ ବିନୁ ସାହିତ୍ୟ ପ୍ରାୟ ସେପରି । ସାହିତ୍ୟ ସୃଷ୍ଟିହୁଏ ମୁଖ୍ୟତଃ ପାଠକ ପାଇଁ । ତେଣୁ ଲବ୍ଧପ୍ରତିଷ୍ଠ ଖ୍ୟାତନାମା କିମ୍ବା ବୃଷାଳ ସାହିତ୍ୟିକ ଅଥବା ବିଜ୍ଞ ସମାଲୋଚକ ନହୋଇ ମଧ୍ୟ ପାଠକ ତା'ର ପାଠ୍ୟବସ୍ତୁ ସମ୍ବନ୍ଧରେ ଦୁଇ ଚାରି ପଦ କହିପାରେ । ଏହା ତା'ର ହକ୍, ତଥା ମୌଳିକ ଅଧିକାର । ଏହି ଦୃଷ୍ଟିକୋଣରୁ ଏଠାରେ ସାମ୍ପ୍ରତିକ ଓଡ଼ିଆ ସାହିତ୍ୟ ସମ୍ବନ୍ଧରେ କିଛି ଆଲୋଚନା କରାଯାଇ ପାରେ ।

କୌଣସି ସର୍ବସମ୍ମତ ସଂଜ୍ଞା ନ ଥିବାରୁ ସାହିତ୍ୟ କହିଲେ ଠିକ୍ କ'ଣ ବୁଝାଏ ସେ କଥା କହିବା ସହଜ ନୁହେଁ । କେହିକେହି କହନ୍ତି ଯେ ଯାହା ମଣିଷର

ହିତସାଧନ କରେ ତାହା ହିଁ ସାହିତ୍ୟ । ଅନ୍ୟ କାହାରି ମତରେ ଯାହା ମଣିଷ ସହିତ ଚିରଦିନ ରହି ଆସିଛି ତାହା ସାହିତ୍ୟ । ପୁଣି କେହି ଯେତେବେଳେ କହନ୍ତି ଯେ ମଣିଷର ସଚେତନ ତଥା ଅବଚେତନ ମାନସରେ ସଞ୍ଚିତ ଜୀବନ ଅନୁଭୂତି ସମୂହର ପରିପ୍ରକାଶ ହିଁ ସାହିତ୍ୟ, ଅନ୍ୟ କେହି କହେ ଯେ ଭାଷା ମାଧ୍ୟମରେ ସୌନ୍ଦର୍ଯ୍ୟ ଓ ରସସୃଷ୍ଟି ହିଁ ସାହିତ୍ୟ । ଏସବୁ ପ୍ରତ୍ୟେକ ସଂଜ୍ଞା ଭଣା ଅର୍ଦ୍ଧିକେ ଠିକ୍ ବୋଲି ଧରି ନିଆଯାଇ ପାରେ । ଯେଉଁମାନେ କେବଳ ସୌନ୍ଦର୍ଯ୍ୟ ସୃଷ୍ଟି ଉପରେ ଓ ରସ ସୃଷ୍ଟି ଉପରେ ଗୁରୁତ୍ୱ ଦିଅନ୍ତି ସେମାନଙ୍କ ମତରେ ଯାହା ମଣିଷ ହୃଦୟରେ ଆନନ୍ଦର ଲହରୀ ଖେଳାଏ ମନରେ ବିବିଧ ରସର ସଞ୍ଚାର କରେ ତାହା ହିଁ ସାହିତ୍ୟ । ସେଥିରେ ବିଷୟବସ୍ତୁ ଥାଇପାରେ ବା ନ ଥାଇପାରେ ଓ ଯଦି ବା ଥାଏ ତେବେ ବିଷୟଟି ଅନୁଭୂତି ପ୍ରସୂତ ହୋଇପାରେ ଅଥବା କଳ୍ପନା ପ୍ରସୂତ ହୋଇପାରେ । ଅପର ପକ୍ଷରେ ଯେଉଁମାନେ ଜୀବନ ଓ ସାହିତ୍ୟ ଅଙ୍ଗାଙ୍ଗୀଭାବରେ ଜଡ଼ିତ ବୋଲି ଗ୍ରହଣ କରନ୍ତି, ସେମାନେ ବିଷୟବସ୍ତୁ ବିନା ସାହିତ୍ୟର କଳ୍ପନା କରିପାରନ୍ତିନି । ସେମାନଙ୍କ ମତରେ ବିଷୟବସ୍ତୁ ହିଁ ସାହିତ୍ୟର ଜୀବନ । ସାହିତ୍ୟର ଯେଉଁ ଅଂଶ ସୌନ୍ଦର୍ଯ୍ୟ ସୃଷ୍ଟି କରେ ତାହା କେବଳ ତା'ର ଶରୀର ତଥା ଶରୀରର ପୋଷାକ ପରିଚ୍ଛଦ ଓ ବେଶବିନ୍ୟାସର ପରିପାଟୀ ।

ପାଶ୍ଚାତ୍ୟ ଜୀବନଧାରା ବସ୍ତୁବାଦୀ, କିନ୍ତୁ ଭାରତୀୟ ଜୀବନ ଦର୍ଶନ ଆଧ୍ୟାତ୍ମିକତା ଉପରେ ପ୍ରତିଷ୍ଠିତ । ତେଣୁ ଭାରତୀୟ ସାହିତ୍ୟର ଆଭିମୁଖ୍ୟ ମୁଖ୍ୟତଃ ଆଧ୍ୟାତ୍ମିକ ହେବା ସ୍ୱାଭାବିକ । ସେ ସାହିତ୍ୟ ବିଷୟବସ୍ତୁ ବିହୀନ ହେବା ସମ୍ଭବ ନୁହେଁ । ଆଧ୍ୟାତ୍ମିକତା ଯେହେତୁ ପରମ ଆନନ୍ଦର ହିଁ ସନ୍ଧାନୀ, ଭାରତୀୟ ସାହିତ୍ୟିକ ପରମ୍ପରା ଆଧ୍ୟାତ୍ମିକତା ଉପରେ ପ୍ରତିଷ୍ଠିତ ହୋଇ ମଧ୍ୟ ଆନନ୍ଦ ଦାନ ଓ ସୌନ୍ଦର୍ଯ୍ୟ ଉପାସନା ଉପରେ ଗୁରୁତ୍ୱ ଦିଏ । ଏ ସୌନ୍ଦର୍ଯ୍ୟ କିନ୍ତୁ ନୈସର୍ଗିକ ଓ ଏ ଆନନ୍ଦ କ୍ଷଣସ୍ଥାୟୀ ଲାଳସାଭରା ଇନ୍ଦ୍ରିୟବିଳାସ ନୁହେଁ । ତେଣୁ ଭାରତୀୟ ପରମ୍ପରାରେ କାମନାଦୀପ୍ତ ଅଶ୍ଳୀଳତା ଓ ସାହିତ୍ୟ ପରସ୍ପର ବିରୋଧୀ ।

ସାହିତ୍ୟର ସଂଜ୍ଞା ଯାହା ହେଉନା କାହିଁକି ଏହା ନିଶ୍ଚିତ ଯେ ମଣିଷର ମନ ଓ ଚେତନାକୁ ଉର୍ଦ୍ଧ୍ୱମୁଖୀ କରିବା ହିଁ ଏହାର ମୌଳିକ ଧର୍ମ ।

ଯୋଗ ଓ ଦର୍ଶନ ସାହିତ୍ୟର ସମଧର୍ମୀ । କିନ୍ତୁ ଯୋଗଦର୍ଶନ ଗୁରୁ ଆଶ୍ରୟୀ, ସାଧନା ନିର୍ଭରଶୀଳ ଓ କଷ୍ଟସାଧ୍ୟ । ସଙ୍ଗୀତ ଓ କଳା ମଧ୍ୟ ସାହିତ୍ୟର ସମଧର୍ମୀ - ଶ୍ରବଣ ମାଧ୍ୟମରେ ଓ ଦୃଷ୍ଟି ମାଧ୍ୟମରେ ମନ ଚେତନାକୁ ଉର୍ଦ୍ଧ୍ୱଗାମୀ କରିବା ସେ

ସବୁର ଲକ୍ଷ୍ୟ। ଏସବୁ ମଧ୍ୟରେ ସାହିତ୍ୟ ସର୍ବଶ୍ରେଷ୍ଠ ଯେହେତୁ ଏହା ସରଳ, ସହଜ ବୋଧଗାମୀ, ରଚିକର ଓ ସୁଖପ୍ରଦ - ଭାଷାର ଚାତୁରୀ ମାଧ୍ୟମରେ ବର୍ଣ୍ଣନାର କୌଶଳ, ଶବ୍ଦ ପ୍ରୟୋଗ ଓ ଧ୍ୱନି ମଧ୍ୟ ଦେଇ ଦର୍ଶନ, କଳା, ସଙ୍ଗୀତ ସବୁକୁ ନିଜ ବେଷ୍ଟନୀ ଭିତରକୁ ଅକ୍ଲେଶରେ ନେଇ ଆସିପାରେ। ଏଣୁ ସାହିତ୍ୟ ହୁଏ ସର୍ବଜନ ଆଦୃତ - ମଣିଷ ସମାଜରେ ଗଣଶିକ୍ଷାର ସର୍ବଶ୍ରେଷ୍ଠ ମାଧ୍ୟମ।

ଜଗନ୍ନାଥ ଦାସଙ୍କ ଭାଗବତ ଏହାର ସର୍ବୋତ୍କୃଷ୍ଟ ଉଦାହରଣ। ତହିଁର ଭାଷା ସରଳ ଓ ସୁନ୍ଦର। ବିଷୟବସ୍ତୁ ଭାବପୂର୍ଣ୍ଣ ଓ ଶିକ୍ଷାପ୍ରଦ। ସ୍ଥଳ ବିଶେଷରେ ଯୁଗଧର୍ମୀ ହେଲେ ହେଁ ଶାଶ୍ୱତ ଓ ଚିରନ୍ତନୀ। ତହିଁର କେତୋଟି ପଦ ନମୁନା ସ୍ୱରୂପ ଏଠାରେ ଦିଆଯାଇପାରେ।

(ଶ୍ରୀକୃଷ୍ଣ ମଥୁରାକୁ ଚାଲିଗଲା ପରେ ଗୋପୀମାନେ ଅଭିମାନରେ ଉଦ୍ଧବ ଆଗରେ ଅଭିଯୋଗ କରୁଛନ୍ତି।) -

ଯାବତ ଥାଇ ଅର୍ଥଲାଭ। ତାବତ ଥାଇ ପ୍ରିୟ ଭାବ॥

× × ×

କୁସୁମେ ଯେମନ୍ତ ଭ୍ରମର। ମଧୁ ପାଇଣ ଯାଇ ଦୂର॥
ସୁନ୍ଦର ପୁରୁଷ ନିର୍ଦ୍ଧନ। ଗଣିକା ଛାଡ଼ଇ ଯେସନ॥

× × ×

ବିଦ୍ୟା ପାଇଲେ ଶିଷ୍ୟ ଗୁରୁ। ସେ ଯେହ୍ନେ ତେଜନ୍ତି ମନରୁ॥
ଦକ୍ଷିଣା ପାଇ ବିପ୍ରଜନେ। ଯେହ୍ନେ ଛାଡ଼ନ୍ତି ଯଜମାନେ॥
ଫଳ ସରିଲେ ବୃକ୍ଷ ଛାଡ଼ି। ପକ୍ଷୀଏ ଯାନ୍ତି ଯେହ୍ନେ ଉଡ଼ି॥

× × ×

ଅତିଥି ଯେହ୍ନେ ଖାଇ ପିଇ। ପଦେ ନ ପୁଛି ଚଳି ଯାଇ॥
ପୋଡ଼ିଲା ବନ ପଶୁ ରଣେ। ଛାଡ଼ି ପଳାନ୍ତି ଅନ୍ୟ ବନେ॥

× × ×

ତେମନ୍ତ କଲେ ବନମାଳି। ଛାଡ଼ି ସକଳ ଗୋପବାଳୀ॥

(ଭାଗବତ ଦଶମସ୍କନ୍ଧ, ଦ୍ୱାରିକାଲୀଳା, ପୃ. ୧୫)

ଏହି ସବୁ ପଦ ପଢ଼ିଲେ ମନେହୁଏ, ସତେଯେପରି କେହି ଜଣେ କବି ଆଜିର ସମାଜକୁ ଲକ୍ଷ୍ୟ କରି ହିଁ କିଛି ଦିନ ପୂର୍ବରୁ ଏସବୁ ଲେଖି ଯାଇଛନ୍ତି।

ସାରଳା ଦାସ ଓ ପଞ୍ଚସଖା ଓଡ଼ିଆ ସାହିତ୍ୟର ଯେଉଁ ମୂଳଦୁଆ ଦେଇଗଲେ ସେହି ମୂଳଦୁଆ ଉପରେ ଆଜି ଗଢ଼ିଉଠିଛି ଗୋଟିଏ ସୁନ୍ଦର ବଳିଷ୍ଠ ସାହିତ୍ୟସୌଧ । ଓଡ଼ିଆ ସାହିତ୍ୟ ତା'ର ସମସ୍ତ ଶାଖା ପ୍ରଶାଖା ମେଲିଛି । ପ୍ରତ୍ୟେକ ବିଭାବ କାବ୍ୟ, କବିତା, ଗଳ୍ପ ଉପନ୍ୟାସ, ନାଟକ ତଥା ପ୍ରବନ୍ଧ ଏପରି ଗୋଟିଏ ସ୍ତରକୁ ଆସିଛି ଯାହାର ଗୁଣାତ୍ମକ ତୁଳନା ଭାରତର ଅନ୍ୟାନ୍ୟ ସମସାମୟିକ ପ୍ରାଦେଶିକ ଭାଷା-ସାହିତ୍ୟମାନଙ୍କ ସଙ୍ଗରେ ସହଜରେ କରାଯାଇ ପାରେ । କିନ୍ତୁ ଦୁଃଖର ସହିତ ଲକ୍ଷ୍ୟ କରିବାକୁ ପଡ଼େ ଯେ ଆଜିର ସାହିତ୍ୟ ସର୍ବସାଧାରଣ ପାଠକ ସମାଜ ପାଖରୁ ଦୂରେଇ ଯାଇଛି । ମନେହୁଏ ଯେ ଓଡ଼ିଆ ସାହିତ୍ୟସୌଧ ଆଜି ପ୍ରାଚୀର ବେଷ୍ଟିତ ଓ ସେ ଭିତରକୁ ସର୍ବସାଧାରଣଙ୍କ ପ୍ରବେଶ ନିଷିଦ୍ଧ ।

ଯେକୌଣସି ଓଡ଼ିଆ ଅକୁଣ୍ଠିତ ଚିତ୍ତରେ ଓ ଆନନ୍ଦ ମନରେ ମାସକୁ ଦୁଇ ଚାରି ଟଙ୍କା ସିନେମା ଦେଖାରେ ଖର୍ଚ୍ଚ କରେ । କିନ୍ତୁ ସିଏ ମାସକୁ ଟଙ୍କାଟିଏ ଖର୍ଚ୍ଚ କରି ମଧ୍ୟ କୌଣସି ଓଡ଼ିଆ ମାସିକ ପତ୍ରିକା କିଣିବାକୁ ଆଗ୍ରହ ପ୍ରକାଶ କରେନି । ଗ୍ରାହକ ବିନା ପତ୍ରିକାମାନଙ୍କର ଅକାଳ ମୃତ୍ୟୁ ହୁଏ । ଅନେକ ପ୍ରତିଷ୍ଠିତ ଲେଖକ ଅର୍ଥାଭାବ ଯୋଗୁଁ ଦାରିଦ୍ର୍ୟର ଗଞ୍ଜଣା ସହିବାକୁ ବାଧ୍ୟ ହୁଅନ୍ତି । ଏଥିରୁ ଜଣାପଡ଼େ ଯେ ଓଡ଼ିଆ ସାହିତ୍ୟର ଗଳ୍ପ ଓ କବିତା ସାଧାରଣ ପାଠକଙ୍କ ମନକୁ ସ୍ପର୍ଶକରି ପାରୁନି ଓ ସେମାନଙ୍କୁ ଯଥୋଚିତ ଆନନ୍ଦ ଦେବାରେ ଅକ୍ଷମ ହେଉଛି ।

ସାମ୍ପ୍ରତିକ ଓଡ଼ିଆ ସାହିତ୍ୟର ମାନ ଉଚ୍ଚକୋଟୀର ହେଲେହେଁ ଅନେକ ସମୟରେ ଗଳ୍ପ ସବୁ ବିଷୟବସ୍ତୁ ବିହୀନ ଅଥବା ଲକ୍ଷ୍ୟହୀନ ଓ ଅଗଭୀର, କବିତା ଅସଂଲଗ୍ନ ସଙ୍ଗୀତ ଶୂନ୍ୟ ଦୁର୍ବୋଧ ଗଣିତ ଶାସ୍ତ୍ର । ପାଶ୍ଚାତ୍ୟ ଚିନ୍ତାଧାରାର ଅନୁସରଣରେ ଏପରି ସାହିତ୍ୟ କଳାପାଇଁ ହିଁ କଳା ସୃଷ୍ଟି କରୁଥିଲେ ହେଁ ତାହା ସାଧାରଣ ପାଠକ ଦ୍ୱାରା ଆଦୃତ ହୋଇପାରୁ ନାହିଁ । ଯେଉଁମାନେ ଉପେନ୍ଦ୍ରଭଞ୍ଜ, କବିସୂର୍ଯ୍ୟ, ଗୋପାଳକୃଷ୍ଣ ଆଦିଙ୍କ ଲେଖାସବୁକୁ ଭାଷାକ୍ଲିଷ୍ଟ, ଅଳଙ୍କାର-ଯମକ-ଅନୁପ୍ରାସ-ଶବ୍ଦାଡ଼ମ୍ବର ଭରା, ଦୁର୍ବୋଧ ଓ ସାମନ୍ତବାଦୀ ବୋଲି ଅଭିଯୋଗ କରନ୍ତି, ସେଇମାନେ ହିଁ ନିଜନିଜ କବିତା ସମୂହକୁ ଅବୋଧ ଚିତ୍ରକଳ୍ପ ରୂପକ ଓ ସୂଚନାସମ୍ବଳିତ କରି ଦୁର୍ବୋଧ କରି ପକାଉଛନ୍ତି । ଯେକୌଣସି କବିତାର କିଛି କିଛି ଅଂଶ ଓ ସୁପ୍ରତିଷ୍ଠିତ କବିଙ୍କ କେତେ ବୌଦ୍ଧିକ କବିତା ସମସ୍ତଙ୍କ ପକ୍ଷରେ ସହଜରେ ବୁଝିବା କଷ୍ଟକର ହେବା ସ୍ୱାଭାବିକ । କିନ୍ତୁ ପ୍ରତ୍ୟେକ କବିତା ବୁଝିବା ପାଇଁ ଜଣେ ସାଧାରଣ ପାଠକ ଯଦି ସମାଲୋଚକ ଅଥବା ଶିକ୍ଷକର ସାହାଯ୍ୟ

ଲୋଡ଼େ ତେବେ ସେ ସେପରି କବିତା ପଢ଼ିବାପାଇଁ ଆଗ୍ରହ ପ୍ରକାଶ କରିବ କାହିଁକି ? ଯଦିବା ପଢ଼େ ସେଥିରୁ ସିନେମା ଓ ଡ୍ରାମାଦେଖା କିମ୍ବା ଅର୍କେଷ୍ଟ୍ରା ଶୁଣା ସହଜଲଭ୍ୟ ଆନନ୍ଦ ପାଇପାରିବ କିପରି ?

ସାରଳା ଦାସ, ଜଗନ୍ନାଥ ଦାସ, ବଳରାମ ଦାସ ପ୍ରମୁଖ ଓଡ଼ିଆ କବି ନ ଥିଲେ ଆଜି ଓଡ଼ିଆ ଭାଷା ବଞ୍ଚିରହି ନ ଥାଆନ୍ତା । ଓଡ଼ିଆ ପ୍ରଦେଶ ନ ଥିଲାବେଳେ ଓଡ଼ିଆଜାତି ଯେତେବେଳେ ବିହାର, ବଙ୍ଗଳା, ମାନ୍ଦ୍ରାଜ, ମୋଗଲବନ୍ଦୀ ଓଡ଼ିଶା ଓ ଅନେକଗୁଡ଼ିଏ ଗଡ଼ଜାତ ଭିତରେ ଭାଗଭାଗ ହୋଇ ପଡ଼ିରହିଥିଲା, ଗୋଟିଏ ଦିଗରେ ହିନ୍ଦୀ, ଆଉ ଗୋଟିଏ ଦିଗରେ ବଙ୍ଗଳା ଓ ଅନ୍ୟ ଦିଗରେ ତେଲୁଗୁ ଯେତେବେଳେ ଓଡ଼ିଆକୁ କୋରି ଖାଉଥିଲେ, ସେତିକିବେଳେ ଓଡ଼ିଆଭାଷାକୁ ବଞ୍ଚାଇ ରଖିଥିଲା ଆମର ପ୍ରାଚୀନ ଓ ରୀତିଯୁଗର ସାହିତ୍ୟ । ସେ ସାହିତ୍ୟକୁ ପଢୁଥିଲେ ବଣ ଜଙ୍ଗଲ ଭିତରେ ଅଜଣା ଅଶୁଣା ଭାବରେ ପଡ଼ିରହିଥିବା ଆଧୁନିକ ଶିକ୍ଷା-ବିବର୍ଜିତ ଆମ ଗୋସାଇଁବାପା ଓ ବୁଢ଼ୀମା'ମାନେ । ଦାଣକାଠିଆ ଓ ପାଲାବାଲାମାନେ ସେ ସାହିତ୍ୟକୁ ଗାଁ ଦାଣ୍ଡରେ ବିଞ୍ଚି ଦେଉଥିଲେ । ଶଗଡ଼ିଆ ସେ ସବୁକୁ ରାଗ ରାଗିଣୀ ଧରି ଗାଇଲାବେଳେ ବଣ ଜଙ୍ଗଲ ଥରାଇ ଦେଉଥିଲା ।

ଆଜିର ଆଧୁନିକ କବିତାକୁ ଆମ ଅଜା ଆଈ ଆଉ ଶଗଡ଼ିଆ କିମ୍ବା ଟ୍ରକ ଡ୍ରାଇଭରଭାଇ ସେମିତି ବୋଲି ପାରିବେ ତ ?

ନା ଆଜିର ସାହିତ୍ୟ କେବଳ ସାହିତ୍ୟ ଜଗତର ବଟଦ୍ରୁମମାନଙ୍କ ପାଇଁ ଉଦ୍ଦିଷ୍ଟ ? ତାକୁ ତେବେ କ'ଣ ନୂତନ ସାମନ୍ତବାଦୀ ବୋଲି କୁହାଯିବନି ?

# କଳ୍ପନାର ରାଜପୁତ୍ର

ପୁରୁଣା କଥା । କେଉଁ ଅଜଣା କାଳର କୌଣସି ଅଶୁଭ ମୁହୂର୍ତ୍ତରେ ଜଣେ କେହି ଗୋଦରୀ ଭୁଲରେ ହେଉ ବା ଜାଣିଶୁଣି ହେଉ ଅନ୍ୟ କାହାରି ହାତ ଗୋଡ଼ର ସ୍ଥୂଳତ୍ୱ ସମ୍ବନ୍ଧରେ କିଛି ଗୋଟିଏ ଟିପ୍‌ପଣୀ ଦେଇ ଦେଇଥିଲା । ତା' ପରଠାରୁ ସେ ଆଉ କ୍ଷମା ପାଇନି । ଯୁଗଯୁଗ ଧରି କାଳର ଅନନ୍ତ ଓ ଅସରନ୍ତି ପରିସର ମଧ୍ୟଦେଇ ସମାଜ କିଛି ନା କିଛି ବାହାନାରେ ଅଥବା ସିଧାସଳଖ ସେହି ଗୋଦରୀ ମହାଶୟାଙ୍କୁ ତଳକୁ ଅନାଇବାକୁ ପରାମର୍ଶ ଦେଇ ଆସିଛି । ଆଉ କଣାସର୍ବସ୍ୱ ଚାଲୁଣୀକୁ ସାମାନ୍ୟ ଗୋଟିଏ ଫୋଡ଼ବାଲା ଛୁଞ୍ଚି କ'ଣ କହିଥିଲା ସେ କଥା ମଧ୍ୟ ଥରକୁ ଥର ଚେତେଇ ଦେଇଛି ।

ଏବେ କିନ୍ତୁ ସେ କଥା ଆଉ ନାହିଁ । ଆଜିର ଗୋଦରୀ ନିର୍ଭୟରେ ନିର୍ବିକାର ଭାବରେ ଅନ୍ୟମାନଙ୍କର ହାତ ଗୋଡ଼ ମାପିବାରେ ଲାଗିଛି । ଏବର ଚାଲୁଣୀ ବିନା ଦ୍ୱିଧାରେ ଛୁଞ୍ଚିର ଫୋଡ଼କୁ ବାରମ୍ବାର ଆଙ୍ଗୁଳି ନିର୍ଦ୍ଦେଶକରି ପରିହାସ କରିଚାଲିଛି । ଆଉ କେଉଁ ଆଡୁ କିଛି ଜବାବ ଶୁଣା ଯାଉନି । ଆଜିର ସମାଜ ନିର୍ବାକ୍ ।

ମଣିଷ ବୋଧହୁଏ ସବୁବେଳେ ଅନ୍ୟମାନଙ୍କୁ ସମାଲୋଚନା କରିବାକୁ ଭଲ ପାଏ । ଅନ୍ୟର ଭୁଲ ଭଟକା ବର୍ଣ୍ଣନା କଲାବେଳକୁ ଶତଜିହ୍ୱ ହୋଇଉଠେ; କିନ୍ତୁ ନିଜ କ୍ରିୟା କଳାପ, ଆଚାର ବ୍ୟବହାର, ଦୋଷ ଦୁର୍ବଳତା ତଥା ଅପାରଗତା ସମ୍ବନ୍ଧରେ କେବଳ ଯେ ଅନଭିଜ୍ଞ ରହେ ତା' ନୁହେଁ, ଅନ୍ୟ କେହି ସେ ବିଷୟରେ କିଛି ମନ୍ତବ୍ୟ ଦେଲେ ଅସହିଷ୍ଣୁ ହୋଇ ଉଠେ ।

ମନେହୁଏ ଯେ ମଣିଷର ଏ ଦୁର୍ବଳତା ଆଜିର ନୁହେଁ - ତାହା ଆଦିମ । ଏହା ମଣିଷ ସୃଷ୍ଟିର ଅପୂର୍ଣ୍ଣତା ତଥା ତା' ନିଜ ସମ୍ବନ୍ଧୀୟ ଜ୍ଞାନର ସୀମିତତାର ହିଁ ସୂଚନା ଦିଏ ।

ଯେକୌଣସି ସାଧାରଣ ଲୋକ ତା'ର ଚାରିପାଖର ପ୍ରତ୍ୟେକ ଚଳନ୍ତି ଓ ଅଚଳନ୍ତି ପ୍ରାଣୀ ତଥା ବସ୍ତୁ ଦେଖିପାରେ - ଦୂର ଆକାଶର ଗ୍ରହନକ୍ଷତ୍ର ମଧ୍ୟ ବାଦ

ଯାଆନ୍ତିନି । କିନ୍ତୁ ସେ ନିଜ ମୁହଁକୁ ସିଧାସଳଖ ଦେଖିପାରେନି । ତା' ନିଜ ମୁହଁ ଦେଖିବାକୁ କିପରି ତାହା ଜାଣିବାକୁ ହେଲେ ତାକୁ ଅନ୍ୟର ଆଶ୍ରୟ ନେବାକୁ ପଡ଼େ - ଅନ୍ୟର ମତ ଲୋଡ଼ିବାକୁ ହୁଏ । ତେବେ ମଧ ଅନ୍ୟର ସାହାଯ୍ୟରେ ସେ ଯାହା ଦେଖେ ତାହା କେବଳ ଗୋଟିଏ ପ୍ରତିବିମ୍ବ ମାତ୍ର - ଗୋଟିଏ ପ୍ରତିକୃତି - ଗୋଟିଏ ଛାୟା - ଯେତେ ସ୍ପଷ୍ଟ ହେଲେ ମଧ ଅପ୍ରାକୃତ - ଠିକ୍ ସ୍ୱରୂପ ବୋଲି କୁହାଯାଇ ନ ପାରେ । ନିଜର କଳ୍ପିତ ସୁନ୍ଦର ମୁହଁ ସାଙ୍ଗରେ ଯେଉଁ ପ୍ରତିବିମ୍ବର ସାମଞ୍ଜସ୍ୟ ବେଶି ବୋଲି ମନେହୁଏ ମଣିଷ ସେହି ପ୍ରତିବିମ୍ବକୁ ହିଁ ଆଦର କରେ । ଯେଉଁ କନଭେକ୍ସ ଦର୍ପଣରେ ନାକ ଶୁକ ଚଞ୍ଚୁ ପରି ନ ହୋଇ ହାତୀଶୁଣ୍ଢ ପରି ହୁଏ, ଅଥବା ତିଳ ଫୁଲପରି ନ ଦିଶି ଘସରା ପଇସା ପରି ଜଣାପଡ଼େ, ଦାନ୍ତ ଡାଳିମ୍ବ ମଞ୍ଜି ପରି ନ ଦିଶି ଲୁହା ଶାବଳର ରୂପ ନିଏ, ଆଖି କମଳ ଲୋଚନ ହେବା ପରିବର୍ତ୍ତେ ଟେରା ଦିଶେ, ଆଉ ମୁହଁ ଚନ୍ଦ୍ରମାର ସ୍ୱଚ୍ଛ, ସ୍ନିଗ୍ଧ କମନୀୟ କୋମଳତା ବଦଳରେ ମୃଗାଙ୍କ ଓ ଶଶାଙ୍କର କର୍କଶତା ଓ ବନ୍ଧୁରତାର ଇଙ୍ଗିତ ଦିଏ, ମଣିଷ ସେ ଦର୍ପଣକୁ ଗୋଇଠା ମାରି ତଳେ କଚାଡ଼ି ଚୁରମାର କରି ଦେବାକୁ ଇଚ୍ଛା କରେ; ଆଉ ଯେଉଁ ଦର୍ପଣରେ ସେ ଚିତ୍ରସେନ ଗନ୍ଧର୍ବ କିମ୍ବା ରାଜେଶ ଖାନ୍ନା ତଥା ରୂପସୀ ମେନକା କିମ୍ବା ହେମାମାଳିନୀ ପରି ଦିଶେ ସେହି ଦର୍ପଣକୁ ଯତ୍ନରେ ନିଜ ଡ୍ରେସିଂ ଟେବୁଲରେ ସଜାଇ ରଖେ ଓ ନିଜ ମୁହଁ ସମ୍ବନ୍ଧରେ ବାରମ୍ବାର ତା'ର ମତାମତ ଲୋଡ଼େ ।

ମୁହଁ ଅପେକ୍ଷା ମଣିଷର ଆହୁରି ବେଶି ପ୍ରିୟ ଓ ଅତି ଆଦରର ବସ୍ତୁ ହେଉଛି ସେ ନିଜେ - ତା'ର ମୁଁ । ଏହି 'ମୁଁ'ଟି ଠିକ୍ କିଏ ଓ କେଉଁଠି ଥାଏ କହିବା କଠିନ । କାହାରି କାହାରି ମତରେ ମଣିଷର 'ମୁଁ' ତା' ଛାତି ଭିତରେ ଚକାମାଡ଼ି ବସିଥାଏ । କେହି କେହି କହନ୍ତି ଯେ ଏହି 'ମୁଁ' ମୁଣ୍ଡର ଖପୁରି ତଳେ ଜାଲ ଘେରରେ ବୁଢ଼ିଆଣୀ ଛକି ରହିଥିଲା ପରି ମସ୍ତିଷ୍କର ଧୂସର ଶୈବାଳ ଭିତରେ କେଉଁଠି ଛପି ରହିଥାଏ, ଆଉ କିଏ ବା କହେ ଯେ ଦୁଇ ଭୁରୁ ମଝିରେ ଥିବା ତ୍ରିକୁଟୀରେ ଏହି 'ମୁଁ' ବସାବାନ୍ଧି ରହେ । ତେବେ ଛାତି ଭିତରେ ହେଉ, ଖପୁରି ଭିତରେ ତ୍ରିକୁଟୀରେ ହେଉ, ଯେଉଁଠି ରହୁଥିଲେ ବି 'ମୁଁ' ସବୁବେଳେ ଗୋଟିଏ କଳ୍ପନାର ରାଜପୁତର ରୂପ ନିଏ ଓ ସେ ହୁଏ ସବୁଠାରୁ ସୁନ୍ଦର, ସବୁଠାରୁ ଚତୁର, ବଳବାନ୍, ଧୁରନ୍ଧର ଓ ସୁକୁମାର । କିଏ କହେ, 'ମୁଁ' ରାବଣ, ମୋ ସମାନ ବୀର ଏହି ଜଗତରେ ଆଉ କେହି ନାହିଁ ।' କିଏ କହେ ଲକ୍ଷେ ରାଜାଙ୍କର ମଉଡ଼ମଣି 'ମୁଁ' ଦୁର୍ଯ୍ୟୋଧନ, ବିନା ଯୁଦ୍ଧରେ ସୂଚ୍ୟଗ୍ର ପରିମାଣ ଭୂମି ସୁଦ୍ଧା

ଦେବି ନାହିଁ; କିଏ କହେ 'ସାରା ବିଶ୍ୱର ଅଧିକାରୀ ମହାଦାନୀ ବଳୀ 'ମୁଁ', ଅନ୍ୟ କେହି ଅବା କହେ ''ଦେବ ଦେବ ମହାଦେବଙ୍କୁ ଯେ ବଶୀଭୂତ କରିପାରେ 'ମୁଁ' ସେହି କାମଦେବ''; ଆଉ କେହି କହେ 'ମୁଁ ହିଟ୍‌ଲର, ମୁଁ ମୁସୋଲିନୀ, ମୁଁ ଆୟୁବ ଖାଁ'। ଯୁଗ ଯୁଗ ଧରି ଗର୍ବ, ଦମ୍ଭ, ଅଭିମାନର ପ୍ରତୀକ ଏପରି କୋଟି କୋଟି ବୁଦ୍‌ବୁଦ 'ମୁଁ' ଇନ୍ଦ୍ରଧନୁର ରଙ୍ଗ ନେଇ ସମୟର ସ୍ରୋତରେ ଭାସି ଚାଲିଥାଆନ୍ତି। ଆଉ ଏପରି ଭାସି ଯାଉଥିଲାବେଳେ ମଧ୍ୟ ସେ ଭିତରୁ କେହି କେହି ଚିତ୍କାର କରି ଉଠନ୍ତି 'ମୁଁ' ନେତା, 'ମୁଁ' ମନ୍ତ୍ରୀ', 'ମୁଁ କୋଟିପତି ଶିଳ୍ପପତି', 'ମୁଁ ପଣ୍ଡିତ, ଜ୍ଞାନୀ, ଶିକ୍ଷକ', 'ମୁଁ ବିପ୍ଲବୀ ଯୁବକ ଛାତ୍ର ନେତା' - କ୍ରୁର ଅହି କବଳରେ ପଡ଼ିଥିଲା ବେଳେ 'ବିକଳେ ରାବୁଁ ରାବୁଁ, ଊର୍ଦ୍ଧ୍ୱେ ଉଡ୍‌ଡ଼ୀନ ଉହୁଙ୍କି ଶିଶୁକଙ୍କି ଦେଲା ଗିଳିଣ' ମଣ୍ଡୁକ ପରି।

ସବୁ ମଣିଷ ସମାନ। ସ୍ଥାନ ବିଶେଷରେ ସାନ ବଡ଼ ଦେଖାଯାଆନ୍ତି ଯାହା। ସମସ୍ତେ ସେହି ଏକ ମହାପଥର ଯାତ୍ରୀ - ଆଗ ପଛ ହୋଇ କିଏ କେଉଁ ଟପାଘର ବା ପାନ୍ଥଶାଳାରେ ପହଞ୍ଚୁଛି। ତଥାପି ମଣିଷ ନିଜକୁ ସବୁବେଳେ ଏହି 'ମୁଁ' ବୋଲି ହିଁ ପରିଚୟ ଦିଏ। ନିଜ ସମ୍ବନ୍ଧରେ ସମ୍ପୂର୍ଣ୍ଣ ଅଜ୍ଞ ପ୍ରତ୍ୟେକ ମଣିଷ ସେଥିପାଇଁ ସମସ୍ତଙ୍କୁ ସମାଲୋଚନା କରେ, ସମସ୍ତଙ୍କର ଦୋଷତ୍ରୁଟି ଦେଖାଏ, କିନ୍ତୁ ନିଜେ ଯେ ଭୁଲ କରିପାରେ ତାହା କଳ୍ପନା ବି କରେନି। ତା'ର ଧାରଣା ହୁଏ ଯେ ସେ ଯାହା କରୁଛି ତାହାହିଁ ଠିକ୍; ଆଉ ଯେଉଁ ବାଟରେ ସେ ଚାଲିଛି ତାହାହିଁ ପ୍ରକୃତ ମାର୍ଗ। କୌଣସି ସରକାରୀ ଚାକିରିଆ ଅନ୍ୟମାନଙ୍କୁ ଡେଇଁ ନିଜେ ଯଦି ପ୍ରମୋଶନ ପାଏ ସେ ଧରି ନିଏ ଯେ ତାହା ତା'ର ଯୋଗ୍ୟତାର ନିଦର୍ଶନ। ସେ ନ ପାଇ ଅନ୍ୟ କେହି ଯଦି ଏପରି ପ୍ରମୋଶନ ପାଏ ତାହା ହୁଏ ପ୍ରିୟାପ୍ରୀତି ତୋଷଣ। କେହି ଯଦି ଅନ୍ୟ କାହାଠାରୁ ଅସଦ୍ ଉପାୟରେ ଅର୍ଥ ଗ୍ରହଣ କରେ ତାହା ହୁଏ ଉତ୍କୋଚ ବା ଲାଞ୍ଚ। ନିଜେ ସେପରି କଲେ ଅର୍ଥନୀତିର ବୈଷମ୍ୟ ତଥା ଦରଦାମ ବୃଦ୍ଧି ଦାୟୀ ହୁଏ ଓ ମଣିଷ ନିଜେ ଦୋଷ ଶୂନ୍ୟ ହୋଇଯାଏ। ଅନ୍ୟ କେହି କାମ ନ କଲେ ତା' ହୁଏ ଆଳସ୍ୟ ଓ କର୍ତ୍ତବ୍ୟରେ ଅବହେଳା - ତେଣୁ ଘୃଣ୍ୟ; ଆଉ ନିଜେ କାମ ନ କରି ସୁବିଧା ମାରିପାରେ ତାହା କେବଳ ବୁଦ୍ଧିମତ୍ତାରହିଁ ପରିଚୟ ଦିଏ। ଅନ୍ୟର ପୁଅ ଦୋଷ କଲେ ସେ ହୁଏ କଠୋର ଶାସ୍ତି ବିଧାନର ଉପଯୁକ୍ତ ପାତ୍ର, ଆଉ ନିଜ ପୁଅ ଦୋଷ କଲେ ତା' ହୁଏ ଶିକ୍ଷା ପ୍ରଣାଳୀର ଦୋଷ। ନିଜ ପୁଅର ଯେଉଁ ଦୁଷ୍ଟାମି ଖେଳବାଡ଼ଗିରି ପରି ଜଣାପଡ଼େ ଅନ୍ୟର ପୁଅଠାରେ ତାହା ହୁଏ ଗୁଣ୍ଡାମି।

ପ୍ରତ୍ୟେକ ନିଜର ଦୋଷତ୍ରୁଟି ସମ୍ବନ୍ଧରେ ସଚେତନ ନ ହେବାରୁ ଦେଶରେ ଆଜି ଯେଉଁ ଅବସ୍ଥା ଦେଖା ଦେଇଛି ତାହା ଆମର ସେହି ଚିରପରିଚିତ ପୁରୁଣା କାହାଣୀକୁ ମନେ ପକାଇ ଦିଏ ।

ରାଜା ଗୋଟିଏ ପୁଷ୍କରିଣୀ ଖୋଳାଇଲେ ।

ସମସ୍ତେ ତ ପୋଖରୀ ଖୋଳାଉଛନ୍ତି - ତେବେ ଏ ପୁଷ୍କରିଣୀ ଖୋଳାଇବାରେ ରାଜାଙ୍କର ଆଉ ବାହାଦୁରୀ ରହିଲା କେଉଁଠି ? ସେ ତେଣୁ ଠିକ୍ କଲେ ଯେ ପୁରାଣର କ୍ଷୀରସମୁଦ୍ର ପରି ଏ ପୁଷ୍କରିଣୀଟି ଗୋଟିଏ କ୍ଷୀର ପୁଷ୍କରିଣୀ ହେବ ।

ଯଥାରୀତି ଢେଙ୍କୁରା ଦିଆ ହେଲା ଯେ ଜଳାଶୟ ପ୍ରତିଷ୍ଠା ପାଇଁ ନିର୍ଦ୍ଧାରିତ ଦିନ ବ୍ରାହ୍ମ ମୁହୂର୍ତ୍ତରେ ସହରବାସୀ ସମସ୍ତେ ପ୍ରତ୍ୟେକେ ଗୋଟିଏ ଗୋଟିଏ ମାଠିଆ ଦୁଧ ଆଣି ପୁଷ୍କରିଣୀରେ ଢାଳିବେ । ନଚେତ୍ -

ପ୍ରତିଷ୍ଠା ଦିନ ପହଞ୍ଚିଗଲା । ପ୍ରତ୍ୟେକେ ଭାବିଲେ ଯେ, ସମସ୍ତେ ଦୁଧ ଢାଳିବା ଫଳରେ ପୋଖରୀଟି ତ ଦୁଧରେ ଭର୍ତ୍ତି ହୋଇ ଯାଇଥିବ - ସେ ଯଦି ମାଠିଆଏ ପାଣି ଢାଳି ଦିଏ ତେବେ ପୋଖରୀଏ ଦୁଧରେ ମାଠିଆଏ ପାଣି ଜଣା ବି ପଡ଼ିବନି - ଆଉ ଅନ୍ଧାରରେ କିଏ ବା ଦେଖୁଛି ? ପ୍ରତ୍ୟେକେ ଏମିତି ମାଠିଆଏ ଲେଖା ପାଣିଢାଳି ଦେଇଗଲେ । ସକାଳେ ଦେଖିଲା ବେଳକୁ ପୁଷ୍କରିଣୀଟି ପାଣିରେ ଭରପୁର । ଦୁଧର ଲେଶ ମାତ୍ରହିଁ ନାହିଁ ।

ଆଜି ଆମେ ଠିକ୍ ଏହି ଦଶାରେ ଆସି ପହଞ୍ଚିଛୁଁ । ପ୍ରତ୍ୟେକେ ଅନ୍ୟର କ୍ରିୟା କଳାପରେ ଅସହିଷ୍ଣୁ, କିନ୍ତୁ ନିଜ କର୍ତ୍ତବ୍ୟ ସମ୍ବନ୍ଧରେ ଉଦାସୀନ । ନିଜେ ନିଜର ଦୋଷ ତ୍ରୁଟି ଜାଣି ପାରିବା କଷ୍ଟକର ହୁଏ ବୋଲି ଶିକ୍ଷକ ଓ ଗୁରୁଜନମାନେ ଯାହା କରୁଛନ୍ତି ତାକୁ ସମାଲୋଚନା ନ କରି ସେମାନେ ଯାହା କହୁଛନ୍ତି ବା ଉପଦେଶ ଦେଉଛନ୍ତି ତାକୁ ମାନିବା ପାଇଁ ଆମ ସଂସ୍କୃତି ଚିରଦିନ ଶିକ୍ଷା ଦେଇଆସିଛି ଓ କହି ଆସିଛି ଯେ, ଆମର ଦୃଷ୍ଟି ବହିର୍ମୁଖୀ ନ ହୋଇ ଅନ୍ତର୍ମୁଖୀ ହେବା ଉଚିତ । ଦେଶରେ ଆଜି ଯେଉଁ ବିଶୃଙ୍ଖଳା ଦେଖା ଦେଇଛି ସେଥିପାଇଁ କୌଣସି ନିର୍ଦ୍ଦିଷ୍ଟ ଗୋଷ୍ଠୀ, ଶାସନ ପ୍ରଣାଳୀ କିମ୍ବା ଶିକ୍ଷା ପ୍ରଣାଳୀ ଦାୟୀ ହୋଇ ନ ପାରେ, ଆମେ ସମସ୍ତେ ଏଥିପାଇଁ ବ୍ୟକ୍ତିଗତ ଭାବରେ ଦାୟୀ । ବ୍ୟକ୍ତିଗତ କର୍ତ୍ତବ୍ୟବୋଧ ଓ କର୍ତ୍ତବ୍ୟ ନିଷ୍ଠାହିଁ ଆମ ମହାନ୍ ଦେଶକୁ ପୁନର୍ବାର ପୃଥିବୀର ସର୍ବଶ୍ରେଷ୍ଠ ଦେଶରେ ପରିଣତ କରିପାରେ । ସେଥିପାଇଁ ସବୁବେଳେ ଅନ୍ୟର ଭୁଲ ବାଛିବାକୁ ନ ଯାଇ ନିଜର ଦୋଷ ତ୍ରୁଟି ସମ୍ବନ୍ଧରେ ସଚେତନ ହେବାକୁ ପ୍ରତ୍ୟେକ ଚେଷ୍ଟା କରିବାହିଁ ବିଧେୟ ବୋଲି ମନେହୁଏ ।

# ଅନ୍ଧାର ଘର

'ମରାଳ ମାଳନୀ ନୀଳାମ୍ବୁ' ଚିଲିକାର ସୌନ୍ଦର୍ଯ୍ୟରେ ଆତ୍ମହରା ହୋଇ କବିବର ରାଧାନାଥ ଗାଇ ଉଠିଥିଲେ - ''ସୁନ୍ଦରେ ତୃପ୍ତିର ଅବସାଦ ନାହିଁ, ଯେତେ ଦେଖୁଥିଲେ ନୂଆ ଦିଶୁଥାଇ''।

କବିବରଙ୍କର ଏଇ ଉକ୍ତି ସୀମିତ ଜଣା ପଡୁଥିଲେ ମଧ୍ୟ ତାହା ପରିବ୍ୟାପ୍ତ ଏବଂ ସ୍ୱୟଂସମ୍ପୂର୍ଣ୍ଣ। ସୁନ୍ଦର ଦୃଶ୍ୟର ଦର୍ଶନରେ ଯେପରି ଚିରନ୍ତନୀ ଆନନ୍ଦ ମିଳେ ସେପରି ସୁନ୍ଦର ଗୀତର ଶ୍ରବଣରେ, ମଧୁର ଗନ୍ଧର ଆଘ୍ରାଣରେ ସୁନ୍ଦର ଶୀତଳ ପବନର ସ୍ପର୍ଶରେ, ସୁସ୍ୱାଦୁ ଓ ରୁଚିକର ଭୋଜନରେ ପୌନପୌନିକତା ଥିଲେ ମଧ୍ୟ ତୃପ୍ତିର ଅବସାଦ ଆସେ ନାହିଁ। କୌଣସି ଗୋଟିଏ ଭଲ କାବ୍ୟ ଅନେକଥର ପଢ଼ିଲେ କିମ୍ବା ଭଲ ଗପଟିଏ ବାରମ୍ବାର ଶୁଣିଲେ ମଧ୍ୟ ଚିଟା ଲାଗେ ନାହିଁ। 'କୁହୁକ ଜାମା' (Enchanted shirt) ଏପରି ଗୋଟିଏ ଗପ। ଏହି ଗପଟି ଏଡ଼େ ସୁନ୍ଦର ଯେ ସମସ୍ତେ ଜାଣିଥିଲେ ମଧ୍ୟ ପୁନରୁକ୍ତିର ଦୋଷକୁ ଭୟ ନ କରି ଆଉଥରେ କୁହାଯାଇପାରେ ।

ରାଜାଙ୍କର ଦେହ ଖରାପ, ମନ ଭଲ ନାହିଁ - ସବୁବେଳେ ଚିଡ଼ିଚିଡ଼ିଆ ଭାବ।

ବିରାଟ ଗୋଟିଏ ପଲଙ୍କର ସୁପାତି ଶେଯ ଉପରେ ରାଜା ଶୋଇଛନ୍ତି - ଝରକା ଜାଲିଣିସବୁ ବନ୍ଦ, ଆଲୁଅ ଜଳୁଛି। ପାତ୍ର ଅମାତ୍ୟ ସମସ୍ତେ ଦେଖିବାକୁ ଆସୁଛନ୍ତି - ଆଉ ରାଜା ସବୁବେଳେ ବିରକ୍ତ।

ରାଜ୍ୟର ସବୁଠାରୁ ବଡ଼ ବଇଦ ଆସି ରଜାଙ୍କ ଶରୀରର ଟିକି ନିଖି ପରୀକ୍ଷା କଲେ - ରୋଗର ନିଦାନ କରି ପାରିଲେ ନାହିଁ; କହିଲେ ରାଜାଙ୍କର କିଛି ଅସୁସ୍ଥତା ନାହିଁ। ତାଙ୍କର ମୁଣ୍ଡକାଟ ହେଲା।

ପରେ ଅନେକ ବଇଦ, ତାଙ୍କର ଆସିଲେ - ବୁଦ୍ଧିର କରାମତି ଦେଖାଇବାକୁ କିମ୍ବା ଟଙ୍କାର ଲୋଭରେ ଆପେ ଆପେ ଆସିଲେ, ଡକା ହୋଇ ଆସିଲେ,

ଅଥବା ଧରାହୋଇ ଆସିଲେ । ଜଣ ଜଣ କରି ସମସ୍ତେ ରାଜାଙ୍କୁ ଦେଖିଲେ - କହିଲେ ରାଜାଙ୍କର କିଛି ହୋଇ ନାହିଁ । କେହି ଆଉ ଘରକୁ ଫେରିଲେନି, ସମସ୍ତଙ୍କର ମୁଣ୍ଡକାଟ ହେଲା ।

ବିପଦରୁ ରକ୍ଷା ପାଇବା ପାଇଁ କେତେକ ବଇଦ ରାଜ୍ୟ ଛାଡ଼ି ପଳାଇଗଲେ - ଆଉ କେତେ ବା ବଣ ଜଙ୍ଗଲରେ ଲୁଚିରହିଲେ ।

ରାଜାଙ୍କୁ ଦେଖିବାପାଇଁ ଆଉ କେହି ବଇଦ ନ ମିଳିଲାବେଳେ ଓ ବଇଦ କୁଳର ଘୋର ସଙ୍କଟ ସମୟରେ କୁଳରକ୍ଷା ନିମନ୍ତେ ଆତ୍ମବଳି ଦେବାକୁ ପ୍ରସ୍ତୁତ ହୋଇ ଜଣେ ବେପରବା ଏ ସୃଷ୍ଟି ଛଡ଼ା ଆତ୍ମବିଶ୍ୱାସୀ ବଇଦ ରାଜପ୍ରାସାଦରେ ହଠାତ୍ ପହଞ୍ଚି କହିଲେ ସେ ଟିକିଏ ରାଜାଙ୍କୁ ଦେଖିବେ ।

ସମସ୍ତଙ୍କ ମନରେ ନୂତନ ଆଶାର ସଞ୍ଚାର ହେଲା ।

ବଇଦ ରାଜାଙ୍କ ପାଟି ମେଲାକରି ଜିଭ ଦେଖିଲେ, ଆଖି ପତା ଟେକି ଡୋଳାକୁ ଅନେଇଲେ, କାନ ପରଖିଲେ, ମୁଣ୍ଡ ହଲାଇଲେ, ଛାତି ଓ ପିଠି ଥାପୁଡ଼େଇ କ'ଣ ସବୁ ଶୁଣିଲେ, ପେଟ ଚିପିଲେ, ନାଡ଼ି ଦେଖିଲେ ଓ ଆଉ କେତେ କ'ଣ ସବୁକରି ଗମ୍ଭୀର ଭାବରେ ଠିଆ ହେଲେ; ଏବଂ ନିଜ ଲମ୍ବା ନାକ ଟାଣୁଟାଣୁ ବିଚାରପତି ରାୟଦେଲା ସ୍ୱରରେ କହିଲେ, ''ରାଜାଙ୍କ ଦେହ ଅତି ଖରାପ - ରୋଗ ଅତି ବିଷମ ।''

ଉପାୟ !!

ଅଛି, ଏକମାତ୍ର । ରାଜା ଯଦି କୌଣସି ସୁଖୀ ଲୋକର କାମିଜ ଦିନକ ପାଇଁ ପିନ୍ଧନ୍ତି !

ସମସ୍ତେ ଆଶ୍ୱସ୍ତିର ନିଃଶ୍ୱାସ ମାଇଲେ । ବେଶ ସହଜ ଉପାୟ - ଅବଶ୍ୟ ଏଡ଼େବଡ଼ ରାଜାଙ୍କୁ ଅନ୍ୟ ଜଣକର ପୁରୁଣା କାମିଜ ଖଣ୍ଡିଏ ପିନ୍ଧିବାକୁ ପଡ଼ିବ - ସମ୍ମାନହାନିର ସମ୍ଭାବନା ରହିଛି । ତେବେ ଜୀବନ ମରଣର ସନ୍ଧିକ୍ଷଣରେ ସମ୍ମାନ, ମର୍ଯ୍ୟାଦାର ବିଚାର !

ରାଜା ପୁରୁଣା କାମିଜ ପିନ୍ଧିବାକୁ ରାଜିହେଲେ ।

ପାରିଷଦବର୍ଗ ଓ ପାର୍ଶ୍ୱଚରମାନେ ଦୌଡ଼ିଗଲେ ମନ୍ତ୍ରୀଙ୍କ ଘରକୁ - ତାଙ୍କର କାମିଜ ଖଣ୍ଡିଏ କିଏ ଆଗ ରାଜାଙ୍କ ପାଖକୁ ଆଣିବ ।

ମନ୍ତ୍ରୀ କିନ୍ତୁ ସବୁ ଶୁଣି ଗୋଟିଏ ଦୀର୍ଘଶ୍ୱାସ ମାଇଲେ, କହିଲେ ଯାହାର ପୁଅ ନାହିଁ କି ଝିଅ ନାହିଁ ସେ ପୁଣି ସୁଖୀ !

ସମସ୍ତେ ଏଥର ଦୌଡ଼ିଲେ ସାଧବଘରକୁ । ସାଧବଘରର ବିରାଟ ଉଆସ - ମନ୍ତ୍ରୀ ମଧ୍ୟ ପାରିଷଦବର୍ଗଙ୍କ ସଙ୍ଗେ ଯାଇଛନ୍ତି, ରାଜାଙ୍କ ପାଇଁ ଅତି ଧନୀ ସାଧବଙ୍କ ଖଣ୍ଡିଏ ପୁରୁଣା କାମିଜ ଆଣିବା ଉଦ୍ଦେଶ୍ୟରେ । ସାଧବଙ୍କୁ କିନ୍ତୁ ଗଣ୍ଠିବାତ ଧରିଛି - ସେ ସୁଖୀ ହେବ କୁଆଡୁ ?

କଟୁଆଳ ଘର - ଧାଡ଼ିକି ଧାଡ଼ି ଘୋଡ଼ା ବନ୍ଧା ହୋଇଛନ୍ତି - ବର୍ଚ୍ଛାଧାରୀ ପାଇକ । କଟୁଆଳ ଥିରିଥିରି କହିଲେ, ''ଯେଉଁଠି ସ୍ୱାମୀ ସ୍ତ୍ରୀ ଭିତରେ ନିତି କଳି ସେଠି ପୁଣି ସୁଖ !''

ଦିନ ଗଡ଼ି ଚାଲିଛି । ଏ ଭିତରେ ଘରଘର କରି ରାଜ୍ୟର ପ୍ରାୟ ସବୁ ସହର ଓ ଗାଁ ଖୋଜା ସରିଲାଣି - ଅନେକ ବାହାରୁ ବେଶ୍ ସୁଖୀ ଦିଶୁଛନ୍ତି ସତ କିନ୍ତୁ ସମସ୍ତଙ୍କର କିଛି ନା କିଛି ଦୁଃଖ ରହିଛି - ଏମାନଙ୍କ କାମିଜ ନେଇ ଲାଭକ'ଣ ?

ଭୟଙ୍କର ଖରା - ପାରିଷଦବର୍ଗ ହତାଶ ହୋଇ ଫେରୁଫେରୁ ଗୋଟିଏ ବରଗଛ ଛାଇରେ ଟିକିଏ ବିଶ୍ରାମ ନେଉଛନ୍ତି; ହଠାତ୍ ପାଖ ମହୁଲ ଗଛ ଆଢୁଆଳରୁ ବଇଁଶୀ ସ୍ୱର ଶୁଭିଲା । କିଛିକ୍ଷଣ ପରେ ବଂଶୀ ସ୍ୱର ବନ୍ଦହେଲା ଓ ସମସ୍ତେ ଦେଖିଲେ ଜଣେ ଗାଈଚରୁଆ ପିଲା ତା'ର ବଂଶୀଟିକୁ ଅଣ୍ଟା ଉପରେ ଖୋସିଦେଇ ଗାଲତୁରୀ ମାରି ମାରି ନାଚିବାକୁ ଆରମ୍ଭ କରି ଦେଇଛି - ଆନନ୍ଦରେ ମତୁଆଳ ।

ସମସ୍ତେ ଏକା ନିଃଶ୍ୱାସରେ ତା' ପାଖକୁ ଦୌଡ଼ିଗଲେ । ଏଇ ସେଇ ସୁଖୀ ଲୋକ ଯାହାକୁ ଏ ଯାଏ ଖୋଜାଚାଲିଥିଲା । ଯେତେ ଟଙ୍କା ମାଗୁ ପଛକେ ତା'ର ପୁରୁଣା କାମିଜ ନେବାକୁହିଁ ହେବ, ନ ହେଲେ ଜୋର ଜବରଦସ୍ତି ।

ଟୋକାଟି ସମସ୍ତଙ୍କୁ ଦେଖି କାବା ହୋଇଗଲା । ସବୁ ଶୁଣିଲାପରେ ହସିବାକୁ ଆରମ୍ଭ କଲା - କହିଲା 'କାମିଜ ? ମୋର କାମିଜ ଆସିବ କୁଆଡୁ ?'

ରାଜପ୍ରାସାଦରେ ବିଷାଦର ଛାୟା । ସବୁ ଉପାୟ ସରିଛି, କିନ୍ତୁ ସୁଖୀଲୋକର କାମିଜ ମିଳିନି । ଯେଉଁମାନଙ୍କର କାମିଜ ଅଛି ସେମାନେ କେହି ସୁଖୀ ନୁହନ୍ତି, ଆଉ ଯିଏ ସୁଖୀ ତା'ର କାମିଜ ହିଁ ନାହିଁ ।

ରାଜା ସବୁ ଶୁଣିଲେ । କ'ଣ ବୁଝିଲେ କେଜାଣି, ହଠାତ୍ ଝରକାସବୁ ଖୋଲିବାକୁ ଆଦେଶ ଦେଲେ ଓ ନିଜେ ପଲଙ୍କରୁ ଓହ୍ଲାଇ ଆସିଲେ । ସୂର୍ଯ୍ୟାସ୍ତର ରଙ୍ଗୀନ ଆକାଶ ଓ ଝରକା ଦେଇ ଆସୁଥିବା ଶୀତଳ ପବନ ତାଙ୍କୁ ବେଶ୍ ଭଲ ଲାଗିଲା ।

ମନେହୁଏ ଯେ ରାଜାଙ୍କ ରୋଗପରି ଗୋଟିଏ ଭୟଙ୍କର ସଂକ୍ରାମକ ରୋଗ ଏବେ ଆମ ସମାଜରେ ଦେଖା ଦେଇଛି । ଏଇ ରୋଗରୁ କେହି ଛାଡ଼ ପାଇଲାପରି ଜଣା ପଡୁ ନାହିଁ । କାହାରି ମନରେ ସୁଖ ନାହିଁ ଓ ସମସ୍ତେ ଯିଏ ଯାହାର ଛିଣ୍ଡା ଖଟ, ପଟା ଖଟ, ଫିତା ଖଟ କିମ୍ବା ପଲଙ୍କ ଉପରେ ଚେଇଁ ଶୋଇଛନ୍ତି ଓ ନିଜ ନିଜ ପଡ଼ୋଶୀ ସବୁ ବେଶ୍ ସୁଖରେ ଥିବା ମନେକରି ଉହଳ ବିକଳ ହେଉଛନ୍ତି । କିନ୍ତୁ ଦୁଃଖର କଥା, କେହି ଯଦି ଏହି ମାନସିକ ବ୍ୟାଧିଗ୍ରସ୍ତ ଦୁଃଖୀଲୋକମାନଙ୍କ ଦୁଃଖ ଲାଘବ କରିବାପାଇଁ କୌଣସି ସୁଖୀଲୋକର କାମିଜ ଖୋଜିବାକୁ ଯାଇ ସହରର ରାସ୍ତାରେ ଚାଲୁଥିବା କାହାରିକୁ ଜାମା ମାଗେ ସେ ଭଦ୍ରଲୋକ ନିଜର ଦୁଃଖର କାହାଣୀ ବର୍ଣ୍ଣନା କରି ସାରିଲା ପରେ କୌଣସି ସାଇକଲ ଚଢ଼ାଳୀ ଆଡ଼କୁ ଆଙ୍ଗୁଠି ଦେଖାଇ ଦେବେ । ସାଇକଲ ଚଢ଼ାଳୀଙ୍କ ପାଖକୁ ଗଲେ ସେ କୌଣସି ସ୍କୁଟରବାଲାଙ୍କୁ, ସ୍କୁଟରବାଲା କାରବାଲାଙ୍କୁ ଓ ପୁରୁଣା କାରବାଲା ନୂଆ କାରଆଡ଼କୁ ଚାହିଁ ରହିବେ । କୌଣସି କୁଡ଼ିଆ ଘରେ ରହୁଥିବା ଲୋକ ପାଖକୁ ଏମିତି ଜାମାପାଇଁ ଗଲେ ସେ ସେପରି ପକ୍କାଘର ଆଡ଼କୁ ଓ ସାଧାରଣ ପକ୍କା ଘରବାଲା ବିରାଟ ପ୍ରାସାଦ ଆଡ଼କୁ ଆଙ୍ଗୁଠି ଦେଖାଇବେ । କେହି ଯଦି କୌଣସି ସ୍କୁଲ ଶିକ୍ଷକଙ୍କୁ ସୁଖୀ ଭାବି ତାଙ୍କ ପାଖକୁ ଯାଏ ସେ ଭଦ୍ରଲୋକ କଲେଜ ଅଧ୍ୟାପକଙ୍କ ପାଖକୁ ଯିବାକୁ ଉପଦେଶ ଦେବେ । ପ୍ରାଇଭେଟ କଲେଜ ଅଧ୍ୟାପକ ସରକାରୀ କଲେଜ ଅଧ୍ୟାପକଙ୍କ ପାଖକୁ, ସରକାରୀ କଲେଜ ଅଧ୍ୟାପକ (ୟୁନିଭର୍ସିଟି) ଗ୍ରାଣ୍ଟସ୍ କମିଶନର ବେତନ ହାର ପାଉଥିବା ବିଶ୍ୱବିଦ୍ୟାଳୟ ଅଧ୍ୟାପକଙ୍କ ପାଖକୁ ଯିବାକୁ କହିବେ । ଉଚ୍ଚବେତନ ଭୋଗୀ ସରକାରୀ କର୍ମଚାରୀ ବେଶ୍ ଆରାମରେ ଅଛନ୍ତି ଭାବି କେହି ଯଦି ତାଙ୍କ ପାଖକୁ ଯାଏ ସେ ଠିକାଦାର ଓ ବ୍ୟବସାୟୀମାନଙ୍କୁ ଦେଖାଇଦେବେ । ସାଧାରଣ ବ୍ୟବସାୟୀ କଳକାରଖାନା ମାଲିକଙ୍କ ପାଖକୁ ପଠାଇଲେ କଳକାରଖାନା ମାଲିକ ଶ୍ରମିକ ଧର୍ମଘଟ କଥା କହିବେ ।

କେହି ନିଜ ଅବସ୍ଥାରେ ସୁଖୀ ନୁହନ୍ତି । ଗୋଟିଏ ଇଚ୍ଛା ପୂରଣ ହେଲାବେଳକୁ ନୂତନ ଲାଳସା ଜନ୍ମ ନେଉଛି, ନୂତନ ଅଭାବ ଦେଖା ଦେଉଛି । ନିଜେ ନିଜ ପାଇଁ ସୃଷ୍ଟି କରିଥିବା ଅତୃପ୍ତି ଜନିତ ଦୁଃଖରେ ମ୍ରିୟମାଣ ହୋଇ ସମସ୍ତେ କାମ ଧନ୍ଦା ଛାଡ଼ିବାକୁ ଆରମ୍ଭ କଲେଣି ।

ସୁଖ ଦୁଃଖ କହିଲେ କେବଳ ମଣିଷର ମାନସିକ ଅବସ୍ଥାକୁହିଁ ବୁଝାଏ । ଅର୍ଥ ଏଇ ସୁଖ ଦୁଃଖ ସଙ୍ଗରେ କେତେ ଦୂର ଓ କେତେ ପରିମାଣରେ ଜଡ଼ିତ ଓ ଧନ

ସଙ୍ଗରେ ମାନସିକ ଶାନ୍ତି କିପରି ଭାବରେ ସଂଶ୍ଳିଷ୍ଟ ତାହା କହିବା ସହଜ ନୁହେଁ । ବୋଧହୁଏ ଏଇସବୁ ବିଷୟ ବିବେଚନାକୁ ନେଇ ଆମର ପୂର୍ବପୁରୁଷମାନେ ଉପଦେଶ ଦେଇଥିଲେ ଯେ ମଣିଷ କର୍ମର ଅଧିକାରୀ କିନ୍ତୁ କର୍ମ ଫଳର ନୁହେଁ । ଅର୍ଥ ଅପେକ୍ଷା ଏପରି ବିଶ୍ୱାସ ମନରେ ବେଶୀ ଶାନ୍ତି ଦିଏ ବୋଲି ଗ୍ରହଣ କରିପାରିଲେ ସମସ୍ତେ ସହଜରେ ନିଜନିଜ ଅନ୍ଧାର ଘରର ଝରକା କବାଟ ଖୋଲି ଛିଣ୍ଡା ଖଟ, ପଲଙ୍କରୁ ଓହ୍ଲାଇ ଆସିବାକୁ ସକ୍ଷମ ହୁଅନ୍ତେ । ଦେଶ ଆଗେଇଯାଇ ପାରନ୍ତା ।

# ବିଶ୍ୱ ଦେଖ ମଧୁମୟରେ ଜୀବନ

କେହି କେହି କହନ୍ତି ଯେ ପ୍ରାଣୀ ଜଗତରେ କେବଳ ମଣିଷ ହିଁ କାନ୍ଦିପାରେ ଓ ହସିପାରେ । ଏ କଥାଟି କେତେଦୂର ସତ ତାହା ଠିକ୍ କହିହେବନି ।

ମହାଜନ ବା ସାହୁକାର ଖାତକକୁ ଚଢ଼ା ସୁଧରେ ଟଙ୍କା କରଜ ଦେଉଁଦେଉଁ ତା'ର ଆର୍ଥିକ ଦୁର୍ଗତିରେ ସମବେଦନା ଜଣାଇ ସମୟ ସମୟରେ ଲୁହ ଗଡ଼ାଇଲାପରି କୁମ୍ଭୀରର ବଡ଼ ବଡ଼ ଆଖିରୁ ପ୍ରାଣୀ ଜଗତର ଦୁଃଖ ଦୁର୍ଦ୍ଦଶା ଦେଖି ବେଳେ ବେଳେ ଲୁହ ଟୋପା ଠସ୍ ଠସ୍ ଖସି ପଡୁଥିବା କଥା ଶୁଣାଯାଏ । ତେବେ ଏ କୁମ୍ଭୀର କାନ୍ଦଣାକୁ କାନ୍ଦଣା କୁହାଯିବ କି ନାହିଁ ସେ ସମ୍ବନ୍ଧରେ ଭିନ୍ନଭିନ୍ନ ମୁନି ଭିନ୍ନଭିନ୍ନ ମତ ପୋଷଣ କରିପାରନ୍ତି ।

ବୈଶାଖ ଓ ଜ୍ୟେଷ୍ଠର ଦି'ପହରିଆ ଖରାବେଳେ ଗଛର କେଉଁ ପତ୍ରଗହଳି ଭିତରୁ କାପ୍ତା ଯେତେବେଳେ ତା'ର 'ଉଠରେ ପୁତ ଉଠ' ଆରମ୍ଭ କରିଦିଏ ସେଇଟାକୁ କାନ୍ଦଣା କୁହାଯିବ କି ପକ୍ଷୀ ଜଗତର କୌଣସି ଗୋଟିଏ ଆଧୁନିକ ସଙ୍ଗୀତ ଅଥବା ଶାସ୍ତ୍ରୀୟ 'ଖେୟାଲ' ବୋଲି ଧରିନିଆଯିବ ସେ କଥା ମଧ କହିବା କଠିନ । ଆଉ ଦଶହରା ସମୟରେ ଛେଳି ମେଣ୍ଢାମାନଙ୍କ ବେକରେ ଫୁଲମାଳ ପିନ୍ଧାଇ କାତି ଖର୍ପର ଧାରୀ ପୂଜକମାନେ ଯେତେବେଳେ ସେମାନଙ୍କୁ ବିଚ ରାସ୍ତା ମଧଦେଇ 'ପୂଜା' ସ୍ଥାନକୁ ନେଉ ଥାଆନ୍ତି ସେତେବେଳର ମେଁ ମେଁ ରବ ବିକଳ କାନ୍ଦଣା କି ଫୁଲମାଳ ପାଇଁ ଧନ୍ୟବାଦ ଅର୍ପଣ ସେ କଥା ଅବା କିଏ କହି ପାରିବ ? ସେପରି ସାଇକେଲ ସିଟ୍ ସାମନା ରଡ୍‌ର ଦୁଇ ପାଖରେ ଭାରସାମ୍ୟ ରକ୍ଷା କରି ତଳମୁହାଁ ହୋଇ ଝୁଲୁଥିବା ଗୋଡ଼ବନ୍ଧା କୁକୁଡ଼ା ସବୁ ସାଇକେଲ ଚଢ଼ାଳୀ ଭଦ୍ରଲୋକଙ୍କ ରନ୍ଧାଘର ଆଡ଼କୁ ଗତି କଲାବେଳେ ମଝିରେ ମଝିରେ ଯେଉଁ କଅଁ-କଅଁ କରୁଥାଆନ୍ତି ତାକୁ ଅବା କେଉଁ ପ୍ରଦର୍ଶନୀର ମେରି-ଗୋ-ରାଉଣ୍ଡରେ ଦୋଳି ଝୁଲୁଥିବା ଛୁଆମାନଙ୍କ ଆନନ୍ଦ କୋଳାହଳ ପରି କୁକୁଡ଼ାମାନଙ୍କ ସାଇକେଲ ଚଢ଼ାର ଆନନ୍ଦ ରାବ ବୋଲି କିପରି କହି ହେବ ?

ମନେହୁଏ ମଣିଷ ପରି ଅନ୍ୟପ୍ରାଣୀମାନେ ମଧ କାନ୍ଦନ୍ତି । ମଣିଷ କିନ୍ତୁ ଅନେକ କାରଣରୁ କାନ୍ଦେ, ଅନେକ ପ୍ରକାରରେ କାନ୍ଦେ ।

କେହି କେହି ଛାତି କୋଡ଼ି, ଚିତ୍କାର କରି ଆଖପାଖ କମ୍ପାଇ କାନ୍ଦନ୍ତି । କେହି ନିଜ ସମବେଦନା ଖୋଲା ଖୋଲି ପ୍ରକାଶ କରିବା ଉଦ୍ଦେଶ୍ୟରେ ତଥା ଲୋକ ଦେଖାଣିଆ ଏପରି କାନ୍ଦରେ ଯୋଗଦେଇ କାନ୍ଦେ । ଅନ୍ୟ କେହି କୌଣସି ଉପଲକ୍ଷରେ କାନ୍ଦିବା ତାଙ୍କର ସାମାଜିକ କର୍ତ୍ତବ୍ୟ ବୋଲି କାନ୍ଦନ୍ତି । ପିଲାମାନେ ବାପାମା'ଙ୍କ ଦୃଷ୍ଟି ଆକର୍ଷଣ କରିବା ଉଦ୍ଦେଶ୍ୟରେ ଅଥବା ଭୟରେ କାନ୍ଦନ୍ତି । କେହି ବା ନିଜ ନିଜ ଦୁଃଖର ଆତିଶଯ୍ୟରେ ବିକଳ ହୋଇ ନୀରବରେ କିମ୍ବା ସକେଇ ସକେଇ କାନ୍ଦେ । ବେଳେ ବେଳେ ଅନ୍ୟର ସୁଖ ଦେଖି ନ ପାରି ମଧ ମଣିଷ ହିଂସାରେ ଜଳି କାନ୍ଦେ । ଆଉ ଉତ୍କଳମଣି ଗୋପବନ୍ଧୁଙ୍କ ପରି ମହାପ୍ରାଣ ଅନ୍ୟର ଦୁଃଖ କଷ୍ଟ ସହି ନ ପାରି ବିକଳ ହୋଇ କାନ୍ଦନ୍ତି ।

ଆଶ୍ଚର୍ଯ୍ୟ କଥା ଯେ ମଣିଷ ସମୟ ସମୟରେ କାନ୍ଦିବା ପାଇଁ କୌଣସି ସିଧାସଳଖ କାରଣ ନ ଥିଲେ ମଧ ବିନା କାରଣରେ କାନ୍ଦେ । ବର୍ତ୍ତମାନର ସୁଖ ଓ ଆନନ୍ଦ ଭିତରେ ଅତୀତର ଦୁଃଖ କଷ୍ଟ ସବୁ ମନେପକାଏ ଓ ଭାବୀ ଆଶଙ୍କାର ଦୁଶ୍ଚିନ୍ତାରେ କାନ୍ଦି ବସେ । ଏହାହିଁ ବୋଧହୁଏ ମଣିଷ ସୃଷ୍ଟିର ବୈଶିଷ୍ଟ୍ୟ ତଥା ବୈଚିତ୍ର୍ୟ ।

ଶୋଭାର ଭଣ୍ଡାର ଚିଲିକାର ଦୃଶ୍ୟରେ ଆତ୍ମହରା ହୋଇ କବିବର ରାଧାନାଥ ସେଦିନ ସେମିତି ''ପାରିଲେଣି ଏବେ ଦେବ ବିକର୍ତ୍ତନ, ଭାଲେରୀ ଶିଖରେ ସ୍ୱର୍ଣ୍ଣ ସିଂହାସନ...'' ଗାଉ ଗାଉ ହଠାତ୍ 'ଚିର ହାହା ମୟ ଏ ଛାର ଜୀବନ, ଜୀବନ ନୁହଇ ଜୀବନ୍ତ ମରଣ' ଆରମ୍ଭ କରି ଦେଇଥିଲେ ।

କେହି କେହି କହନ୍ତି ଯେ ମଣିଷର ଅଶ୍ରୁ ଗଙ୍ଗାଜଳ ପରି ପବିତ୍ର । ଗଙ୍ଗାଜଳର ପବିତ୍ରତା ସମ୍ବନ୍ଧରେ କାହାରି କାହାରି ସନ୍ଦେହ ରହୁଥିଲେ ହେଁ ଉତ୍କଳମଣି ଓ କବିବରଙ୍କର ଅଶ୍ରୁ ଯେ ପ୍ରତ୍ୟେକ ଓଡ଼ିଆ ପକ୍ଷରେ ପବିତ୍ର ଏଥିରେ ଭିନ୍ନମତ ରହି ନପାରେ । ତଥାପି ମନେହୁଏ ଯେ ଅଶ୍ରୁ ମଣିଷର ଅସହାୟତା ତଥା ହୃଦୟର କୋମଳତା ସଙ୍ଗେ ସଙ୍ଗେ ତା' ହୃଦୟର ଦୁର୍ବଳତାର ହିଁ ଇଙ୍ଗିତ ହୁଏ ।

ମଣିଷର ଜୀବନ ଦୁଃଖପୂର୍ଣ୍ଣ ଏଥିରେ ସନ୍ଦେହ ନାହିଁ । ମା'ଆର କରୁଣ ଚିତ୍କାର ସହ ସଂସାରରେ ଯେଉଁ ଜୀବନର ଅୟଂ ଆରମ୍ଭ ହୁଏ ମୃତ୍ୟୁକାଳୀନ ଶେଷନିଃଶ୍ୱାସ ତ୍ୟାଗର ଦାରୁଣ ଯନ୍ତ୍ରଣାରେ ଓ ତତ୍‌ପରବର୍ତ୍ତୀ 'ରାମ ନାମ ସତ୍ୟ ହେ' ରେ ତା'ର ହୁଏ ପରିସମାପ୍ତି ।

ସଂସାରରେ ରକ୍ତମାଂସର ଦେହ ଧରି କେହି ଦୁଃଖ ଓ କଷ୍ଟରୁ ପରିତ୍ରାଣ ପାଇ ନାହାନ୍ତି । ବନବାସୀ ଶ୍ରୀରାମ, କ୍ରୁଶ ବିଦ୍ଧ ଯୀଶୁ ତହିଁର ନିଦର୍ଶନ ।

ସେଥିପାଇଁ ଦୁଃଖ ମଧ୍ୟରେ ଶାନ୍ତିର ସନ୍ଧାନ, ଦୁର୍ଦ୍ଦଶାଗ୍ରସ୍ତ ଜୀବନର ହା ହୁତାଶ ମଧ୍ୟରେ ଆନନ୍ଦର ସତ୍ତା ଉପଲବ୍ଧ ଚିରଦିନ ମନୁଷ୍ୟର ଚରମ ଲକ୍ଷ୍ୟ ହୋଇ ଆସିଛି ଆଉ ରୋଗ, ଜରା, ମୃତ୍ୟୁର ସଂସାରରେ ଦେଖା ଦେଇଛନ୍ତି ଭିକ୍ଷାପାତ୍ରଧାରୀ ପ୍ରଶାନ୍ତ ବଦନ ବୁଦ୍ଧ, ଶଙ୍କର, ବିବେକାନନ୍ଦ ।

ସତ୍, ଚିତ୍ ଓ ଆନନ୍ଦରୁ ଏ ଜଗତର ସୃଷ୍ଟି ବୋଲି କୁହାଯାଇଥାଏ । ମଣିଷ ସେହି ଆନନ୍ଦମୟ ପ୍ରକୃତିର ସନ୍ତାନ, ଆନନ୍ଦସିନ୍ଧୁର ଗୋଟିଏ ବିନ୍ଦୁ, ତେଣୁ ମଣିଷର ସ୍ୱଭାବ ଆନନ୍ଦମୟ ହେବା ହିଁ ସ୍ୱାଭାବିକ ।

ସେଥିପାଇଁ ବୋଧହୁଏ ପଲ୍ଲୀ ଅଞ୍ଚଳରେ ଗୋଟିଏ ସାଧାରଣ ଗାଁରୁ ସ୍ୱଭାବକବି ଗଙ୍ଗାଧର ସେଦିନ ଗାଇ ଉଠିଥିଲେ 'ବିଶ୍ୱ ଦେଖ ମଧୁମୟରେ ଜୀବନ, ବିଶ୍ୱ ଦେଶ ମଧୁମୟ' । ଗରିବ ଘରେ ଜନ୍ମ ନେଇ, ଉଚ୍ଚ ଶିକ୍ଷା ଓ ବିଳାସ ବ୍ୟସନ, ସୁଖ ସମ୍ଭୋଗର ଦୂରରୁ ଦାରିଦ୍ର୍ୟର କଷାଘାତ ଓ ଜୀବନର ହା ହୁତାଶ ଭିତରେ ସେ କିପରି ବିଶ୍ୱର ମଧୁମୟ ରୂପ ଦେଖି ପାରିଥିଲେ ତାହା ଯଥାଯଥ ଭାବରେ କହିହେବନାହିଁ - ତେବେ ସେ ଦିନର ଗ୍ରାମର ସରଳ ଓ ସୁନ୍ଦର ଜୀବନ ଏବଂ ପ୍ରକୃତିର ଚିରନ୍ତନ ସୌନ୍ଦର୍ଯ୍ୟ ତାଙ୍କ କବି ପ୍ରାଣକୁ ନିଶ୍ଚୟ ମୁଗ୍ଧ କରିଥିବ । ଗାଁ ପୋଖରୀର କଇଁ ଆଉ ପଦ୍ମଫୁଲ, କାଖରେ ଓ ମୁଣ୍ଡରେ ପାଣି ଭରା ଚକଚକିଆ ଗରା ଓ ମାଠିଆ ନେଇ ଧାଡ଼ି ହୋଇ ଚାଲିଥିବା ପଲ୍ଲୀ ବଧୂର ଛାୟାକୃତି, ଗୋଧୂଳି ବେଳରେ ଗାଁ ଝିଅର ମନଖୋଲା ହସ, ପବନରେ ଦୋହଲୁଥିବା ଧାନ କେଣ୍ଡା, କ୍ଷେତକୁ କ୍ଷେତ ବୋହି ଯାଉଥିବା ପାଣିସୁଅରେ କେରାଣ୍ଡି ମାଛର ବିଚିତ୍ର ଗତି, ପେଚା ବିଲୁଆର ରଡ଼ି ସାଙ୍ଗରେ ତାଳ ମିଳାଇ ବନ୍ୟଜନ୍ତୁଙ୍କୁ ଘଉଡ଼ିବା ଉଦ୍ଦେଶ୍ୟରେ ମଞ୍ଚାରେ ଶୋଇଥିବା ଚାଷୀର ନିଦବାଉଳା 'ହୋ-ହୋ' ଡାକ, ଧାନ କାଟୁଥିବା ମର୍ଦ୍ଦ ପାଖକୁ ଅଳସଭରା ଗତିରେ ବାସି ପଖାଳ, ଲୁଣ, ଉଲି ଆଉ ଲଙ୍କାଟିଏ ଧରି ଚାଲିଥିବା ଭୁଆସୁଣୀର ଚାଲିବା ଢଙ୍ଗ, ପୂନେଇ ରାତିରେ ଝିଅଙ୍କ ଡାଲଖାଇ ନାଚ, ପୁଅଙ୍କ ଡୁ-ଡୁ-ଖେଳ, ନୂଆଖାଇ ବେଳର ଘୁମୁରା, ପୁଷ୍ପୁନିର ମନମତାଣିଆ ଗୀତ ଆଉ ଗାଁ ପିଣ୍ଡାରେ ଗୋଡ଼ ଓ ଦେହକୁ ଗାମୁଛାରେ ବାନ୍ଧି ବେପରବାଏ ଭାବରେ ଦୋହଲୁଥିବା ଗାଁ ବାଲାଙ୍କ ଚିନ୍ତାଶୂନ୍ୟ ଜୀବନର ମଧୁମୟ ରୂପ କବିଙ୍କ ସରଳ, ସୁନ୍ଦର, ନିଷ୍କପଟ ଜୀବନରେ ନିଶ୍ଚୟ ଗଭୀର ପ୍ରଭାବ ପକାଇଥିବ ।

ଶରୀର ଓ ମନ ଉପରେ ବହିର୍ଜଗତର ଘାତ ଓ ଅନ୍ତର୍ଜଗତର ପ୍ରତିଘାତ ସୁଖ ଓ ଦୁଃଖ ରୂପରେ ମଣିଷ ମନରେ ପ୍ରତିକ୍ରିୟା ସୃଷ୍ଟି କରେ । ହସ ଓ କାନ୍ଦ ସେହି ମାନସିକ ପ୍ରତିକ୍ରିୟାର ଶାରୀରିକ ପରିପ୍ରକାଶ ମାତ୍ର ।

କୁହାଯାଏ ଯେ ସୁଖ ଓ ଦୁଃଖ ଋତୁ ଭେଦରେ ଶୀତ ଓ ଗ୍ରୀଷ୍ମ ପରି - ଯେମିତି ଆସେ, ସେମିତି ଯାଏ - ସ୍ଥିର ହୋଇ ରହେନି । ଆଉ ପ୍ରକୃତିର ନିୟମ ବଳରେ ନିଶ୍ଚୟ ଆସେ । ତେଣୁ ଆମ ପୂର୍ବପୁରୁଷମାନେ କହିଯାଇଛନ୍ତି ଯେ ଯେଉଁ ସୁଖ ଦୁଃଖ ନିଶ୍ଚୟ ଆସିବ ଓ ଯାହାକୁ ଏଡ଼ାଇ ହେବନି, ତାକୁ ଧୀରସ୍ଥିର ଭାବରେ ଗ୍ରହଣକରି ନେବାହିଁ ମଣିଷର କର୍ତ୍ତବ୍ୟ । ସେମାନଙ୍କ ମତରେ ସୁଖର ଆତିଶଯ୍ୟରେ ଯେ ଆତ୍ମହରା ହୁଏନି ଓ ଦୁଃଖରେ ଯେ ମ୍ରିୟମାଣ ନହୋଇ ଉଦ୍‌ବେଗହୀନ ରହିପାରେ ସେ କେବଳ ଶାନ୍ତି ଓ ଆନନ୍ଦର ଅଧିକାରୀ ହେବାକୁ ସକ୍ଷମ ହୁଏ ।

ସୁଖ ଓ ଦୁଃଖରେ, ତଥା ହସ ଓ କାନ୍ଦରେ ସମଭାବାପନ୍ନ ହେବା ଯେପରି କଠିନ - ତହିଁରେ ଉଦାସୀନ ହୋଇ ରହିବା ସେପରି କଷ୍ଟସାଧ୍ୟ । ଏହା ବୋଲି ସଂସାରକୁ ଗୋଟିଏ ଦୁଃଖ ଦୁର୍ଦ୍ଦଶାର ଗନ୍ତାଘର ଭାବି ସବୁବେଳେ ନିଜର ଅଭାବ ଅସୁବିଧାର ଚିନ୍ତାରେ ହାଣ୍ଡିପରି ମୁହଁକରି ନୈରାଶ୍ୟବାଦୀ ହୋଇ ନିଜେ କାନ୍ଦିବା ସଙ୍ଗେସଙ୍ଗେ ଅନ୍ୟମାନଙ୍କୁ ଜଳାଇ ପୋଡ଼ାଇ କନ୍ଦାଇ ମାରିବା କଦାପି ଉଚିତ ହୋଇ ନପାରେ । ଜଣେ ଆଶାବାଦୀର ଦୃଷ୍ଟିକୋଣ ନେଇ କବିଙ୍କ ଉପଦେଶ ମତେ ବିଶ୍ୱକୁ ମଧୁମୟ ରୂପରେ ଦେଖି ନିଜେ ସାମାନ୍ୟ ଶାନ୍ତି ଓ ଆନନ୍ଦ ଲାଭ କରିବା ସଙ୍ଗେସଙ୍ଗେ ଅନ୍ୟମାନଙ୍କ ମୁହଁରେ ଟିକିଏ ପ୍ରସନ୍ନତା ଫୁଟାଇ ପାରିଲେ ଆମ ମନୁଷ୍ୟ ଜୀବନ ବୋଧ ହୁଏ ସାର୍ଥକ ହେବ ।

# ଯା ଦେବୀ

ଅନେକ ସମୟରେ କୌଣସି ବସ୍ତୁର ନାମ ସଙ୍ଗରେ ତା'ର ଗୁଣ ଏପରି ଭାବରେ ଜଡ଼ିତ ହୋଇଥାଏ ଯେ ନାମ ଶୁଣିଲାକ୍ଷଣି ଗୁଣ ମଧ୍ୟ ଆପେଆପେ ପ୍ରକାଶ ପାଇଯାଏ । ଲେମ୍ବୁ କିମ୍ବା ତେନ୍ତୁଳି କହିଲେ ଖଟା, କଲରା କିମ୍ବା କୁଇନାଇନ୍ କହିଲେ ପିତା, ଗୁଡ଼ ମହୁ କିମ୍ବା ଚିନି କହିଲେ ମିଠା, ଅଁଳା କିମ୍ବା ହରିଡ଼ା କହିଲେ କଷା ଆଉ ମରିଚ କହିଲେ ରାଗ ବୁଝାଏ । ବରଂ ଏପରି ସବୁ ନାମ ବାଚକ ବସ୍ତୁରେ ଆଶା କରାଯାଉଥିବା ଗୁଣର ଅଭାବ ଦେଖିଲେ ହିଁ ମଣିଷ ଆଶ୍ଚର୍ଯ୍ୟ ହୁଏ - ମରିଚ ରାଗ ଲାଗୁନି ବୋଲି ଅଭିଯୋଗ କରେ, ବିରକ୍ତ ହୁଏ ।

ପ୍ରାଣୀ ଜଗତରେ ମଧ୍ୟ ନାମ ଉପରେ ଗୁଣର ଏପରି ପ୍ରତିଫଳନ ଦେଖିବାକୁ ମିଳେ । ଠେକୁଆ କହିଲେ ଦୁର୍ବଳତା ଓ ନିରୀହତା ଯେପରି ପ୍ରକାଶ ପାଏ, ସିଂହ କହିଲେ ବିକ୍ରମ ଓ ସାହସ, ବିଲୁଆ କହିଲେ ଧୂର୍ତ୍ତତା, ମେଣ୍ଢା କହିଲେ ନିର୍ବୋଧତା ସେପରି ଭାବରେ ପ୍ରକାଶ ପାଏ । ସେଥିପାଇଁ ଏପରି ନାମ ସବୁ ବେଳେବେଳେ ବିଶେଷଣ ଭାବରେ ମଧ୍ୟ ପ୍ରୟୋଗ କରାଯାଏ । ମଣିଷକୁ କୁକୁର କହିଲେ ଜଣେ ପଦଲେହନକାରୀ ଖୋସାମତିଆ ଲୋକ ବୋଲି ବୁଝାଏ । ବ୍ୟାଘ୍ର କହିଲେ ଦୁର୍ଦ୍ଦାନ୍ତ, ଗଧ କହିଲେ ନିର୍ବୋଧ, ବେଙ୍ଗ କିମ୍ବା ଚଟିଆ କହିଲେ ଅକିଞ୍ଚନ ବୋଲି ଜଣାପଡ଼େ । ପକ୍ଷୀ ଜଗତରେ କପୋତ ହୁଏ ଶାନ୍ତି ଓ ବାଜ ହୁଏ ହିଂସ୍ରତାର ପ୍ରତୀକ ।

ବ୍ୟକ୍ତି ତଥା ଜାତି ପାଇଁ ମଧ୍ୟ ଏକଥା ଊଣା ଅଧିକେ ପ୍ରଯୁଜ୍ୟ । ଫଳରେ ବ୍ୟକ୍ତି ଜଗତରେ ବ୍ୟାସ ଓ କାଳିଦାସ, ବୁଦ୍ଧ ଓ ଯୀଶୁ, ସିକନ୍ଦର ଓ ନେପୋଲିୟନ, ଗାନ୍ଧୀ ଓ ଝାନ୍ସିରାଣୀ ନାମବାଚକ ଶବ୍ଦ ନ ହୋଇ ବେଳେବେଳେ ଗୁଣବାଚକ ଶବ୍ଦ ହୋଇ ପଡ଼ନ୍ତି । ଫକୀରମୋହନ ହୁଅନ୍ତି ବ୍ୟାସକବି ଫକୀରମୋହନ । ଅବଦୁଲ ଗଫର ଖାନ୍ ହୁଅନ୍ତି ସୀମାନ୍ତ ଗାନ୍ଧୀ, ଗୋପବନ୍ଧୁ ହୁଅନ୍ତି ଓଡ଼ିଶାର ଗାନ୍ଧୀ । ଇହୁଦୀ, କାବୁଲୀବାଲା, ମାରୁଆଡ଼ୀ, ନେପାଳୀ, ଶିଖ ପ୍ରଭୃତି ଶବ୍ଦ ଜାତି ବ୍ୟଞ୍ଜକ ହେଲେ ହେଁ ଅନେକ ସମୟରେ ଗୁଣର ଇଙ୍ଗିତ ଦିଏ । ଜର୍ମାନ ଜାତି ସହ ବିଜ୍ଞାନ, ଆମେରିକାନ ସହିତ ଧନ,

ଇଂରାଜ ସହିତ ବାଣିଜ୍ୟ ଯେପରି ସ୍ୱତଃ ଜଡ଼ିତ ବୋଲି ମନେହୁଏ, ଫରାସୀ ଜାତି ସଙ୍ଗରେ ସୌଖୀନତା ଓ ଜାପାନୀ ସଙ୍ଗରେ କର୍ମଠତା ଗୁଣ ସେପରି ଆପେ ଆପେ ପ୍ରକାଶ ପାଏ ।

ଭାରତବର୍ଷ ଗୋଟିଏ ଦରିଦ୍ର ଦେଶ ବୋଲି ପରିଗଣିତ ହେଉଥିଲେ ହେଁ ଦେଶ ବିଦେଶରେ ଭାରତୀୟ କହିଲେ ଲୋକେ ଅଧିକେ ଦାର୍ଶନିକ ବୁଝାଏ । ବିଶ୍ୱ ଦରବାରରେ ଭାରତୀୟଙ୍କ ସମ୍ବନ୍ଧରେ ଏ ଧାରଣା କିଏଦେଲା ଓ ଏ ଧାରଣା କେବେ ଓ କିପରି ଭାବରେ ହେଲା ସେକଥା କହିବା କଠିନ । ହୁଏନ୍‌ସାଂ, ଫାହିଏନ୍, ମେଗାସ୍ଥିନିସ୍ ପ୍ରଭୃତି ପରିବ୍ରାଜକମାନଙ୍କ ଭ୍ରମଣ ବୃତ୍ତାନ୍ତ ଓ ଭାରତୀୟଙ୍କ ସମ୍ବନ୍ଧରେ ସେମାନଙ୍କ ଲିପିବଦ୍ଧ ମତାମତ ଦେଶବିଦେଶରେ ଏପରି ଧାରଣା ଜନ୍ମାଇବାରେ ସାହାଯ୍ୟ କରିଥାଇ ପାରେ; କିନ୍ତୁ ମନେହୁଏ ଯେ ତା' ପୂର୍ବରୁ ଗ୍ରୀକ୍‌ମାନେ ଭାରତୀୟଙ୍କ ସମ୍ବନ୍ଧରେ ଏପରି ଧାରଣା କରି ସାରିଥିଲେ । ଗ୍ରୀକ୍ ସଭ୍ୟତା ଯେହେତୁ ପାଶ୍ଚାତ୍ୟ ସଭ୍ୟତାର ଜନ୍ମଦାତା, ପାଶ୍ଚାତ୍ୟ ଜଗତ ଗ୍ରୀକ୍‌ମାନଙ୍କ ପାଖରୁ ହିଁ ଏପରି ଧାରଣା ସଂଗ୍ରହ କରିଥିବ । ଆଲେକଜାଣ୍ଡାରଙ୍କ ଭାରତ ଆକ୍ରମଣ ସମ୍ବନ୍ଧୀୟ ଗୋଟିଏ କାହାଣୀ ଏଠାରେ ମନେପଡ଼େ ।

ପୁରୁଙ୍କୁ ଜିଣି ସାରିଲା ପରେ ବିଜୟୀ ସିକନ୍ଦର ଧରିନେଲେ ଯେ ସାରା ଭାରତ ତାଙ୍କର ପଦାନତ ହେଲା ଆଉ ସେ ହେଲେ ବିଶ୍ୱବିଜୟୀ ସମ୍ରାଟ୍ - ସମସ୍ତଙ୍କର ହର୍ତ୍ତା ଓ କର୍ତ୍ତା ।

ଭାରତ ଜୟ ପୂର୍ବରୁ ଯୁଦ୍ଧରେ ଜିଣିଥିବା ଅନ୍ୟାନ୍ୟ ଦେଶମାନଙ୍କର ଗାଁ ଗହଳି ଦେଇ ସେ ଯେତେବେଳେ ତାଙ୍କ ସେନାବାହିନୀ ସହ ଯାଆନ୍ତି, ଆବାଳବୃଦ୍ଧବନିତା ସମସ୍ତେ ଆଣ୍ଠୁମାଡ଼ି ମୁଣ୍ଡ ନୁଆଁଇ ଅଥବା ଲମ୍ବ ହୋଇ ତଳେ ଶୋଇଯାଇ ତାଙ୍କର ଅଭିବାଦନ କରନ୍ତି । ବିଜୟୋନ୍ମତ୍ତ ସିକନ୍ଦର ସ୍ୱାଭାବିକ ଭାବରେ ଧରି ନେଇଥିଲେ ଯେ ଭାରତର ଗାଁ ଗହଳିରେ ମଧ୍ୟ ଲୋକେ ବିଶ୍ୱ ସମ୍ରାଟ୍‌ଙ୍କୁ ସେହି ରକମର ଅଭିବାଦନ ଜଣାଇବେ । କିନ୍ତୁ ଏ ଦେଶରେ ତା'ର ବିପରୀତ ହେଲା । ସୂର୍ଯ୍ୟ କିରଣରେ ଝଲସି ଯାଉଥିବା ଶିରସ୍ତ୍ରାଣ, ସାଞ୍ଜୁ ଓ ତରବାରୀରେ ସଜ୍ଜିତ ଅଶ୍ୱାରୋହୀଙ୍କ ଗହଣରେ ସେ ଯେତେବେଳେ ଭାରତର ଗାଁ ଗହଳି ମଧ୍ୟ ଦେଇଗଲେ ବୁଢ଼ାମାନେ ତାଙ୍କ ଦଉଡ଼ିଆ ଖଟରେ ବସି ହୁକ୍କା ଟାଣୁଥିଲା ବେଳେ ଆଉ ବୁଢ଼ୀମାନେ ସପ ଉପରେ ବସି ଖରା ପୁହାଉଁପୁହାଉଁ ନାତୁଣୀ ମୁଣ୍ଡରୁ ଉକୁଣୀ ବାଛୁଥିବା ସମୟରେ କୌତୂହଳରେ ମୁଣ୍ଡ ଟେକି ଏଇ ଅଦ୍ଭୁତ ମଣିଷମାନଙ୍କ ଆଡ଼କୁ ଅନାଉଥିଲେ ସତ; କିନ୍ତୁ ଅଭିବାଦନ କରିବା ତ

ଦୂରେ ଥାଉ; କେହି ଠିଆ ହେବାକୁ ମଧ ଚେଷ୍ଟା କରୁ ନ ଥିଲେ । ସିକନ୍ଦର ଧରି ନେଲେ ଯେ ଭାରତର ଲୋକେ ଅଶିକ୍ଷିତ, ବର୍ବର, ମାନସମ୍ମାନ ଜ୍ଞାନ ରହିତ ।

ଦିନେ ସେ ଗୋଟିଏ ଗାଁର ରାସ୍ତା ଦେଇ ନିଜ ଶିବିରକୁ ଫେରୁଛନ୍ତି, ହଠାତ୍ ଦେଖିଲେ ଯେ ଏହି ବୁଢ଼ାବୁଢ଼ୀମାନେ ନିଜନିଜ ସ୍ଥାନରୁ ଦଉଡ଼ିଯାଇ ରାସ୍ତାରେ ଚାଲି ଯାଉଥିବା ଜଣେ ଲୋକର ପାଦ ଛୁଇଁ ତାଙ୍କୁ ଅଭିବାଦନ ଜଣାଉଛନ୍ତି । ସାମାନ୍ୟ ଖଣ୍ଡିଏ ଲେଙ୍ଗୁଟି ବ୍ୟତୀତ ଲୋକଟି ପ୍ରାୟ ଲଙ୍ଗଳା, ପାଉଁଶବୋଳା ଦେହ, ମୁଣ୍ଡର ନୁଖୁରା ବାଳ ଜଟାବାନ୍ଧି ଯାଇଛି । ଏପରି ଜଣକୁ ଲୋକେ ଅଭିବାଦନ ଜଣାଉଥିବା ଦେଖି ସିକନ୍ଦର ଧରିନେଲେ ଯେ ସେ ନିଶ୍ଚୟ ଜଣେ ଛଦ୍ମବେଶୀ ରାଜା । କୌପୀନଧାରୀ ଅବଧୂତ ସୈନ୍ୟଙ୍କ ଦ୍ୱାରା ଧୃତ ହୋଇ ଶିବିରକୁ ନୀତ ହେଲେ । ଶିବିରରେ ସମ୍ରାଟ୍‌ଙ୍କୁ ପ୍ରଣାମ ନ କରିବାରୁ ତାଙ୍କୁ ଯେତେବେଳେ କୈଫିୟତ ମଗାଗଲା ସେ ଉତ୍ତର ଦେଲେ ଯେ, ଭାରତବର୍ଷରେ ରାଜା ସନ୍ନ୍ୟାସୀଙ୍କୁ ପ୍ରଣାମ କରେ, ସନ୍ନ୍ୟାସୀ ରାଜାଙ୍କୁ ନୁହେଁ ।

ସନ୍ନ୍ୟାସୀ ବନ୍ଦୀ ହେଲେ ଓ ସମ୍ରାଟଙ୍କୁ ଅପମାନ ଦେଇଥିବାରୁ ନିର୍ଯ୍ୟାତିତ ହେଲେ । କାରାଗାରରେ କିନ୍ତୁ ସନ୍ନ୍ୟାସୀଙ୍କ କିଛି ପରିବର୍ତ୍ତନ ହେଲାନି । ସମ୍ରାଟ୍‌ଙ୍କ ପାଖକୁ ଏହି ବନ୍ଦୀ ଯେତେଥର ନୀତ ହୁଅନ୍ତି ଘଟନାର ପୁନରାବୃତ୍ତି ହୁଏ, ନିର୍ଯ୍ୟାତନା ବଢ଼େ । ଏପରି ଶାରୀରିକ କଷ୍ଟ ଭିତରେ ବିକାର ଓ ଦ୍ୱନ୍ଦ୍ୱ ରହିତ ସନ୍ନ୍ୟାସୀଙ୍କ ପ୍ରଶାନ୍ତ ବଦନ ଓ ହୃଷ୍ଟଚିତ୍ତ ଦେଖି ସିକନ୍ଦର ଶେଷରେ ମନେକଲେ ଯେ ଏ ଲୋକଟିକୁ ପ୍ରୀତ କଲେ ଅବା କିଛି ଫଳ ଲାଭ ହୋଇପାରେ ! ଦିନେ ସେ ନିଜେ କାରାଗାରରେ ବନ୍ଦୀ ସନ୍ନ୍ୟାସୀଙ୍କୁ ଦେଖା କରି ସହାସ୍ୟ ବଦନରେ ପଚାରିଲେ ଯେ, ବନ୍ଦୀ ଯାହା ଚାହାଁନ୍ତି ସେ ସମ୍ରାଟ୍‌ଙ୍କୁ ନିବେଦନ କରିପାରନ୍ତି । ସମ୍ରାଟ୍ ଆଶା କରିଥିଲେ ଯେ ବନ୍ଦୀ ମୁକ୍ତି ଚାହିଁବେ । କିନ୍ତୁ ସନ୍ନ୍ୟାସୀ ଟିକିଏ ହସିଲେ ଆଉ କହିଲେ, ସମ୍ରାଟ୍‌ଙ୍କ ଯଦି ଏତେ ଦୟା ତେବେ ସେ ଠିଆ ହୋଇଥିବା ସ୍ଥାନରୁ ଟିକିଏ ଘୁଞ୍ଚି ଯଦି ଠିଆ ହୁଅନ୍ତେ ତେବେ ଭଲ ହୁଅନ୍ତା - କାନ୍ଥର ଗୋଟିଏ ଛିଦ୍ର ଦେଇ ଯେଉଁ ସୂର୍ଯ୍ୟରଶ୍ମି ସନ୍ନ୍ୟାସୀଙ୍କ ଦେହରେ ପଡୁଥିଲା ତାହା ସମ୍ରାଟ୍‌ଙ୍କ ଦେହ ଦ୍ୱାରା ବାଧିତ ନ ହୋଇ ଆଉଥରେ ତାଙ୍କ ଦେହରେ ପଡ଼ନ୍ତା ।

ସିକନ୍ଦର କିଂକର୍ତ୍ତବ୍ୟବିମୂଢ଼ ହୋଇଗଲେ । ଏପରି ତାଚ୍ଛଲ୍ୟ ସେ କଳ୍ପନା ମଧ କରିପାରି ନ ଥିଲେ । ସେଦିନ ତାଙ୍କର ପ୍ରଥମକରି ମନେହେଲା ଯେ ଭାରତ ଗୋଟିଏ ଅଦ୍ଭୁତ ଦେଶ ଆଉ ଏ ଦେଶର ଲୋକମାନେ ମଧ ଅଦ୍ଭୁତ ।

ସିକନ୍ଦରଙ୍କ ମନରେ ପରିବର୍ତ୍ତନ ଦେଖାଦେଲା । ସନ୍ନ୍ୟାସୀଙ୍କ ପାଖରୁ କିଛି ଶିଖିବାକୁ ସେ ଯେତେବେଳେ ଚାହିଁଲେ, କଥାବାର୍ତ୍ତା ଛଳରେ ସନ୍ନ୍ୟାସୀ ସିକନ୍ଦରଙ୍କୁ ପ୍ରଶ୍ନ କଲେ ଯେ ସିକନ୍ଦର ମଧ୍ୟ ତାଙ୍କ ପିତାଙ୍କପରି ଯେତେବେଳେ ଅନ୍ୟପାରିକି ଯିବେ ସଙ୍ଗରେ ସେ କେତେ ଘୋଡ଼ାସବାର ନେବେ, କେତେ ଧନରତ୍ନ ଯିବ ଓ ଜିଣିଥିବା ରାଜ୍ୟ ମଧ୍ୟରୁ କେଉଁ କେଉଁ ରାଜ୍ୟକୁ ସେ ସଙ୍ଗରେ ନେବେ । ସେ ଆହୁରି ମଧ୍ୟ ଜାଣିବାକୁ ଚାହିଁଲେ ଯେ ରାଜ୍ୟ ଜିଣିବା ଲାଳସାରେ ନିରୀହ ପ୍ରଜାଙ୍କୁ ପୀଡ଼ାଦେଇ ତାଙ୍କର ଠିକ୍ କ'ଣ ଲାଭ ହେଉଛି ।

ସିକନ୍ଦରଙ୍କ ଜୀବନରେ ପରିବର୍ତ୍ତନ ଦେଖାଦେଲା । ଭାରତରେ ଆଉ ଆଗକୁ ନ ଯାଇ ସେ ନିଜଦେଶକୁ ଫେରିଯିବାକୁ ନିଷ୍ପତ୍ତି କଲେ । ଫେରିଗଲା ବେଳେ ସାଙ୍ଗରେ ନେଇଗଲେ ଭାରତରୁ କେତେ ଜ୍ଞାନୀ ପଣ୍ଡିତ ଓ ଦାର୍ଶନିକ । ଫେରିଯିବା ବାଟରେ ହିଁ ତାଙ୍କର ମୃତ୍ୟୁ ହେଲା । ମରିବା ପୂର୍ବରୁ ସେ ତାଙ୍କର ବନ୍ଧୁବର୍ଗଙ୍କୁ ଯାହା ଅନୁରୋଧ କରିଥିଲେ ତାହା କବିବର ରାଧାନାଥ ତାଙ୍କ ଦରବାର କାବ୍ୟରେ ବର୍ଣ୍ଣନା କରି ଗାଇଛନ୍ତି -

''ବୋଇଲେ ଏ ପ୍ରାଣ ଗଲେ ପିଣ୍ଡଛାଡ଼ି
ନେବ ଯେବେ ମୋତେ କୋକେଇରେ କାଢ଼ି
ଦେଇଥିବ ତହିଁ ମୋ ଶବ ଶୁଆଇ
ବେନି ପାଶେ ବେନି କରକୁ ଝୁଲାଇ
ଯା ଦେଖି ଜାଣିବେ ଜଗତେ ସମସ୍ତେ,
ଆସିଥିଲି ଫେରିଗଲି ଶୂନ୍ୟହସ୍ତେ ।''

ପାଶ୍ଚାତ୍ୟ ଦେଶମାନଙ୍କରେ ଭାରତୀୟଙ୍କୁ ଦାର୍ଶନିକ ବୋଲି କହନ୍ତି ସତ, କିନ୍ତୁ ତା' ସଙ୍ଗରେ ରହସ୍ୟବାଦୀ ବୋଲି ମଧ୍ୟ ବର୍ଣ୍ଣନା କରନ୍ତି । ସେ ଉକ୍ତିରେ ତାଚ୍ଛଲ୍ୟର ଇଙ୍ଗିତ ଭରି ରହିଥାଏ । ତେତିଶକୋଟି ଦେବଦେବୀଙ୍କ ପୂଜା ଓ ଗାଈ, ଷଣ୍ଢ, ସାପ, ମୂଷା, ପେଚା, ମାଙ୍କଡ଼ ପ୍ରଭୃତି ଜୀବଜନ୍ତୁଙ୍କ ପ୍ରତି ଭାରତୀୟଙ୍କ ଅନୁରାଗ ସେମାନଙ୍କ ପାଖରେ ରହସ୍ୟାବୃତ ହୋଇପଡ଼େ, ହାସ୍ୟାସ୍ପଦ ହୁଏ । ଖଣ୍ଡିଆ ହାତ, ଖଣ୍ଡିଆ ଗୋଡ଼, ଚକା ଚକା ଆଖିବାଲା କାଠର ଭଗବାନ୍‌ଙ୍କୁ ସେମାନେ ବୁଝି ପାରନ୍ତିନି - ପିତୁଳା ପୂଜା ଓ ଅନ୍ଧବିଶ୍ୱାସର ନଗ୍ନରୂପ ବୋଲି ପରିହାସ କରନ୍ତି ।

ପୁରାଣମାନଙ୍କ କାହାଣୀ ଭିତରେ ଓ ପ୍ରତୀକ ଧର୍ମୀ ପିତୁଳାପୂଜା ମାଧ୍ୟମରେହିଁ ଭାରତୀୟ ସଭ୍ୟତା ତା'ର ମହାନ ସଂସ୍କୃତି ଓ ଆଦର୍ଶ ସମୂହକୁ ବଞ୍ଚାଇ ରଖିଛି । ଫଳରେ ବହୁ କ୍ଷେତ୍ରରେ ଜଣେ ନିରକ୍ଷର ଭାରତୀୟ ମଧ୍ୟ

ଜୀବନର ମୂଲ୍ୟବୋଧ ସମ୍ବନ୍ଧରେ ସଚେତନ ହେବାକୁ ସକ୍ଷମ ହୁଏ - କୌଣସି ସ୍କୁଲ କଲେଜକୁ ନ ଯାଇଥିଲେ ହେଁ ସେ ଭଲ ଓ ମନ୍ଦ, କର୍ତ୍ତବ୍ୟ ଓ ଅକର୍ତ୍ତବ୍ୟ ନିର୍ଦ୍ଧାରଣ କରିବାରେ କୌଣସି ମାନସିକ ଦ୍ୱନ୍ଦ୍ୱର ସମ୍ମୁଖୀନ ହୁଏ ନାହିଁ। ତେଣୁ ଭାରତୀୟ ସମାଜ ଦରିଦ୍ର ହୋଇ ମଧ ଓ ଆଧୁନିକ ଶିକ୍ଷାର ସଂସ୍ପର୍ଶରେ ଅପେକ୍ଷାକୃତ ଅଶିକ୍ଷିତ ହୋଇ ମଧ ପାଶ୍ଚାତ୍ୟ ସମାଜଠାରୁ ଉଚ୍ଚତର ଆଦର୍ଶରେ ଆଦର୍ଶବାନ। ଯେଉଁ ଜନ୍ତୁକୁ ପାଶ୍ଚାତ୍ୟ ଜଗତ ଗୋଟିଏ ସାଧାରଣ ମାଙ୍କଡ଼ ବୋଲି ଦେଖେ ସେହି ମାଙ୍କଡ଼ ହୁଏ ଭାରତୀୟର ଆଖିରେ ଭକ୍ତ ଶିରୋମଣି ପବନପୁତ୍ର ହନୁମାନଙ୍କ ପ୍ରତୀକ। ପେଚା, ମୂଷା ପ୍ରଭୃତି ଜୀବସବୁ ଦେବାଦେବୀଙ୍କ ବାହନରୂପରେ ଦେଖାଦିଅନ୍ତି।

ଶରୀରଧାରୀ ପକ୍ଷରେ ଅଶରୀରୀ, ସର୍ବଶକ୍ତିମାନ, ସର୍ବବ୍ୟାପୀ ଆଦି ଓ ଅନ୍ତହୀନ ନିରାକାର ସୃଷ୍ଟିକର୍ତ୍ତାଙ୍କ କଳ୍ପନା ଅତି କଠିନ। ତେଣୁ ପିତୁଳା ତା'ର ଅଦ୍ଭୁତ ଆକାର ସବୁ ନେଇ ସେହି ନିରାକାରଙ୍କ ପ୍ରତୀକ ହୋଇଉଠେ। ଖଣ୍ଡିଆ ହାତ, ଖଣ୍ଡିଆ ଗୋଡ଼ ସୂଚାଇ ଦିଏ ଯେ ସେହି ସୃଷ୍ଟିକର୍ତ୍ତା ସମସ୍ତଙ୍କର ହାତ କିନ୍ତୁ ନିଜେ ହାତ ନୁହନ୍ତି, ସମସ୍ତଙ୍କ ଗୋଡ଼ କିନ୍ତୁ ନିଜେ ଗୋଡ଼ ନୁହନ୍ତି। କାନ ନ ଥାଇ ସେସବୁ ଶୁଣନ୍ତି। ଭ୍ରୂରୁ କିମ୍ବା ଆଖିପତା ନ ଥିବାରୁ ତାଙ୍କ ଆଖିର ପଲକ ପଡ଼େନି ଆଉ ସେ ସମସ୍ତଙ୍କୁ ସବୁବେଳେ ଦେଖନ୍ତି ତାଙ୍କର ଅଖଣ୍ଡ ମଣ୍ଡଳାକାର ଅଦ୍ଭୁତ ଆଖି ନେଇ। ତାଙ୍କର ମୁଣ୍ଡ ଅଛି, କିନ୍ତୁ ସେ ମୁଣ୍ଡ ଖଣ୍ଡିଆ - କୌଣସିଥିରେ ଶେଷ ନାହିଁ - ସର୍ବବ୍ୟାପୀର ଖଣ୍ଡିଏ ମାତ୍ର - ଭାଷାର 'ଇତ୍ୟାଦି' ପରି। ଏପରି ପ୍ରତୀକ ମାଧମରେହିଁ ଭାରତୀୟ ସାକାର ଭିତରେ ନିରାକାରଙ୍କ କଳ୍ପନା କରେ ଓ ନିଜ କଳ୍ପିତ ସାକାର ରୂପରେ ନିରାକାରଙ୍କ ସନ୍ଧାନ ପାଏ।

ଦୁର୍ଗାମୂର୍ତ୍ତି ମହାଶକ୍ତିର ସେପରି ଏକ ପ୍ରତୀକ।

ବିଜ୍ଞାନ ଆଜି କହେ ଯେ ବସ୍ତୁ ଓ ଶକ୍ତି ଏକ - ପରସ୍ପର ପରସ୍ପରର ରୂପାନ୍ତର। ଆଜିର ମଣିଷ ବୁଝେ ଯେ ଏକଜାତୀୟ ୟୁରାନିୟମ୍ ପରମାଣୁର ଅନ୍ତର ଭିତରକୁ କୌଣସି ନିଉଟ୍ରନ୍ ପହଞ୍ଚିଯାଇ ପାରିଲେ ସେହି ପରମାଣୁ ଦ୍ୱିଖଣ୍ଡିତ ହୁଏ - ଗୋଟିଏ ଜଳବିନ୍ଦୁ ଦୁଇଭାଗ ହୋଇଗଲା ପରି। ସେ ପ୍ରକ୍ରିୟାରେ ଶକ୍ତିର ଉଦ୍ଭବ ହୁଏ ଓ ତା' ସଙ୍ଗେ ସଙ୍ଗେ ନୂଆ ନିଉଟନ୍ କେତେ ମଧ ବାହାରି ଆସନ୍ତି। ସେହି ନୂଆ ନିଉଟ୍ରନ୍ ଭିତରୁ ପୁଣି ଗୋଟିଏ ଯଦି ଅନ୍ୟ ଏକ ପରମାଣୁର ଅନ୍ତର୍ଦ୍ଦେଶରେ ହାବୁଡ଼ିଯାଏ ତାକୁ ପୁଣି ସେ ଦ୍ୱିଖଣ୍ଡିତ କରେ। ଏପରିଭାବରେ ପ୍ରଳୟଙ୍କରୀ ଶକ୍ତିର ଉଦ୍ଭବ ହୁଏ, ଆଉ ସାମାନ୍ୟ କେତେ ପାଉଣ୍ଡ ୟୁରାନିୟମ୍‌ର ପରମାଣୁ ବୋମା ହିରୋସିମା ଓ ନାଗାସାକି ପରି ସହରକୁ ଧ୍ୱଂସ କରିଦିଏ।

ମଣିଷ ଏହା ମଧ ଜାଣେ ଯେ ଚାରୋଟି ହାଇଡ୍ରୋଜେନ୍ ପରମାଣୁର ନିଉକ୍ଲିୟସ୍ ଯେତେବେଳେ ମିଶି ଏକହୋଇ ଯାଆନ୍ତି, ଗୋଟିଏ ହିଲିୟମ୍ ପରମାଣୁର ସୃଷ୍ଟି ହୁଏ ଓ ତତ୍‌ସଙ୍ଗେ ଅଜସ୍ର ଶକ୍ତି ଉତ୍ପନ୍ନ ହୁଏ । ସାମାନ୍ୟ ଏକ କିଲୋଗ୍ରାମ୍ ବସ୍ତୁ ବିଶିଷ୍ଟ ହାଇଡ୍ରୋଜେନ୍ ଏହିପରି ଭାବରେ ଯେଉଁ ଶକ୍ତି ସୃଷ୍ଟି କରିପାରେ ତାହା ହାଇଡ୍ରୋଜେନ୍ ବା ଉଦ୍‌ଜାନ ବୋମା ନାମରେ ଶହଶହ ନାଗାସାକି ସହରକୁ ଧ୍ୱଂସ କରିଦେବାପାଇଁ ସମର୍ଥ ।

ମଣିଷ ନିଜେ ତ ସାଧାରଣ ଭାବରେ ପ୍ରାୟ ଶହେ ଦେଢ଼ଶହ ପାଉଣ୍ଡ ଓଜନ ବିଶିଷ୍ଟ ଶରୀରଟିଏ ଧରି ବୁଲୁଥାଏ - ଆଉ ସେଥିରୁ ବେଶ ଗୋଟିଏ ଭାଗ ଏମିତି ହାଇଡ୍ରୋଜେନ୍ ରହିଥିବା ଅଣୁ ଦ୍ୱାରା ଗଠିତ । ମଣିଷ ଯଦି ନିଜ ମନ କିମ୍ବା ଅନ୍ୟ କୌଣସି ଶକ୍ତି ସାହାଯ୍ୟରେ ନିଜ ଶରୀରରୁ ଏପରି କେତେ ହାଇଡ୍ରୋଜେନ୍ ପରମାଣୁକୁ ବିଚ୍ଛିନ୍ନ କରିଦେଇ ପୁଣି ସେହି ଶରୀରର ଅନ୍ୟ କେଉଁଠି ସେହି ପରମାଣୁ ସମୂହର ମିଳନ ସୃଷ୍ଟି କରିପାରେ । ଆଉ ସେହି ଶକ୍ତିକୁ କୌଣସି ରିଏକ୍ଟର୍‌ରେ ସଞ୍ଚିତ କରି ରଖିଲାପରି ମସ୍ତିଷ୍କରେ ସଞ୍ଚୟ କରେ !

କେହି କେହି କହନ୍ତି ଯେ ଏ ଚିନ୍ତା କେବଳ କଳ୍ପନାର ବିଳାସ ନୁହେଁ, ବାସ୍ତବଧର୍ମୀ ମଧ । ସେମାନେ କହନ୍ତି ଯେ ଭାରତୀୟ ଋଷିମୁନିମାନେ କୁଣ୍ଡଳିନୀ ଶକ୍ତି ଜାଗ୍ରତ କରି ପାରନ୍ତି ବୋଲି ଯେଉଁ ବର୍ଣ୍ଣନା ଅଛି ତାହା ପଛରେ ଏପରି କିଛି ଅଜଣା ଶକ୍ତିର ତତ୍ତ୍ୱହିଁ ଲୁକ୍କାୟିତ ହୋଇ ରହିଛି ।

କି ମହାଶକ୍ତିର ଅଧିକାରୀ ଏ ମଣିଷ ! ଅନ୍ୟ ପ୍ରାଣୀମାନଙ୍କ ଭିତରେ ମଧ ଏ ମହାଶକ୍ତି ଛପି ରହିଛି, କିନ୍ତୁ ମଣିଷହିଁ ଏ ସମ୍ବନ୍ଧରେ ସଚେତନ । ସେ ଯେତେବେଳେ ଏହି ମହାଶକ୍ତିର ପ୍ରଳୟଙ୍କରୀ ସଂହାରିଣୀ ମୂର୍ତ୍ତି କଳ୍ପନା କରେ - ଭୟରେ ଧରି ଉଠେ । କିନ୍ତୁ ସେ ଯେତେବେଳେ ବୁଝି ନିଏ ଯେ ସେହି ଶକ୍ତିହିଁ ସୃଷ୍ଟିକାରୀ ଅନନ୍ତ ମହାଶକ୍ତିର ଅଙ୍ଗବିଶେଷ - ନିଜ ଭିତରର ଶକ୍ତିକୁ ସେ ମାତୃଶକ୍ତି ଜନନୀ ଦୁର୍ଗାଙ୍କ ରୂପରେ କଳ୍ପନା କରି ନିଶ୍ଚିନ୍ତ ହୁଏ । ସେହି ବରଦା ଶକ୍ତିଙ୍କ ପାଖରୁ ମାଭୈଃ - ମାଭୈଃର ଅଭୟ ବାଣୀ ପାଏ - ଆଉ ମନ ଖୁସିରେ ନାଚେ ଆଉ ଗାଏ -

''ଯା ଦେବୀ ସର୍ବ ଭୂତେଷୁ ଶକ୍ତି ରୂପେଣ ସଂସ୍ଥିତା,
ଯା ଦେବୀ ସର୍ବ ଭୂତେଷୁ ମାତୃ ରୂପେଣ ସଂସ୍ଥିତା ।
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋନମଃ ।''

⌘⌘

# ପଶ୍ଚିମ ଆଫ୍ରିକାରେ ଓଡ଼ିଆ ଡାକ୍ତର

ଶ୍ରୀ ଭୁବନେଶ୍ୱର ବେହେରା

ପ୍ରକାଶକ :
କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର, କଟକ - ୭୫୩୦୦୨
ପ୍ରଥମ ସଂସ୍କରଣ : ୧୯୭୯

# ସୂଚୀ

## ଯାତ୍ରାର ପ୍ରଥମ ପାଦ :

# କାଏରୋ

ଢେଙ୍କି କୁଆଡ଼େ ସ୍ୱର୍ଗକୁ ଗଲେ ବି ଧାନ କୁଟେ। ଯେଉଁ ଭଦ୍ରଲୋକମାନେ ସ୍ୱର୍ଗକୁ ଯାଇ ଢେଙ୍କିର କ୍ରିୟାକଳାପ ସବୁ ସ୍ୱଚକ୍ଷୁରେ ଦେଖି ଆସିଛନ୍ତି, ସେମାନେ ଅବଶ୍ୟ ଏ କଥାର ସତ୍ୟାସତ୍ୟ ଜାଣିଥିବେ। ମୁଁ ଯେହେତୁ ଏ ଯାବତ୍ ସ୍ୱର୍ଗକୁ ଯାଇନି, ସେ ସମ୍ବନ୍ଧରେ ଏବେ କିଛି ବ୍ୟକ୍ତିଗତ ମତାମତ ଦେଇପାରୁନି।

ଶିକ୍ଷକମାନଙ୍କ ସମ୍ବନ୍ଧରେ କଟୂକ୍ତି ଶୁଣାଇବାକୁ ସଦା ଆଗ୍ରହୀ କେତେ ନିନ୍ଦୁକ କହନ୍ତି ଯେ ଏହି ଶିକ୍ଷକମାନେ ଯେଉଁଠିକି ଯାଆନ୍ତି, ବେଳ ହେଉ ଅବେଳ ହେଉ ଶ୍ରୋତାଙ୍କ ଆଗ୍ରହ ଥାଉ ବା ନ ଥାଉ ଶିକ୍ଷାଦାନ ଆରମ୍ଭ କରି ଦିଅନ୍ତି, ଆଉ କ୍ରମାଗତ ବକର୍ ବକର୍ ହୁଅନ୍ତି। ଏହି ନିନ୍ଦୁକମାନଙ୍କ ଆଖିରେ ତେଣୁ ପ୍ରତ୍ୟେକ ଶିକ୍ଷକ ଗୋଟିଏ ଢେଙ୍କି। ଏପରି ଢେଙ୍କି ସ୍ୱର୍ଗକୁ ଗଲେ କଣ କରିବେ ସେ କଥା ନିଶ୍ଚିତ ଭାବେ କହି ନ ପାରିଲେ ମଧ୍ୟ ମୁଁ ବିନା ଦ୍ୱିଧାରେ କହିବି ଯେ ଢେଙ୍କି ଆଫ୍ରିକାକୁ ଗଲେ ବି ଧାନ କୁଟେ।

କିନ୍ତୁ ଗୋଟିଏ କଥା। ଧାନ ଥିଲେ ସିନା ଢେଙ୍କି ତାକୁ କୁଟିବ ନ କୁଟିବ ସେ କଥା ବିଚାର କରିବ, ଧାନ ନ ଥିଲେ ? ଆମ ଓଡ଼ିଆ ଢେଙ୍କି ଅବସ୍ଥା ବେଳେବେଳେ ସେଇୟା ହିଁ ହୁଏ। ବନ୍ୟା, ବାତ୍ୟା ଓ ମରୁଡ଼ିର ପ୍ରିୟ କ୍ରୀଡ଼ାସ୍ଥଳୀ ଉତ୍କଳରେ ତ ଅନଟନ ଲାଗି ରହିଥାଏ - ଓଡ଼ିଆ ଢେଙ୍କିମାନେ ଶସ୍ତା, ସୁନ୍ଦର ଓ ମଜଭୁତ୍ ହେଲେ ମଧ୍ୟ ଏହି ଢେଙ୍କିମାନଙ୍କୁ ଅନେକ ସମୟରେ ଧାନ କୁଟିବାର ସୁଯୋଗ ହିଁ ମିଳେନି। ତେଣୁ ସେମାନେ ଖାଲି ଚକ୍ଷୁ କୁଟି କୁଟି କାନ ଫଟା ବୃଥା ଢକର୍ କଟ୍ ଢକର୍ କଟ୍ ଶବ୍ଦ କରି ନିଜ ନିଜ ଭିତରେ କୋଳାହଳ ସୃଷ୍ଟି କରୁଥାଆନ୍ତି। ଆମ ବିଶ୍ୱବିଦ୍ୟାଳୟ ସବୁ ତହିଁର ଗୋଟିଏ ଗୋଟିଏ ନମୁନା। ଫଳରେ ଓଡ଼ିଆ ଢେଙ୍କି ହୁଏ କଟକୀ ଢେଙ୍କି କିମ୍ବା ସମ୍ବଲପୁରୀ ଢେଙ୍କି, ବ୍ରାହ୍ମଣ ଢେଙ୍କି କିମ୍ବା କରଣ ଢେଙ୍କି- ହରିଜନ ଢେଙ୍କି ଅଥବା ଗିରିଜନ ଢେଙ୍କି।

ସମ୍ବଲପୁର ବିଶ୍ୱବିଦ୍ୟାଳୟରୁ ଅବ୍ୟାହତି ନେଇ ମୁଁ ଧୀରେ ଧୀରେ ମୋର ଢେଙ୍କିତ୍ୱ ହରାଇବାକୁ ଯାଉଛି, ହଠାତ୍ ଦିଲ୍ଲୀରୁ ଡାକରା ଆସିଲା - ଇସ୍ପାତ୍ ଓ ଖଣିମନ୍ତ୍ରୀଙ୍କ ଇଚ୍ଛା ମୁଁ ତାଙ୍କୁ ଅତି ଶୀଘ୍ର ଦେଖା କରେଁ। ବୁକୁରୁ ପୁଟୁଳି ଧରି କେସିଙ୍ଗାରୁ ମାଡ୍ରାସ୍-ଟାଟା ଏକ୍‌ସପ୍ରେସ୍‌ରେ ଝାରସୁଗୁଡ଼ା ଓ ସେଠାରୁ ଉତ୍କଳ ଏକ୍‌ସପ୍ରେସ୍‌ରେ ମୁଁ ଚାଲିଲି 'ପୁଷ୍ପେଷୁ ମଲ୍ଲୀ, ନଗରେଷୁ ଦିଲ୍ଲୀ' ଅଭିମୁଖରେ।

ଯିଏ ଦିଲ୍ଲୀକା ଲଡ୍‌ଡୁ କଥା କହିଥିଲା - ସତରେ ଠିକ୍ କହିଥିଲା। ମନେହୁଏ ଦିଲ୍ଲୀର ସବୁଯାକ ଲଡ୍‌ଡୁ - ଯିଏ ଖାଇବ ସେ ପସ୍ତାଇବ, ଯିଏ ନ ଖାଇବ ସିଏ ବି ପସ୍ତାଇବ। ମଝିରେ ମଝିରେ ଦିଲ୍ଲୀ ଥରେ ଅଧେ ବୁଲି ନ ଆସିଲେ କିଛି ଗୋଟାଏ ଅଭାବ ଅପୂରଣ ରହିଗଲା ପରି ଲାଗେ - ସୁଯୋଗ ହରାଇଲେ ପସ୍ତାଇବାକୁ ହୁଏ। ଆଉ ଆସିଲେ। ଦିଲ୍ଲୀରେ କାହିଁକି କେଜାଣି ମୋତେ ଅଣନିଃଶ୍ୱାସୀ ଲାଗେ - କେମିତି ଗୋଟାଏ 'ହେଇ ଆସିଗଲା - ହେଇ ଆସିଗଲା' ଭାବ - ସତେ ଯେମିତି କେହି ମହମ୍ମଦ ଘୋରୀ, ମହମ୍ମଦ ଗଜନୀ କି ମହମ୍ମଦ ଟୋଗଲକ ଗୋଟାଏ ହାତେ ଲମ୍ବର ଦାଢ଼ି ଆଉ ହାତେ ଲମ୍ବର ଛୁରୀ ଧରି ପଛରେ ଛପି ଛପି ଚାଲିଛି, ଆଉ କେହି ଜଣେ କାନ ପାଖରେ ଫୁସ୍ ଫୁସ୍ କରି କହୁଛି - 'ହୋସିୟାର - ହୋସିୟାର।' ଭଲ ହେଉ ମନ୍ଦ ହେଉ କଲିକତାକୁ ବୁଝି ହୁଏ - ଦିଲ୍ଲୀରେ କିନ୍ତୁ ମନେହୁଏ ସତେ ଯେମିତି ସହର ଓ ସହରର ସମସ୍ତେ ଗୋଟିଏ ଗୋଟିଏ ମୁଖା ପିନ୍ଧିଛନ୍ତି। ଗୋଟିଏ ଆଡ଼ିକି ଦିଲ୍ଲୀର ଉଦ୍ୟାନ, ଫୁଆରା ଓ ଆଲୋକ ମାଳା, ରାଷ୍ଟ୍ରପତି ଭବନ, ଅଶୋକା ହୋଟେଲ, ଚାଣକ୍ୟପୁରୀ - ଅନ୍ୟ ଦିଗରେ ପୁରୁଣା କିଲ୍ଲା, ଭଙ୍ଗାରୁଜା କବର ଆଉ ନିଜାମୁଦ୍ଦିନ ଷ୍ଟେସନ୍ ପାଖେଇ ଆସିଲାବେଳେ ରେଳ ଲାଇନ୍ କଡ଼ର ଝୁପୁଡ଼ି ସବୁ। ଗୋଟିଏ ଦିଗରେ ରାଜପଥ - ଜନପଥ - ଆଉ ଧାଡ଼ି ଧାଡ଼ି କିସମ୍ କିସମ୍‌ର ଫୁଲଭରା ଗଛ। ଅନ୍ୟ ଆଡ଼ିକି ଦିଲ୍ଲୀ ଅଞ୍ଚଳର ଟାଙ୍ଗର ଭୂମି। ଏକ ପାଖରେ ବୋଇଙ୍ଗ୍ ଜୁମ୍ବୋ, କାରାଭେଲ୍, ଜେଟ୍ ଆଉ ଏଆର ବସ୍ - ଅନ୍ୟ ପାଖରେ ଗଧ ଆଉ ଓଟ। କୌପୀନଧାରୀ ବାପୁଜୀ - ଆଉ ତାଙ୍କ ଉପରେ କୋଟିଏ ଟଙ୍କାର ସମାଧି । କେଉଁଟା ସତ, କେଉଁଟା ମିଛ - କିଏ ଜଳ ଆଉ କିଏ ମରୀଚିକା ବୁଝି ହୁଏନି।

ଆଉ ଦିଲ୍ଲୀର ଏଇ ଧୂର୍ତ୍ତ ଟେକ୍‌ସି ଓ ଅଟୋ ରିକ୍‌ସାବାଲା - ସେମାନଙ୍କୁ ସତରେ ଜୁହାର। ସିଧା ନ ନେଇ କୁଆଡ଼େ ସେ ଘୂରେଇ ବୁଲିବେ। ଦୁଇ ମାଇଲ ବାଟକୁ ଛଅ ମାଇଲ କରି ଭଡାକୁ ତିନି ଗୁଣ କରି ସାରିଥିବେ - ତମେ ମିଟରକୁ ଅନାଇଥାଅ।

**ଥରକର ଘଟଣା :**

ମୁଁ ଓଡ଼ିଶା ଭବନରେ ପହଞ୍ଚିଲା ପରେ ଜାଣିଲି - ପ୍ରାୟ ତିଳଧାରଣ ପାଇଁ ସ୍ଥାନ ନାହିଁ। ଏକା ସଙ୍ଗରେ ଗଭର୍ଣ୍ଣର, ମୁଖ୍ୟମନ୍ତ୍ରୀ, ଅନ୍ୟ କେତେ ମନ୍ତ୍ରୀ, ଚିଫ୍ ସେକ୍ରେଟେରୀ ଆଉ ଅନ୍ୟମାନେ ପହଞ୍ଚି ଯାଇଛନ୍ତି। ମେନେଜର ଦୁଃଖ କରି ଅବସ୍ଥା ବୁଝାଇ ଦେଲେ। ରାତି ପ୍ରାୟ ଦଶଟା ହୋଇଆସିଲାଣି - ହୋଟେଲ ସବୁ କାହିଁ କେତେଦୂରରେ। ମେନେଜର କହିଲେ, ସେ ଜାଣନ୍ତି ବିଶ୍ୱ ଯୁବକେନ୍ଦ୍ରରେ କୋଠରୀ ଖାଲି ଅଛି - ରେଟ୍ ଅବଶ୍ୟ ଟିକିଏ ବେଶି କିନ୍ତୁ ପାଖରେ। କାଲି ପୁଣି ଦରକାର ହେଲେ ଅନ୍ୟ କେଉଁଠି ଦେଖିବା।

ଟେକ୍ସିବାଲାକୁ ମୁଁ ଭଡ଼ାଦେଇ ସାରିଥିଲି - ବକ୍‌ସିସ୍ ମଧ୍ୟ। ସେ କିନ୍ତୁ ଯାଇ ନଥିଲା। ସେ ମୋତେ ବିଶ୍ୱଯୁବକେନ୍ଦ୍ରକୁ ନେଇ ଯାଇପାରିବ କି ବୋଲି ପଚାରିଲି ଆଉ ସେ ଜବାବ ଦେଲା, 'କେଁ୍ୟା ନହିଁ ଜୀ। ଆପକା ହି ଗାଡ଼ି।' କହିଲି - 'ଟିକିଏ ଶୀଘ୍ର'। ସେ କହିଲା 'ତୁରତ୍ - ଫଟାଫଟ୍।'

ଓଡ଼ିଶା ଭବନରୁ ଗାଡ଼ି ଛୁଟାଇ ନେଲା ତାମିଲନାଡୁ ଭବନ ଆଡ଼କୁ। କମାଲ୍ ଆଟାଟୁର୍କ ରୋଡ - ରେସ୍ କୋର୍ସ ରୋଡ଼, କିଙ୍ଗ ଜର୍ଜ ଏଭେନ୍ୟୁ - କ୍ରିଷ୍ଣମେନନ୍ ମାର୍ଗ, ଡାଲ୍‌ହାଉସି - ସାଉଥ ଏଭେନ୍ୟୁ - ତିନ୍‌ମୂର୍ତ୍ତି - ଆଉ ଗାଡ଼ି ପହଞ୍ଚିଗଲା ଗୋଟାଏ ସୁନ୍ଦର କୋଠା ସାମନାରେ। ଟେକ୍ସିବାଲା କହିଲା 'ଆଗୟା, ସାହାବ୍ ଆପକା ବିଶ୍ୱଯୁବକେନ୍ଦ୍ର'। ରାତି ୧୦ଟା ବାଜି ଯାଇ ସାରିଥିଲା। ଟେକ୍ସିବାଲାକୁ ଟିକିଏ ଅପେକ୍ଷା କରିବାକୁ କହି କୋଠରୀ ଖାଲି ଅଛି ନା ନାହିଁ ଯାଇ ବୁଝି ଆସିଲି। ସିଙ୍ଗଲ୍ ବେଡ୍‌ର କୋଠରୀଟିଏ ମିଳିଗଲା। ଟଙ୍କା ଦେଲାବେଳେ ଟେକ୍ସିବାଲାକୁ କହିଲି - 'ବଡ଼ି ମେହେରବାନି।' ମିଟର ଦେଖାଉଥିବା ଟଙ୍କା ଉପରେ ସୁଟକେଶ୍ ପାଇଁ ଆଉ ଟଙ୍କାଟିଏ ବେଶି ମାଗି ସେ ଉତ୍ତର ଦେଲା - 'କୋଇ ବାତ ନହିଁ ଜୀ।'

ସକାଳେ କୋଠାରୁ ବାହାରକୁ ଯେତେବେଳେ ଆସିଲି - ରୋଡ଼ର ଅନ୍ୟ ପାଖରେ ସାମାନ୍ୟ କିଛି ଦୂରରେ ଗୋଟିଏ ପରିଚିତ କୋଠା ଦେଖିଲା ପରି ମନେହେଲା। ପଚାରି ଜାଣିଲି ଯେ ସେ କୋଠାଟି ଉତ୍ତର ପ୍ରଦେଶ ଭବନ। ଠିକ୍ ତାକୁ ଲାଗି କରି ହିଁ ଆମ ଓଡ଼ିଶା ଭବନ। ହେ ଭଗବାନ। ଓଡ଼ିଶା ଭବନରୁ ଏଇ ବିଶ୍ୱଯୁବକେନ୍ଦ୍ର ଅଧ ଫର୍ଲଙ୍ଗ ବି ହେବ ନି - ମୁଁ ମୋର ଛୋଟ ସୁଟ୍‌କେଶ୍‌ଟିକୁ ହାତରେ ଧରି ସୁନ୍ଦର ଚାଲି ଆସି ପାରିଥାଆନ୍ତି, ଆଉ ଟେକ୍ସିବାଲା କାହିଁ କୁଆଡ଼େ ଘୂରାଇ ଆଣିଲା - ପୁଣି ସୁଟ୍‌କେଶ୍ ପାଇଁ ବଳକା ଟଙ୍କାଟିଏ ନେଇ କହିଲା - 'କୋଇ ବାତ୍ ନହିଁ।'

ଦିଲ୍ଲୀ ଆଇ.ଆଇ.ଟି.ରେ ରାଉରକେଲା ଇଞ୍ଜିନିୟରିଂ କଲେଜର ମୋର କେତେଜଣ ପୁରୁଣା ଛାତ୍ର ସ୍ନାତକୋତ୍ତର ଶିକ୍ଷା ନେଉଥିଲେ। ଆମେ ସମସ୍ତେ ମିଶି ଦିନେ ରାତିରେ ଏକାଠି ଖାଉଥିଲୁ – କଥା ଛଳରେ ସେମାନଙ୍କୁ ମୋର ଏଇ ଅନୁଭୂତି କଥା କହିଥିଲି। ସେ ଭିତରୁ ଜଣେ କହିଲା – "ସାର୍, ଏମାନେ ନୂଆ ଲୋକ ବୋଲି ଜାଣିଲେ ଏମିତି ଠକନ୍ତି। ଆମେ ଏଠାକାର ସବୁ ଜାଣିଗଲୁଣି – ଆମକୁ ଏମାନେ କେବେ ଠକି ପାରିବେନି।"

କେତେ ମାସ ଗଲା ପରେ ମୁଁ ଆଉ ଥରେ ଦିଲ୍ଲୀ ଆସିଲି, ଦିଲ୍ଲୀ ଇଞ୍ଜିନିୟରିଂ କଲେଜର ଗୋଟିଏ ନିମନ୍ତ୍ରଣ ରକ୍ଷାକରି। ସେମାନେ ତାଙ୍କ ଅତିଥି ଭବନରେ ମୋ ପାଇଁ ରହିବା ଓ ଖାଇବା ପିଇବାର ବନ୍ଦୋବସ୍ତ କରିଛନ୍ତି ବୋଲି ଖବର ଦେଇଥିଲେ। ମୁଁ ଏଥର ଯେତେବେଳେ ଦିଲ୍ଲୀ ରେଲଷ୍ଟେସନ୍‌ରେ ଓହ୍ଲାଇ ମୋର ସେଇ ପୁରୁଣା ଛାତ୍ରମାନଙ୍କୁ ଷ୍ଟେସନରେ ଦେଖିଲି, ବହୁତ ଖୁସି ହେଲି। ମୁଁ ଦିଲ୍ଲୀ ଆସୁଥିବାର ଖବର ପାଇ ସେମାନେ ମୋତେ ଦେଖାକରିବାକୁ ଷ୍ଟେସନ୍ ଆସିଥିଲେ। ସେମାନେ ଠିକ୍ କଲେ ଯେ ସମସ୍ତେ ମୋ ସାଙ୍ଗରେ ଦିଲ୍ଲୀ ଇଞ୍ଜିନିୟରିଂ କଲେଜକୁ ଯିବେ ଓ ମୋତେ ସେଠାର ଅତିଥି ଭବନରେ ଛାଡ଼ି ଦେଲା ପରେ ବସ୍‌ରେ ଆଇ.ଆଇ.ଟି. ଫେରିବେ। ଟେକ୍‌ସିରେ ଚଢ଼ିଲାବେଳେ ଜଣେ ଛାତ୍ର ଟେକ୍‌ସି ଡ୍ରାଇଭରକୁ କହିଲା – 'ଦିଲ୍ଲୀ ଇଂଞ୍ଜିନିୟରିଂ କଲେଜ କାଶ୍ମିରୀ ଗେଟ୍'।

ଟେକ୍‌ସି ଚାଲିଲା। ଆମେ ଏଆଡୁ ସେଆଡୁ କେତେକଥା ଗପକରି ଚାଲିଥାଉ। ଗୁଡ଼ିଏ ବାଟ ଗଲାଣି – ମିଟର ଆଠଟଙ୍କା ଦେଖାଉଛି – ମୁଁ କହିଲି, ଗାଡ଼ି ଟିକିଏ ଅଟକାଇ ପଚାରି ଦିଅନ୍ତ ନି ଆମେ ଠିକ୍ ବାଟରେ ଯାଉଛୁନା ନାହିଁ? ସେମାନେ ହସିଲେ, "ନାଇଁ ସାର୍, ଆପଣଙ୍କୁ ସେଥର ଟେକ୍‌ସିବାଲା ଠକିଲା ବୋଲି ଏମାନେ ଆମକୁ ଠକିଦେବେ? ଆମେ ପୁରାପୁରି ଦିଲ୍ଲୀୱାଲା।'

ମୁଁ ଭାବିଲି – 'ହଁ, ସତ କଥା।'

ପୁଣି ଗପ ଚାଲିଲା। ମିଟର ଯେତେବେଳେ ଏଗାର ଟଙ୍କା ଦେଖାଇଲା, ମୁଁ କହିଲି "ବାଟ କଥା କାହାକୁ ପଚାରିଦେଲେ କ୍ଷତି କ'ଣ? ଏ ଗୁଡାକ ଭୟଙ୍କର ଠକ, କାଳେ ଘୂରେଇ ନେଉଥିବେ।"

ଗାଡ଼ି ଅଟକାଇ ଯେତେବେଳେ ପାଖର କେତେଜଣକୁ ପଚରାଗଲା, ସେମାନେ ଆଶ୍ଚର୍ଯ୍ୟ ହୋଇ ଅନାଇଲେ – କହିଲେ 'ଇଞ୍ଜିନିୟରିଂ କଲେଜ ଯାଇ କାଶ୍ମୀର ଗେଟ୍ ପାଖରେ। ଆପଣ ଏଇ ନୂରଜାହାନ୍ ରୋଡ୍ ଦେଇ ଯାଉଛନ୍ତି କାହିଁକି? ଗୁଡ଼ିଏ ବାଟ ଅଯଥା ବୁଲିବେ।'

ପିଲାମାନେ ଉତ୍ତ୍ୟକ୍ତ ହୋଇଯାଇଥିଲେ। ଟେକ୍ସିବାଲା ସେମାନଙ୍କୁ କହୁଥିଲା - 'ଆପନେ ତୋ ନୁରଜାହାନ ରୋଡ଼ ବୋଲା।' ଆଇ.ଆଇ.ଟି ଛାତ୍ର ବୋଲି ଜାଣି ସେଇ ଲୋକମାନେ ଟେକ୍ସିବାଲାକୁ ଧମକାଇ ଶେଷରେ ନିଷ୍ପତ୍ତି କରିଦେଲେ ଯେ ଇଞ୍ଜିନିଅରିଂ କଲେଜକୁ ପହଞ୍ଚାଇ ଦେଲା ପରେ ମିଟର ରିଡିଂରୁ ତିନି ଟଙ୍କା କମ୍ ଦିଆଯିବ।

ଗାଡ଼ି ଆଉ ଥରେ ଚାଲିଲାବେଳକୁ ମୁଁ ହସିକରି କହିଲି, 'ଆୟେ ବଡ଼େ ଦିଲ୍ଲୀୱାଲେ!' ସେମାନେ ସମସ୍ତେ ହସି ହସି ଜବାବ ଦେଲେ 'ସତରେ ସାର୍ - ଏଗୁଡ଼ାକ ମହାଠକ!'

ତଥାପି ଏ ଦିଲ୍ଲୀୱାଲାଙ୍କୁ ଭଲ ନ ପାଇ ରହି ହୁଏନି। ଆଖପାଖ ଅଞ୍ଚଳର ଲୋକେ ପଞ୍ଜାବ, ହରିୟାନା, ପଶ୍ଚିମ ଉତ୍ତରପ୍ରଦେଶ, ଉତ୍ତର ମଧ୍ୟପ୍ରଦେଶ, ରାଜସ୍ଥାନ କିମ୍ବା ଯେକୌଣସି ଅଞ୍ଚଳର ହୁଅନ୍ତୁ ନା କାହିଁକି ଭାରତୀୟ ଜାତିର ପ୍ରତିନିଧିତ୍ୱ କରିବା ପାଇଁ ବେଶ୍ ଉପଯୁକ୍ତ। ସୁନ୍ଦର ଚେହେରା - ସୁସ୍ଥ ସବଳ, ସାହସୀ, କର୍ମଠ, ବୁଦ୍ଧିମାନ ଓ ଧୂର୍ତ୍ତ। ସାଧାରଣ ଭାବରେ ଏମାନଙ୍କ ମନୋବୃତ୍ତି ଖେଳୱାର୍ଡ ଭାବର ହିଁ ପରିଚୟ ଦିଏ। ହୀରାକୁଦ ବନ୍ଧ ଯୋଜନାରେ କାମ କଲାବେଳେ ମୁଁ ଏମାନଙ୍କୁ ଅତି ନିକଟରୁ ଦେଖିବାର ସୁଯୋଗ ପାଇଥିଲି। ଏମାନେ ଅତି ଆଧୁନିକ ଜଣା ପଡୁଥିଲେ ମଧ୍ୟ ନିଜ ବାପା ମା'ଙ୍କୁ ଯେପରି ଭକ୍ତି କରନ୍ତି, ନିଜ ଜାତୀୟ ଐତିହ୍ୟ ତଥା କୌଳିକ ପରମ୍ପରାକୁ ସେପରି ଶ୍ରଦ୍ଧା କରନ୍ତି। ଭାଇ ଭଉଣୀଙ୍କ ମଧ୍ୟରେ ପରସ୍ପର ପରସ୍ପର ପ୍ରତି ସ୍ନେହ ଖୁବ୍ ବେଶି। ଶିଖ ଗୁରୁଦ୍ୱାରାରେ ହେଉ, ତୁଳସୀ ରାମାୟଣ ପାଠବେଳେ କେଉଁ ଗଛ ତଳେ, କାହା ଘରେ, ଅଥବା କେଉଁ ମନ୍ଦିର ପ୍ରାଙ୍ଗଣରେ ହେଉ ଅଥବା ସାଧୁ ସନ୍ଥମାନଙ୍କ ନିକଟରେ ହେଉ, ଏମାନଙ୍କ ବେଶ୍ ପରିଚୟ ମିଳେ। ଭାରତୀୟ ସୈନ୍ୟବାହିନୀରେ ଜୀବନ ଯାତ୍ରା ଭଣା ଅଧିକେ ଏମାନଙ୍କ ପ୍ରତ୍ୟେକ ପରିବାରର ଜୀବନ ଧାରଣ ପ୍ରଣାଳୀକୁ ପ୍ରଭାବିତ କରିଛି, ତେଣୁ ଉପରେ ଉପରେ ଏମାନେ ବେଳେବେଳେ ଅଣଭାରତୀୟ ପରି ଜଣାଯାଉଥିଲେ ମଧ୍ୟ ଭିତରେ ସ୍ୱଚ୍ଛ ଭାରତୀୟ - ଆଜିର ଯୁଗରେ ପୃଥିବୀର ଅନ୍ୟାନ୍ୟ ରାଷ୍ଟ୍ରର ଅଧିବାସୀଙ୍କ ସହିତ ଯୋଡ଼ ଦେବା ପାଇଁ ଭାରତର ଉପଯୁକ୍ତ ଦାୟାଦ।

x x x

ଓଡ଼ିଶା ଭବନରେ ଯେତେବେଳେ ପହଞ୍ଚିଲି - ପାଖ ଉତ୍ତର ପ୍ରଦେଶ ଭବନରେ କଣ ସବୁ ଦାବୀ ପୂରଣ କରିବା ପାଇଁ ନାରା ଦିଆ ଚାଲିଥାଏ। ଜଣେ କେହି ନେତା ମାଇକ୍ ଧରି ଚିତ୍କାର କରୁଥାଆନ୍ତି - 'ହମାରେ ମାଙ୍ଗ୍ ଚରନ୍ ସିଂ'।

ଅନ୍ୟମାନେ ଏକା ସାଙ୍ଗରେ ରଡ଼ୁଥାଆନ୍ତି - 'ପୁରନ୍ କରୋ - ପୁରନ୍ କରୋ।'

x x x

ଇସ୍ପାତ ଓ ଖଣି ମନ୍ତ୍ରଣାଳୟ ଉଦ୍ୟୋଗ ଭବନକୁ ଯାଇ ମନ୍ତ୍ରୀ ମହୋଦୟଙ୍କୁ ଦେଖାକଲି। ସେ କହିଲେ ଯେ ବୈଷୟିକ ଶିକ୍ଷା ସମ୍ବନ୍ଧରେ କିଛି ପରାମର୍ଶ ଦେବା ପାଇଁ ପଶ୍ଚିମ ଆଫ୍ରିକାସ୍ଥିତ ଲାଇବେରିଆ ଗଣରାଜ୍ୟ ଭାରତ ସରକାରଙ୍କୁ ଅନୁରୋଧ କରିଛି। ତେଣୁ ଅତି ଶୀଘ୍ର ଏଠାରେ ଜଣେ ବିଶେଷଜ୍ଞ ସେଠାକୁ ଯିବା କଥା। ଇଞ୍ଜିନିୟରିଂ କନଷ୍ଟ୍ରକ୍‌ସନ୍, ଇଞ୍ଜିନିୟରିଂ କଲେଜ ପ୍ରତିଷ୍ଠା ତଥା ଜଣେ ପୂର୍ବତନ କୁଳପତି ଭାବରେ ବିଶ୍ୱବିଦ୍ୟାଳୟ ସ୍ତରୀୟ ଶିକ୍ଷା ସମ୍ବନ୍ଧରେ ଅଭିଜ୍ଞତା ଥିବା ଦୃଷ୍ଟିରୁ ସେ ଶିକ୍ଷାମନ୍ତ୍ରୀ ଚାହାନ୍ତି ଯେ ମୁଁ ସେ ଦେଶକୁ ଯାଏଁ।

ଆଫ୍ରିକାର ନାଁ ଶୁଣିଲେ ଦେହ ଶୀତେଇ ଉଠେ। ଏ ଯୁଗରେ ମଧ ଦାନ୍ତରେ କାନ ଛିଣ୍ଡାଇ ଲୁମୁମ୍ୱାଙ୍କୁ ତାଙ୍କ ବିରୋଧୀ ଦଳ ଭୋକ ଉପାସରେ ତିଳତିଳ କରି ମାରି ପକାଇଥିଲେ। ସେ ମହାଦେଶରେ କେଉଁଠି ପ୍ରେସିଡେଣ୍ଟ ପ୍ରଧାନମନ୍ତ୍ରୀଙ୍କୁ ବରଖାସ୍ତ କଲାଣି ତ ପ୍ରଧାନମନ୍ତ୍ରୀ ବରଖାସ୍ତ କଲେଣି ପ୍ରେସିଡେଣ୍ଟଙ୍କୁ ଓ ସେ ଦୁହିଁଙ୍କୁ ବରଖାସ୍ତ କଲେଣି ମୁଖ୍ୟ ସେନାପତି। ୟୁଗାଣ୍ଡାର ଇଦି ଅମିନ୍‌ଙ୍କ ପରି କେଉଁ ଦେଶର ମୁଖ୍ୟ ଭୌତିକକାଣ୍ଡ ସବୁର ଜଣେ ମୂର୍ତ୍ତିମନ୍ତ ପ୍ରତୀକ ତ କର୍ଣ୍ଣେଲ ଗଡ଼୍‌ଡାଫି ପରି ଆଉ କେଉଁଠିର ଶାସନକର୍ତ୍ତା ସାଧାରଣ ଆଖିରେ ଜଣେ ରୀତିମତ ପାଗଳ। ଏ ଦେଶମାନଙ୍କଠାରୁ ପଶ୍ଚିମ ଆଫ୍ରିକାର ଦେଶମାନେ ଯେ ବିଶେଷ କିଛି ଭଲ ହୋଇଥିବେ, ତା'ର ବା ପ୍ରମାଣ କ'ଣ? ଜନନାୟକ ହିସାବରେ ନେହେରୁଙ୍କ ସଙ୍ଗରେ ସମସ୍କନ୍ଧ ବୋଲି ତୁଳନା କରାଯାଉଥିବା ଏନ୍‌କ୍ରୁମାଙ୍କ ଯେଉଁ ଦଶା ହେଲା, ସେ କଥା ସମସ୍ତଙ୍କୁ ଜଣା - ରାଷ୍ଟ୍ରମୁଖ୍ୟ ଭାବରେ ଅନ୍ୟ ଦେଶକୁ କଣ ସବୁ ପରାମର୍ଶ ଦେବାକୁ ଯାଇଛନ୍ତି - ଏଣେ ତାଙ୍କ ଆସ୍ଥାନକୁ ଆଉ ଜଣେ କିଏ ଦଖଲ କରିଗଲାଣି। ସେପରି ମହାଦେଶକୁ ଯିବି - ପୁଣି ଏଇ ବୟସରେ। ମୁଁ ଟିକିଏ ଦୋ ଦୋ ପାଞ୍ଚ ହେଉଥିବା ଦେଖି ମନ୍ତ୍ରୀ ମହୋଦୟ ପଶ୍ଚିମ ଆଫ୍ରିକାର ଦେଶମାନଙ୍କ ସଙ୍ଗରେ ସୁସମ୍ପର୍କ ପ୍ରତିଷ୍ଠା କରିବା ପାଇଁ ଭାରତ କାହିଁକି ଆଗ୍ରହୀ ସେ ସମ୍ବନ୍ଧରେ କେତେ କଥା କହି ସେହି ସୁସମ୍ପର୍କ ପ୍ରତିଷ୍ଠା ଦିଗରେ ମୋର ଯାତ୍ରା ଯେ ଅନେକ ସାହାଯ୍ୟ କରିବ, ସେ କଥା ସୂଚାଇ ଦେଲେ।

ତା'ପରେ ମୋର ଆଉ ବିଶେଷ କିଛି କହିବା ନଥିଲା। ମୁଁ ତ ଉଣା ଅଧିକେ ଘରେ ପଡ଼ି ରହିଥିଲି। ପଡ଼ିରହିଲେ ଘର ଢେଙ୍କି କୁଆଡେ ବେଳେବେଳେ କୁମ୍ଭୀର

ପାଲଟିଯାଏ। ଆମ ଓଡ଼ିଆଙ୍କ ଗାଁ ଗାଁରେ ଏମିତି କୁମ୍ଭୀର ସାଲୁବାଲୁ। ଏମାନେ ପାଖ ପଡୋଶୀଙ୍କ ଦୁଃଖ ଦେଖି ଆଖିରୁ ଲୁହ ଗଡାନ୍ତି ସତ; କିନ୍ତୁ ସୁବିଧା ହେଲେ ସେମାନଙ୍କୁ ଗୋଟାପଣେ ଗିଳି ଦିଅନ୍ତି। ତେଣୁ ଘରେ ପଡ଼ିରହି ଏମିତି ଗୋଟାଏ କୁମ୍ଭୀର ପାଲଟିବା ଅପେକ୍ଷା ସେ ଅଜଣା ମହାଦେଶକୁ ଦେଖି ଆସିବା ଭଲ। ଖାଲି ଏତିକି କହିଲି ଯେ ଅନେକ ଦିନ ସେଠାରେ ରହିବା ମୋ ପକ୍ଷରେ ଏବେ ସହଜ ନୁହେଁ। ଭାରତ ସରକାରଙ୍କ ଇଚ୍ଛା ଅନୁସାରେ ମୁଁ ସେଠାକୁ ଯାଇ ବୈଷୟିକ ଶିକ୍ଷା ସମ୍ବନ୍ଧୀୟ ସମସ୍ତ ବିଷୟ ଅନୁଧ୍ୟାନ କଲା ପରେ ଫେରିଆସି ଭାରତ ସରକାରଙ୍କୁ ମୋର ରିପୋର୍ଟ ଦେବି। ତା'ପରେ ଆଉ ଥରେ ଯିବା ଆସିବା କଥା ଭାରତ ସରକାର ଇଚ୍ଛାମତେ ବିଚାର କରିବେ।

ଏହି ପ୍ରସ୍ତାବକୁ ଗ୍ରହଣ କରିନେଇ ମୋର ଲାଇବେରିଆ ଯିବା ନିମନ୍ତେ ଯଥୋଚିତ ବ୍ୟବସ୍ଥା କରିଦେବା ପାଇଁ ମନ୍ତ୍ରୀ ମହୋଦୟ ସରକାରୀ ଆଦେଶ ଦେଲେ।

ଲାଇବେରିଆରେ ଭାରତର ଦୂତାବାସ ନାହିଁ। ତେଣୁ ଆମ ବୈଦେଶିକ ମନ୍ତ୍ରଣାଳୟ ଆକ୍ରାରେ ଥିବା ଭାରତର ହାଇକମିଶନରଙ୍କ ଜରିଆରେ ଲାଇବେରିଆ ସରକାରଙ୍କୁ ଖବର ପଠାଇଦେଲେ ଯେ ମୁଁ ଦିଲ୍ଲୀରେ ଅପେକ୍ଷା କରିଛି ଆଉ ସେମାନଙ୍କ ଠାରୁ ଇଂଗିତ ପାଇଲାକ୍ଷଣି ମନ୍‌ରୋଭିଆ ଯିବି।

ଉତ୍ତର ଆସିବାରେ ୮/୧୦ ଦିନ ଲାଗିଯିବ ବୋଲି ଜଣାଥିଲା। ସେ ସମୟ ଭିତରେ ମୁଁ ମୋର ପାସ୍‌ପୋର୍ଟ ଓ ହେଲ୍‌ଥ ସାର୍ଟିଫିକେଟ ସଂଗ୍ରହ କରିବାକୁ ଆରମ୍ଭ କଲି। ବସନ୍ତ ଟୀକା ଓ ହଇଜା ପ୍ରତିଷେଧକ ଇଞ୍ଜେକ୍‌ସନ୍ ସାଙ୍ଗକୁ ଆଫ୍ରିକା ଗଲେ ୟେଲୋ ଫିବର ପ୍ରତିଷେଧକ ଇଞ୍ଜେକ୍‌ସନ୍ ନେବା ପାଇଁ ବାଧ୍ୟ। ସେ ଇଞ୍ଜେକ୍‌ସନ୍ ନେବା ପାଇଁ କମ୍ ଜାଗାରେ ସୁବିଧା ଥାଏ। ପୁଣି ଇଞ୍ଜେକ୍‌ସନ୍ ନେବାର ୧୦ ଦିନ ପରେ ହିଁ ଆଫ୍ରିକାକୁ ଯିବା ପାଇଁ ଅନୁମତି ମିଳେ - ଉତ୍ତର ପାଇଁ ଅପେକ୍ଷା କରିବା ଓ ୟେଲୋ ଫିବର ଇଞ୍ଜେକ୍‌ସନକୁ ଫଳପ୍ରଦ କରିବା ପାଇଁ ସମୟ ଦେବା ବେଶ୍ ଖାପ ଖାଇଗଲା।

ଲାଇବେରିଆ ରାଜଧାନୀ ମନ୍‌ରୋଭିଆ ଯିବାକୁ ହେଲେ ମୋତେ ଘାନାର ରାଜଧାନୀ ଆକ୍ରା ଦେଇ ଯିବାକୁ ହେବ। ଆକ୍ରା ଯିବା ପାଇଁ ନୈରୋବି ଓ କାଏରୋ ଦେଇ ବମ୍ବେରୁ ଦୁଇଟି ବାଟ – କିନ୍ତୁ ବମ୍ବେ ନୈରୋବି ଓ ବମ୍ବେ କାଏରୋ ଭିତରେ ଗୁଡ଼ିଏ ଉଡ଼ାଜାହାଜ ଯା' ଆସ କରୁଥିଲେ ମଧ୍ୟ ଆକ୍ରା ଯିବାପାଇଁ ନୈରୋବି ଓ କାଏରୋରୁ ସପ୍ତାହକୁ ଦିନେ ଲେଖାଏଁ ମାତ୍ର ଉଡାନ୍ ଅଛି। ନୈରୋବିରୁ ଆକ୍ରା

ଉଡ଼ାନ୍ ଆମ ଏଆର ଇଣ୍ଡିଆରେ - କିନ୍ତୁ ଆଗତୁରା ବୁକିଂ ହୋଇଯାଇଥିବା ଫଳରେ ଅନେକ ଦିନ ପାଇଁ ସେ ବାଟରେ ଉଡାଜାହାଜରେ ସ୍ଥାନ ନାହିଁ। ମୋତେ ତେଣୁ କାଏରୋ ବାଟ ଦେଇ ହିଁ ଆକ୍ରାକୁ ଯିବାକୁ ପଡ଼ିବ ଇଜିପ୍‌ସିଆନ ଏଆର ଲାଇନ୍‌ସରେ। ଗୋଟିଏ ଉଡାନ୍ ହରାଇବା ଅର୍ଥ କେଉଁଠି ୭ ଦିନ ବସି ରହିବା। ମଇ ଚଉଦ ପନ୍ଦର ତାରିଖରେ କାଏରୋରୁ ଆକ୍ରା ଯିବି ବୋଲି ଠିକ୍ କରି ସେ ଅନୁସାରେ ୧୩ ତାରିଖରେ ଦିଲ୍ଲୀ ଛାଡ଼ିବା ପାଇଁ ଏଆର ଇଣ୍ଡିଆରେ ଟିକେଟ୍ କିଣି ରିଜର୍ଭେଶନ୍ କରାଇ ନେଲି।

ୟେଲୋ ଫିବର ଇଞ୍ଜେକ୍‌ସନ୍ ନେଲା ପରେ ଏଇ ୧୩ ତାରିଖ ପର୍ଯ୍ୟନ୍ତ କେବଳ ବସି ରହିବା କଥା - ସେହି ସମୟ ଭିତରେ ଆମ ପିଲାଦିନର ତମସାଚ୍ଛନ୍ନ ମହାଦେଶ କଥା ଭାବି ବସିଲି।

x x x

ହାଇସ୍କୁଲରେ ଜୟକୃଷ୍ଣ ବାବୁ ଆମକୁ ପଢ଼ାଉଥିଲେ ଭୂଗୋଳ। 'ଦି ଡାର୍କ କଣ୍ଟିନେଣ୍ଟ'କୁ ବୋଧହୁଏ ସେ ପ୍ରାଣର ସହିତ ଭଲ ପାଉଥିଲେ, ଆଉ ଭଲ ପାଉଥିଲେ ଲିଭିଂଷ୍ଟୋନକୁ। ଜିରାଫ, ଜେବ୍ରା, ଜଳହସ୍ତୀ, କୁମ୍ଭୀର, ଦୁଇଶିଙ୍ଗିଆ ଗଣ୍ଡାର, ଗରିଲା, ସିଂହ, ବିରାଟ ବିରାଟ ହାତୀ ଆଉ ସି-ଟିସି ମାଛିରେ ଭରି ରହିଥିବା ଆଫ୍ରିକା। ବନ୍ୟଜନ୍ତୁ ଯେତେ ନୁହନ୍ତି - ସେଠାରେ ମଣିଷ କୁଆଡେ ଥିଲେ ଆହୁରି ବେଶୀ ହିଂସ୍ର। ଦେହର ରଙ୍ଗ ଏତେ କଳା ଯେ ଆଲୁଅ ତଳେ ପଡୁନଥିବା ନିଘଞ୍ଚ ଅରଣ୍ୟର ଅନ୍ଧାର ଭିତରେ ପୂରାପୂରି ହଜି ଯାଇଥିବେ ଆଉ ଲୁଚି ଛପି ଧନୁରୁ ତୀର ଛାଡ଼ିବେ। ଲିଭିଙ୍ଗ୍‌ଷ୍ଟୋନ୍ ଯେତେବେଳେ ଦ୍ୱିତୀୟ ଥର ପାଇଁ ସେହି ଅନ୍ଧକାରାଚ୍ଛନ୍ନ ମହାଦେଶ ଭିତରକୁ ପଶିଲେ - ଆଉ ଫେରିଲେନି। କେଉଁ ଉପଜାତିର ଲୋକେ ତାଙ୍କୁ ଧରି ନେଇ ଗଛରେ ବାନ୍ଧି ପକାଇଥିବେ ଆଉ ରାତିସାରା ନିଆଁ ଜଳାଇ, ବଡ଼ ବଡ଼ ଡ୍ରମ୍ ବାଡ଼େଇ ବୀଭତ୍ସ ନୃତ୍ୟ କରି କରି ତାଙ୍କୁ ଖଣ୍ଡ ଖଣ୍ଡ କରି କାଟି କଡେଇରେ ସିଝାଇଥିବେ - ନିଆଁରେ ପୋଡ଼ିଥିବେ କିମ୍ବା କଞ୍ଚା ଖାଇଯାଇଥିବେ। ଲିଭିଙ୍ଗଷ୍ଟୋନ୍ ଜାଣିଥିଲେ ଯେ ତାଙ୍କର ସେପରି ଦଶା ଘଟିପାରେ, ତଥାପି ସେ ଯାଇଥିଲେ ଆଫ୍ରିକାର ଘୋର ଅରଣ୍ୟ ଭିତରକୁ। ଅଜଣାର ଅନୁସନ୍ଧାନରେ ମଣିଷର କି ଉନ୍ମାଦନା। ଚନ୍ଦ୍ରପୃଷ୍ଠକୁ ଗଲାବେଳେ ଦୁଃସାହସିକ ଆର୍ମଷ୍ଟ୍ରଙ୍ଗ୍ ଜାଣିଥିଲେ ଯେ ସମଗ୍ର ବିଶ୍ୱର ଦୃଷ୍ଟି ତାଙ୍କ ଆଡ଼ିକି - ହୁଏତ ସେ ମନ ଭିତରେ ଆଶା ପୋଷଣ କରିଥିବେ ଯେ ଯଦି କିଛି ଦୁର୍ଘଟନା ଘଟେ, ତାଙ୍କୁ ଉଦ୍ଧାର କରିବା ପାଇଁ ସାରା ମାନବ ଜାତି

କିଛି ନା କିଛି ପ୍ରଯତ୍ନ କରିବ। ଆଉ ଯଦି ମରନ୍ତି – ବିଶ୍ୱ ଇତିହାସରେ ସେ ହେବେ ଅମର। ଲିଭିଙ୍ଗ୍‌ଷ୍ଟୋନ୍‌ଙ୍କ କ'ଣ ବା ଆଶା ଥିଲା! ଜ୍ଞାନ ଆହରଣର କି ଅଦମ୍ୟ ପିପାସା! କଙ୍ଗୋ ନଦୀର ଉତ୍ପତ୍ତି କେଉଁଠି? ଗଙ୍ଗା, ବ୍ରହ୍ମପୁତ୍ର ପରି ନୀଳନଦୀ କୌଣସି ହିମାଦ୍ରି ଶିଖରରୁ ବାହାରି ନି ତ? ସ୍ୱଳ୍ପ ଯନ୍ତ୍ରପାତି ନିଜ ପିଠିରେ ବୋହି ନେଇ ଜୀବନକୁ ପାଣି ଛଡ଼ାଇ ସେହି ମହାପୁରୁଷମାନେ ତମସାଚ୍ଛନ୍ନ ମହାଦେଶର ଯେଉଁ ବିବରଣୀ ଦେଇଥିଲେ ଓ ନକ୍‌ସା କରି ଦେଇ ଯାଇଥିଲେ, ଆକାଶ ମାର୍ଗରୁ ସମସ୍ତ ଆଧୁନିକ ଯନ୍ତ୍ରପାତି ସାହାଯ୍ୟରେ ଫଟୋ ଉଠାଇ ମଧ୍ୟ ଆଜିର ମଣିଷ ତାର ବିଶେଷ ଭୁଲ ଖୋଜି ପାଇପାରିନି।

ଆଉ ଜୟକୃଷ୍ଣ ବାବୁ କହୁଥିଲେ ସାହାରା ମରୁଭୂମି କଥା।

ବାରବର୍ଷର ପିଲାଟିଏ ତା' ଖେଳ ଛାଡ଼ି ଘରକୁ ଦଉଡ଼ି ଦଉଡ଼ି ଆସି ତା'ମାକୁ କହିଲା – "ମା' ଲୋ ମା, ଆ ଦେଖିବୁ, କି ଅଦ୍ଭୁତ ଜିନିଷ ସବୁ ଆକାଶରୁ ପଡୁଛି।"

ମା' ଘରୁ ବାହାରି ଆସି ଆକାଶ ଆଡ଼କୁ ଅନାଇଲା – ବୁନ୍ଦିଏ ଦି' ବୁନ୍ଦା ପାଣି ତା ମୁହଁରେ ପଡ଼ିଲା। ସେ ଖୁସିରେ ହସି କହିଲା - "ପୁଅରେ, ଏଇଟାକୁ ବର୍ଷା କହନ୍ତି, ତୁ ଜନ୍ମ ହେଲା ପରଠୁ ଏ ଯାଏ ବର୍ଷା ହୋଇ ନ ଥିଲା ବୋଲି ତୁ ବର୍ଷା କ'ଣ ଜାଣିନୁ।" ଆମେ ତବ ତବ ଆଖି କରି ଜୟକୃଷ୍ଣ ବାବୁଙ୍କୁ ଅନାଇ ଥାଉଁ ଆଉ ସେ ଯାହା କହନ୍ତି ସେସବୁ ଗିଳି ଯାଉଁ। ପରେ ସେ ଯୋଗ କରନ୍ତି – "ଏଇଟା ହେଲା ସାହାରା ମରୁଭୂମିର ପ୍ରାନ୍ତରେ ଥିବା ଗୋଟିଏ ଦେଶର କଥା – ମରୁଭୂମି ଭିତରେ ହଜାର ହଜାର ମାଇଲ୍ କେବଳ ବାଲି ଆଉ ବାଲି – ଜନ ପ୍ରାଣୀ ଶୂନ୍ୟ।"

ଆଉ କେତେ ଆଶ୍ଚର୍ଯ୍ୟ କଥା ମାନ ସେ କହୁଥିଲେ। ଗୋଟିଏ ଜାତିର ମଣିଷ ଅଛନ୍ତି ଯେ ଏତିକି ଟିକିଏ ଟିକିଏ – ସମସ୍ତେ ବାମନ। ଜାମ୍ବେଜୀ ନଦୀର କେଉଁ କେଉଁଠି କୂଆଡେ ପାଣିର ସୁଅ ଡେଇଁଯିବା ଆଶାରେ କୌଣସି ଅସାବଧାନ ଯାତ୍ରୀ ପାଣିରେ ଥିବା ପଥରମାନଙ୍କରେ ଗୋଡ଼ ପକାଇ ପକାଇ ସୁଅ ମଝିକୁ ଗଲାବେଳେ ଜାଣିପାରେ ଯେ ସେ ଯାହା ସବୁକୁ ପଥର ବୋଲି ଭାବି ଉପରେ ଚାଲି ଆସିଛି ସେ ସବୁ ପଥର ନୁହନ୍ତି – ସତରେ କୁମ୍ଭୀର। ଜାଣିଲା ବେଳକୁ ଆଉ କୁଆଡ଼େ ଯିବା ବାଟ ନାହିଁ। ଗୋଟିଏ ରକମର ଫୁଲ – ପଦ୍ମଫୁଲ ପରି ବଡ଼ । ମହୁମାଛି ଆଉ ଭଅଁର ଫୁଲରୁ ମହୁ ସଂଗ୍ରହ କଲାପରି ଛୋଟ ଛୋଟ ଚଢ଼େଇମାନେ ସେ ଫୁଲର ମହୁ ଶୋଷିବା ଉଦ୍ଦେଶ୍ୟରେ ଯେତେବେଳେ ଫୁଲ ଭିତରେ ବସନ୍ତି ଫୁଲ ଆପଣା ଛାଏଁ ବୁଜି ହୋଇଯାଏ – ଚଢ଼େଇକୁ ଖାଇଯାଏ ଫୁଲ। ଘଞ୍ଚ ଅରଣ୍ୟ ଭିତରେ ବରଗଛର

ଓହଳ ପରି ଝୁଲୁଥାନ୍ତି ବିରାଟ ବିରାଟ ଅଜଗର ସାପ ଆଉ ହରିଣ ପ୍ରଭୃତି ବନ୍ୟଜନ୍ତୁ । ସେ ବାଟ ଦେଇ ଗଲେ ତାଙ୍କୁ ଗୋଟାପଣେ ଉପରକୁ ଟେକି ନିଅନ୍ତି।

ସେ କହୁଥିଲେ, ଏଇ ଅନ୍ଧକାରାଚ୍ଛନ୍ନ ମହାଦେଶର ମଣିଷ ଜଳ ଓ ପବନ, ଜୀବ ଓ ଜନ୍ତୁ, ଗଛ ଓ ପତ୍ର ସମସ୍ତେ ରକ୍ତଭୁକ୍ - ଆଫ୍ରିକାର ନିଜସ୍ୱ ପ୍ରକୃତି ହିଁ ସତେ ଯେପରି ହିଂସ୍ର।

ହିଂସାର ଏପରି ପରିବେଶ ମଧ୍ୟରେ ଅହିଂସାର ପ୍ରତୀକ ମହାତ୍ମାଗାନ୍ଧୀଙ୍କୁ ଯେଉଁଦିନ ଆଫ୍ରିକାର ପରିବେଷ୍ଟନୀ ମଧ୍ୟର ଆମକୁ ଚିହ୍ନାଇ ଦେଲେ ଆମେ ତାଙ୍କ ପାଖକୁ ଆହୁରି ବେଶି ପାଖେଇ ଯାଇଥିଲୁଁ। ମୋର ମନେଅଛି - ସେହି ଡେଙ୍ଗା ପତଳା ଖଦୀପିନ୍ଧା ମଣିଷ ଯେତେବେଳେ ଏକା ଏକା ସ୍କୁଲ ଛୁଟି ପରେ ଭବାନୀପାଟଣାର କର୍ଲାପାଟ ରୋଡରେ ବୁଲିବାକୁ ଯାଆନ୍ତି, ଆମେ ଆମର ଖେଳ ଛାଡ଼ି ଦଉଡ଼ିଯାଉଁ ତାଙ୍କ ପାଖକୁ। ତାଙ୍କ ସାଙ୍ଗରେ ବୁଲିବାକୁ ଯାଉ ଗାନ୍ଧିଜୀଙ୍କ ସମ୍ବନ୍ଧରେ କିଛି ଶୁଣିବା ଆଶାରେ - ଆଉ ସେ କହନ୍ତି ଲବଣ ସତ୍ୟାଗ୍ରହ ଓ ଦାଣ୍ଡୀମାର୍ଚ୍ଚ କଥା - ବାନର ସେନା କଥା - ବଲ୍ଲଭ ଭାଇ ପଟେଲ ସର୍ଦ୍ଦାର ହେବା କଥା - ଓ ଡାୟାରର ଜାଲିଓ୍ୱାନାଓ୍ୱାଲାବାଗ୍ ମାସାକାର୍ କଥା। ଭଗତ ସିଂ ଫାଶୀ ପାଇବା କଥା - ଆଉ କେତେ କେତେ।

ଆମେ କେତେ ଜଣ ଜଳଖିଆ ଖାଇବା ବନ୍ଦ କରି ଦେଇ ପଇସା ସଞ୍ଚୟ କରି ଯେଉଁଦିନ ପ୍ରଥମ କରି ଖଦଡ଼ ଧୋତି ଖଣ୍ଡିଏ ଲେଖାଏଁ କିଣିଲୁ - ତାଙ୍କ ମୁହଁ ଖୁସିରେ ଉଜ୍ଜଳି ଉଠିଥିଲା।

ସେ ଆଜି ଆଉ ନାହାନ୍ତି। ମୁଁ ତାଙ୍କୁ ଅନେକ ବର୍ଷ ପରେ ଭୁବନେଶ୍ୱରରେ ତାଙ୍କ ସାନ ଭାଇ ରଘୁନାଥ ମହାପାତ୍ରଙ୍କ ଘରେ ଦେଖିଥିଲି। ସେତେବେଳେ ସେ ପ୍ରାୟ ମୃତ୍ୟୁ ଶଯ୍ୟାରେ ଥିଲେ। ମୁଁ ଥିଲି ରାଉରକେଲା ଆଞ୍ଚଳିକ ଇଞ୍ଜିନିୟରିଂ କଲେଜର ପ୍ରିନ୍‌ସିପାଲ। "ତୁ ମୋତେ ମନେ ପକାଇଲୁ" - ଏଇ କଥା ହିଁ ସେ ବାରମ୍ବାର ଘୋଷି ହେଲେ। ଜୟକୃଷ୍ଣ ବାବୁ ଥିଲେ ଶିକ୍ଷକଙ୍କ ଭିତରେ ମୋର ଆଦର୍ଶ। ହୀରାକୁଦ ବନ୍ଧ ତିଆରି ସରିଲା ପରେ ମୁଁ ଯଦି ଚିଫ୍ ଇଞ୍ଜିନିୟର ହୋଇ ରିଟାୟାର କରିବାକୁ ମନ ନ ବଳାଇ ଶିକ୍ଷକ ହେବାକୁ ବେଶି ପସନ୍ଦ କରିଥିଲି, ସେ ଜୀବନ ଆଦର୍ଶ ପଛରେ ଥିଲେ ଏଇ ପ୍ରକୃତ ଗୁରୁ ପଦବାଚ୍ୟ ଜୟକୃଷ୍ଣ ବାବୁ - ମୋ ମନର କେଉଁ ଅଜଣା କନ୍ଦିରେ ଲୁଚି ଛପି ରହି ପ୍ରେରଣା ଯୋଗାଉଥିଲେ। ଏପରି କେତେ ବ୍ୟକ୍ତିଗତ ଅନୁଭୂତି ଯୋଗୁଁ ମୁଁ ଦୃଢ଼ ନିଶ୍ଚିତ ଯେ ଭାରତୀୟ ଶିକ୍ଷକ ସମାଜ ସମ୍ପୂର୍ଣ୍ଣ ଲକ୍ଷ୍ୟଭ୍ରଷ୍ଟ

ନୁହେଁ ଓ ସେ ସମାଜ ଭିତରେ ଆଦର୍ଶ ଶିକ୍ଷକ ସବୁ ଅଜ୍ଞାତ ରହି ଲୋକଲୋଚନ ଆଢୁଆଳରେ ଆଜି ମଧ୍ୟ ତାଙ୍କ ଛାତ୍ରମାନଙ୍କୁ ପ୍ରେରଣା ଦେଉଛନ୍ତି। ତେଣୁ ଭାରତୀୟ ସଂସ୍କୃତି, ଐତିହ୍ୟ ଓ ପରମ୍ପରାର ରକ୍ଷଣ ସମ୍ବନ୍ଧରେ ମୋର ଅନେକ ବନ୍ଧୁ ନିରାଶ ହେଉଥିଲେ ମଧ୍ୟ ମୁଁ ସମ୍ପୂର୍ଣ୍ଣ ଆଶାବାଦୀ।

x x x

ଆଜି ଆମେ ଉଡ଼ି ଯାଉଥିଲୁ ସେହି ସାହାରା ମରୁଭୂମି ଉପରେ, ପ୍ରାୟ ୩୦,୦୦୦ଫୁଟ ଉଚ୍ଚରେ। ମରୁଭୂମିର ଅସରନ୍ତି ବାଲୁକାରାଶି ଏତେ ଉଚ୍ଚରୁ ମଧ୍ୟ ସଫା ଦେଖାଯାଉଥିଲା। ବୋଇଙ୍ଗ ପରି ଉଡ଼ାଜାହାଜ ସବୁ ଏତେ ଉଚ୍ଚରେ ଯାଏ ଯେ କୁହୁଡ଼ି ଓ ମେଘ ପୃଥିବୀ ପୃଷ୍ଠକୁ ଅନେକ ସମୟରେ ପୂରାପୂରି ଢାଙ୍କି ଦିଏ। ମଝିରେ ମେଘଶୂନ୍ୟ ଆକାଶ ଟିକିଏ ମିଳିଗଲେ ସେଇ ଫାଙ୍କ ଦେଇ ତଳର ଦୃଶ୍ୟ ସବୁ ବାରି ହୁଏ। ନ ହେଲେ ଖାଲି ଭିଣା ହେଲା ତୂଳା ଅଥବା ଧଳା ମେଣ୍ଢାପଲ ପରି ପୁଞ୍ଜା ପୁଞ୍ଜା ଖଣ୍ଡମେଘ। ମେଘଶୂନ୍ୟ ସାହାରା ମରୁଭୂମି ଉପରେ ଆକାଶ କିନ୍ତୁ ଦିଶୁଥିଲା ସ୍ୱଚ୍ଛ।

x x x

୯ ତାରିଖରେ ଲାଇବେରିଆରୁ ଉତ୍ତର ଆସି ଯାଇଥିଲା। ଲାଇବେରିଆ ସରକାରଙ୍କ ଅତିଥି ହେବି ଜାଣି ଇସ୍ପାତ ମନ୍ତ୍ରଣାଳୟର ଅନୁରୋଧ ସତ୍ତ୍ୱେ ଅର୍ଥ-ମନ୍ତ୍ରଣାଳୟ ଅତି କଷ୍ଟରେ ସାମାନ୍ୟ କିଛି ବୈଦେଶିକ ମୁଦ୍ରା ପକେଟ ମନି ଭାବରେ ସଙ୍ଗରେ ନେବାକୁ ଅନୁମତି ଦେଲେ। ସାଧାରଣତଃ ବୈଦେଶିକ ମୁଦ୍ରା ଦେବା ପାଇଁ ଭାରତ ସରକାର ଭାରି କୁଣ୍ଠିତ। ଏବେ ଭାରତର ଗଚ୍ଛିତ ବୈଦେଶିକ ମୁଦ୍ରା ଏତେ ବେଶି ଯେ ତାହା ମୁଦ୍ରାର ମୂଲ୍ୟ ଉପରେ ଆଣିପାରେ ବୋଲି କହିଲାବେଳେ ସରକାରୀ ପ୍ରତିନିଧିଙ୍କୁ ଏପରି ଆର୍ଥିକ ଅନିଶ୍ଚିତତା ଭିତରେ ବିଦେଶକୁ ପଠାଇବା କେତେଦୂର ଯୁକ୍ତିଯୁକ୍ତ ସେ କଥା ବୁଝି ହୁଏନି। ଯା' ହେଉ ରିଜର୍ଭ ବେଙ୍କ୍‌ର ନିର୍ଦ୍ଦେଶ ନେଇ କୁକ୍‌ସ୍ ଟ୍ରାଭେଲ ଏଜେନ୍‌ସିରୁ ମୁଁ ସେ ଟଙ୍କାତକ ଡଲାରକୁ ବଦଳାଇ ୧୩ ତାରିଖ ରାତିରେ ଇଣ୍ଡିଏନ୍ ଏଆର୍‌ଲାଇନ୍‌ସର ବିମାନ ଯୋଗେ ଦିଲ୍ଲୀରୁ ବମ୍ବେ ଓ ୧୪ ତାରିଖ ସକାଳେ ଏଆର· ଇଣ୍ଡିଆର ବିମାନରେ ବମ୍ବେରୁ କାଏରୋ ଯାତ୍ରା କଲି।

ମନେହୁଏ ଯେ ଯାତ୍ରୀମାନେ ଶାନ୍ତିରେ ଯା'ଆସ କଲେ ଆମ ପରିବହନ ସଂସ୍ଥା ପରିଚାଳକମାନଙ୍କର ବଦ୍‌ହଜମି ହୁଏ, ତେଣୁ ସେମାନେ ବୋଧହୁଏ ଚେଷ୍ଟା କରନ୍ତି ଯେ ଯାତ୍ରୀ ତାର ଯାତ୍ରା ସମ୍ବନ୍ଧରେ ଯେମିତି ସ୍ଥିରତା ନ ପାଉ। ଟ୍ରେନ୍‌ମାନଙ୍କରେ ୧୦/ ୧୫ ଦିନ ଆଗରୁ ଟିକଟ୍ କିଣି ରିଜର୍ଭେସନ୍ ପାଇଁ ଗୋଟିଏ ଷ୍ଟେସନ ମାଷ୍ଟରଙ୍କୁ

ଟେଲିଗ୍ରାମ କରାଇ ସେଥିପାଇଁ ଟଙ୍କା ବାନ୍ଧି ରୀତିମତଧରି ଗଲାବେଳକୁ ଏତେଦିନ ପରେ ମଧ୍ୟ ଅନ୍ୟ ଷ୍ଟେସନ ମାଷ୍ଟର ଏଆଡୁ ସେଆଡୁ କିଛି କାଗଜ ଘାଣ୍ଟି ଖାଲି କହି ଦିଅନ୍ତି ଯେ ସେ କୌଣସି ଟେଲିଗ୍ରାମ ପାଇ ନାହାନ୍ତି। ମଣିଷ ତା' ପରେ ଡେଙ୍ଗଁ ବୁଲେ - ଟ୍ରେନ୍‌ର ଏ ମୁଣ୍ଡରୁ ସେମୁଣ୍ଡ କଣ୍ଡକ୍ଟର ଠାରୁ ଟି.ଟି.ଆଇ. ପାଖକୁ - ଗୋଟିଏ ଟି.ଟି.ଆଇ. ପାଖରୁ ଆଉ ଜଣକ ପାଖକୁ। ବୁଲି ବୁଲି ଶେଷରେ ସେ ପ୍ରଥମ ଭଦ୍ରଲୋକଙ୍କ ପାଖକୁ ପହଞ୍ଚିଲା ବେଳକୁ ଯେଉଁମାନେ ଆଜିର ଏପରି ସଂସାର ଯାତ୍ରାରେ ଅତ୍ୟନ୍ତ ଅଭିଜ୍ଞ ସେମାନେ ଆଗରୁ ଟିକଟ ନ କିଣି ମଧ୍ୟ, ଅତି ସହଜରେ ଗାଡ଼ି ଭିତରେ ନିଜ ଆସ୍ଥାନ ଜମାଇ ଦେଇ ସାରିଥାଆନ୍ତି। ଠିକ୍ ଗାଡ଼ି ଛାଡ଼ିଦେଲା ବେଳକୁ କେହି ଜଣେ ହଠାତ୍ ଆବିଷ୍କାର କରନ୍ତି ଯେ 'ତମର ମଧ୍ୟ ରିଜର୍ଭେସନ୍ ଅଛି; କିନ୍ତୁ ଭୁଲ ନାଁରେ।' ସେତେବେଳକୁ ତମର ଯେତେ ଝାଳ ବୋହିବା କଥା ବୋହି ଯାଇଥାଏ। ରାଗରେ ମୁଣ୍ଡ ଗରମ ହୋଇ ସାରିଥାଏ, କିନ୍ତୁ ସେ କ୍ରୋଧର ପରିଣତି ହୁଏ ଶୂନ୍। ଇଚ୍ଛାହୁଏ କମ୍ପ୍ଲେଣ୍ଟ ବହିରେ ଲେଖିବି - ସୁପରିଣ୍ଟେଣ୍ଡେଣ୍ଟଙ୍କୁ କହିବି - ମନ୍ତ୍ରୀମାନଙ୍କୁ ଅବସ୍ଥା ଜଣାଇ ଦେବି, ଆଉ କେତେ କଣ । ସତେ ଯେପରି ସେମାନେ କେହି ଏକଥା ସବୁ ଜାଣନ୍ତିନି। ପରେ କିନ୍ତୁ କେହି ଜଣେ ମନ ଭିତରେ କହେ - "ତୁ ଏଇ ସବୁ ସଂସାର ଯାତ୍ରା ସୁଧାରି ଆସିଛୁ ନା କୁଆଡ଼େ ଯିବାପାଇଁ ବାହାରିଛୁ ? ସିଟ୍ ତ ଶେଷରେ ମିଳିଲା - ଚୁପ୍‌ଚାପ୍ ଯାଇ ବସୁନୁ କାହିଁକି ?' କୌଣସି ବିମାନ ଯାତ୍ରାରେ ରିଜର୍ଭେସନ୍ ହୋଇଯାଇଥିଲେ ଟିକଟରେ 'ଓକେ' ଏବଂ ରିଜର୍ଭେସନ୍ ପାଇଁ କେବଳ ଅନୁରୋଧ କରାହୋଇଥିଲେ 'ଆର୍‌କ୍ୟୁ' ଲେଖା ହୋଇଥାଏ। ଉଡ଼ାଜାହାଜରେ ଗୋଟିଏ ବିମାନରୁ ଆଉ ଗୋଟିଏ ବିମାନଯାତ୍ରା ପାଇଁ 'ଓକେ' ମିଳି ନଥିଲେ ଏବଂ କେବଳ 'ଆର୍‌କ୍ୟୁ' ଥିଲେ ବେଳେ ବେଳେ ସେପରି ଅସ୍ଥିରତା ଦେଖାଦିଏ। କିନ୍ତୁ ଟିକେଟ୍‌ରେ 'ଓକେ' ଦେଲା ପରେ ମଧ୍ୟ ଅସ୍ଥିରତା ଆସିପାରେ ସେକଥା ଏଥର ଜାଣିଲି।

ଦିଲ୍ଲୀରୁ ବମ୍ବେ ଯିବା ପାଇଁ ମୋର ଉଡ଼ାଜାହାଜ ସମୟ ଥିଲା ରାତି ୧୦ଟାରେ। ଘଣ୍ଟାଏ ଆଗରୁ ପାଲମ୍‌ରେ ରିପୋର୍ଟ କରିବା କଥା। ବେଳେବେଳେ ଟ୍ରାଫିକ୍ ଜାମ ହୁଏ ଜାଣି ମୁଁ ଅଧଘଣ୍ଟା ଆଗରୁ ବାହାରି ପଡ଼ିଥିଲି। ପାଲମ୍‌କୁ ପହଞ୍ଚିଛି ନା ନାହିଁ ଉତ୍ତର ଯାତ୍ରୀଙ୍କୁ ଆମ ପୁରୀ ପଣ୍ଡାଙ୍କ ଗୁମାସ୍ତାମାନେ ପୁରୀ ଷ୍ଟେସନ୍‌ରେ ଘେରି ଗଲାପରି ପୋର୍ଟର ସବୁ ଘେରି ଯାଇ ସୁଟ୍‌କେଶ୍ ବୋହିବା ପାଇଁ ଛଡ଼ାଛଡ଼ି ହେଲେ। ଏ ଗୋଟାଏ ନୂଆ ଘଟଣା। ଟିକେଟ୍ ସାଙ୍ଗରେ ବକ୍‌ସ ସୁଟ୍‌କେଶ୍ ନିଆଅଣା କରିବା ପାଇଁ ପ୍ରତ୍ୟେକ ଯାତ୍ରୀ ୨୦ ଟଙ୍କା ଲେଖାଏ ଦେଇଛନ୍ତି, ତେଣୁ ସେମାନଙ୍କର ବଳେ

ଏଇ ସୁଟ୍‌କେଶ୍ ବୋହି ନେବା କାମ, ତେଣୁ ଏମିତି ଭିଡାଭିଡ଼ି କାହିଁକି କେଜାଣି? ଜଣେ ଭଦ୍ରଲୋକ ପଚାରିଲେ - 'ଆପଣ କ'ଣ ଏଆର୍‌ଇଣ୍ଡିଆର ଯାତ୍ରୀ?' ମୁଁ କହିଲି - 'ହଁ।' ସେ କହିଲେ - 'ଦଉଡନ୍ତୁ, ଦଉଡନ୍ତୁ, ପ୍ଲେନ୍ ଛାଡ଼ିଦେବ।' ମୁଁ ଆଶ୍ଚର୍ଯ୍ୟ ହୋଇ ଭଦ୍ରଲୋକଙ୍କୁ ଚାହିଁଲି - କହିଲି '୧୦ଟାରେ ପ୍ଲେନ୍, ଏବେ ୯.୩୦, କେଉଁ ପ୍ଲେନ୍ ଛାଡୁଛି?' ଭଦ୍ରଲୋକ ଏଥର ବୁଝାଇ କହିଲେ ଯେ ସେ ଏଆର୍‌ଇଣ୍ଡିଆର ଏଜେଣ୍ଟ। ୧୦ଟା ବେଳେ ଯେଉଁ ପ୍ଲେନ୍ ଯିବାକଥା ସେଇଟା ଖରାପ ହୋଇଯାଇଛି - ତେଣୁ ସେ ପ୍ଲେନ୍ ଯିବାପାଇଁ ଅନ୍ତତଃ ୪ ଘଣ୍ଟା ଲେଟ୍। ତେଣୁ ମୁଁ ଯଦି ଏଇ ପ୍ଲେନ୍ ଧରିବାକୁ ଚାହେଁ-। ମୁଁ କହିଲି 'ତେବେ କଣ ଏଇ ପ୍ଲେନ୍‌ରେ ନଗଲେ ମୁଁ ସକାଳେ କାଏରୋ ପ୍ଲେନ ଧରି ପାରିବିନି?' ସେ କହିଲେ - 'ଧରିବେ, କିନ୍ତୁ ଏବେ ଯେଉଁ ଇଣ୍ଡିଏନ୍ ଏଆରଲାଇନ୍‌ସ୍‌ର ଏଆରବସ୍ ଯାଉଛି ସେଥିରେ ଯଦି ଯିବେ ଅତି ସହଜ ହେବ। ଆଉ ୧୫ ମିନିଟ୍ ସମୟ ଅଛି ପ୍ଲେନ୍ ଛାଡ଼ିବା ପାଇଁ, ଯଦି ଶୀଘ୍ର ଯିବେ, ଧରିପାରିବେ। ମୁଁ ଏଆର୍‌ଇଣ୍ଡିଆର ଅନ୍ୟ ଯାତ୍ରୀମାନଙ୍କୁ ମଧ୍ୟ ଏହି ପରାମର୍ଶ ଦେବା ପାଇଁ ଏଇ ବାହାରେ ବସିଛି।' ତାଙ୍କୁ ଧନ୍ୟବାଦ ଦେଇ ମୁଁ ଦୌଡ଼ିଲି। ବୋର୍ଡିଂ କାର୍ଡ୍ ନେଇ ସିକ୍ୟୁରିଟି ଭିତର ଦେଇ ପ୍ଲେନ୍ ପାଖକୁ ଗଲାବେଳକୁ ଦେଖିଲି ମୋ ପଛରେ ମଧ୍ୟ ଆଉ କେତେଜଣ ଆସୁଛନ୍ତି। ଆଶ୍ୱସ୍ତ ହେଲି।

ଆମେ ପ୍ରାୟ ରାତି ୧୦.୩୦ ବେଳକୁ ବମ୍ବେ ପହଞ୍ଚି ପାରିଥିଲୁ।

ପ୍ଲେନ୍‌ରେ ଥିଲାବେଳେ ଗୋଟିଏ କଥା ମୋତେ ଆଶ୍ଚର୍ଯ୍ୟ ଲାଗିଲା। ରାତ୍ରିଭୋଜନ ପୂର୍ବରୁ ଓ ଖାଇଲା ପରେ ମଧ୍ୟ କେବଳ କେତେ ଜଣଙ୍କୁ ଛାଡ଼ି ଦେଲେ ବାକି ସମସ୍ତେ ମଦ ବୋତଲ ସବୁ ଧରି ଅନବରତ ପିଇ ଚାଲିଥିଲେ - ଯୁବକ ପ୍ରୌଢ଼ ସମସ୍ତେ। ଉଡ଼ାଜାହାଜରେ ବିଏର ଓ ଲିକର ଅତି ଶସ୍ତା - ସେମାନେ ବୋଧହୁଏ ତାର ସୁଯୋଗ ନେଉଥିଲେ। ମୁଁ ଏମିତି ସମୟରେ ଦିଲ୍ଲୀରୁ କଲିକତା କେତେଥର ପ୍ଲେନ୍‌ରେ ଯାଇଛି - ଏତେ ବେଶୀ ମଦ ପିଇବା ଦେଖିନି। ପ୍ରାୟ ୨୬୦ ଜଣ ଯାତ୍ରୀ ନେଇ ପାରୁଥିବା କଲିକତା ଏଆର୍ ବସ୍‌ରେ ଗୁଡ଼ିଏ ସିଟ୍ ଖାଲି ଯାଏ - କିନ୍ତୁ ଦିଲ୍ଲୀ ବମ୍ବେରେ ସିଟ୍ ସହଜରେ ମିଳେନି, ରାତିରେ ଦିଓଟି ସର୍ଭିସ୍ ଥାଇ ସୁଦ୍ଧା। ଆର୍ଥିକ ଅବସ୍ଥା ତୁଳନା କଲେ ଭାରତର ପଶ୍ଚିମ ଅଞ୍ଚଳ ପୂର୍ବାଞ୍ଚଳ ଅପେକ୍ଷା ଯେ ଯଥେଷ୍ଟ ଅଧିକ ସ୍ୱଚ୍ଛଳ ଏଥିରେ ସନ୍ଦେହ ନାହିଁ। ଗୋଟିଏ କଥା ଦେଖି କିନ୍ତୁ ମୋତେ ବହୁତ ଖୁସି ଲାଗିଲା - କେତେଜଣ ଯୁବକ ସେମାନଙ୍କ ନିଜ ନିଜ ବହି ପଢ଼ିବାରେ ଏପରି ବ୍ୟସ୍ତ ଥାଆନ୍ତି ଯେ ଚାରିଆଡ଼େ କଣ ସବୁ ଘଟି ଯାଉଛି ସେ ଆଡ଼ିକି ସେମାନଙ୍କର ନଜର ମଧ୍ୟ ନଥାଏ।

ସେଣ୍ଟା-କ୍ରୁଜର ଅତି ନିକଟରେ ଥିବା ସେଣ୍ଟାଉର୍ ହୋଟେଲ୍‌ରେ ରାତି କଟାଇବା ପାଇଁ ଏଆର ଇଣ୍ଡିଆ ଆମମାନଙ୍କ ପାଇଁ ବ୍ୟବସ୍ଥା କରି ଦେଇଥିଲା। ସେଇଠି ଦେଖିଲି - କପେ ଚା'ର ଦାମ ପ୍ରାୟ ୪ଟଙ୍କା। ଭାରତରେ ମଧ ଏମିତି ଦାମ ହୋଇପାରେ କଳ୍ପନା କରି ହୁଏନି। ମନେମନେ ଭାବିଲି ଏମାନେ ବୋଧହୁଏ ଚା'ରେ ସ୍ୱର୍ଣ୍ଣଘଟିତ ମକରଧ୍ୱଜ କିମ୍ବା ଆଉ ସେମିତି କିଛି ମିଶାଉଛନ୍ତି, ବନାରସର ଦାମିକା ପାନ ପରି। ଆମେ ଉଡାଜାହାଜରେ ବ୍ରେକ୍‌ଫାଷ୍ଟ ଖାଇବା କଥା - ଏଆର ଇଣ୍ଡିଆ ହୋଟେଲରେ କେବଳ ଘରଭଡ଼ା ଓ ସକାଳର ଚା ବନ୍ଦୋବସ୍ତ କରି ଦେଇଥିଲେ। ଚା ଖାଇଲା ବେଳେ ଜଣା ପଡ଼ିଲା ଖାଲି ପାଣିଚିଆ ସାଧା ଚା - ଯଦିଓ ଚାରିଟଙ୍କିଆ। ସକାଳ ୮ଟା ବେଳେ ଯାତ୍ରା କାଉଣ୍ଟରରେ ରିପୋର୍ଟ କରିବା କଥା, କିନ୍ତୁ ଶୀଘ୍ର ବିମାନ ବନ୍ଦରକୁ ଚାଲି ଆସିଲି। ଲେଫ୍‌ଟ୍ ଲଗେଜ୍‌ରୁ ସୁଟ୍‌କେଶ୍ ନେଇ ମୋର ପ୍ଲେନ୍ ବୋର୍ଡିଂ କାର୍ଡ ପାଇଁ କାଉଣ୍ଟରକୁ ଯେତେବେଳେ ଗଲି ସେମାନେ କଷ୍ଟମ୍‌ସ କ୍ଲିଅରେନ୍‌ସ ଆଣିବା ପାଇଁ କହିଲେ। କଷ୍ଟମସ୍ ପାଖକୁ ସୁଟ୍‌କେଶ୍‌ଟି ନେଇ ଚେକ୍ କରାଇ ପୁଣି ଯେତେବେଳେ ବୋର୍ଡିଂ କାର୍ଡ ପାଇଁ ଆସିଲି; ସେମାନେ ଏଥର କହିଲେ ଯେ ଯାତ୍ରୀ ତାଲିକାରେ ମୋର ନାମ ନାହିଁ। ମୋର ଟିକଟ୍‌ରେ ଯାତ୍ରା ପାଇଁ 'ଓକେ' ଲେଖାଥିବା ଦର୍ଶାଇ ଦେବାରୁ ସେମାନେ ମୋତେ କୋଣରେ ଥିବା ଗୋଟିଏ ଅଫିସକୁ ଯାଇ ରିଜର୍ଭେସନ୍ ଚିଟ୍ ଆଣିବା ପାଇଁ ନିର୍ଦ୍ଦେଶ ଦେଲେ। ସେଇଠିକି ଗଲି। ସେମାନେ ବି ତାଲିକା ଖୋଜି ଓ ପରେ ଟେଲେକ୍‌ସ ମେସେଜ୍, ପ୍ରଭୃତି ଦରାଣ୍ଡି କହିଲେ ଯେ ମୋର ନାମ ନାହିଁ। ବିରକ୍ତିରେ ମୋ ଟିକଟ୍‌ରେ 'ଓକେ' ଲେଖା ହୋଇଥିବା କଥା ସେମାନଙ୍କୁ ମଧ ଦର୍ଶାଇଲି - ମନ କିନ୍ତୁ ଦବିଗଲା। ଏଇ ଫ୍ଲାଇଟ୍ ହରାଇଲେ ଆଉ ଦିନେ ଗଲା ପରେ ଯାଇ କାଏରୋ ଫ୍ଲାଇଟ୍ ମିଳିବ। ସେଦିନ କିନ୍ତୁ କାଏରୋ ଯାଇ ଆଉ କିଛି ଲାଭ ନାହିଁ, ଯେହେତୁ କାଏରୋରେ ପୁଣି ୫ ଦିନ ପଡ଼ି ରହିବାକୁ ହେବ। କି ଅବ୍ୟବସ୍ଥା। ତେବେ କଣ ଏଇଠୁ ମୋତେ ଦିଲ୍ଲୀ ଫେରିଯିବାକୁ ହେବ? ଏପରି କେତେ କଣ ଭାବନା ମନକୁ ଆସୁଥାଏ। ମୋର୍ ଟିକଟ ଧରି ଜଣେ ଦି'ଜଣ ଭିତର ବାହାର ହେଲେ। 'ଆଉ ପାଞ୍ଚମିନିଟ୍ ଅପେକ୍ଷା କରନ୍ତୁ' କହି କହି ଶେଷରେ ଜଣେ ଯାଇ ସେ ବୋର୍ଡିଂ ସ୍ଲିପ୍ ଦେଉଥିବା କାଉଣ୍ଟର୍‌ର ତାଲିକାରେ ମୋର ନାମ ଲେଖିଦେଇ ଆସିଲା। ତା ପରେ ଆଉ କିଛି ଅସୁବିଧା ହେଲାନି। ସୁଟ୍‌କେଶ୍‌ଟି ଓଜନ କରାଇ ସେଠି ଛାଡ଼ିଦେଲି, ଆଉ ତାଙ୍କ ଠାରୁ ଲଗେଜ୍ ସ୍ଲିପ୍ ନେଇ ମୁଁ ଆଗେଇ ଗଲି ହେଲ୍‌ଥ୍ ସାର୍ଟିଫିକେଟ୍ ଚେକ୍, ପାସ୍‌ପୋର୍ଟ ଓ ଇମିଗ୍ରେସନ୍, ହାତବାକ୍‌ସର କଷ୍ଟମସ୍ ଚେକ୍,

ସିକ୍ୟୁରିଟି ଚେକ୍ ଓ ପରେ ପେସଞ୍ଜରସ୍ ଲାଉଞ୍ଜ ଦେଇ ଯଥା ସମୟରେ କାଏରୋ ଅଭିମୁଖେ ଯାତ୍ରା କରୁଥିବା ବୋଇଙ୍ଗ ବିମାନକୁ।

x x x

ବୋଇଙ୍ଗ ଜେଟ୍ ବିମାନ ଉଡ଼ିଯାଉଥିଲା ଆରବ ସାଗର ଉପର ଦେଇ। ବିମାନ ବନ୍ଦରରୁ ଆକାଶ ଉପରକୁ ଉଠିଲାବେଳେ ବମ୍ବେର ସ୍କାଇ ସ୍କ୍ରେପର ସବୁ ପିଲାଙ୍କ ଡିଆସିଲି ଡବା ଘରପରି ଦିଶି ଉଡାଜାହାଜର ଅନ୍ୟ ପାଖରେ ଉଭାଇଗଲେ। ମେଘଖଣ୍ଡମାନଙ୍କର କଳାଛାଇ କିଛି ସମୟ ସାଗର ବକ୍ଷରେ ପାହାଡ଼ର ଭ୍ରମ ଦେଲା, କିନ୍ତୁ ବିମାନ ଯେତେବେଳେ ଧୀର ଧୀରେ ଆହୁରି ଉପରକୁ ଉଠିଲା ଭାସମାନ ଧଳାମେଘ ଖଣ୍ଡ ସବୁ ବିମାନର ତଳକୁ ଖସି ଆସି ମନ ହେଲା ସତେ ଯେପରି ଭିଣା ହେଲା ତୁଳା ଖଣ୍ଡିଏ ବିରାଟ ସବୁଜ ଗାଲିଚା ଉପରେ ବିଞ୍ଚି ହୋଇ ପଡ଼ିଛି। ଗୋଟିଏ ସ୍ତର ପରେ ମେଘର ଆଉ ଗୋଟିଏ ସ୍ତର – ବେଳେବେଳେ ମନେ ହେଉଥିଲା ସତେ ଯେପରି ଧଳା ପଶମଭରା କେତେ ଗୋଲ୍‌ଗାଲ୍ ମେଣ୍ଢା ପଲ ପଲ ହୋଇ ପ୍ରାଣ ଭୟରେ ବିମାନର ଓଲଟା ଦିଗରେ ଧାଇଁ ପଳାଉଛନ୍ତି। ଆକାଶ ଓ ସାଗରର ମିଳନସ୍ଥଳୀ ଠିକ୍ ବାରି ହେଉ ନଥିଲା – ଦୂର ଚକ୍ର-ବାଳରେ ଦିଶୁଥିଲା କେତେଖଣ୍ଡ ବଡ଼ ବଡ଼ ଧଳା ବଉଦ – ଭିନ୍ନ ଭିନ୍ନ ଆକାର ପ୍ରକାରର। କେଉଁଟା ଧଳା ପାଲବନ୍ଧା ଜାହାଜ ପରି, ଆଉ କେଉଁଟି ତୁଷାର ଆବୃତ କୌଣସି ପର୍ବତ ଶୃଙ୍ଗ ପରି – କେତେ ଅବା ମନେ ହେଉଥିଲେ ସମୁଦ୍ରବକ୍ଷର ଭାସମାନ କେତେକ ବରଫ ପାହାଡ଼। ଖଣ୍ଡିଏ ଦିଶୁଥିଲା ସତେ ଯେପରି କେଉଁ ଜଣେ ଅତିମାନବର ହେଣ୍ଡ୍‌ଗ୍ଲୋଭସ୍ – ପାପୁଲି ଆକାଶକୁ ମୁହାଁଇଛି କୌଣସି ଏକ ହସ୍ତ ମୁଦ୍ରାର ଢଙ୍ଗରେ – ବୁଢ଼ା ଆଙ୍ଗୁଠି ଆଉ କାଣି ଆଙ୍ଗୁଠି ଉପରକୁ ନିର୍ଦ୍ଦେଶ ଦେଲାପରି ଦେଖାଗଲା ବେଳେ ମଝିର ତିନୋଟି କେବଳ ସିଧାସଳଖ। ବିଶେଷ କିଛି କାରଣ ନ ଥାଇ ମଧ୍ୟ କବିବର ରାଧାନାଥଙ୍କ ଦୁଇ ଧାଡ଼ି 'ଯା ଦେଖି ଜାଣିବେ ଜଗତେ ସମସ୍ତେ, ଆସିଥିଲି ଫେରିଗଲି ଶୂନ୍ୟହସ୍ତେ।' ମନେ ପଡ଼ିଗଲା।

ଧୀରେ ଧୀରେ ମେଘ ଓ କୁହୁଡ଼ି ପୃଥିବୀ ପୃଷ୍ଠକୁ ସମ୍ପୂର୍ଣ୍ଣ ଢାଙ୍କିଦେଲା। ସବୁ ଦୃଶ୍ୟ ଲେସି ହୋଇଗଲା। ଝରକା ଦେଇ ତଳର ଆଉ କିଛି ଦିଶିଲାନି। ମୋ ପାଖରେ ବସିଥିବା ଭଦ୍ରଲୋକ ସାମାନ୍ୟ କିଛି କଥାବାର୍ତ୍ତା ପରେ ନିଜ ଖାମଖିଆଲିରେ ମସ୍‌ଗୁଲ୍ ହୋଇଗଲେ। ଘଣ୍ଟାକୁ ପ୍ରାୟ ୬୦୦ ମାଇଲ ବେଗରେ ଉଡ଼ିଯାଉଥିଲା ବେଳେ ମୁଁ କେଜାଣି କାହିଁକି ଆମ ପିଲାଦିନର ବଳଦଗାଡ଼ି ଯାତ୍ରା କଥା ଭାବିବସିଲି। ବିମାନ

ଭିତରର କାନ୍ଥରେ ଚିତ୍ରିତ ହାତୀ, ଓଟ, ଘୋଡ଼ା, ବଳଦଗାଡ଼ି ଓ ପାଲିଙ୍କି ଯାତ୍ରାର ସୁନ୍ଦର ଚିତ୍ରସବୁ ବୋଧହୁଏ ସେ ଭାବନା ପାଇଁ ଖୋରାକ ଯୋଗାଇ ଦେଇଥିଲା।

x x x

ପିଲାଦିନେ ସ୍କୁଲରେ ପଢ଼ିଲାବେଳେ ଆମର ଖରାଛୁଟି, ପୂଜା ଛୁଟି ଓ ବଡ଼ ଦିନର ଛୁଟି ହୁଏ। ସେଦିନର କଳାହାଣ୍ଡି ଗଡ଼ଜାତ ରାଜ୍ୟର ସାରା ଅଞ୍ଚଳ ଭିତରେ ଗୋଟିଏ ମାତ୍ର ହାଇସ୍କୁଲ କେବଳ ଭବାନୀପାଟନାରେ। ଆମେ ମଫସଲର ଛାତ୍ରସବୁ ବାଧ ହୋଇ ହଷ୍ଟେଲ୍‌ରେ ରହୁ। ମାସକୁ ହାରାହାରି ଖର୍ଚ୍ଚ ହୁଏ ଛ' ସାତ ଟଙ୍କା। ତହିଁରୁ ମେସ୍ ଖର୍ଚ୍ଚ ତିନି ଟଙ୍କାରୁ ଚାରି ଟଙ୍କା ଭିତରେ। ଦିନକୁ ଦିଓଟି ମିଲ୍। ଯେଉଁମାନେ ତିନି ଟଙ୍କା ଦିଅନ୍ତି, ସେମାନଙ୍କୁ ଭାତ ଓ ଡାଲି ସାଙ୍ଗକୁ ଗୋଟିଏ ତରକାରୀ ନାମଧେୟ ପଦାର୍ଥ ମିଳେ, ଯାହାକୁ ପାଟିରେ ଦେଲାକ୍ଷଣି ଜିଭରେ ନିଆଁ ଲାଗିଯାଏ। ସେଇ ତରକାରି ଭିତରୁ ଖଡ଼ା ଖଣ୍ଡିଏ କି କଖାରୁ ଟିକିଏ ବାଛି ନେଇ ଆମେମାନେ ବେଳବେଳେ ରାଗ କମାଇବା ପାଇଁ ପାଣିରେ ଧୋଇକରି ଖାଉଁ। ଭୋକ କେମିତି ଆପେ ଆପେ ମରିଯାଏ - ଖାଇବା ସ୍ପୃହା ବି କମିଯାଏ ତା' ସଙ୍ଗରେ; କିନ୍ତୁ ତେନ୍ତୁଳି ଟିକିଏ, ଆଚାର ଟିକିଏ, ସାମାନ୍ୟ କିଛି ବଡ଼ି ଭଜା ଅଥବା ଟିକିଏ ଦୁଧ ସର ପାଇଁ ମନ ଡାକେ। ଘରକୁ ଯିବାକୁ ମନ ବଳେ। ତଥାପି ଦୁଇ ଦିନ କିମ୍ବା ତିନି ଦିନର ଛୁଟି ହେଲେ ଗାଁକୁ ଯାଇ ହୁଏନି। ଭବାନୀପାଟଣାରୁ ଆମ ପିଲାଦିନର ପୁରୁଣା ଗାଁ ୩୮ ମାଇଲ ବାଟ। ଚାଲି କରି ଯିବା ପ୍ରଶ୍ନ ହିଁ ନାହିଁ। ବସ୍ କଣ ସେତେବେଳେ ଆମେ ଜାଣି ନଥାଉଁ - କେବଳ ରାଜାଙ୍କର କେତୋଟି ମଟର୍‌କାର ଥାଏ। ସାରା କଳାହାଣ୍ଡିରେ ବୋଧହୁଏ ଆଙ୍ଗୁଠି ଗଣା କେତୋଟି ସାଇକେଲ୍ - ବଳଦ ଗାଡ଼ି ହିଁ ଏକମାତ୍ର ଯାନ। ଯିବା ଆସିବାରେ ହିଁ ଦୁଇ ତିନି ଦିନ କଟିଯାଏ। ଛୁଟି ହେବା ପୂର୍ବଦିନର ସନ୍ଧ୍ୟାଠାରୁ ଆମେ ଆମ ବଳଦ ଗାଡ଼ିର ବାଟ ଚାହିଁ ରହିଥାଉଁ। କାହାର ଗାଡ଼ି ଆସି ପହଞ୍ଚିଗଲେ ଅନ୍ୟମାନେ ଦୌଡ଼ି ଯାଇ ତାକୁ ସେ ଶୁଭ ଖବର ଦେଇ ଦିଅନ୍ତି। ନିଜର ବଳଦଗାଡ଼ି ଯେତେବେଳେ ଆସିଯାଏ, ୩୮ ମାଇଲ ବାଟ ଚାଲି ହାଲିଆ ହୋଇ ଆସିଥିବା ବଳଦମାନଙ୍କୁ ଭାରୀ ଆପଣାର ପରି ମନେହୁଏ - ହଳିଆ ବୁଢ଼ା ପାଖରୁ ଘୁଞ୍ଚିବାକୁ ମନ ବଳେନି।

ରାତିରେ ଭାତ ଖାଇସାରିଲା ପରେ ଆମ ବଳଦଗାଡ଼ି ଯାତ୍ରା ଆରମ୍ଭ ହୁଏ। ସଡ଼କରେ ବଳଦଗାଡ଼ି ଯିବା ମନା - ଗାଡ଼ି ସବୁ ତେଣୁ ବଣ ଭିତରେ ବୁଲି ବୁଲି ଶଗଡ଼ ବାଟରେ ହିଁ ଯାଏ। ଆମେ ସବୁ ନିଜ ନିଜ ଗାଡ଼ିରେ ଶୋଇବାକୁ ଚେଷ୍ଟା କରୁ; କିନ୍ତୁ ମନର ଉଚାଟରେ ନିଦ ହୁଏନି। ବଳଦ ଅଡାଉଥିବା ହଳିଆମାନେ ଗୀତ ମେଲି

ଦିଅନ୍ତି – 'କୋଇଲି କେଶବ ଯେ ମଥୁରାକୁ ଗଲା, କାହା ବୋଲେ ଗଲା ପୁତ୍ର ବାହୁଡ଼ି ନଇଲା ଲୋ କୋଇଲି'। କିଏ ଅବା ରଡ଼ି ରଡ଼ି ଆରମ୍ଭ କରେ – 'ଗଲାଣି ତ ଗଲା କଥାରେ ସଙ୍ଗାତ – ଗଲାଣି ତ ଗଲା କଥା। କିଏ ବୋଲେ – 'ରାମ ଯେ ଲଇଖଣ ହୋ ଗଲେ ମୃର୍ଗ ମାରି, ସୀତାଙ୍କୁ ରାବଣ ହୋ ନେଲା ଚୋରି କରି... ଅଢ୍...ଧାତ୍' ଆଉ କିଏ ବା ଗଳା ଥରାଇ ସତ୍ୟଭାମାଙ୍କ ବିଳାପ ଆରମ୍ଭ କରି ଦିଏ – 'ହେ ହଳଧାରୀ ପ୍ରଭୁ କେଣେ ରହିଲ, ଗୋସିଂହ ଡରେ ଅବା ବଣେ ଲୁଚିଲ ହେ... ହେ ହଳଧାରୀ ଗୋସିଂହ ଦୈତ୍ୟ ମୋତେ ନେଉଛି ହରି ହେ...ହେ... ହଳଧାରୀ...।'

ଠିକ୍ ଅଧରାତି ବେଳକୁ ଜାରିଗ୍ ଆସି ଯାଇଥାଏ। ୧୫/୨୦ ଖଣ୍ଡ ଶଗଡ଼ ଗାଡ଼ି ଏକାଠି ନ ହେଲେ ରାତିରେ ସେ ବଣ ଭିତରେ ଯିବା ପାଇଁ ହଳିଆମାନେ ସାହସ କରନ୍ତିନି। ଗୀତ ସବୁ ବନ୍ଦ ହୋଇଯାଏ। ଆମେ ସବୁ ନିଜ ନିଜ ଗାଡ଼ିରେ ହଳିଆ ପାଖକୁ ଲାଗି ବସି ରହୁଁ। ଅନ୍ଧାର ରାତିରେ ବାଟ ଦେଖିବା ପାଇଁ ମଧ୍ୟ ଆଲୁଅ ଟିକିଏ ନଥାଏ। କେଉଁ ଗାଡ଼ି ଆଗରେ ଲଣ୍ଠନଟିଏ ବନ୍ଧା ହୋଇଥିଲେ ବାଘ ସେ ଗାଡ଼ିକି ଆଗ ଆକ୍ରମଣ କରିବ ବୋଲି ସମସ୍ତେ ଲଣ୍ଠନ ବି ଲଭାଇ ଦିଅନ୍ତି। ଚାରି ମାଇଲ ଏଇ ଘୋର ବଣ। ପ୍ରାୟ ସବୁଥର ଏଇ ବଣ ପାରିହେଲା ପରେ ହଳିଆମାନେ ଏକାଠି ଜମା ହୋଇ ତାଙ୍କ ପିକା ଖାଇଲାବେଳେ ଗପ ଆରମ୍ଭ କରିଦିଅନ୍ତି। କିଏ କହେ – 'ଆଇଁଷିଆ ଗନ୍ଧାଉଥିଲା, ବଫର୍ ମାରୁଥିଲା- ବାଘ ନିହାତି ପାଖରେ ଥିଲା।' କିଏ ଆଉ ଜଣକୁ ପଚାରେ ଗାଡ଼ି ସଙ୍ଗରେ ବଣ ଭିତରେ ଖସ୍ ଖସ୍ ଶବ୍ଦଟିଏ ଶୁଭୁଥିଲା, ସେ ଶୁଣିଲା ନା ନାଇଁ? ଯୋଡ଼ି ଦିଏ – ବାଘର ବୋଧହୁଏ ପେଟ ପୁରିଥିଲା – ଆମର ଭାଗ୍ୟ, 'ଜୁହାର ମା ଠୁଟୀ ମାଏଲି' କହି ବଣଦେବୀ ଆଡ଼ିକି ମୁହାଇ ଜୁହାରଟିଏ ସେ କରିଦିଏ। ଆଉ କିଏ ତାର ପୂର୍ବଥରର ଅନୁଭୂତି ବଖାଣେ – 'ବଳଦ ଦି'ଟାକୁ ଯେତେ ବାଡେଇଲି ସେମାନେ ଆଗକୁ ଗଲେନି। ଆଗରେ ଆଉ ଗୋଟିଏ ବଳଦ ଗାଡ଼ି ଠିଆ ହୋଇଛି। କଣ ଘଟନା ବୋଲି ଦେଖିବାକୁ ଗଲି। ଉଃ, ବାପ୍‌ରେ ବିଶ୍ୱାସ କରିବୁନି – ସେ ଶଗଡ଼ର ଗୋଟିଏ ବଳଦକୁ ଟାଣି ନେଇ ହେଇ ସେଇଠି ହିଁ ବାଘ ତା' ଉପରେ ବସି ରକତ ପିଉଛି।'

'ତୁ ସତେ ଦେଖିଲୁ?'

'ମିଛ କହୁଥିଲେ ମୋ ଆଖି ଫୁଟିଯିବ, ଯିଏ ଉଦୁଛି ବୁଡୁଛି, ତା କିରିଆ...।'

ଆଉ ବେଳେବେଳେ ଆମକୁ ପଚାରନ୍ତି – 'ବାବୁ, ଶୁଣିଲ – କେମିତି ରଡୁଥିଲା? ବାଘୁଣୀକୁ ଖୋଜୁଥିଲା।' ମୁଁ କିନ୍ତୁ ସେ ବାଘ ଦେଖିବା ଦୂରର କଥା ବଣରେ ତାର ଡାକ କେବେ ଶୁଣିନି କି ସେ ଗନ୍ଧ ବି କେବେ ବାରିପାରିନି।

ତଥାପି ସେ ବାଟରେ ଆଜି ବି କାର୍ କିମ୍ୱା ବସ୍‌ରେ ଗଲାବେଳେ ଯେଉଁ କେନ୍ଦୁଗଛ ତଳେ ବାଘୁଣୀ କୁଆଡ଼େ ସବୁବେଳେ ଶୋଇ ରହିଥାଏ, ସେଇ ବାର ଭାଇ କେନ୍ଦୁଆଡ଼କୁ ଆପଣାଛାଏଁ ନଜର ଚାଲିଥାଏ।

୩୮ ମାଇଲ ବାଟ ଯିବା ପାଇଁ ଆମକୁ ପ୍ରାୟ ୨୦ ଘଣ୍ଟା ଲାଗିଯାଏ। ବାଟରେ କେଉଁ ଝରଣା କୂଳରେ ଅଥବା କେଉଁ ପୋଖରୀ ତୁଠରେ ଥିବା ଆମ୍ବଗଛ ତଳେ ଦିନ ଦି'ପହରେ ରାନ୍ଧି ଖାଇବାକୁ ପଡ଼େ - ଯାହାକି କେବେ ମୋ ହାତରେ ହୁଏନି।

ଗାଁକୁ ପହଞ୍ଚିଲାବେଳକୁ ଆଉ ଆଗକୁ ଗୋଡ଼ ବଢ଼ାଇବାକୁ ମଧ ବଳଦମାନଙ୍କର ଶକ୍ତି ନଥାଏ - ବିଚରାମାନେ ହଳିଆ ପାଖରୁ କେତେ ଯେ ମାଡ଼ ଖାଆନ୍ତି।

x x x

ଉଡ଼ାଜାହାଜ ଭିତରେ ଆମେମାନେ ଯଥା ସମୟରେ ଆମର ବ୍ରେକ୍‌ଫାଷ୍ଟ ଓ ମଧ୍ୟାହ୍ନ ଭୋଜନ କରିସାରିଥିଲୁଁ। ଆମ ବିମାନ ଉଡ଼ିଯାଉଥିଲା ମସ୍କାଟ, ଆବୁ ଧାବି ସାଉଦିଆରବିୟା, ଲୋହିତ ସାଗର ଓ ମିଶର ଉପର ଦେଇ। ବେଳେବେଳେ ଖରାପ ପାଗ ଭିତରେ ଗତି କଲାବେଳେ ସିଟ୍ ବେଲ୍‌ଟ୍ ଭିଡ଼ିବା ପାଇଁ କପ୍ତାନ୍ ପରାମର୍ଶ ଦେଉଥିଲେ। ଥରେ ସେ କହିଲେ ଯେ ରାଡାର ସାହାଯ୍ୟରେ ସେ ଗୋଟିଏ ଭୟଙ୍କର ବାଲି ଝଡ଼ ଏଡାଇ ଦେଇ ପାରିଛନ୍ତି। ବାଁ ପଟକୁ ଚାହିଁଲେ ବାଲିଝଡ଼ ଦୂରରେ ଦେଖାଯିବ ବୋଲି ମଧ ସେ ସୂଚାଇ ଦେଇଥିଲେ। ଏପରି ସବୁ ଘଟଣା କିଛିକ୍ଷଣ ପାଇଁ ମୋର ଭାବନାକୁ ଇତସ୍ତତଃ କରି ଦେଉଥିଲେ ମଧ ପୁଣି ତାହା ସେଇ ମୋର ପିଲାଦିନର ବଳଦ ଗାଡ଼ି ଯାତ୍ରା ଓ ସ୍ମୃତି ସବୁକୁ ଫେରି ଆସୁଥାଏ। ତେଣୁ 'ଆମେ ଅତିଶୀଘ୍ର କାଏରୋ ବମାନ ବନ୍ଦରରେ ପହଞ୍ଚିବୁ, ଆପଣମାନେ ଦୟା କରି ସିଟ୍ ବେଲ୍‌ଟ ଭିଡ଼ି ନିଅନ୍ତୁ', ଶୁଣି ମୁଁ ଚମକି ଉଠିଲି।

ଆରବ ଅଞ୍ଚଳର ମରୁଭୂମି ପରେ ନୀଳନଦୀର ଉପତ୍ୟକା ଭାରି ସୁନ୍ଦର ଦିଶୁଥିଲା, ଠିକ୍ ଖଣ୍ଡିଏ ବାଦାମୀ ରଙ୍ଗର ପୋଷାକ ଉପରେ ଖଣ୍ଡିଏ ଶାଗୁଆ ମେଖଳା ପରି। ଦୂରରୁ କାଏରୋ ସହର ଦେଖାଗଲା, ବମ୍ବେ କଲିକତା ପରି ବେଶ୍ ବଡ଼ ସୁପରିକଳ୍ପିତ। ଆକାଶରୁ ସହରର ରାସ୍ତାଘାଟ ବୁଢ଼ୀଆଣି ଜାଲର ଚିତ୍ର ପରି ମନେହେଉଥାଏ।

କାଏରୋ ବିମାନ ବନ୍ଦରରେ ଓହ୍ଲାଇଲାବେଳକୁ ମୋ ଘଡ଼ିରେ ଚାରିଟା ବାଜିବାକୁ ଆଉ ୧୦ ମିନିଟ୍ ବାକି। କପ୍ତାନ୍ କହିଲେ କାଏରୋର ଲୋକାଲ୍ ଟାଇମ୍ ୧୨ ବାଜି ୨୭ ମିନିଟ୍। ଘଡି ସବୁ ମିଳାଇ ନିଅନ୍ତୁ।

ବିମାନଟି ବନ୍ଦରରେ ଓହ୍ଲାଇ ସାରିଥିଲା। କପ୍ତାନ୍ ପରାମର୍ଶ ଦେଲେ 'ଯେଉଁମାନେ ଲଣ୍ଡନ ଯିବେ ସେମାନେ ଦୟାକରି ବସି ରହନ୍ତୁ - ଓହ୍ଲାନ୍ତୁନି। ନିରାପଦ ଯାତ୍ରା ପାଇଁ ଏପରି ସାବଧାନତା ନିତାନ୍ତ ପ୍ରୟୋଜନ।'

ଠିକ୍ ପରେ ପରେ ନାରୀକଣ୍ଠରୁ ମିଠା ଆବାଜ ଶୁଣାଗଲା - 'କପ୍ତାନ୍ ଶର୍ମା, ଏଆର ହୋଷ୍ଟେସ୍ ତଥା ଉଡାଜାହାଜର ଅନ୍ୟାନ୍ୟ କର୍ମକର୍ତ୍ତାମାନଙ୍କ ତରଫରୁ ମୁଁ ଆପଣଙ୍କ ଠାରୁ ବିଦାୟ ନେଉଛି। ଆମର ବିଶ୍ୱାସ ଆପଣଙ୍କର ଏ ବିମାନ ଯାତ୍ରା ସୁଖପ୍ରଦ ଓ ଉପଭୋଗ୍ୟ ହୋଇଛି। ଆମର ଆଶା ଆଉ ଥରେ କେବେ ବିମାନ ଯାତ୍ରାରେ ଆପଣମାନଙ୍କୁ ସାହାଯ୍ୟ କରିବା ପାଇଁ ଆମକୁ ସୁଯୋଗ ଦେବେ। ନମସ୍କାର।'

ଆମେ ଭିନ୍ନ ବାଟରେ ଯିବା ଯାତ୍ରୀ ସବୁ ଉଡ଼ାଜାହାଜର ପ୍ରସ୍ଥାନ ଦ୍ୱାରରେ ଠିଆ ହୋଇଥିବା ଏଆର୍ ହୋଷ୍ଟେସ୍‌ମାନଙ୍କୁ ମୁଣ୍ଡ ଟୁଙ୍ଗାରି ନମସ୍କାର କରି କରି ଏଟାଚି ହାତରେ ଉଡାଜାହାଜରୁ ଓହ୍ଲାଇ ଆସିଲୁଁ।

# କାଏରୋରୁ ଆକ୍ରା

'ଲଟ୍ ଅଫ୍ ୱାଟର ୟୁ ଡ୍ରିଙ୍କ ? ୟୁ ବାଏ-ଉଆନ୍ ବତଲ୍ ଉଆନ୍ ଡଲାର।' ପାଣି ବୋତଲକୁ ଏକ ଡଲାର ଆଠ, ନଅ ଟଙ୍କା। ମୁଁ ଆଶ୍ଚର୍ଯ୍ୟ ହୋଇ ଅବିଶ୍ୱାସ୍ୟ ଆଖିରେ ଭଦ୍ର ମହିଳାଙ୍କୁ ଅନାଇଥିଲି। ସେ ବୋଧହୁଏ ମୋ ମାନସିକ ପ୍ରତିକ୍ରିୟା ବୁଝିପାରିଲେ - ପାଣିଭରା ପ୍ଲାଷ୍ଟିକ୍‌ର ବୋତଲଟି ମୋ ହାତକୁ ବଢ଼ାଇ ଦେଇ କହିଁଲେଇ କହିଲେ - 'ଆଚ୍ଛା ଏ ପାଣି ବୋତଲଟି ଆପଣ ନେଇ ଯାଆନ୍ତୁ।'

ଆମ ଭାରତରେ ନିହାତ୍ ଗୋଟାଏ ଛୋଟ ହୋଟେଲରେ ମଧ୍ୟ କୋଠରୀମାନଙ୍କରେ ପିଇବା ପାଣି ବନ୍ଦୋବସ୍ତ ଥାଏ - ଜଗ୍ କିମ୍ବା ସୋରାଇ ଏବଂ ଗ୍ଲାସ। କାଏରୋ ଏଅର୍ ପୋର୍ଟ ହୋଟେଲ ଗୋଟିଏ ଅନ୍ତର୍ଦ୍ଦେଶୀୟ ପ୍ରଥମ ଶ୍ରେଣୀ ହୋଟେଲ - କେବଳ ରହିବା ଭଡା ସିଙ୍ଗଲ୍ ବେଡ୍‌ର କୋଠରୀକୁ ଦିନକୁ ଇଜିପ୍‌ସିଆନ୍ ୯ ପାଉଣ୍ଡ, ଅର୍ଥାତ୍ ଆମେରିକାନ୍ ୨୨ ଡଲାର, ଅଥଚ ହୋଟେଲ ରୁମ୍‌ରେ ପିଇବା ପାଣିର ବନ୍ଦୋବସ୍ତ ନାହିଁ। ମୋତେ ବଡ଼ ହତାଶ ଲାଗିଥିଲା। ବିଗତ ୨ ଘଣ୍ଟାର ଧାଁ ଦଉଡ଼ ତଥା ନାନାଦି ଅବସାଦଭରା ଅନୁଭୂତି ପରେ ଭୀଷଣ ହାଲିଆ ଲାଗୁଥାଏ - ଶୋଷରେ ତଣ୍ଟି ଅଠାଳିଆ ଧରି ଯାଇଥାଏ। ରିସେପ୍‌ଶନକୁ ଫୋନ୍ କରି ପାଣି ନ ଥିବା କଥା କହିଲାରୁ ଭଦ୍ରଲୋକ କୋଠରୀ ପାଖରେ ଥିବା କୌଣସି ରୁମ୍ ସାରଭିସ୍ ବୟକୁ କହିବା ପାଇଁ ପରାମର୍ଶ ଦେଇଥିଲେ। ମୋଟା ଗାଲିଚା ଦିଆ କରିଡର - ବାରନ୍ଦାରେ ବୁଲି ଆସିଲି; କିନ୍ତୁ କୌଣସି ହୋଟେଲ ବୟର ଦେଖା ଦର୍ଶନ ମିଳିଲାନି। ହଠାତ୍ ଏହି ଲେଡ଼ି ସୁପରଭାଇଜରଙ୍କୁ ଭେଟିଲି ଓ ତାଙ୍କୁ ପାଣି କଥା କହିଲି। ସେ ସୁପରଭାଇରଙ୍କ ରୁମ୍‌କୁ ଯାଇ ବୋତଲେ ପାଣି ଆଉ ଗିଲାସଟିଏ ଆଣିଲେ। ମୋତେ ଗିଲାସେ ପାଣି ଦେଇ ବୋତଲ କିଣିବା ପାଇଁ ପରାମର୍ଶ ଦେଇଥିଲେ। ଶେଷରେ ବୋତଲ ପାଣି ଦେଲେ ସତ - କିନ୍ତୁ ସେତେବେଳକୁ ମୋ ମନ କାହିଁକି ମରିଯାଇ ସାରିଥିଲା।

ଆମ ପିଲାଦିନର ସ୍ୱପ୍ନପୁରୀ ଏହି କାଏରୋ - ବାଗଦାଦ୍ ଓ ଡାମସ୍କସ୍ ପଛକୁ। ବୋଧହୁଏ ଆରାବିଏନ୍ ନାଇଟସ୍‌ର କାହାଣୀମାଳା ହିଁ ଆମ ପିଲାଦିନର କଅଁଳିଆ

ମନରେ ଏ ସବୁ ସହରର ରଙ୍ଗୀନ୍ ଛାପ ଆଙ୍କି ଦେଇଥିଲା। ଅତ୍ୟାଚାରୀ ଖଲିଫାଙ୍କ ଅତ୍ୟାଚାର ବଦଳରେ ନାବିକ ସିନ୍ଦବାଦ୍‌ଙ୍କ ସମୁଦ୍ର ଯାତ୍ରାର କାହାଣୀମାଳ କାନ୍ଧରେ ଥରେ ବସିଗଲା ପରେ ଆଉ ଓହ୍ଲାଉ ନଥିବା ବୁଢ଼ାର କଥା, ଆଲିବାବା ଓ ଚାଳିଶ ଚୋର, ଓଏସିସ୍‌ର ଗଛ ତଳେ ବେପାରୀଙ୍କ ଖଜୁରୀ ଖିଆ ଏବଂ ହରିଣ ଓ କଳା କୁକୁରଙ୍କ ସହ ଆସିଥିବା ଦୁଇ ଯାତ୍ରୀଙ୍କ ରୋମାଞ୍ଚକର କାହାଣୀ ପ୍ରଭୃତି ଆମମାନଙ୍କ କୋମଳ ମନରେ ଅଦ୍ଭୁତ ପ୍ରଭାବ ବିସ୍ତାର କରିଥିଲେ। ମିଶର କେବଳ ଯେ ସେହି ଆରବ ଦେଶମାନଙ୍କର ପ୍ରତୀକ ଥିଲା ତା ନୁହେଁ ସେ ଥିଲା ଏକ ପୁରାତନ ସଭ୍ୟତା ଓ ସଂସ୍କୃତିର ପୀଠସ୍ଥଳୀ। ମିଶରର ପିରାମିଡ୍ ସବୁ ପୃଥିବୀର ଆଶ୍ଚର୍ଯ୍ୟମାନଙ୍କ ମଧ୍ୟରେ ଅନ୍ୟତମ ବୋଲି ଗଣ୍ୟ। ହଜାର ହଜାର ବର୍ଷ ତଳର ଖ୍ୟାତନାମା ଲୋକଙ୍କ ଶବ ସବୁ 'ମମି' ଆକାରରେ ଆଜି ପର୍ଯ୍ୟନ୍ତ ସେ ପିରାମିଡମାନଙ୍କରେ ରହିଆସିଛି। ଏଇ ଦେଶରେ କୁଆଡେ ଥିଲା 'ସ୍ଫିଙ୍କସ୍' - ସିଂହର ଦେହ; କିନ୍ତୁ ମଣିଷର ମୁଣ୍ଡ- ଯେତେ ପରାକ୍ରମୀ ସେତେ ବୁଦ୍ଧିମାନ। ସେ ବାଟଦେଇ ବାଟୋଇମାନେ ଗଲେ ଏହି ସ୍ଫିଙ୍କସ୍ ସେମାନଙ୍କୁ ନାନା ରକମର ଜଟିଳ ପ୍ରଶ୍ନ ସବୁ ପଚାରେ, ଆଉ ଯଥୋଚିତ ଉତ୍ତର ଦେଇ ନ ପାରିଲେ ସେମାନଙ୍କୁ ଖାଇଯାଏ। ଶେଷରେ ଜଣେ ବାଟୋଇ ଯେତେବେଳେ ଠିକ୍ ଠିକ୍ ଉତ୍ତର ଦେଇଦେଲା, ସେ ଅଦ୍ଭୁତ ପ୍ରାଣୀ ସାଙ୍ଗେ ସାଙ୍ଗେ ପଥର ପାଲଟିଗଲା। ଆଉ ଚିର ଅମର ଫୋଏନିକ୍‌ସ ଚଢ଼େଇ - ମରିଗଲା ପରେ ମଧ୍ୟ ଅନେକ ବର୍ଷ ପରେ ନିଜ ପାଉଁଶରୁ ପୁଣି ନିଜେ କୁଆଡେ ଉଠି ଆସେ ନୂତନ କଳେବର ନେଇ। ସେ ଦେଶରେ ଥିଲେ ଅପରୂପ ସୁନ୍ଦରୀ ରାଣୀ କ୍ଲିଓପାଟ୍ରା - ଯାହା ପାଇଁ ଜୁଲିଏସ୍ ସିଜର ଓ ପରେ ପରେ ଆଣ୍ଟୋନୀ ନିଜ ପ୍ରାଣ ବଳି ଦେଇଥିଲେ। ଭୂମଧ୍ୟ ସାଗର, ଲୋହିତ ସାଗର, ସୁଏଜ କେନାଲ - କେତେ ଯେ ସ୍ମୃତି ଏ ଦେଶ ସଙ୍ଗରେ ଜଡ଼ିତ। ଆଉ ଜଡ଼ିତ ଥିଲା କୁହୁକ ସମ୍ରାଟ୍ ପାଶାଙ୍କ ସ୍ମୃତି - ସେ କେମିତି ନିଜ ଟୋପି ଭିତରୁ ଠେକୁଆ ବାହାର କରି ସଂସାରର ସମସ୍ତଙ୍କୁ ଚମତ୍କୃତ କରିଦେଉଥିଲେ।

ତଥାପି ମୋର ମନେଅଛି - ପିଲାଦିନେ ନିଜ ସାଙ୍ଗ ସାଥୀଙ୍କ ସଙ୍ଗରେ ଛୋଟ ଛୋଟ କଥାରେ ଅକାରଣ ବାଦ କଲାପରି ଏହି ମିଶର ଦେଶ ସଙ୍ଗରେ ବାଦ କରିବାକୁ କେମିତି ପ୍ରବଳ ଇଚ୍ଛା ହୁଏ। କେହି ଯଦି କହିଦିଏ ଯେ ମିଶର ତଥା ନୀଳନଦୀ ଉପତ୍ୟକାର ସଭ୍ୟତା ଆମ ଭାରତୀୟ ଗଙ୍ଗା ସିନ୍ଧୁ ଉପତ୍ୟକା ସଭ୍ୟତାଠାରୁ ଆହୁରି ପୁରାତନ, ମନରେ ଆଘାତ ଆସେ। ପୃଥିବୀର ଅନ୍ୟ କୌଣସି ସଭ୍ୟତା ଯେ ଆମ ସଭ୍ୟତାଠାରୁ ପୁରାତନ ହୋଇପାରେ, ସେପରି କଳ୍ପନା ମଧ୍ୟ ଆମ ଜନ୍ମଭୂମି ପ୍ରତି

ତାସଲ୍ୟ ବୋଲି ମନେହୁଏ, ଆଉ ଅଭିମାନୀ ମନ ସେପରି ଚିନ୍ତା ବିରୁଦ୍ଧରେ ବିଦ୍ରୋହ କରେ। ଏପରି ଭାବନା କେବଳ ଯେ ପିଲା ଦିନର ସ୍କୁଲ ଜୀବନ ଭିତରେ ସମୀବଦ୍ଧ ଥିଲା, ତା ନୁହେଁ, ବରଂ କଲେଜ ଜୀବନରେ ସେଇ ଅଭିମାନ ତୀବ୍ରତର ହୋଇ ଉଠିଥିଲା। ଆଜି ମଧ୍ୟ ମୁଁ ଭାବେ ଯେ ଯେଉଁମାନେ ଏପରି ଚିନ୍ତାଧାରାକୁ କୌଣସି ଗୁରୁତ୍ୱ ନ ଦେଇ କେବଳ ଭାବପ୍ରବଣତା ବୋଲି କହି ହସି ଉଡ଼ାଇଦେବାକୁ ଚେଷ୍ଟା କରନ୍ତି, ସେମାନେ ନିଶ୍ଚୟ ଭୁଲ କରନ୍ତି ଏବଂ ଆମ ସଂସ୍କୃତି ପ୍ରତି ଅବିଚାର କରନ୍ତି। ଏକଥା ନିଶ୍ଚିତ ଯେ ପାଶ୍ଚାତ୍ୟ ସଭ୍ୟତା, ଆମ ସଭ୍ୟତା ଓ ସଂସ୍କୃତିକୁ କେବଳ ଯେ ଯଥୋଚିତ ସମ୍ମାନ ଦିଏନି ତା ନୁହେଁ, ସବୁବେଳେ ତାକୁ ହୀନଦୃଷ୍ଟିରେ ଦେଖିବାକୁ ଚେଷ୍ଟାକରେ। ସେଥିପାଇଁ ବୋଧହୁଏ ପାଶ୍ଚାତ୍ୟ ଶିକ୍ଷାବିତ୍‌ମାନେ ଆଜି ମଧ୍ୟ କହନ୍ତି ଯେ ଜିରୋ ଏବଂ ଇନ୍‌ଫିନିଟି ମିଶର ଦେଶୀୟ ଗାଣିତିକମାନଙ୍କର ହିଁ ଅବଦାନ।

ପାଶ୍ଚାତ୍ୟ ସଭ୍ୟତାର ଜନ୍ମ ଲାଟିନ୍ ସଭ୍ୟତାରୁ। ଲାଟିନ୍ ସଭ୍ୟତା କହିଲେ ଗ୍ରୀସ୍, ରୋମ୍, ମିଶର ସଭ୍ୟତାକୁ ହିଁ ବୁଝାଏ। ପାଶ୍ଚାତ୍ୟ ଧର୍ମ-ଶିକ୍ଷା ତଥା ସଂସ୍କୃତି ତେଣୁ ସେହି ଗ୍ରୀକ୍, ରୋମାନ୍, ମିଶରୀୟ ଧର୍ମ-ଶିକ୍ଷା ଓ ସଂସ୍କୃତି ଉପରେ ପ୍ରତିଷ୍ଠିତ। ଇହୁଦୀ ଓ ଖ୍ରୀଷ୍ଟିୟାନ ଏବଂ ଇସଲାମ ଭିତରେ ସଂଘର୍ଷ ଘଟିଛି ସତ; କିନ୍ତୁ ସେ ସଂଘର୍ଷ ଠିକ୍ ଆମ ହିନ୍ଦୁ, ଜୈନ୍, ବୌଦ୍ଧ ଓ ଶିଖମାନଙ୍କ ମଧ୍ୟରେ ସାଂସ୍କୃତିକ ସଂଘର୍ଷ ପରି। (ଲାଟିନ୍ ସଂସ୍କୃତି ଶରୀର ଓ ସାଂସାରିକ ବିଷୟ ଉପରେ ଅଧିକ ଗୁରୁତ୍ୱ ଦେଉଥିବା ଯୋଗୁଁ ସେମାନଙ୍କ ସାଂସ୍କୃତିକ ସଂଘର୍ଷ ଯୁଦ୍ଧ ଏବଂ ରକ୍ତପାତରେ ପରିଣତ ହେଉଥିଲା ବେଳେ, ମନ, ବୁଦ୍ଧି ଏବଂ ଚେତନାକୁ ପ୍ରାଧାନ୍ୟ ଦେଉଥିବା ଭାରତୀୟ ସଂସ୍କୃତିର ସାଂସ୍କୃତିକ ସଂଘର୍ଷ କେବଳ ବୌଦ୍ଧିକ ସ୍ତରରେ ପର୍ଯ୍ୟବସିତ ହୋଇ ରହେ।) ଗୋଟାକରେ ବେଦକୁ ଚେଲେଞ୍ଜ ତ ଅନ୍ୟଥିରେ ଓଲଡ୍ ଟେଷ୍ଟାମେଣ୍ଟ ତଥା ନିଉ ଟେଷ୍ଟାମେଣ୍ଟକୁ ଚେଲେଞ୍ଜ। ଇହୁଦୀ, ଖ୍ରୀଷ୍ଟିୟାନ ଓ ଇସ୍‌ଲାମ୍ ଉପରକୁ ଭିନ୍ନ ଦେଖାଯାଉଥିଲେ ହେଁ ସେମାନଙ୍କ ଅନ୍ତଃସ୍ରୋତ ଏକ-ଧର୍ମ ଓ ଶିକ୍ଷା ଭିନ୍ନ ରୂପ ନେଇଥିଲେ ମଧ୍ୟ ସଂସ୍କୃତି ଗୋଟିଏ। ଏ କଥା ସତ ଯେ ଲାଟିନ୍ ସଂସ୍କୃତି ମଧ୍ୟ ବେଦ ଉପନିଷଦର ସଂସ୍କୃତି ପରି ଆର୍ଯ୍ୟସଂସ୍କୃତି। ଗଙ୍ଗା ଓ ଯମୁନା ହିମାଦ୍ରି ଶିଖରରୁ ତଳକୁ ଖସି ଏକାଠି ହେବାର ଓଲଟା ରୀତିରେ ଆର୍ଯ୍ୟ ସଂସ୍କୃତି ତଳୁ ହିମାଦ୍ରି ଶିଖରକୁ ଉଠିଲାବେଳେ କେବେ ଦୁଇଭାଗ ହେଲା ସେ କଥା ଏତେ ପୁରାତନ ଯେ ତାର ମିଳନର ସୂତ୍ର ହିଁ ଏବେ ଖୋଜି ପାଇ ହୁଏନି। ସେ ମିଳନ କ୍ଷେତ୍ରରେ କେତେ ଯେ ଫଲ୍‌ଗୁ ହଜି ଯାଇଛନ୍ତି, ତାର ମଧ୍ୟ ଇୟତ୍ତା ନାହିଁ।

ଏକ ସୂତ୍ରରୁ ଦେବ ଓ ଦାନବଙ୍କ ଜନ୍ମ ହେଲେ ମଧ୍ୟ ଜ୍ଞାନର ଗାରିମାରେ ଗରୀୟାନ ଦେବତାମାନେ ଚିରଦିନ ଯେପରି ଦାନବଙ୍କ ଶାରୀରିକ ପରାକ୍ରମରେ ଥରକୁ ଥର ପଦାନତ ହେଉଥାଆନ୍ତି; ବେଦ, ଉପନିଷଦ ସଂସ୍କୃତି ଜ୍ଞାନଗର୍ଭା ହୋଇ ମଧ୍ୟ ଜଡବାଦୀ ଲାଟିନ୍ ସଂସ୍କୃତି ପାଖରେ ପ୍ରାୟ ସବୁଦିନ ପଦାନତ ହୋଇଆସିଛି। ଦାନବ ଯେପରି ଦେବଙ୍କୁ କେବେ ସ୍ୱୀକାର କରିନି, ଲାଟିନ୍ କେବେ ବେଦ ଉପନିଷଦକୁ ସ୍ୱୀକାର କରିନି – ତେଣୁ ପାଶ୍ଚାତ୍ୟ ସଭ୍ୟତା କିପରି କହିବ ଯେ ଶୂନ୍ୟ ଓ ଅନନ୍ତର କଳ୍ପନା ଭାରତୀୟ ଋଷି ମୁନିଙ୍କର ହିଁ ଅବଦାନ।

ଭାରତୀୟ ସଭ୍ୟତାରେ ବିଶ୍ୱର କଳ୍ପନା ଏକ ଅଣ୍ଡ ଆକୃତିର କଳ୍ପନା। ବିଶ୍ୱର ଅନ୍ୟନାମ ତେଣୁ ବ୍ରହ୍ମାଣ୍ଡ। ସେହି ଅଣ୍ଡର ଚିତ୍ର ତାର ଛାୟା ହିଁ ଜିରୋର ଚିତ୍ର। ଏହି ବ୍ରହ୍ମାଣ୍ଡ ନିଜେ ଶୂନ୍ୟ ଶୂନ୍ୟ ମହାଶୂନ୍ୟ ହୋଇ ମଧ୍ୟ ଗୁଣ ଓ ବିକାରଯୁକ୍ତ ଏବଂ ତାହା ହିଁ ପ୍ରକୃତି। ପ୍ରକୃତି ନିଜେ ଶୂନ୍ୟ କିନ୍ତୁ ବିଶ୍ୱଗର୍ଭା। ସେହି ଶୂନ୍ୟରୁ ସୃଷ୍ଟିର ଆରମ୍ଭ ହୁଏ, ସଂଖ୍ୟା ଜନ୍ମ ନିଏ। ସେହି ସୃଷ୍ଟି ପୁଣି ଲୀନ ହୋଇଯାଏ ଶୂନ୍ୟରେ, ସଂଖ୍ୟା ଲୀନ ହୋଇଯାଏ ଶୂନ୍ୟ ଭିତରେ। ଠିକ୍ ସେପରି ଜିରୋ ଶୂନ୍ୟ ହେଲେ ମଧ୍ୟ ବିଶ୍ୱଗର୍ଭା। ଶୂନ୍ୟ ପ୍ରକୃତି ଯେପରି ପୁରୁଷର ସ୍ପର୍ଶ ପାଇଲେ ତେଜୀୟାନ ହୋଇଉଠେ ଏବଂ ସଂଖ୍ୟାକୁ ଜନ୍ମ ଦିଏ, ଜିରୋ ସେପରି ସଂଖ୍ୟାର ସ୍ପର୍ଶ ପାଇଲେ ତେଜୀୟାନ ହୋଇଉଠେ, ଆଉ ଜିରୋ ହୋଇ ରହେନି।

ବେଦ ଭଗବାନଙ୍କ ନିରାକାର ସ୍ୱରୂପକୁ ଅନନ୍ତର ରୂପ ଦିଏ। ଅନନ୍ତ ସ୍ୱୟଂ ସମ୍ପୂର୍ଣ୍ଣ, ପୂର୍ଣ୍ଣାତ୍ – ପୂର୍ଣ୍ଣମିଦଂ ସେହି ପୂର୍ଣ୍ଣରୁ ପୂର୍ଣ୍ଣ କାଢ଼ି ନେଲେ ଯାହା ଅବଶିଷ୍ଟ ରହେ ତାହା ମଧ୍ୟ ପୂର୍ଣ୍ଣ – 'ପୂର୍ଣ୍ଣସ୍ୟ ପୂର୍ଣ୍ଣମାଦାୟ ପୂର୍ଣ୍ଣମେବାବଶିଷ୍ୟତେ।' ଜଣେ ଭଗବାନ ଅନନ୍ତଶୟନରେ ଥିଲାବେଳେ ଆଉ ଜଣେ ସ୍ୱୟଂ ସମ୍ପୂର୍ଣ୍ଣ ଭଗବାନ ଶ୍ରୀରାମଙ୍କ ରୂପରେ ଅଥବା ଶ୍ରୀକୃଷ୍ଣଙ୍କ ରୂପରେ ଶରୀର ନେଇ ବିଚରଣ କରିପାରନ୍ତି। ଗଣିତରେ ଇନ୍‌ଫିନିଟିର ସଂଜ୍ଞା ଠିକ୍ ସେପରି – ଇନ୍‌ଫିନିଟି ବିଯୁକ୍ତ ଇନ୍‌ଫିନିଟି ସମାନ ଇନ୍‌ଫିନିଟି। ଏପରି ଇନ୍‌ଫିନିଟିର କଳ୍ପନା କେବଳ ଭାରତୀୟ ଗଣିତ ଦେଇପାରେ – ଠିଆ ଆଙ୍ଗୁଠି ଗଣି ଦୁଇ ହାତର ଆଙ୍ଗୁଠି ସରିଗଲେ ଛକି ମାରିଦେଇ ଦଶ ବୋଲି ଗଣୁଥିବା ଲାଟିନ୍ ଗଣିତ ନୁହେଁ।

ତଥାପି ମିଶର ଥିଲା ମୋ ପିଲାଦିନର ସ୍ୱପ୍ନପୁରୀ। ସେଇ ମିଶର ଦେଶର ରାଜଧାନୀ କାଏରୋକୁ ଆସିଲାବେଳେ ମନେ ହେଉଥିଲା ସତେ ଯେପରି କାହିଁ କେବର ସ୍ୱପ୍ନ ସାର୍ଥକ ହେବାକୁ ଯାଉଛି; କିନ୍ତୁ ହେଲା କଣ?

ଆମେ କେତେଜଣ ସେତେବେଳେ କାଏରୋ ବିମାନ ବନ୍ଦରରେ ଉଡ଼ାଜାହାଜରୁ ଓହ୍ଲାଇଲୁ, କେଉଁ ଆଡ଼କୁ ଯିବୁ ସେ କଥା ଜଣାଇଦେବା ପାଇଁ ମଧ୍ୟ କେହି ନ ଥିଲେ। କିଛି ସମୟ ପରେ ମିଶର ଦେଶୀୟ ଜଣେ ଭଦ୍ରଲୋକ ଓ ଭଦ୍ରମହିଳା ଦେଖାଦେଇ କହିଲେ ଯେ ସେମାନେ ଏଆର ଇଣ୍ଡିଆର ଏଜେଣ୍ଟ। ଆମ ସାଙ୍ଗରେ ବିମାନ ବନ୍ଦରର କୋଠାକୁ ଗଲେ ଓ ପ୍ରଥମେ ଇମିଗ୍ରେସନ୍ କାଉଣ୍ଟରକୁ ଯାଇ ପାସ୍‌ପୋର୍ଟ, ଭିସାହେଲ୍‌ଥ୍ ସାର୍ଟିଫିକେଟ୍ ପ୍ରଭୃତି ଚେକ୍ କରାଇ ନେଲା ପରେ କଷ୍ଟମ୍‌ସ ଚେକ୍ କରାଇବା ପାଇଁ ପରାମର୍ଶ ଦେଲେ ଓ ଠିକ୍ ପରେ ପରେ କେଉଁଠି ଅଦୃଶ୍ୟ ହୋଇଗଲେ। କାଏରୋ ଏଆର୍‌ପୋର୍ଟ ଖୁବ୍ ବଡ଼ - ଆମ ପାଲମ - ଦମଦମ କିମ୍ୱା ସାନ୍ତାକ୍ରୁଜ୍ ତା' ତୁଳନାରେ କିଛି ନୁହେଁ। ଏସିଆ, ୟୁରୋପ ଓ ଆଫ୍ରିକାର କେନ୍ଦ୍ରସ୍ଥଳୀ ଏହି କାଏରୋ ବନ୍ଦର - ପଶ୍ଚିମରୁ ପୂର୍ବକୁ ଯିବା ପାଇଁ ପ୍ରଧାନ ବାଟ। ସେଥିପାଇଁ ବିମାନ ବନ୍ଦରରେ ଯାତ୍ରୀଭିଡ଼ ଅନେକ ବେଶି।

ବିମାନ ବନ୍ଦର କର୍ମଚାରୀ ପ୍ରାୟ କେହି ଇଂରାଜୀ ବୁଝନ୍ତିନି। ମନେ ହେଉଥାଏ କିଛି ଶୁଣିବା ପାଇଁ ସତେ ଯେମିତି କାହାରି ଧୈର୍ଯ୍ୟ ନାହିଁ। ଭାରତର ଶୃଙ୍ଖଳିତ କାଉଣ୍ଟରମାନଙ୍କ ପରି କାଉଣ୍ଟର୍‌ଗୁଡ଼ିକର ଅଭାବ। ନୂଆ ଲୋକ ପକ୍ଷରେ ତେଣୁ ଅନେକ ଅସୁବିଧା। ଏଣେ ହାଇଜେକିଂ ହେଉ ବା ଅନ୍ୟ କୌଣସି କାରଣରୁ ହେଉ ସବୁ ଯାତ୍ରୀଙ୍କ ଉପରେ ସନ୍ଦେହ। ଆରବ ଅଂଚଳରେ ଥିବା ନାନା ଦେଶର ଲୋକେ, ମିଶରର ଲୋକେ, ପାକିସ୍ତାନୀ ଏବଂ ଭାରତୀୟ ପୁରୁଷମାନେ ଦେଖିବାକୁ ଊଣା ଅଧିକେ ସମାନ - ତେଣୁ କାହାକୁ ଭାରତୀୟ ବୋଲି ବାରିବା ସହଜ ନୁହେଁ। ତଥାପି ପାସ୍‌ପୋର୍ଟ ଦେଖିସାରିଲା ପରେ ଭାରତୀୟ ବୋଲି ଜାଣି ହଇରାଣ ହରକତ ନ କଲେ ମଧ୍ୟ ଦରକାରୀ ପରାମର୍ଶ କିଛି ଦିଅନ୍ତିନି କିମ୍ୱା କଥାବାର୍ତ୍ତା କରିବାକୁ ଚେଷ୍ଟା କଲେ କଥା ମୋତେ ଆଗେଇ ପାରେନି। ପାସ୍‌ପୋର୍ଟ ଦେଖି ସାରିଲା ପରେ ଯାଞ୍ଚ କରିସାରିଥିବା ଷ୍ଟାମ୍ପମାରି ବହିଟି ଫେରାଇଦେବା କଥା - ଯଦି ବା ନ ଫେରାଇଲେ କେତେବେଳେ ଫେରାଇବେ ସେ କଥା ସୂଚାଇଦେବା କଥା। କିଛି ନାହିଁ - ପାସପୋର୍ଟକୁ ରଖିନେଇ ଟମକୁ ଛାଡ଼ି ଦୁନିଆଯାକ ଉପରତଳ ଦେଖୁଥିବେ - କିଛି ପଚାରିଲେ ତାଙ୍କ ଆରବିକ୍ ଭାଷାରେ ଜବାବ ଦେବେ। ଏଣେ ଉଡ଼ାଜାହାଜରୁ ଯାତ୍ରୀମାନଙ୍କ ବାକ୍‌ସପତ୍ର ସବୁ ଆସିଯାଇଥିବ। ନିଜ ବାକ୍‌ସ ଚିହ୍ନି ନ ଆଣିଲେ ସେ ପୁଣି କଣ ହେବ। କୌଣସିମତେ ଠାର ନାର କରି ପାସ୍‌ପୋର୍ଟ ଆଣି ଯେତେବେଳେ ମୋ ସୁଟ୍‌କେଶ ଆଣିବାକୁ ଗଲି ସେ ଓଜନିଆ ସୁଟ୍‌କେଶ ବୋହିବାକୁ କେହି ନାହାନ୍ତି। ପୋର୍ଟର ଗୁଡିଏ - କିନ୍ତୁ ସେ ସମସ୍ତେ ଭୟଙ୍କର ଅଳସୁଆ। ଦଳଦଳ ଏକାଠି ହୋଇ

ଗପର ଆଡ୍ଡା ଜମାଇ ଦେଇଥାଆନ୍ତି। ଆନ୍ତର୍ଦ୍ଦେଶୀୟ ଯାତ୍ରାରେ ସେମାନେ ଯାତ୍ରୀମାନଙ୍କୁ ସାହାଯ୍ୟ କରିବା କଥା; କିନ୍ତୁ ଟିକିଏ ବାଟ ଆଣିଦେବା ପାଇଁ ସିଧା ସଳଖ ଦେଢ଼ ଡଲାର ଦୁଇ ଡଲାର ଯାଏ ଦାବୀ କରନ୍ତି। ଆମର ନିହାତ୍ ସୀମିତ ବୈଦେଶିକ ମୁଦ୍ରା - ସେଥିରେ ଏମାନଙ୍କଠାରୁ ସାହାଯ୍ୟ ନେବା ପ୍ରଶ୍ନ ହିଁ ନ ଥାଏ। ମୋ ବାକ୍ସ ଘୋଷାରି ଆଣିଲାବେଳକୁ ବାଟରେ ପୁଣି ସେଇ ଇମିଗ୍ରେସନ୍‌ର ଭଦ୍ରଲୋକ। କହିଲେ - 'ସି ପାସପୋର୍ଟ।' ମୁଁ ଇଂରାଜୀରେ କହିଲି - 'ଆପଣ ଏଇନେ ଦେଖିଲେ ପରା ?' ତାଙ୍କ ମୁହଁର ଭାବରେ କୌଣସି ପରିବର୍ତ୍ତନ ନାହିଁ। ପୁଣି କହିଲେ - 'ସି ପାସପୋର୍ଟ'। ପାସପୋର୍ଟ ଦେଖାଇଲି। ଦେଖି ଫେରାଇଦେଲେ। ତା'ପରେ କଷ୍ଟମ୍‌ସ। 'ଓପନ ସୁଟ୍‌କେଶ'। ମୁଁ ଟେବୁଲ ଉପରେ ସୁଟ୍‌କେଶ ଥୋଇ ଖୋଲିଲି। ଭଦ୍ରଲୋକ ସୁଟ୍‌କେଶ ଭିତର ଦରାଣ୍ଡୁଥାନ୍ତି କିନ୍ତୁ ଚାହୁଁ ଥାଆନ୍ତି ଅନ୍ୟ ଆଡ଼ିକି। ତା ପରେ ଚେକ୍‌କଲେ ବୋଲି ଚକ୍‌ରେ ବାକ୍ସ ଉପରେ ଦସ୍ତଖତଟାଏ କରିଦେଲେ। ସେ କାମ ବି ସରିଲା। ଏଥର କୁଆଡ଼ିକି ଯିବି ? କାଏରୋରେ ଗୋଟିଏ ଦିନର ରହଣି - ଏଆର ଇଣ୍ଡିଆ ହୋଟେଲ ବ୍ୟବସ୍ଥା କରିଦେବା କଥା। କାହିଁ ସେମାନଙ୍କର ଅଫିସ୍ - ସେ ଏଜେଣ୍ଟମାନେ କାହାନ୍ତି ? ଜଣେ ଭାରତୀୟ ଭଦ୍ରଲୋକଙ୍କୁ ଭେଟିଲି। ଆଶା କରୁଥିଲି ଯେ ସେ କିଛି ପରାମର୍ଶ ଦେଇ ପାରିବେ; କିନ୍ତୁ ତାଙ୍କ ଅବସ୍ଥା ଦୁଇଗଣ୍ଡା ଚାରିକଡା। ସେ ଆବୁଧାବି ଯିବେ - ଆଶା କରୁଥିଲେ ଯେ କାଏରୋରେ ଥିବା ତାଙ୍କର ଜଣେ ଚିହ୍ନା ପରିଚୟ ଲୋକ ତାଙ୍କୁ ଦେଖିବା ପାଇଁ ଆସିଥିବେ। କିନ୍ତୁ କେହି ଆସି ନଥିଲେ। ସେ ଯେତେଥର ଇମିଗ୍ରେସନ୍ ଲୋକଙ୍କୁ ଏକଥା କହି ଏନ୍‌କୁଏରି କାହିଁ ଅଥବା ଟେଲିଫୋନ୍ କେଉଁଠି ବୋଲି ପଚାରୁଛନ୍ତି, ସେ ଭଦ୍ରଲୋକମାନେ 'ସି ୟୋର ପାସପୋର୍ଟ। ଭିସା। ନୋ ଭିସା ? ସିଟ୍ ଡାଉନ୍' କହୁଛନ୍ତି। ସେ ବିଚାରା ୨/୩ ଥର ଏମିତି ଚେଷ୍ଟା କରି ସିଟ୍ ଡାଉନ୍ ହେଲେଣି। ବାହାରକୁ ଯିବାକୁ ଚେଷ୍ଟା କଲେ ଅସ୍ଥାୟୀ ଭିସା ପାଇଁ ପ୍ରଥମେ ୫୦ ଆମେରିକାନ ଡଲାର ଦେଇ ମିଶରୀୟ ମୁଦ୍ରା ଭଙ୍ଗାଇନେବା କଥା। ସେଥିରୁ ୨୫ ଡଲାର ଯାଏ ମିଶରରେ ଖର୍ଚ୍ଚ କରିବାକୁ ବାଧ - ବାକିତକ ସେମାନେ ଫେରିଆସିଲା ପରେ ଇଚ୍ଛା ହେଲେ ଆମେରିକାନ ଡଲାରକୁ ବଦଳେଇ ଦେଇ ପାରନ୍ତି। ମୁଁ ଠିକ୍ କଲି ଯେ ଟ୍ରାନ୍‌ଜିଟ୍ ଲାଉଞ୍ଜକୁ ଯାଇ ସେଇଠି କିଛି ସମୟ ବିଶ୍ରାମ ନେଲା ପରେ ଯାଇ ଯାହା କିଛି କରିବି। ଅନେକ କଷ୍ଟରେ ବୁଝିପାରିଲି ଯେ ଗୋଟିଏ ଗେଟ୍ ଡେଇଁଲା ପରେ ବାହାର ବାରନ୍ଦା ପଡ଼ିବ ଓ ସେ ବାରନ୍ଦାର ଡାହାଣ ପଟରେ ଥିବା ପ୍ରଥମ ଗେଟ୍‌ରେ ପଶିଲେ ଟ୍ରାନ୍‌ଜିଟ୍ ଲାଉଞ୍ଜ। ଯେଉଁ ଭଦ୍ରଲୋକ ମୋତେ ଏକଥା ବୁଝାଇଲେ, ସେ

ବାକ୍ସକୁ ଲେଫଟ୍ ଲଗେଜରେ ଛାଡ଼ିବା ଅନୁଚିତ ବୋଲି କହିଲେ ଓ ଜଣେ ପୋର୍ଟର ସାଙ୍ଗରେ କିଛି କଥାବାର୍ତ୍ତା କଲା ପରେ ଆପଣ ବରଂ ନିଜେ ବାକ୍ସ ଲାଉଞ୍ଜକୁ ନେଇଯାଆନ୍ତୁ ବୋଲି ପରାମର୍ଶ ଦେଲେ। ମୁଁ ଯାହା ବୁଝିପାରିଲି ପୋର୍ଟର ବୋଧହୁଏ ଦୁଇ ଡଲାର ମାଗୁଥିଲା। କୌଣିମତେ ଏଟାଚିକୁ ହାତରେ ଧରି ୨୫ କେ.ଜି. ଓଜନର ସୁଟ୍‌କେଶକୁ ଘୋଷାରି ଘୋଷାରି ଦିଓଟିଯାକ ଗେଟ୍ ଡେଇଁଗଲି। ନିହାତ୍ ପାଖ - ତଥାପି କେତେ ଯେ ହଇରାଣ ହେବାକୁ ନ ପଡ଼ିଛି। ବିରାଟ ସେ ଟ୍ରାନ୍‌ଜିଟ୍ ଲାଉଞ୍ଜ। ଭିନ୍ନ ଭିନ୍ନ ଅଞ୍ଚଳକୁ ଯିବା ଯାତ୍ରୀଙ୍କ ପାଇଁ ସୁବିଧା ରହିଛି - ଖାଲି ସୂଚନା କେନ୍ଦ୍ରର ଅଭାବ। ଟ୍ରାନ୍‌ଜିଟ୍ ଲାଉଞ୍ଜରେ ଆଉ ଜଣେ ଭାରତୀୟ ଭଦ୍ରଲୋକ ୩/୪ଟି ଛୋଟ ଛୋଟ ସୁଟ୍‌କେଶମାନ ଧରି ଦୋକାନ ଦେଲା ପରି ବସି ଥାଆନ୍ତି, ଆଉ ଚଞ୍ଚଳ ଆଖିରେ ଏପାଖ ସେପାଖ ଅନାଉଥାଆନ୍ତି। ମୁଁ ଧରିନେଲି ଯେ ସେ ଜଣେ ସମଦୁଃଖୀ - ୩/୪ଟି ସୁଟ୍‌କେଶ ଯୋଗୁଁ ତାଙ୍କ ଅବସ୍ଥା ନିଶ୍ଚୟ ମୋଠାରୁ ଟିକିଏ ଗୁରୁତର - ତେବେ ବୟସ ତାଙ୍କ ସପକ୍ଷରେ ଥିଲା। ସେ ଯାଉଥିଲେ ଲେଗୋସ୍ - ନାଇଜେରିଆ। ଆମେ ଗପସପ କରି ଚା' କପେ କେଉଁଠି ପାଇବୁ ସେ କଥା ଆଲୋଚନା କରୁଛୁ, ହଠାତ୍ ସେ ଏଆର୍ ଇଣ୍ଡିଆର ମିଶରୀୟ ଏଜେଣ୍ଟ ଦେଖାଦେଲେ। ଆମର ଆଶା ଏଥର ଉଜ୍ଜ୍ୱଳ ହେଲା। ସେ ଆମଠାରୁ ଟିକଟ ମାଗିନେଇ ସେଠରେ ଅପେକ୍ଷା କରିବାକୁ ଆମକୁ ପରାମର୍ଶ ଦେଇ ହୋଟେଲର ବ୍ୟବସ୍ଥା କରାଇବାକୁ ଚାଲିଗଲେ। ପ୍ରାୟ ୧୫ ମିନିଟ୍ ପରେ ସେ ଫେରିଆସିଲେ। ଏଆର୍ ପୋର୍ଟରେ ଥିବା ହୋଟେଲ୍‌ରେ ହିଁ ସେ ଆମ ରହିବା ବ୍ୟବସ୍ଥା କରି ଦେଇଥାଆନ୍ତି। ଟ୍ରାନ୍‌ଜିଟ୍ ଲାଉଞ୍ଜ ଉପରେ ସେହି ବିରାଟ ହୋଟେଲ। ଆଉ ଲାଉଞ୍ଜର ପାଖ କୋଣରେ ଲିଫ୍‌ଟ୍। ତା ପରେ ବିଶେଷ କିଛି ଅସୁବିଧା ହେଲାନି। ମୋ କୋଠରୀ ପାଖରେ ବାକ୍ସଟି ଥୋଇଦେଇ ହୋଟେଲ ବୟ କୁଆଡ଼େ ଅଦୃଶ୍ୟ ହୋଇଗଲା। ମୁଁ ରିସେପ୍‌ସନ୍‌ର ଚାବିକାଠି ନେଇ ରୁମ୍ ଭିତରକୁ ଗଲି। ବେଶ୍ ଆରାମପ୍ରଦ କୋଠରୀ - କିନ୍ତୁ ପିଇବା ପାଣି କାହିଁ? ଶୋଷରେ ତଣ୍ଟି ଶୁଖିଯାଉଛି। ସେତିକିବେଳେ ହିଁ ସେ ଭଦ୍ର ମହିଳା ପାଣି ମାଗିଲାରୁ 'ଉଆନ୍ ବଟଲ ଉଆନ୍ ଦଲାର' ବୋଲି କହିଥିଲେ।

x x x

ଶରୀର ବିଶ୍ରାମ ଚାହୁଁଥିଲେ ମଧ ମନ ଚାହୁଁଥାଏ ଘୂରିବୁଲି ମିଶରର ପିରାମିଡ ଆଉ ମିଶରୀୟଙ୍କୁ ଦେଖିବା ପାଇଁ। ଖଟ ଉପରେ ହାତଗୋଡ଼ ଟିକିଏ ସଳଖି ନେଲା ପରେ ପୁଣି ସେଇ ଟ୍ରାନ୍‌ଜିଟ ଲାଉଞ୍ଜକୁ ଓହ୍ଲାଇ ଆସିଲି। କାଏରୋ ସହରର ୫/୬

ମାଇଲ ଦୂରରେ ଗୋଟିଏ ପିରାମିଡ ଅଛି ବୋଲି ଶୁଣିଥିଲି। ୫୦ ଡଲାରର ମିଶରୀୟ ମୁଦ୍ରା ଦେଇ ଟ୍ରାନ୍‌ଜିଟ୍ ଭିସା କରାଇନେବି ବୋଲି ଭାବୁଛି ସେହି ଇଣ୍ଡିଆର ଏଜେଣ୍ଟଙ୍କ ସଙ୍ଗରେ ଦେଖାହୋଇଗଲା। ଭଦ୍ରଲୋକ ମୋର ଉଦ୍ଦେଶ୍ୟ ଶୁଣି ଆପଦ ମୁଣ୍ଡେଇ କାଏରୋ ସହରକୁ ଯିବା ଉଚିତ୍ ନୁହେଁ ବୋଲି ଦର୍ଶାଇଦେଲେ। ଆରବ ଅଞ୍ଚଳରେ ତ ସବୁଠେଇଁ ନାନା ରକମର ଗୋଳମାଳ ଲାଗିରହିଛି - ସେଥିପାଇଁ କଟକଣା ସବୁ ଏତେ ବେଶି ଯେ ରାତିରେ ବାହାରୁ ଟ୍ରାନ୍‌ଜିଟ୍ ଲାଉଞ୍ଜକୁ ନିରାପଦରେ ଫେରି ଆସିବା କୁଆଡ଼େ ସହଜ ନୁହେଁ। ଅଗତ୍ୟା ବାହାରକୁ ନ ଯାଇ ସେ ଭିତରେ ଥିବା କଷ୍ଟମ୍‌ସ ଫ୍ରି ବଜାର ଆଉ ବିଭିନ୍ନ ଦେଶରୁ ଆସୁଥିବା ଯାତ୍ରୀମାନଙ୍କୁ ଦେଖିବାରେ ଲାଗିଲି।

ଆମ ଦେଶରେ ହିମାଳୟ ପର୍ବତମାଳା ଯେପରି ହଳଦିଆ ଚାଇନିଜ ଜାତି ଓ ଆମ ସାବନା ଭାରତୀୟଙ୍କୁ ଅଲଗା କରିଦେଇଛି, ଆଫ୍ରିକାରେ ସାହାରା ମରୁଭୂମି ସେପରି ମରୁଭୂମି ଉତ୍ତରରେ ଥିବା ବାଦାମିଆ ଆରବ ଲୋକଙ୍କୁ ଓ ଦକ୍ଷିଣରେ ଥିବା କଳା ନିଗ୍ରୋଙ୍କୁ ଅଲଗା କରିଦେଇଛି; କିନ୍ତୁ ଏତିକି ତଫାତ୍ ଯେ ଏହି ମରୁଭୂମି ନୀଳନଦୀର ଅବବାହିକାକୁ ଦ୍ୱିଖଣ୍ଡିତ କରିପାରିନି। ମିଶରର ଅଧିବାସୀମାନେ ତେଣୁ ବେଶ୍ ମିଶ୍ରିତ। ଇୟୁରୋପୀୟ, ଆରବ ଓ ନିଗ୍ରୋ ଲୋକମାନଙ୍କ ସମ୍ମିଶ୍ରଣରେ କାଏରୋ ବିମାନ ବନ୍ଦର ସେଥିପାଇଁ ବେଶ୍ ରଙ୍ଗୀନ୍ ଜଣାପଡ଼େ। ତହିଁରେ ପୁଣି ଆରବମାନଙ୍କ ନାନା ଢଙ୍ଗର ପୋଷାକ। କେଉଁ ଭଦ୍ରଲୋକ ମୁଣ୍ଡରେ ଧଳା ଚାଦର ବିଛାଇ ତହିଁରେ ସୋରେଇ ମଳାପରି ଅଦ୍ଭୁତିଆ ଟୋପି ପିନ୍ଧିଛି ତ ଆଉ କେହି ସତେ ଯେମିତି ରୀତିମତ ମାଟି ପଲମଟିଏ ଥାପି ଦେଇଛି। କେହି ଫେଜ୍ ଟୋପି ପିନ୍ଧି ଚିକ୍‌କଣ ଗାଲ ତଳେ ଛେଳିଦାଢ଼ି ଝୁଲାଇଛି ତ କେଉଁ ଭଦ୍ରମହିଳା ଧଳା ଆଲଖାଲାରେ ଦେହ ମୁଣ୍ଡ ଘୋଡାଇ ମାଛଧରା ଜାଲପରି ଜାଲରେ ମୁହଁ ଢ଼ାଙ୍କି ସେ ଭିତରୁ ଆଖି ଢ଼ୁଲୁଢ଼ୁଲୁ କରି ଅନାଉଛନ୍ତି। ପାଦରେ ହାଇହିଲ୍ ଜୋତା, କିନ୍ତୁ ଦେହର ରଙ୍ଗ ଗୋରା କି କଳା କି ସାବନା ଜାଣିବା ଉପାୟ ନାହିଁ। କାହାର କାହାର ଅବା ପୁରାପୁରି ଇଉରୋପୀଏନ୍ ଡ୍ରେସ୍। ଦେଖିଲି ବିମାନ ବନ୍ଦରରେ ଘର ଓଳାଉଥିବା ସମସ୍ତେ ମହିଳା। ମିଶରୀୟ ଝିଅମାନେ ଦେଖିବାକୁ ଭଣା ଅଧିକେ ଆମ ପଞ୍ଜାବୀ ଝିଅଙ୍କ ପରି। ଟ୍ରାଉଜର ବୁଶ୍ ସାର୍ଟ ଓ ବବ୍ ହେଆର। ସମସ୍ତଙ୍କ ଆଖିର ଉପର ପତାରେ ଫିକା ନୀଳ ପଲିସ, ସରୁ କଳା ଅଙ୍କା ଭୁରୁ। ଆମ ଭାରତୀୟ ଝିଅଙ୍କ ଗାମ୍ଭୀର୍ଯ୍ୟ ନାହିଁ। କଥା କଥାକେ ଖିଁ ଖିଁ ହସ।

କଷ୍ଟମସ୍ ଫ୍ରି ବଜାରରେ ଦେଖିଲି କେତେ ଜିନିଷ ଅତି ଶସ୍ତା। ଟେପ୍ ରେକର୍ଡରର ଯେଉଁ କେସେଟ୍ ଆମ ଭାରତରେ ୪୦/୫୦ ଟଙ୍କା, ଏଇଠି ତାର ଦାମ୍

କେବଳ ୧୦/୧୨ ଟଙ୍କା। ଜେଇସ୍, ୟାସିକା ପରି କାମେରାଗୁଡ଼ିକର ଦାମ୍ ମଧ୍ୟ ପ୍ରାୟ ଅଧାଅଧି। କିଣିନେଲେ ଆମ ଦେଶରେ ଏ ସବୁ ସହଜରେ ପୁରାଇ ଦେବେନି। ଆଉ ଯଦି ଛାଡ଼ିଦେବେ କଷ୍ଟମସ୍ ଡିଉଟି ଏମିତି କଷିଦେବେ ଯେ ସେଥିରେ ଛ'ଟଙ୍କା ଘୋଡାକୁ ନ'ଟଙ୍କା ଦାନା ହୋଇଯିବ, ସେ କଥା ମୁଁ ଜାଣେ। ତଥାପି ଭାରତ ଫେରିଲାବେଳେ ଏଥିରୁ ଗୁଡ଼ିଏ କିଣି ନେବି ବୋଲି ଠିକ୍ କରି କେତୋଟି କେସେଟ୍ ଆଉ କେତେ ପିକ୍‌ଚର ପୋଷ୍ଟକାର୍ଡ ଧରି ମୋ ରୁମ୍‌କୁ ଫେରିଗଲି। ଫେରିଯିବା ବାଟରେ ହିଁ ମୋର ରାତ୍ରିଭୋଜନ ଶେଷ କରିଯାଇଥିଲି - କୋଠରୀରେ ପହଞ୍ଚିଲାବେଳକୁ ଶରୀର ସଙ୍ଗରେ ମନ ମଧ୍ୟ ଏମିତି ଅବଶ ହୋଇଯାଇଥିଲା ଯେ ଖଟରେ ଗଡ଼ିଲା କ୍ଷଣି ଗଭୀର ନିଦରେ ଶୋଇପଡ଼ିଲି।

ସକାଳେ ଯେତେବେଳେ ମୋର ନିଦ ଭାଙ୍ଗିଥିଲା, ଦେଖିଲି ବାହାର ବେଶ୍ ଫର୍ଚ୍ଚା ଦିଶୁଛି। ୬ କି ସାଢ଼େ ୬ ହୋଇ ଗଲାଣି ଭାବି ତରବର ହୋଇ ଉଠି ମୋ ଘଣ୍ଟା ଦେଖିଲାବେଳକୁ ସମୟ ୪ଟା। ଭାବିଲି ମୋ ଘଣ୍ଟା ବୋଧହୁଏ ବନ୍ଦ ହୋଇଯାଇଛି। ସକାଳର ସବୁ ଦୈନନ୍ଦିନ କାମ ସାରିଦେଲି। ବ୍ରେକ୍‌ଫାଷ୍ଟ ଖାଇଲାବେଳେ କିନ୍ତୁ ବୁଝିପାରିଲି ଯେ ମୋର ଘଣ୍ଟାର କିଛି ଦୋଷ ନାହିଁ। ମରୁ ଦିଗନ୍ତର ପରିଣତି ବୋଧହୁଏ - କାଏରୋରେ ଭୋର ସାଢ଼େ ଚାରିଟା ବେଳକୁ ଖରା ପଡ଼ିଯାଏ। ୪ଟା ବେଳେ ଚାରିଆଡ଼େ ଫର୍ଚ୍ଚା ଦିଶିବା ତେଣୁ ସ୍ୱାଭାବିକ କଥା। ମୁଁ ନ ଜାଣି ତରବର ହେଉଥିଲି। ଜାଣିଲା ପରେ ପୁଣି ଥରେ ଶୋଇବା ପ୍ରଶ୍ନ ନଥିଲା। ଟ୍ରାନ୍‌ଜିଟ୍ ଲାଉଞ୍ଜକୁ ଯାଇ ଭିନ୍ନ ଭିନ୍ନ ଦିଗରୁ ସକାଳେ ପହଞ୍ଚୁଥିବା ଯାତ୍ରୀଙ୍କୁ ଦେଖିବି ଭାବି ସଫା ହାଓ୍ୱାଇଏନ୍ ସାର୍ଟ ଖଣ୍ଡିଏ ଯେତେବେଳେ ପିନ୍ଧିଲି, ଦେଖିଲି ସେଥିରେ ଦିଓଟି ବୋତାମ ନାହିଁ। ଆଫ୍ରିକା ଯାତ୍ରା ପାଇଁ ଜିନିଷ ସଜାଡ଼ିଲାବେଳେ ମୋ ସ୍ତ୍ରୀ ଗୋଟିଏ ସିଲାଇ ମୁଣି ହାତ ବାକ୍‌ସରେ ରଖିଦେଇ ଶୁଣାଇ ଦେଇଥିଲେ ଯେ ସେ ମୁଣିରେ ଛୁଞ୍ଚି ସୂତା ଓ ନାନା ସାଇଜର ବୋତାମ ସବୁ ରହିଛି। 'ଦରକାର ହେଲେ ବୋତାମ ବୋଧହୁଏ ନିଜେ ଟିପି ନେଇପାରିବ' ବୋଲି ଟିପ୍‌ପଣୀ ମଧ୍ୟ କାଟି ଦେଇଥିଲେ। ଏ ମହିଳାମାନଙ୍କ ଧାରଣା ଯେ ଆମ ପୁରୁଷଲୋକଙ୍କ ହାତରେ ଖଡା ବି ସିଝେନି। ଆଉ ଖଣ୍ଡିଏ ବୋତାମ ଥିବା ସାର୍ଟ ନ ପିନ୍ଧି ମୁଁ ହଠାତ୍ ଠିକ୍ କଲି ଯେ ଏଇ ସାର୍ଟରେ ହିଁ ବୋତାମ ଦି'ଟା ଲଗାଇବି, ଆଉ ମୁଁ ନିଜେ ଲଗାଇଥିବା ବୋତାମବାଲା ସେଇ ସାର୍ଟ ପିନ୍ଧି ବୁଲିବାକୁ ବାହାରିବି। ଛୁଞ୍ଚିଟି କାଢ଼ି ଫୋଡ଼ରେ ସୂତା ଗଳାଇଲି - ସୂତା ଫୋଡ଼ ଭିତରେ ନ ପଶି କେଉଁଠି ଲାଗିଲା କେଜାଣି ଆବୁପରି ହୋଇଗଲା। ତାକୁ ଟାଣି ଆଣି ସୂତା ମୁହଁକୁ ଦୁଇ ଆଙ୍ଗୁଠିରେ ଘଷି ଗୋଜିଆ କରି ଆଉ ଥରେ ପୁଣି ଫୋଡ଼ ଭିତରେ

ପୁରାଇଲି। ସୂତାଟି ଏଥର ସିଧା ପଶିଗଲା। ଛୁଞ୍ଚି ଛାଡ଼ି ସେ ସୂତା ଖିଅକୁ ଯେତେବେଳେ ଟାଣିବାକୁ ଗଲି, ଜାଣିଲି ଯେ ସୂତା ବାହାରେ ବାହାରେ ଯାଇଛି - ଫୋଡ଼ ଭିତରେ ନୁହେଁ। ଛୁଞ୍ଚିକୁ ତଳୁ ଗୋଟାଇ ପୁଣି ଚେଷ୍ଟା କଲି। ସୂତା କେତେବେଳେ ଡାହାଣ ଆଡେ, କେତେବେଳେ ବାଁ ପାଖରେ, କେତେବେଳେ ତଳେ ଆଉ କେତେବେଳେ ଉପରେ ଗଳିଯାଏ ସିନା ଫୋଡ଼ ଭିତରେ ଯିବାକୁ ନାରାଜ। ପାଟିରେ ଓଦା କରି ପୁଣି ଆଙ୍ଗୁଠିରେ ଘଷି ଗୋଜିଆ କଲି - ତଥାପି ସେଇ ଅବସ୍ଥା। ସୂତା କେମିତି ଗୋଲ ହୋଇ ଯାଉଥାଏ। ବାଇବେଲ୍‌ର କଥାଟିଏ ମନେପଡ଼ିଗଲା। ଛୁଞ୍ଚି ମୁହଁରେ ଓଟ ଗଳିବା ଠାରୁ ସ୍ୱର୍ଗ ପୁରୀର ଗେଟ୍ ଭିତରେ ଧନୀଲୋକ ପଶିବା କୁଆଡ଼େ ଆହୁରି କଠିନ। ଭାବିଲି, ଯିଏ ପ୍ରଥମେ ଏଇ ଛୁଞ୍ଚି ମୁହଁରେ ସୂତା ଗଳାଇବାକୁ ଯାଇ ନାକେଦମ୍ ହୋଇଥିବେ, ଆଉ ସେ ମୁହଁରେ ବଳଦ କି ଗଧ ପଶିବା କଥା ନ କହି ଓଟ କଥା ଯେତେବେଳେ କହିଛନ୍ତି, ସେ ବି ଏମିତି ମିଶର ପରି କୌଣସି ଓଟବାଲା ରାଜ୍ୟରେ ହିଁ ଛୁଞ୍ଚିରେ ସୂତା ଗଳାଇବାକୁ ଯାଇ ଦୁରାବସ୍ଥା ଭୋଗିଥିବେ। ଆମ ଭାଗବତର ପଦଟିଏ ମଧ୍ୟ ମୋର ମନେ ପଡ଼ିଗଲା, "ତୁ କୃପା କଲେ ନରହରି, ପଙ୍ଗୁ ହିଁ ଲଙ୍ଘିପାରେ ଗିରି।" ମନେ ମନେ ଏ ଦୁଇକଥାକୁ ତୁଳନା କରି ପଙ୍ଗୁ ଗିରି ଲଙ୍ଘିବା ଆଉ ଛୁଞ୍ଚି ମୁହଁରେ ଓଟ ଗଳିବାକୁ ଓଜନ କରୁଛି, ହଠାତ୍ ଆବିଷ୍କାର କଲି ମୋ ଛୁଞ୍ଚି ଫୋଡ଼ରେ ସୂତା ଗଳିଯାଇଛି।

ସମୟ ୯ଟା ବି ହୋଇନି। ତଳକୁ ଯିବା ଆଗରୁ ସୁଟକେଶ୍‌ର ସବୁ ଜିନିଷ ବାହାର କରି ସେ ସବୁକୁ ଭଲ କରି ସଜାଡ଼ିନେଲି, ଆଉ ମେରୁଦଣ୍ଡ ଟିକିଏ ସଳଖାଇବା ଉଦ୍ଦେଶ୍ୟରେ ଖଟରେ ପୁଣି ଥରେ ଗଡ଼ିପଡ଼ିଲି। ହଠାତ୍ ଯେତେବେଳେ ମୋର ଛାଇ ନିଦ ଭାଙ୍ଗିଲା, ଦେଖିଲି ସମୟ ନଷ୍ଟ କରୁଛି ଭାବି ଧଡ଼ପଡ଼ ହୋଇ ଉଠି କୋଠରୀର କବାଟ ବନ୍ଦ କଲି, ଆଉ ରିସେପ୍‌ସନ୍‌ରେ ଚାବିକାଠି ଛାଡ଼ିଦେଇ ଟ୍ରାନ୍‌ଜିଟ୍ ଲାଉଞ୍ଜକୁ ଓହ୍ଲାଇଗଲି।

ସକାଳ ବେଳା ଗୁଡ଼ିଏ ଉଡ଼ାଜାହାଜ ଆସି ଅନେକ ଯାତ୍ରୀ ଛାଡ଼ିଦେଇ ଗଲାଣି। ଟ୍ରାନଜିଟ୍ ଲାଉଞ୍ଜ ଲୋକାରଣ୍ୟ। ନାନା ଦେଶର ଲୋକ - ନାନା ଢଙ୍ଗର ପୋଷାକ। ସେସବୁ ଦେଖି ଦେଖି ଆଗେଇ ଯାଉଛି, ହଠାତ୍ ଦେଖିଲି ଗୋଟିଏ ଲମ୍ବା କ୍ୟୁ। ଜଣେ ଭାରତୀୟଙ୍କୁ ସେହି କ୍ୟୁରେ ଦେଖି ତାଙ୍କ ସାଙ୍ଗରେ କଥା ହେଉ ହେଉ ଜାଣିଲି ଯେ ଆଗ୍ରା ଯିବା ପ୍ଲେନ୍‌ଯାତ୍ରୀଙ୍କ ସିକ୍ୟୁରିଟି ଚେକ୍ ପାଇଁ ଏଇ କ୍ୟୁ। ମୁଁ ବି ତ ଆଗ୍ରା ଯିବି। ମୋ ପ୍ଲେନ୍ ଯାଇ ୨-୩୦ରେ। ସେ କାହିଁକି ୧୨ଟା ବେଳର ପ୍ଲେନ୍‌ରେ ଯାଉଛନ୍ତି, ବୁଝିବାକୁ ଯାଇ ଯାହା ଶୁଣିଲି, ମୋ ଛାତିରେ ପବନ ଅଟକିଗଲା। ସେ କହିଲେ ଯେ

ଆକ୍ରା ଯିବା ପାଇଁ ମାତ୍ର ଏଇ ଗୋଟିଏ ପ୍ଲେନ୍। ଆଉ ତା' ଟାଇମ୍ ୧୨ଟା, ୨-୩୦ ନୁହେଁ। ବୋଧହୁଏ ସମୟ ବଦଳି ଯାଇଥିବା କଥା ନ ଜାଣି ଦିଲ୍ଲୀରେ ଏଥର ଏଆର୍ ଇଣ୍ଡିଆ ମୋ ଟିକଟରେ ୨-୩୦ ବୋଲି ଲେଖିଦେଇଛି। ମୁଁ ତ ପୂର୍ବତନ ସନ୍ଧ୍ୟାରେ ଇଜିପ୍‌ସିଆନ୍ ଏଆର୍ ଲାଇନସ୍‌ରେ ବୁଝିଥିଲି ଓ ସେମାନଙ୍କ ନିର୍ଦ୍ଦେଶ ମତେ ଟିକଟ ଓ ପାସ୍‌ପୋର୍ଟ ସେମାନଙ୍କ ପାଖରେ ଛାଡ଼ିଦେଇ ଆସିଥିଲି। ସେମାନେ ଏଇ ୨-୩୦ ଲେଖାଥିବା କଥା ଦେଖି ମଧ କିଛି କହି ନ ଥିଲେ। ଏଇ ପ୍ଲେନ୍ ଯଦି ଧରି ନ ପାରିବି ମୋ ଅବସ୍ଥା କଣ ହେବ। ଇଜିପ୍‌ସିଆନ୍ ଏଆର୍ ଲାଇନ୍‌ସର କାଉଣ୍ଟରକୁ ଦଉଡ଼ିଲି। ସେମାନେ ବୋଧହୁଏ ମୋତେ ଖୋଜୁଥିଲେ। ମୋର ପାସପୋର୍ଟ ଓ ଟିକଟ ଦେଇ ଆକ୍ରା ପ୍ଲେନ୍ ୧୨ଟାରେ ଓ ଅତି ଶୀଘ୍ର ମୋର ଜିନିଷପତ୍ର ଆଣି ବୋର୍ଡିଂ ପାସ୍ ସଂଗ୍ରହ କରିବା ପାଇଁ ମୋତେ ପରାମର୍ଶ ଦେଲେ। ମୁଁ ରୀତିମତ ଦଉଡି ଗଲି। ଲିଫ୍‌ଟ୍ ଅପରେଟର୍ ମୋର ଅବସ୍ଥା ଦେଖି କଥା ଠିକ୍ ଠଉରାଇନେଲା ବୋଧହୁଏ - ହସି ହସି 'ଶୀଘ୍ର' ବୋଲି କହିବା ଭଙ୍ଗୀ କଲା ଓ ଲିଫ୍‌ଟ ଉଠାଇ ନେଲା। ମୁଁ ତାକୁ କିଛିକ୍ଷଣ ଅପେକ୍ଷା କରିବା ପାଇଁ ଅଙ୍ଗଭଙ୍ଗୀ ସାହାଯ୍ୟରେ ଅନୁରୋଧ କଲି ଓ ରିସେପ୍‌ସନ୍‌ରୁ ଚାବି ନେଇ କୋଠରୀକୁ ମୋର ସୁଟ୍‌କେଶ ଓ ଏଟାଚି ଘୋଷାରି ଆଣିଲି। ୧୦ମିନଟ ପରେ ମୁଁ ମୋର ଲଗେଜ୍ ନେଇ ଇଜିପ୍‌ସିଆନ୍ ଏଆର୍ ଲାଇନ୍‌ସର ଆକ୍ରା କାଉଣ୍ଟରରେ ପହଞ୍ଚିଯାଇଥିଲି। କିଛି ଭିଡ଼ ନଥିଲା। ସୁଟ୍‌କେଶ ଓଜନ କରିବାରେ ଆକ୍ରା ଟେଗ୍ ଓ ବୋର୍ଡିଂ ପାସ୍ ଦେବାରେ କିଛି ବିଳମ୍ବ ଘଟିଲାନି। ସୁବିଧା ଦେଖି ପୋର୍ଟର ମୋ ପାଖରୁ କିଛି ଭିଡ ଅସୁଲ କରିବାକୁ ଚେଷ୍ଟା କରୁଛି ଜାଣି ସେ କାଉଣ୍ଟର୍‌ର ଅଫିସର ମୋ ସୁଟ୍‌କେଶ ଶୀଘ୍ର ପ୍ଲେନ୍ ପାଖକୁ ନେଇଯିବା ପାଇଁ ନିର୍ଦ୍ଦେଶ ଦେଲେ। କ୍ୟୁର ସବୁଯାତ୍ରୀଙ୍କ ସିକ୍ୟୁରିଟି ଚେକ୍ ସରି ନଥାଏ - ମୁଁ ବି କ୍ୟୁରେ ଠିଆ ହୋଇଗଲି। କ୍ୟୁର ଗତି ଅତି ମନ୍ଥର ଥିଲା । ସିକ୍ୟୁରିଟି ଚେକ୍ ଅଫିସର୍ ଓ ଇମିଗ୍ରେସନ୍ ଅଫିସର୍‌ମାନଙ୍କ ଭିତରେ କୌଣସି କାରଣରୁ ଝଗଡ଼ା ଚାଲିଥିଲା। ଏମାନଙ୍କ ସାଧାରଣ କଥାବାର୍ତ୍ତା ହିଁ କେମିତି ଗୋଟାଏ ଝଗଡ଼ା କଲା ପରି ମନେହୁଏ। ଏମାନେ 'ଟ' ଓ 'ଡ଼' କୁ 'ତ' ଓ 'ଦ' ପରି ଉଚ୍ଚାରଣ କରୁଥିଲେ ମଧ ଭାଷାରେ କୋମଳତା ଥିଲା ପରି ମନେହୁଏନି - କେମିତି କର୍କଶ ଶୁଭେ। ପରେ ଜାଣିଲି ଟ୍ରାନ୍‌ଜିଟ୍ ପାସ୍ ସଂଗ୍ରହ କରି ନଥିବା ଯାତ୍ରୀମାନଙ୍କୁ ସିକ୍ୟୁରିଟିବାଲେ ଅଟକାଇ ରଖିବାକୁ ଚାହୁଁ ଥିବାରୁ ଇମିଗ୍ରେସନବାଲେ ଯାତ୍ରୀମାନଙ୍କ ପାଇଁ ଲଢୁଥିଲେ।

ସେଦିନ ପ୍ଲେନ୍‌ରେ ଚଢ଼ିସାରିଲା ପରେ ମୁଁ ମନକୁ ମନ ଭାବୁଥିଲି ଆମେ ଆମ ଭାରତୀୟ ସଂସ୍ଥାମାନଙ୍କ କାର୍ଯ୍ୟଦକ୍ଷତା ସମ୍ବନ୍ଧରେ ଏତେ ଅଭିଯୋଗ କରୁ ସତ; କିନ୍ତୁ

ଏଆର୍ ଇଣ୍ଡିଆ, ଇଣ୍ଡିଏନ୍ ଏଆର ଲାଇନସ୍ ଓ ଭାରତୀୟ ସଂସ୍ଥା ସବୁ ଏମାନଙ୍କ ତୁଳନାରେ କେତେ କାର୍ଯ୍ୟଦକ୍ଷ ଓ କେତେ ସହାନୁଭୂତିଶୀଳ। ଗାଁ କନିଆଁ ସିଂଘାଣି ନାକୀ ବୋଲି ଯିଏ କହିଛି, ସିଏ ପ୍ରକୃତରେ କେଡ଼େ ସତ କଥାଟିଏ କହିଛି।

ମିଶର ଦେଶର ବୋଇଂ ବିମାନରେ ମୋର ଯାତ୍ରାର ଦ୍ୱିତୀୟ ପାଦ - କାଏରୋରୁ ଆକ୍ରା ଯାତ୍ରା ଆରମ୍ଭ ହୋଇଯାଇଥିଲା।

ନୀଳନଦୀର ସେଇ ସବୁଜ ଉପତ୍ୟକା କିଛିକ୍ଷଣ ମଧ୍ୟରେ ହିଁ ଉଭେଇଗଲା, ଆଉ ଦେଖାଦେଲା ମରୁଭୂମିର ଅସରନ୍ତି ବାଦାମୀ ରଙ୍ଗ। ଯାତ୍ରାର ପ୍ରଥମ କେତେ ମିନିଟ ଭିତରେ ଏଇଠି ସେଇଠି ଗୋଟିଏ ଅଧେ ଓଏସିସ୍ ବା ମରୁଦ୍ୟାନ ଆକାଶରୁ ଅତି ସୁନ୍ଦର ଦେଖାଯାଉଥାଏ - ବାଦାମୀ ଶାଢ଼ୀରେ ଫିକା ଶାଗୁଆର କେତୋଟି ଗୋଲ ଚିତ୍ର ଅଙ୍କନ ପରି। ଗୋଲେଇ ଭିତରେ ନାନା ଢଙ୍ଗର କେତେ କେତେ ଜ୍ୟାମିତିକ ଚିତ୍ର - ବୋଧହୁଏ କ୍ଷେତ ବାଡ଼ି ଆଉ ଘରଗୁଡ଼ିକ। ପରେ ପରେ ଏପରି ମରୁଦ୍ୟାନ ବି ଦେଖିବାକୁ ମିଳିଲାନି - କେବଳ ସେଇ ବାଦାମୀ ରଙ୍ଗର ବାଲୁକାରାଶି। ବିମାନ ୨୮୦୦୦ ଫୁଟରୁ ୩୦୦୦୦ ଫୁଟ ଉଚ୍ଚରେ ଉଡ଼ି ଯାଉଥିଲେ ମଧ୍ୟ ତଳେ ମେଘ ନାହିଁ କି କୁହୁଡ଼ି ନାହିଁ କିମ୍ବା ବାଲିଝଡ଼ ନାହିଁ। ଭୂ-ପୃଷ୍ଠ ବେଶ୍ ସଫା ଦିଶୁଥାଏ, ସତେ ଯେମିତି ଆମେ ଗୋଟିଏ ଛୋଟ ଉଡ଼ା ଜାହାଜରେ ୩୦୦୦ରୁ ୫୦୦୦ ଫୁଟ ଉପରେ ହିଁ ଉଡ଼ିଯାଉଛୁ। ବଣ ଜଙ୍ଗଲ କିଛି ନାହିଁ... ପାହାଡ଼ ନାହିଁ... ଗଛପତ୍ର ନାହିଁ... ରାସ୍ତାଘାଟ, ନଈ ନାଳ, ଗାଁ ଗଣ୍ଡା କିଛି ନାହିଁ... କେବଳ ବାଲି ଆଉ ବାଲି। କେଉଁ କେଉଁଠି ଗୋଟିଏ ଅଧେ ବାଲି ସ୍ତୂପ କଳା ରଙ୍ଗର ଛାଇ ପରି ଦିଶେ, ହୁଏତ ଟାଙ୍ଗର ଚଟାଣ। ସେତିକି ମାତ୍ର ରଙ୍ଗର ପରିବର୍ତ୍ତନ। ଘଣ୍ଟା ଘଣ୍ଟା ଧରି ସେଇ ଏକା ଦୃଶ୍ୟ - ବିଶାଳ ସାହାରା ମରୁଭୂମି ଜନପ୍ରାଣୀ ଶୂନ୍ୟ, ଉଦ୍ଭିଦ ଜୀବନବିହୀନ। ଆମର ଗତି ଥିଲା ଘଣ୍ଟାକୁ ସେହି ୫୦୦ରୁ ୬୦୦ ମାଇଲ ବେଗରେ। ପ୍ରାୟ ୨ ଘଣ୍ଟା ପରେ ମନେହୋଇଥିଲା ସତେ ଯେମିତି ଆମେ କୌଣସି ଟାଙ୍ଗର ଅଧିତ୍ୟକା ଡେଇଁଯାଉଛୁ। ଅଧିତ୍ୟକାର ମୁହଁ ଠିକ୍ ଗୋଟିଏ କାନ୍ଥ ପରି - ପୂର୍ବରୁ ପଶ୍ଚିମକୁ ଚାଲିଯାଇଛି - ଚୌଦ୍ୱାର ପାଖାପାଖି ମାଙ୍କଡ଼ା ପଥର କାଟିନେଲା ପରେ ଖାଲର ଧଡ଼ି ଯେପରି ଦିଶେ ସେପରି ଦିଶୁଥାଏ। ଆଶା କରୁଥିଲି ଏଥର ବୋଧହୁଏ ଦୃଶ୍ୟର ପରିବର୍ତ୍ତନ ହେବ - କିନ୍ତୁ ସେଇ ଟାଙ୍ଗର ଅଧିତ୍ୟକା ପରେ ପୁଣି ବାଲୁକାରାଶି। 'କିଂ ସଲୋମୋନ୍ଙ୍କ ମାଇନ୍‌ସ'ରେ ଚିତ୍ରିତ ରୋମାଞ୍ଚକର କାହାଣୀ ମୋର ମନେପଡ଼ିଗଲା। ଏ ମରୁଭୂମି ମଝିରେ ଯଦି କୌଣସି ବାଟୋଇକୁ ଛାଡ଼ିଦିଆଯାଏ, ତାର ଅବସ୍ଥା କଣ ହେବ ବୋଲି କଳ୍ପନା କରି ମୁଁ ନିଜେ ଶିହରି ଉଠିଲି।

ମରୁଭୂମିର ଅସରନ୍ତି ବାଲୁକାରାଶିରୁ ଆଖି କାଢ଼ି ଆଣି ଉଡାଜାହାଜ ଭିତରେ ବୁଲାଇ ଆଣିଲେ ଆଉ ଗୋଟିଏ ଦୃଶ୍ୟ ଦେଖାଦେଉଥିଲା। ନାଇଜେରିଆକୁ ଯାଉଥିବା ଜଣେ ଦୁଇଜଣ ଭାରତୀୟ ଏବଂ କେତେଜଣ ଲେବାନିଜ୍‌ଙ୍କୁ ଛାଡ଼ିଦେଲେ ଉଡାଜାହାଜର ସବୁ ଯାତ୍ରୀ ନିଗ୍ରୋ। ସାଧାରଣ ଭାରତୀୟଙ୍କ ତୁଳନାରେ ଏମାନେ ଦେଖିବାକୁ ବେଶ୍ ବଡ଼। ଭଦ୍ରମହିଳାମାନେ ବିଶେଷକରି ପୃଥୁଳକାୟା। କଳା ଦେହରେ ମୋଟା ଓଠ, ଚଉଡା ନାକ, ଛିଟ ଘୋଡଣୀରେ ଢଙ୍କା ମୁଣ୍ଡ ଏବଂ ବଡ଼ ବଡ଼ ହେଣ୍ଡବେଗ୍ ସେମାନଙ୍କ ରୂପକୁ ଆହୁରି ବୃଷାଳ କରି ତୋଳିଧରେ। ମୋ ସାମନା ସିଟ୍‌ରେ କିନ୍ତୁ ଯେଉଁ ଦି' ଜଣ ଝିଅ ବସିଥିଲେ, ସେମାନେ ବେଶ୍ ପତଳା। ଝିଙ୍କ କଣ୍ଟା ପରି ମୁଣ୍ଡର ସବୁ ବାଳକୁ ଅଜସ୍ର ସରୁ ବେଣୀ କରି ଜଣେ ସେ ସବୁକୁ କ୍ଷେତରେ ଧାନ ରୋଇଲା ପରି ଠିଆ କରାଇ ଦେଇଥାଏ ତ ଅନ୍ୟ ଜଣକ ସେ ସବୁ ବେଣୀକୁ ଏ ପାଖରୁ ସେ ପାଖ ଆଉ ଉପରୁ ତଳକୁ ଗୁନ୍ଥି ନେଇଥାଏ। ମନେ ହେଉଥାଏ, ସତେ ଯେମିତି କେହି ମୁଣ୍ଡକୁ ଛକି କରି ଖିଅର କରି ପକାଇଛି। ମଣିଷର ସୌନ୍ଦର୍ଯ୍ୟଜ୍ଞାନ ସତେ କେମିତି ଆପେକ୍ଷିକ, ଯାହା ଜଣକର ଆଖିକୁ ସୁନ୍ଦର ଜଣାପଡ଼େ, ଅନ୍ୟ ଜଣକୁ ହୁଏତ ସେ ଦିଶେ ବୀଭତ୍ସ। ଏମାନଙ୍କ ଆଖି ଆଉ ଦାନ୍ତର ସେଟ କିନ୍ତୁ ଭାରୀ ସୁନ୍ଦର। ଆଖି ହରିଣୀ ଆଖି ପରି ବଡ଼, ଚକ ଚକିଆ ଧଳା ଆଉ ଅତି କଅଁଳ। ଏମାନଙ୍କୁ ଦେଖି ମୋର ମନେ ପଡ଼ିଯାଇ ଥିଲା, 'ଅଙ୍କଲ ଟମସ କେବିନ।' ମହିଁଷି ପାଖରୁ ତା ବାଛୁରୀକି ଛଡାଇନେଲା ପରି ଆରବ ଲୋକେ ଏଇ ବିଶାଳ ନିଗ୍ରୋ ବାପା ମା'ଙ୍କ ପାଖରୁ ଏମିତି କଅଁଳିଆ ପୁଅ ଝିଅଙ୍କୁ ଜବରଦସ୍ତି ଛଡ଼ାଇ ନେଇ ମିଶର ଆଉ ସୁଡ଼ାନର ବଜାରମାନଙ୍କରେ କେମିତି ଅଲଗା ଅଲଗା କରି ବିକ୍ରୀ କରିଦେଉଥିଲେ। ହିଂସ୍ର ବେପାରୀମାନଙ୍କ କଠୋର ଆଉ ନିର୍ଦ୍ଦୟ ଚାବୁକ - କେଉଁଆଡ଼େ ପଳାଇଯିବାର ଉପାୟ ନାହିଁ। ଏକ ପାଖରେ ଗଭୀର ସମୁଦ୍ର, ଅନ୍ୟ ଚାରିଆଡ଼େ ଏହି ସର୍ବଗ୍ରାସୀ ସାହାରା।

ତିନିଘଣ୍ଟା କାଳ ଏଇ ଦୃଶ୍ୟ ଦେଖି ଦେଖି ଆଉ ନାନା କଥା ଭାବି ଭାବି ମୁଁ କେତେବେଳେ ଘୁମେଇ ପଡ଼ିଥିଲି ଜାଣେନି। ଚା ଖାଇବା ପାଇଁ ଏଆର ହୋଷ୍ଟେସ୍ ଯେତେବେଳେ ଉଠାଇଲେ, ଦେଖିଲି ଦୃଶ୍ୟର ପରିବର୍ତ୍ତନ ଘଟିଯାଇଛି। କାଁ ଭାଁ କେତେ ବୁଦାଳିଆ ଗଛ ଦେଖାଦେଲାଣି। ଆଉ ମାଟିରେ ମଣିଷ ହାତର କାରସାଦି ସ୍କଷ୍ଟା ପାମ୍ ପ୍ଲାଣ୍ଟେଶନ୍, କଳା ରାସ୍ତା ଆଉ ଶେଷରେ ସୁନ୍ଦର କେନୋ ସହର।

କେନୋ ସହରରେ ଆମ ବିମାନଟି ଅଧଘଣ୍ଟା ପାଇଁ ଓହ୍ଲାଇଥିଲା। ସହରଟି ନାଇଜେରିଆ ଦେଶରେ। ଇସ୍‌ଲାମିକ୍ ଶିକ୍ଷାର ଏକ ବିଶ୍ୱବିଦ୍ୟାଳୟସ୍ତରୀୟ କେନ୍ଦ୍ର।

ଧୀରେ ଧୀରେ ଆମେ ଘୋର ଅରଣ୍ୟ ଭିତରେ ପଶି ଯାଇଥିଲୁ। ନାଇଜେରିଆ ଦେଶର ସେ ଘଞ୍ଚ ଅରଣ୍ୟ। ସମୟ ମୋ ଘଣ୍ଟାରେ ପ୍ରାୟ ୫-୩୦, ତଥାପି ଚକ୍ରବାଳ ରକ୍ତରାଗ ଓ ସୁନେଲୀ ରଙ୍ଗରେ ରଞ୍ଜିତ ହୋଇଗଲାଣି। ପୃଥିବୀ ପୃଷ୍ଠରେ ଛାୟା ଓ ଆଲୋକର ଲୁଚକାଳି ଖେଳ। ଝରଣା ଓ ନଈନାଳମାନଙ୍କରେ ସୂର୍ଯ୍ୟରଶ୍ମି କେମିତି ଝଲକ ନେଉଛି ଯେ ପାଣିର ଧାର ସବୁ ତରଳ ରୂପା କିମ୍ବା ପାରଦପରି ଚକ୍‌ଚକ୍ କରି ଆଖି ଝଲସାଇ ପୁଣି ଅଦୃଶ୍ୟ ହୋଇଯାଉଛି - ଅନ୍ୟ ସ୍ଥାନରେ ପୁଣି ଦେଖାଦେଉଛି ସେହି ରୂପେଲୀ ସୂତା - ବେଳେବେଳେ ବୁଢ଼ିଆଣୀ ଜାଲର ରୂପ ଧରି। ମଝିରେ ମଝିରେ ଛୋଟ ଛୋଟ ହ୍ରଦ ଆଉ ଜଳଭଣ୍ଡାର ସବୁ ମଧ୍ୟ ଏମତି ରୂପେଲୀ ପରଦାରେ ଢାଙ୍କି ହୋଇଯାଉଛି। ଆକାଶର ସୁନେଲୀ ରଙ୍ଗ ଜଳର ରୂପେଲୀ ଝଲକ - ସବୁଜ ଅରଣ୍ୟ - ପୃଥିବୀ ପୃଷ୍ଠରେ ଆଲୋକ ଅନ୍ଧାରର ଘୋଡଣି - ମଝିରେ ଅଙ୍କେଇ ବଙ୍କେଇ ଦାନବୀର ବିକଟାଳ ରୂପ ଧରି ପଡ଼ିରହିଛି ବିରାଟ ନାଇଜେର୍ ନଦୀ, ଗୌହାଟି ନିକଟରେ ବ୍ରହ୍ମପୁତ୍ରର ଆକୃତି ନେଇ। ଅଭୁଲା ସେ ମାୟାପୁରୀର ଚିତ୍ର - ଯେତେ ମନୋରମ ସେତେ ଭୟଙ୍କର।

ନାଇଜେରିଆର ରାଜଧାନୀ ଲେଗୋସ୍‌ରେ ପହଞ୍ଚିଲା ବେଳକୁ ମୋ ଘଣ୍ଟାରେ ୭ଟା ବାଜିଗଲାଣି। ତଥାପି ଚାରିଆଡ଼ ବେଶ୍ ଫର୍ଚ୍ଚା ଦିଶୁଥାଏ। ବୁଝିଲି ଲୋକାଲ ଟାଇମ ମାତ୍ର ୫ଟା। ଠିକ୍ ଆଟଲାଣ୍ଟିକ ମହାସାଗରର କୂଳରେ ଏହି ଲୋଗାସ ସହର। ପଶ୍ଚିମ ଆଫ୍ରିକାରେ ସବୁଠୁ ସମୃଦ୍ଧିଶାଳୀ ଦେଶର ସର୍ବଶ୍ରେଷ୍ଠ ନଗରୀ। ଆମେ ସେଇଠି ୩୦ ମିନଟ ରହିବା କଥା। ପ୍ରାୟ ଘଣ୍ଟେ ରହିଗଲୁ। ସେ ଭିତରେ ୪ଟି ବୋଇଂ ଉଡାଜାହାଜ ଲେଗୋସ୍‌ର ବିମାନ ଘାଟିରେ ଅବତରଣ କରିଥିଲେ - ନାଇଜେରିଆନ ଏଆର୍ ଲାଇନ୍‌ସର ସାଦାସିଧା ଧଳା ଓ ନୀଳ ରଙ୍ଗ, ଘାନା ଏଆର୍ ଲାଇନ୍‌ସର ଚକଚକିଆ ଲାଲ, ମିଶର ଏଆର ଲାଇନସର ଧଳା ଉପର ଫୋଏନିକ୍‌ସ ଚିହ୍ନ, ମିଡ଼ଲ୍ ଇଷ୍ଟ ଏଆର ଲାଇନସ୍ ଧଳା ଓ ଲାଲ ଝରକା ଧଡ଼ି ଉଡ଼ାଜାହାଜମାନଙ୍କର ସ୍ୱତନ୍ତ୍ରତା ଚିହ୍ନାଇ ଦେଉଥାଏ। ସେଦିନ ନାଇରୋବି ଦେଇ ଆମ ଏଆର ଇଣ୍ଡିଆ ମଧ୍ୟ ପହଞ୍ଚିବା କଥା - ସପ୍ତାହକୁ ଦିନେ। ସେ ଉଡାଜାହାଜ କିନ୍ତୁ ପହଞ୍ଚି ନ ଥାଏ। ଲେଗୋସ ବନ୍ଦରରେ ମଧ୍ୟ ଜଳଜାହାଜମାନଙ୍କର ସେପରି ଭିଡ଼। ଶୁଣିଲି, ଏ ଅଞ୍ଚଳରେ କେବଳ ନାଇଜେରିଆରେ ହିଁ ପେଟ୍ରୋଲିୟମ ରହିଛି - ଅନ୍ୟାନ୍ୟ ପ୍ରାକୃତିକ ସମ୍ପଦ ସଙ୍ଗରେ ଏହି ପେଟ୍ରୋଲିଅମ୍ ଦେଶକୁ ସମୃଦ୍ଧିଶାଳୀ କରିଛି।

ଆମ ଉଡ଼ାଜାହାଜର ପ୍ରାୟ ସବୁ ଯାତ୍ରୀ ଏଇଠି ଓହ୍ଲାଇଗଲେ। କେବଳ ୭୮ ଜଣଙ୍କୁ ଧରି ଆମ ବିମାନ ଲେଗାସ୍‌ରୁ ଆକ୍ରା ଅଭିମୁଖରେ ଯାତ୍ରା କଲା ପ୍ରାୟ

ସମୁଦ୍ରକୂଳ ଉପର ଦେଇ। ଛୋଟ ଛୋଟ ସ୍ୱାଧୀନ ଦେଶ ଡାହେମି ଓ ଟୋଗୋ ଉପର ଦେଇ ଘାନାର ରାଜଧାନୀ ଆକ୍ରାରେ ପହଞ୍ଚିଲା ବେଳକୁ ଅନ୍ଧାର ହୋଇ ଆସୁଥାଏ - ସେମାନଙ୍କ ଲୋକାଲ୍ ଟାଇମ୍‌ରେ ସନ୍ଧ୍ୟା ୭ଟା।

ମୁଁ ଆକ୍ରାରେ ସେଦିନ ସେଇ ଉଡାଜାହାଜରେ ପହଞ୍ଚିବି ବୋଲି ଦିଲ୍ଲୀରୁ କେବ୍‌ଲ କରାହୋଇଥିଲା। ମୁଁ ତେଣୁ ଆଶା କରୁଥିଲି ଯେ ଆମ ଇଣ୍ଡିଏନ ହାଇକମିସନରୁ କେହି ମୋତେ ନେବା ପାଇଁ ବିମାନ ବନ୍ଦରକୁ ଆସିଥିବେ; କିନ୍ତୁ କୌଣସି ଭାରତୀୟଙ୍କୁ ଦେଖିଲିନି। ଭାଗ୍ୟକ୍ରମେ ଏଆର ଇଣ୍ଡିଆର ଜଣେ ଲୋକାଲ୍ ଏଜେଣ୍ଟ ଆଫ୍ରିକାନ୍ ଭଦ୍ର ମହିଳାଙ୍କ ଦେଖା ମିଳିଲା। ତାଙ୍କ ସଙ୍ଗରେ ଯାଇ ମୁଁ ଇମିଗ୍ରେସନରେ ଆକ୍ରାରେ ୩ ଦିନ ରହିବା ପାଇଁ ଅସ୍ଥାୟୀ ଭିସା କରାଇନେଲି। ସୁଟ୍‌କେଶ୍ ସଂଗ୍ରହ କରି କଷ୍ଟମସ୍ ଚେକ୍ ସାରି ମୁଁ ଯେତେବେଳେ ଇଣ୍ଡିଆନ ହାଇ କମିଶନଙ୍କୁ ଫୋନ କଲି, ଶୁଣିଲି ଆମ ହାଇକମିଶନର ମିସ୍ ମୁଥମ୍ମା ଦିନେ ଦି' ଦିନ ଆଗରୁ ତାଙ୍କ ମା'ଙ୍କ ମୃତ୍ୟୁ ଯୋଗୁଁ ଭାରତ ଯାଇଛନ୍ତି। ଫାଷ୍ଟ ସେକ୍ରେଟେରୀ ଶ୍ରୀ ଦୟାଲ ଏବେ ଚାର୍ଯ ଡି ଏଫାୟାର୍ସ ଭାବରେ ହାଇକମିଶନର ଦାୟିତ୍ୱ ତୁଲାଉଛନ୍ତି। ତାଙ୍କୁ ଫୋନ କଲି କିନ୍ତୁ ପାଇଲିନି। ଟେକ୍‌ସିଟିଏ ଭଡ଼ାକଲାରୁ ସେ ହାଇକମିଶନ ଅଫିସକୁ ୪ ସେଡ଼ି ବୋଲି କହିଲା। (୧:୧୫ ସେଡ଼ି=୧ ଆମେରିକାନ ଡଲାର)। ଟେକସିରେ ଯେତେବେଳେ ହାଇକମିଶନର ଗେଟରେ ପହଞ୍ଚିଲି, ମୋତେ ବିମାନ ବନ୍ଦରରୁ ଆଣିବା ପାଇଁ ହାଇକମିଶନର ଗାଡ଼ି ସେଠାରୁ ବାହାରୁଥାଏ। ମନେମନେ ଭାବିଲି ଆମ ଭାରତୀୟ ଦୂତାବାସଗୁଡ଼ିକ ବୋଧହୁଏ ସବୁଥିରେ ଲେଟ। ଟେକସିବାଲା ୪ ସେଡ଼ି ପାଇ ମଧ ସନ୍ତୁଷ୍ଟ ନୁହେଁ ଜାଣି ହାଇ କମିଶନଙ୍କ ପି.ଏ. ତାକୁ ୨ ସେଡ଼ି ଜାଗାରେ ୪ ସେଡ଼ି ଦେଲୁଣି ବୋଲି ଧମକାଉଥିଲା ବେଳେ ଶ୍ରୀ ଦୟାଲ ସେଠାରେ ପହଞ୍ଚିଗଲେ। ସେ ଦୁଃଖ କରି କହିଲେ ଯେ ପ୍ଲେନ ୮-୩୦ରେ ପହଞ୍ଚିବା କଥା ଜାଣି ତାଙ୍କ ଗାଡ଼ି ଯିବାରେ ଡେରି ହେଲା। ସେଇ ପରିବର୍ତ୍ତିତ ପ୍ଲେନ ଟାଇମର ପରିଣାମ। ଅନ୍ଧକାରାଚ୍ଛନ୍ନ ମହାଦେଶର ପଶ୍ଚିମ ଅଂଚଳରେ ମୋର ଏହି ପ୍ରଥମ ପଦାର୍ପଣ - ଭାରତୀୟଙ୍କ ଗହଣରେ ମୁଁ ବେଶ୍ ନିଶ୍ଚିନ୍ତ ହୋଇ ସାରିଥିଲି। ମିସ ମୁଥାମ୍ମା ମୋତେ ପରାମର୍ଶ ଦେବା ପାଇଁ ଗୋଟିଏ ନୋଟ ଛାଡ଼ି ଯାଇଛନ୍ତି ବୋଲି କହି ଶ୍ରୀ ଦୟାଲ ତାଙ୍କ ଘରେ ରାତ୍ରି ଭୋଜନ ପାଇଁ ମୋତେ ନିମନ୍ତ୍ରଣ କଲେ, ଆଉ କହିଲେ ଯେ ଆକ୍ରାରେ ମୋ ରହିବା ପାଇଁ ହୋଟେଲ ବନ୍ଦୋବସ୍ତ କରାହୋଇଛି। ମୁଁ ତାଙ୍କୁ ଅଶେଷ ଧନ୍ୟବାଦ ଦେଇ ତାଙ୍କ ସଂଗରେ ଘରକୁ ଚାଲିଲି।

# ଲାଇବେରିଆରେ ମୋର ପ୍ରଥମ ସନ୍ଧ୍ୟା

'ସେଦିନ ଆପଣ ଟିକିଏ ଢ଼ଳିବାକୁ ଆରମ୍ଭ କରିଥିଲେଣି ନା ? ୟୋ - ୟୋ - ୟୋ...'

'ସେ କଥା ଆଉ କହନ୍ତୁନି - ହିଃ - ହିଃ - ହିଃ - ହିଃ -'

'ସେଦିନ ପ୍ରେସିଡେଣ୍ଟଙ୍କ ପାର୍ଟି ବେଶ୍ ଜମିଥିଲା ନା ? ଘରକୁ ଫେରିଲା ପରେ ମୋ ରୁମମେଟ କହିଲା - ହନି - ସେ ଭଦ୍ରମହିଳାଙ୍କ ସଙ୍ଗରେ ଏତେ କଣ ଫୁସୁର - ଫାସର ହେଉଥିଲା ? ଫିଃ - ଇ - ଇ - ଇ -'

ରୋଜେଲିନ୍ ବାର ରୁମ ହସ କୌତୁକର କୋଳାହଳରେ ଉଠୁଥିଲା ପଡୁଥିଲା। କିଏ କେତେ ରଙ୍ଗରେ ଆଉ କିଏ କେତେ ଢଙ୍ଗରେ ଠିଆ ହୋଇଥିଲେ ଛୋଟ ଛୋଟ ଦଳ ହୋଇ। ସମସ୍ତଙ୍କ ହାତରେ ଗ୍ଲାସ। ଗ୍ଲାସମାନ ଅଧା ନ ହେଉଣୁ ବାର୍ ଏଟେଣ୍ଡର୍‌ମାନେ ସୁସଜ୍ଜିତ ଟ୍ରେମାନଙ୍କରେ ନାନା ରକମର ପାନୀୟ ନେଇ ଯିଏ ଯାହା ଚାହିଁଲା ଓ ଯେଉଁ ପରିମାଣରେ ଚାହିଁଲା ଢ଼ାଳି ଦେଉଥିଲେ - ହୁଇସ୍କି, ରମ, ଜିନ ଆଉ କେତେ କ'ଣ। ଜଣେ ଛୋଟ ଛୋଟ ବରଫ ଖଣ୍ଡମାନ ଚିମୁଟାରେ ଉଠାଇ ଗ୍ଲାସମାନଙ୍କରେ ଭରି ଦେଉଥାଏ ତ ଆଉ ଜଣେ ତହିଁରେ ଯୋଗ କରୁଥାଏ ବିଏର ସୋଡ଼ା। ଡେପୁଟି ଚିଫ ଅଫ୍ ପ୍ରୋଟୋକଲ ଏବଂ ନିଜେ ମାନ୍ୟବର ବୈଦେଶିକ ମନ୍ତ୍ରୀ ଆଗନ୍ତୁକ ଅତିଥିମାନଙ୍କୁ ପରସ୍ପର ମଧ୍ୟରେ ଚିହ୍ନା କରାଇ ଦେଉଥାଆନ୍ତି ଆଉ କାହାରି ଗ୍ଲାସ ଖାଲିହେଲା ସେ ଆଡିକି ମଧ୍ୟ ନଜର ଦେଉଥାଆନ୍ତି।

କଳା ଟ୍ରାଉଜର ଉପରେ ଗାଢ଼ରଙ୍ଗର ଚିତ୍ର ବିଚିତ୍ର ଆଲଖାଲା ଓ ଜରିର ଫେଜ ଟୋପି ପିନ୍ଧା ଜଣେ ସାଢ଼େ ଛ' ଫୁଟିଆ ନିଗ୍ରୋ ଭଦ୍ରଲୋକଙ୍କୁ ମୋତେ ଚିହ୍ନାଇ ଦେଇ ବୈଦେଶିକ ମନ୍ତ୍ରୀ କହିଲେ - "ପ୍ରଫେସର ବେହେରା ! ନାଇଜେରିଆର ରାଷ୍ଟ୍ରଦୂତଙ୍କୁ ଭେଟନ୍ତୁ।" ମୁଁ ପିନ୍ଧିଥାଏ ଈଷତ୍ କଳାରଙ୍ଗର ଟ୍ରାଉଜର ଏବଂ ତା ଉପରେ ସେଇ ରଙ୍ଗର ବନ୍ଦ କଲାର କୋଟ୍। ହାତ ମିଳାଇଲା ବେଳେ ନାଇଜେରିଆର ରାଷ୍ଟ୍ରଦୂତ ପଚାରିଲେ - 'ଭାରତର ରାଷ୍ଟ୍ରଦୂତ ?' ମୁଁ କିଛି କହିବା ପୂର୍ବରୁ ମନ୍ତ୍ରୀ ସେସିଲ ଡେନିସ୍ ଜୁନିୟର ଉତ୍ତର ଦେଲେ - 'ଆମ ପାଇଁ ସେ ଜଣେ ଭାରତର ସାଂସ୍କୃତିକ ରାଷ୍ଟ୍ରଦୂତ।'

ତା ପରେ ଯୋଗ କଲେ - "ଆପଣଙ୍କ ଯୋଡ଼ି ବି ଭଲ ଜୁଟିଲା। ଦିହେଁ ନରମବାଲା - ଆମ ପରି ଗରମ ନୁହନ୍ତି। ହୋଃ - ହୋଃ - ହୋଃ" ବଡ଼ ପାଟିରେ ପଚାରିଲେ - "ଡ୍ୟୁରିଙ୍ଗ୍! ପ୍ରଫେସର ବେହେରା ଆଉ ନାଇଜେରିଆନ୍ ଏମ୍ବାସେଡ଼ରଙ୍କ ପାଇଁ ଯଥେଷ୍ଟ କୋକାକୋଲା ଆଉ ଜିଞ୍ଜେରେଲ୍ ଆସିଛି ତ?"

ମନ୍ତ୍ରୀ ଡେନିସ୍‌ଙ୍କ ସିଧା ସଳଖ ଓ ମନଖୋଲା ଭାବ ମୋତେ ମୂଳରୁ ହିଁ ଆକର୍ଷଣ କରି ସାରିଥିଲା।

x x x

ଘାନା ଏଆର୍ ଲାଇନସ୍‌ର ଗୋଟିଏ ଜେଟ୍ ବିମାନରେ ଆକ୍ରାରୁ ଆସି ମୁଁ ଯେତେବେଳେ ୧୮ ତାରିଖ ଦିନ ୩ଟା ବେଳେ ଲାଇବେରିଆର ରବର୍ଟସ୍ ଆନ୍ତର୍ଜାତିକ ବିମାନ ବନ୍ଦରରେ ପହଞ୍ଚିଲି, ଡେପୁଟି ଚିଫ୍ ଅଫ୍ ପ୍ରୋଟୋକଲ, ମିଷ୍ଟର ଡ୍ୟୁରିଙ୍ଗ୍ ମୋତେ ପାଛୋଟି ନେବା ପାଇଁ ବିମାନ ବନ୍ଦରକୁ ଆସିଥାନ୍ତି। ତେଣୁ ନୂଆ ଦେଶରେ ପହଞ୍ଚିଲା ପରେ ବିଦେଶ ଯାତ୍ରୀଙ୍କ ସୁପରିଚିତ ଇମିଗ୍ରେସନ୍ କଷ୍ଟମସ୍ ପ୍ରଭୃତି ଚେକିଂର ବିଶେଷ କୌଣସି ଅସୁବିଧା ନଥିଲା। ମିଷ୍ଟର ଡ୍ୟୁରିଙ୍ଗ୍‌ଙ୍କ ସାଙ୍ଗରେ କଥାବାର୍ତ୍ତାରୁ ବୁଝିଲି, ମୁଁ ଭାରତରୁ ଆସୁଛି ବୋଲି ଜାଣିଥିଲେ ମଧ୍ୟ ଏତେ ଶୀଘ୍ର ଯେ ପହଞ୍ଚିଯିବି, ସେ କଥା ସେମାନେ ଭାବି ପାରିନଥିଲେ। ଆକ୍ରାସ୍ଥିତ ଲାଇବେରିଆର ରାଷ୍ଟ୍ରଦୂତଙ୍କ ଠାରୁ ମୁଁ ଏଇ ଉଡାଜାହାଜରେ ପହଞ୍ଚୁଥିବା ଖବର ପାଇ ନିଜେ ବୈଦେଶିକ ମନ୍ତ୍ରୀ ତାଙ୍କୁ ସାଙ୍ଗେ ସାଙ୍ଗେ ବିମାନ ବନ୍ଦରକୁ ଯିବାପାଇଁ ନିର୍ଦ୍ଦେଶ ଦେଇଥିଲେ। ମୁଁ ମନେ ମନେ ଶ୍ରୀମତୀ ଦୟାଲଙ୍କୁ ତାଙ୍କ ସୁପରାମର୍ଶ ପାଇଁ ଅଶେଷ ଧନ୍ୟବାଦ ଦେଲି। ପୂର୍ବ ନିର୍ଦ୍ଧାରିତ ପ୍ରୋଗ୍ରାମ ଅନୁଯାୟୀ ୧୭ ତାରିଖ ଦିନ ମୁଁ ଲାଇବେରିଆରେ ପହଞ୍ଚିବା କଥା। ଘାନାରେ ଥିବା ଆମ ଭାରତୀୟ ଦୂତାବାସ ମଧ୍ୟ ଚିଠିଯୋଗେ ସେ କଥା ଲାଇବେରିଆ ଗଣରାଜ୍ୟର ବୈଦେଶିକ ମନ୍ତ୍ରଣାଳୟକୁ ଜଣାଇ ଦେଇଥିଲେ; କିନ୍ତୁ ୧୫ ତାରିଖର ରାତ୍ରି ଭୋଜନବେଳେ ଶ୍ରୀମତୀ ଦୟାଲ ଯେତେବେଳେ ଜାଣିପାରିଲେ ଯେ ଦୂତାବାସର ସେ ଚିଠି ଲାଇବେରିଆ ସରକାର ପାଇଛନ୍ତି ନା ନାହିଁ, ତାର କୌଣସି ସୂଚନା ଏ ପର୍ଯ୍ୟନ୍ତ ଆମ ଦୂତାବାସରେ ପହଞ୍ଚିନାହିଁ, ସେ ମୋତେ ସତର୍କ କରାଇ ଦେଇ କହିଲେ ଯେ, ସେ ସମ୍ବନ୍ଧରେ ସେମାନଙ୍କ ଠାରୁ କୌଣସି ସ୍ପଷ୍ଟ ଇଙ୍ଗିତ ନ ମିଳିବା ଯାଏ ଅନିଶ୍ଚିତତା ଭିତରେ ସେ ଦେଶରେ ହଠାତ୍ ପହଞ୍ଚିବା ବୋକାମି ହେବ। ତାଙ୍କଠାରୁ ମୁଁ ସେତେବେଳେ ଜାଣିବାକୁ ପାଇଥିଲି ଯେ ଘାନାରୁ ଲାଇବେରିଆ ବେଶ୍ ପାଖ ହେଲେ ମଧ୍ୟ ଖଣ୍ଡିଏ ଚିଠି ଯିବାକୁ

ବେଳେବେଳେ ସାତ ଦିନରୁ ବେଶି ସମୟ ଲାଗିଯାଏ, ଆଉ ଯେହେତୁ ଏ ଅଞ୍ଚଳରେ ଜରୁରୀ ବୋଲି କିଛି ନାହିଁ, କୌଣସି ଉଚ୍ଚପଦସ୍ଥ ବ୍ୟକ୍ତି ନିଜ ବ୍ୟକ୍ତିଗତ ଦୃଷ୍ଟି ନ ଦେଲେ, ପ୍ରତ୍ୟେକ ବ୍ୟାପାର କଚ୍ଛପର ଗତିରେ ହିଁ ଚାଲେ। ଏ ଅଞ୍ଚଳରେ ସମୟ ଜ୍ଞାନ ସମ୍ବନ୍ଧରେ ସମସ୍ତେ ନିର୍ଲିପ୍ତ ଜଣାପଡୁଥିଲେ ସୁଦ୍ଧା ନିଜ ନିଜ ପାଉଣା ଆଦାୟ କରିବାର ବେଶ୍ ଧୁରନ୍ଧର। ପୁଣି ଶୁଣିଲି ଯେ ଲାଇବେରିଆର ରାଜଧାନୀ ମନରୋଭିଆରେ ଥିବା ବିମାନ ବନ୍ଦରଟି ଏତେ ଛୋଟ ଯେ ବଡ଼ ବଡ଼ ଉଡାଜାହାଜ ସେଠାରେ ଓହ୍ଲାଇ ପାରେନି। ବଡ଼ ଉଡାଜାହାଜ ସବୁ କେବଳ ରବର୍ଟସ୍ ଇଣ୍ଟରନେସ୍‌ନାଲ ବିମାନ ବନ୍ଦରରେ ଓହ୍ଲାଏ ଏବଂ ସେ ବନ୍ଦରଟି ମନରୋଭିଆରୁ ପ୍ରାୟ ୪୫ ମାଇଲ ଦୂରରେ। ମୋତେ ନେବା ପାଇଁ ସରକାରୀ ଗାଡ଼ି ଆସି ନ ଥିଲେ ଟେକ୍‌ସି ଭଡ଼ା ଯେ କେବଳ ୫୦/୬୦ ଡଲାରରୁ ବେଶି ପଡ଼ିଯିବ, ସେତିକି ନୁହେଁ - ପ୍ରଧାନ କଥା ହେଲା ଯେ ଭାରତୀୟ ଦୂତାବାସର କୌଣସି ଶାଖା ଯେତେବେଳେ ସେଠାରେ ନାହିଁ, ମୁଁ ମନରୋଭିଆରେ ପହଞ୍ଚି କେଉଁଠି ଓହ୍ଲାଇବି? ମୁଁ ପହଞ୍ଚିଲାବେଳକୁ ବୈଦେଶିକ ମନ୍ତ୍ରଣାଳୟ ଯଦି ବନ୍ଦ ହୋଇଯାଇଥାଏ! ଅଥବା ସେ ଦନଟି ଛୁଟି ଦିନ ହୋଇଥାଏ! ଯାଙ୍କର ଛୁଟି ଦିନ ସବୁ ତ ଆମ ଭାରତର ଛୁଟି ଦିନ ଠାରୁ ଆହୁରି ବେଶି। କୌଣସି ଗୋଟାଏ ଖେଳ ଦେଖିବାକୁ ମଧ୍ୟ ନେସ୍‌ନାଲ ହଲି ଡେ ହୋଇଯାଏ, ଆଉ ପ୍ରତ୍ୟେକ ହପ୍ତାରେ ଶନିବାର ରବିବାର ଦି' ଦିନ ଛୁଟି। ଅବଶ୍ୟ ମନରୋଭିଆରେ ସାଧାରଣ ମାନର ହୋଟେଲଗୁଡ଼ିଏ ଅଛି - କିନ୍ତୁ ସେଗୁଡ଼ିକ କେବଳ ଯେ ବେଶ୍ ଦାମିକା ତା' ନୁହେଁ, ଖାଇବା ପିଇବା ପାଇଁ କଣ ଯେ ଦେବେ ତାର ବା କଣ ଠିକଣା ଅଛି? ଭାରତୀୟ ଖାଦ୍ୟ ତ ମିଳିବ ନି - ଇଉରୋପୀଏନ୍ ଖାଦ୍ୟ ଯଦି ନ ମିଳୁଥାଏ! ଆମ ଭାରତରେ ପାଣି ପବନ ବୋଲି ଭାବି ବେଖାତିର ହୋଇ ଏଆଡୁ ସେଆଡୁ ଖାଇଦେଲେ - ଏଇଠି ସେଇଠି ପାଣି ପିଇ ଦେଲେ କି ରୋଗ ଯେ ନ ହେବ ସେ କଥା ଅବା କିଏ କହିବ? ଏ କଥା କହୁଁ କହୁଁ ସେ ହଠାତ୍ ପଚାରି ଦେଇଥିଲେ ଯେ ମୁଁ ମୋ ସାଙ୍ଗରେ ଯଥେଷ୍ଟ କ୍ଲୋରୋକ୍ୱିନ୍ ଆଣିଛି ନା ନାହିଁ। ପ୍ରଶ୍ନଟି ଏତେ ଅପ୍ରତ୍ୟାଶିତ ଏବଂ ଅଚାନକ ଥିଲା ଯେ ମୁଁ ପ୍ରଥମେ ପ୍ରଶ୍ନ କଣ ବୁଝି ହିଁ ପାରି ନଥିଲି। ପରେ ଯେତେବେଳେ କହିଲି ଯେ ମୋର ମେଲେରିଆ ଜ୍ୱର ନାହିଁ, ତେଣୁ କ୍ଲୋରୋକ୍ୱିନ୍ ଆଣିବା ପ୍ରଶ୍ନ ଆସିଲା କେଉଁଠୁ! ସେ ହସି ହସି ଟିପ୍‌ପଣୀ ଦେଲେ ଯେ ଏ ଅଂଚଳର ପାଣି ପବନ ସମ୍ବନ୍ଧରେ ମୁଁ ତେବେ ସମ୍ପୂର୍ଣ୍ଣ ଅଜ୍ଞ। ଖାଇବା ଟେବୁଲ ପାଖରେ ଥିବା ଗୋଟିଏ ସୁନ୍ଦର ମେହୋଗାନୀ ଆଲମିରା ଥାକରୁ କେତେଗୁଡ଼ିଏ କ୍ଲୋରୋକ୍ୱିନ୍ ବଟିକା ଆଣି ସେ ମୋତେ ତାହା ବଢ଼ାଇଦେଲେ, ଆଉ ପରାମର୍ଶ

ଦେଲେ ଯେ ମୁଁ ଯଦି ସୁସ୍ଥ ଶରୀର ଓ ସୁସ୍ଥ ମନ ନେଇ ଏ ଦେଶରୁ ଭାରତକୁ ଫେରିବାକୁ ଚାହୁଁଥାଏ, ତେବେ ମୋତେ ସେ ଭିତରୁ ଗୋଟିଏ ସାଙ୍ଗେ ସାଙ୍ଗେ ଗିଳି ଦେଇ ପରେ ପ୍ରତ୍ୟେକ ସପ୍ତାହରେ ନିୟମିତ ଭାବରେ ଗୋଟିଏ ଦି'ଟା ଗିଳିବାକୁ ହେବ। ତା ପରେ ସେ ବର୍ଣ୍ଣନା କରିଥିଲେ, ଆଫ୍ରିକାର ଏ ଅଂଚଳରେ ଭାରତୀୟ ପରିବାରର ଅଭିଶପ୍ତ ଜୀବନ। ବେଳେବେଳେ ଦିନ ଦିନ ଧରି ଚାଉଳ କିମ୍ବା ଗହମ ମିଳେନି - ଡାଲି ନାହିଁ; ଚିନି, ଆଳୁ, ପିଆଜ, ପନିପରିବା କିଛି ନାହିଁ। ନୈତିକତା କିମ୍ବା ଆଧାତ୍ମିକ ଚିନ୍ତାର କୌଣସି ସ୍ଥାନ ନ ଥିବା ସମାଜ ଭିତରେ ପୁଅ ଝିଅଙ୍କୁ ମଣିଷ କରିବା କେତେ ଯେ କଠିନ। ଠିକ୍ ପଶୁଙ୍କ ପରି ଜୀବନ। ସତେ ଯେମିତି ଖାଦ୍ୟ ସଂଗ୍ରହ କରିବା ହିଁ ଜୀବନର ଏକମାତ୍ର ଲକ୍ଷ୍ୟ। ସେ କହୁଥିଲେ, ଏ ସବୁ ଅଙ୍ଗେ ନିଭାଇଲା ପରେ ଏଇ ଚାକିରୀ ଜୀବନ ବିରୁଦ୍ଧରେ ତାଙ୍କ ମନ ବିଦ୍ରୋହ କରିଉଠେ। ତଥାପି ଭାରତରେ କେହି ସେମାନଙ୍କ ଦୁଃଖ ବୁଝନ୍ତିନି କି ତାଙ୍କ ପାଇଁ କେହି ସାମାନ୍ୟ ସହୃଦୟତା ପ୍ରକାଶ କରନ୍ତିନି। ଆଉ ସେ କହୁଥିଲେ, କେମିତି ଭଲ ଛାତ୍ର ହେଲେ ମଧ ତାଙ୍କ ପୁଅକୁ ଭାରତରେ ମେଡ଼ିକାଲ ସିଟ୍‌ଟିଏ ମିଳିଲାନି ଯେ ତାକୁ ବାଧ ହୋଇ ଇଂଲଣ୍ଡରେ ତା' ଇଛା ବିରୁଦ୍ଧରେ ଇଞ୍ଜିନିୟରିଂ ପଢ଼ିବାକୁ ପଡ଼ିଲା।

ବିଦେଶରେ ରହୁଥିବା ଭାରତୀୟମାନେ କେତେ ସୁଖୀ ବୋଲି ଆମେସବୁ କଳ୍ପନା କରୁଥିଲାବେଳେ ବିଦେଶରେ ରହୁଥିବା ଜଣେ ଭାରତୀୟ ମହିଳାଙ୍କଠାରୁ ତାଙ୍କ ଅନ୍ତରର ଏପରି ଏକ ପ୍ରତିଧ୍ୱନି ଶୁଣି ମୁଁ ଚକିତ ହୋଇଯାଇଥିଲି । ମଣିଷର ମାନସିକ ଅଶାନ୍ତିର ବୋଧେ ଅନ୍ତନାହିଁ । ବିଦେଶରେ କାମ କରୁଥିବା ଭାରତୀୟମାନେ ଭାରତରେ କାମ କରୁଥିବା ତାଙ୍କ ସହକର୍ମୀ ମାନଙ୍କ ତୁଳନାରେ କେତେ ଯେ ବେଶୀ ଦରମା ଓ ସୁଖ ସୁବିଧା ପାଆନ୍ତି । ନାନା ରକମର ଯନ୍ତ୍ରପାତିମାନଙ୍କରେ ଖୁନ୍ଦି ହୋଇଥିବା ଆଡ଼ମ୍ବରପୂର୍ଣ୍ଣ ଘର, ବିରାଟ ବିରାଟ ମୋଟରଗାଡ଼ି, ଭୋଗ ବିଳାସମୟ ଜୀବନ, ତଥାପି ଶାନ୍ତି କାହିଁ ? ସେଇ ଯେଉଁ କଥା - ଯାହାର ଦାନ୍ତ ଅଛି ତା' ପାଖରେ ଚୋବାଇବା ପାଇଁ ଚଣା ନାହିଁ, ଆଉ ଯା' ପାଖରେ ଚଣା ଅଛି ତାର ଦାନ୍ତ ହିଁ ନାହିଁ ।

ଶ୍ରୀମତୀ ଦୟାଲ ଶେଷରେ ପରାମର୍ଶ ଦେଇଥିଲେ ଯେ, ତା' ଆରଦିନ ସକାଳେ ଆକ୍ରାରେ ଥିବା ଲାଇବେରିଆ ଦୂତାବାସରୁ ମନରୋଭିଆକୁ ଟେଲେକସ୍ ମେସେଜ୍ ପଠାଇ ଉତ୍ତର ପାଇଲାପରେ ହିଁ ମୋ ପକ୍ଷରେ ମନରୋଭିଆ ଯିବା ଉଚିତ୍ ହେବ । ମୁଁ କିନ୍ତୁ ପରେ ଶ୍ରୀ ଦୟାଲଙ୍କ ସଙ୍ଗରେ କଥାବାର୍ତ୍ତା କରି ଠିକ୍ କରିନେଇଥିଲି ଯେ, ଲାଇବେରିଆର ଦୂତାବାସରୁ ଟେଲେକସ୍ ମେସେଜ୍ ପଠାଇ ସାରିଲା ପରେ ଆଉ ଗୋଟିଏ ଦିନ ବେଶୀ ରହି ଉତ୍ତର ନଆସିଲେ ମଧ ମୁଁ ମନରୋଭିଆ ଚାଲିଯିବି ଏବଂ

ଭଲ ମନ୍ଦ ପାଇଁ ସେଠାରେ ଥିବା ଜଣେ ସିନ୍ଧୀ ବ୍ୟବସାୟୀଙ୍କ ପାଖକୁ ଶ୍ରୀ ଦୟାଲଙ୍କ ଖଣ୍ଡିଏ ଚିଠି ସଙ୍ଗରେ ନେଇ ଯିବି । ତାହା ହିଁ କରିଥିଲି । ଭାଗ୍ୟକ୍ରମେ ସେହି ଟେଲେକସ୍ ମେସେଜ୍ ଯଥା ସମୟରେ ପହଞ୍ଚି ଯାଇଥିଲା ।

ରବର୍ଟସ୍ ଆନ୍ତର୍ଜାତିକ ବିମାନ ବନ୍ଦରରୁ ମନରୋଭିଆ ସହର ପ୍ରାୟ ୪୫ ମାଇଲ ବାଟ । ସୁନ୍ଦର ଚିକ୍କଣ ଏବଂ ଚଉଡ଼ା ରାସ୍ତା । ରାସ୍ତାର ଦୁଇ ପାଖରେ ଝିଲ ଏବଂ ପାଟ-ଜଙ୍ଗଲୀ ପାମ୍, ସନ୍ତସନ୍ତିଆ ଭୂଇଁରେ ବୁଦୁବୁଦୁକିଆ ଅନାବନା ଗଛ । ରାସ୍ତାକଡ଼ରେ ମଝି ମଝିରେ ସାମାନ୍ୟ କେତୋଟି ଘର ବିଶିଷ୍ଟ ଗୋଟିଏ ଗୋଟିଏ ଗାଁ, କିନ୍ତୁ ଚାଷବାସର କୌଣସି ଚିହ୍ନବର୍ଣ୍ଣ ନାହିଁ । ଘରଗୁଡ଼ିକର ଛାତ ସାଧାରଣତଃ ଜିଙ୍କ୍‌ସିଟ୍ ଦିଆ - କାଁ ଭାଁ ଗୋଟିଏ ଦିଓଟି ତାଳପତ୍ର ପରି ପତ୍ରରେ ଆଚ୍ଛାଦିତ - କାନ୍ଥ ସବୁ ସରୁ ସରୁ ଗଛରେ ମାଟି ଲେସା ଅଥବା ସିମେଣ୍ଟ ଓ ବାଲିର ଇଟାରେ ତିଆରି । ଇଉରୋପୀୟ କଲୋନିଏଲ ଷ୍ଟାଇଲ୍ । ଗାଈ, ମଇଁଷି, ଛେଳି, ମେଣ୍ଢା, ଘୋଡ଼ା କିମ୍ବା ବଳଦ ଗାଡ଼ି, ସାଇକେଲ୍, ମୋଟର ସାଇକେଲ କିମ୍ବା ସ୍କୁଟରର ଦେଖା ଦର୍ଶନ ନାହିଁ । କେବଳ ନାନା କିସମର ମୋଟର କାର୍ । ଏଇଠି ସେଇଠି ଭଙ୍ଗାରୁଜା ମୋଟର ଗାଡ଼ିର ଜଙ୍କୟାର୍ଡ଼ - ମୋର କଳ୍ପନାର ଆଫ୍ରିକା ସଙ୍ଗରେ ଏ ଦୃଶ୍ୟର କୌଣସି ସାମଞ୍ଜସ୍ୟ ହିଁ ନ ଥିଲା ।

ମିଷ୍ଟର ଡ୍ୟୁରିଙ୍ଗ ମୋ ପ୍ରଶ୍ନ ସବୁର ଯଥାଯଥ ଉତ୍ତର ଦେଇଥିଲେ ବେଶ୍ ସରଳ ଓ ଶୁଦ୍ଧ ଇଂରାଜୀରେ । କହିବା ଢ଼ଙ୍ଗ କିନ୍ତୁ ପୂରାପୁରି ଆମେରିକାନ । ତାଙ୍କଠାରୁ ଜାଣିଲି ଯେ, ଏ ଦେଶର ଭାଷା ହିଁ ଇଂରାଜୀ । ଇଂରାଜୀ ଛଡ଼ା ସେମାନେ ଅନ୍ୟ କୌଣସି ଭାଷା ଲେଖିପଢ଼ି ଜାଣନ୍ତିନି - ଯଦିଓ ସେମାନେ ନିଜ ଘରେ ନିଜ ଉପଜାତିର କଥିତ ଭାଷା କହନ୍ତି, ସେ କଥିତ ଭାଷାର କୌଣସି ଲିଖିତ ଭାଷା ନାହିଁ କିମ୍ବା ସେ ଭାଷାର କୌଣସି ନିଜ ଲିପି ନାହିଁ। ସେମାନଙ୍କ ଭିତରେ ଉପଜାତି ଏତେ ବେଶୀ ଏବଂ ପ୍ରତ୍ୟେକ ଉପଜାତିର ଭାଷା ଏତେ ଭିନ୍ନ ଯେ, ଘର ବାହାରେ ସମସ୍ତେ ପ୍ରାୟ ଇଂରାଜୀରେ ହିଁ କଥାବାର୍ତ୍ତା କରନ୍ତି । ତାଙ୍କଠାରୁ ବୁଝିଲି ଯେ, ସମୁଦ୍ର କୂଳରୁ ପ୍ରାୟ ୫୦ ମାଇଲ ଯାଏ ଏମିତି ପାଟ, ଝିଲ ଆଉ ସନ୍ତସନ୍ତିଆ ଅଞ୍ଚଳ । ତା'ପରେ ଯାଇ ଆଫ୍ରିକୀୟ ଘୋର ଅରଣ୍ୟ । ଏ ଅଞ୍ଚଳରେ ସାପ କିମ୍ବା ବିଛା ନାହାନ୍ତି । ସିଟିସି ମାଛିଙ୍କ ଦୌରାତ୍ମ୍ୟରୁ ହେଉ ଅଥବା ଅନ୍ୟ ଯେ କୌଣସି କାରଣରୁ ବଣ୍ୟଜନ୍ତୁ ଅଥବା ଗୃହପାଳିତ ପଶୁ ଏ ଅଞ୍ଚଳରେ ଆଦୌ ନାହାନ୍ତି । ତେଣୁ ଘର ଚାରିଆଡ଼େ ଜଙ୍ଗଲ ଥିଲେ ମଧ୍ୟ ଭୟର କୌଣସି କାରଣ ନାହିଁ । କେବଳ ସାମାନ୍ୟ କେତେକ ଜଳହସ୍ତୀ ଛୋଟ ଧରଣର ଆଉ ଧଳା ଲାଙ୍ଗୁଡ଼ବାଲା ଲୋମଶ କେତେକ କଳା ମାଙ୍କଡ଼ । ଘୋର

ଅରଣ୍ୟ ଥିଲେ ମଧ୍ୟ ଏ ପଶ୍ଚିମ ଅଞ୍ଚଳ ଆଫ୍ରିକାର ପୂର୍ବ, ଦକ୍ଷିଣ କିମ୍ବା କେନ୍ଦ୍ରଠାରୁ ସଂପୂର୍ଣ୍ଣ ଭିନ୍ନ ।

ମିଷ୍ଟର ଡ୍ୟୁରିଷ୍ଟ ଏବଂ ମୋ କଥାବାର୍ତ୍ତାରେ ଡ୍ରାଇଭର ମଧ୍ୟ ମଝି ମଝିରେ ଯୋଗ ଦେଉଥିଲା । ଶୌଫାର ଟୋପିପିନ୍ଧା ମୁଣ୍ଡ ବଙ୍କେଇ ଯୋଡ଼ିଦେଲା 'ଆଓଆ କଣ୍ଟ୍ରି ସିଓ ଇଙ୍ଗ୍ ଡ଼ିଫେରେଣ୍ଟ୍ ।' ତା' କହିବା ଢ଼ଙ୍ଗ ଶୁଣି କାହିଁ ୩୦ ବର୍ଷ ତଳେ ମୁଁ ଯୁକ୍ତରାଷ୍ଟ୍ର ଆମେରିକାରେ ପଢୁଥିବାବେଳେ ସେଠାକାର ଲୋକମାନଙ୍କର କହିବା ଢ଼ଙ୍ଗ ମନେପକାଉଥିଲି ।

ଆମେରିକା ପରି ଲାଇବେରିଆରେ ମଧ୍ୟ ଗାଡ଼ି ସବୁ ରାସ୍ତାର ଡ଼ାହାଣ ପଟେ ଚାଲେ । 'ଜି' ଅକ୍ଷର ବିଶିଷ୍ଟ ରେଜିଷ୍ଟ୍ରେସନ୍ ନମ୍ବର ସରକାରୀ ଗାଡ଼ି ବୋଲି ସୂଚନା ଦିଏ । ଆମ ଭାରତରେ ଗାଡ଼ିର ରେଜିଷ୍ଟ୍ରେସନ ନମ୍ବର ସାଧାରଣତଃ ପ୍ରଥମେ ଷ୍ଟେଟ୍‌କୁ ଚିହ୍ନାଇ ପରେ ଜିଲ୍ଲାକୁ ଚିହ୍ନାଉଥିଲା ବେଳେ ସେଇଠି ରେଜିଷ୍ଟ୍ରେସନ୍ ନମ୍ବର ଦିଆହୁଏ ଗାଡ଼ି ମାଲିକଙ୍କ ପଦବୀର ପ୍ରଥମ ଅକ୍ଷର ଅନୁସାରେ, ଆମ ଟେଲିଫୋନ୍ ନମ୍ବର ପରି । ଆମେ ଚାରିଟାବେଳକୁ ମନରୋଭିଆରେ ଇଣ୍ଟର କଣ୍ଟିନେଣ୍ଟାଲ୍ ହୋଟେଲ୍-ଡ୍ୟୁକ୍‌ରରେ ପହଞ୍ଚି ଯାଇଥିଲୁ ।

ହୋଟେଲ୍‌ରେ ମୋ ପାଇଁ ରହିବାର ସମସ୍ତ ବନ୍ଦୋବସ୍ତ କରିଦେଇ ମିଷ୍ଟର ଡ୍ୟୁରିଙ୍ଗ ଫେରିଗଲା ବେଳେ କହିଗଲେ ଯେ, ମୁଁ ପହଞ୍ଚିବା ସମ୍ବନ୍ଧରେ ସେ ବୈଦେଶିକ ମନ୍ତ୍ରଣାଳୟରେ ସାଙ୍ଗେ ସାଙ୍ଗେ ଖବର ଦେଇଦେବେ । ଘଣ୍ଟାକ ପରେ ହିଁ ମୋ ରୁମ୍‌କୁ ଫୋନ୍ ଆସିଲା ଯେ, ବୈଦେଶିକ ମନ୍ତ୍ରୀ ମାନ୍ୟବର ସେସିଲ୍ ଡ଼େନିସ୍ ଜୁନିୟର ମୋତେ ଭେଟିଲେ ଖୁସୀ ହେବେ ।

ମୋତେ ନେବାପାଇଁ ସରକାରୀ ଗାଡ଼ି ମଧ୍ୟ ଆସିଯାଇଥିଲା । ମୁଁ କାଳ ବିଳମ୍ବ ନକରି ବୈଦେଶିକ ମନ୍ତ୍ରଣାଳୟରେ ମାନ୍ୟବର ମନ୍ତ୍ରୀଙ୍କୁ ଦେଖାକଲି । ଲାଇବେରିଆକୁ ସୁସ୍ୱାଗତଂ ବୋଲି ଜଣାଇ ଭାରତ ସରକାର ଏତେଶୀଘ୍ର ଜଣେ ବିଶେଷଜ୍ଞଙ୍କୁ ପଠାଇ ପାରିଥିବାରୁ ମନ୍ତ୍ରୀ ମହୋଦୟ ଭାରତୀୟ ସରକାରୀ କଳର କାର୍ଯ୍ୟଦକ୍ଷତା ସମ୍ବନ୍ଧରେ ଭୂୟସୀ ପ୍ରଶଂସା କଲେ । ସୁସ୍ଥ ସବଳ ୬ ଫୁଟରୁ ବେଶୀ ଉଚ୍ଚ ଯୁବକ ଆଇନଜ୍ଞ ମିଷ୍ଟର ଡ଼େନିସ୍‌ଙ୍କ କହିବା ଢ଼ଙ୍ଗରଙ୍ଗ ଓ ଆଚରଣ ବିଧି ଆଗନ୍ତୁକର ମନକୁ ସହଜରେ କିଣିନିଏ ।

ଭାରତ, ଲାଇବେରିଆ ତଥା ମୋ ଆଗମନ ସମ୍ବନ୍ଧରେ ନାନା କଥାବାର୍ତ୍ତା ହେଲାପରେ ସେ କହିଲେ ଯେ, ତା' ପରଦିନ ସକାଳେ ଶିଳ୍ପ, ପୂର୍ତ୍ତ ତଥା ଯୋଜନା

ମନ୍ତ୍ରଣାଳୟ ସହିତ ପରାମର୍ଶ କରି ଶିକ୍ଷା ମନ୍ତ୍ରଣାଳୟ ଲାଇବେରିଆରେ ମୋର କାର୍ଯ୍ୟକ୍ରମ ସ୍ଥିର କରିବ । ତାଙ୍କ ନିମନ୍ତ୍ରଣକ୍ରମେ ସେଠାରେ ଉପସ୍ଥିତ ଥିବା ସହକାରୀ ଶିକ୍ଷାମନ୍ତ୍ରୀ ଡ଼କ୍ଟର ଟେଲର୍ ଡ଼େଣନଙ୍କୁ ସେପରି ନିର୍ଦ୍ଦେଶ ଦେଲାପରେ ମନ୍ତ୍ରୀ ମହୋଦୟ ହଠାତ୍ କହିଲେ ଏକୋଓ୍ୱା (ଇକୋନୋମିକ୍ ଆଣ୍ଡ କଲଚରାଲ୍ ଅର୍ଗାନାଇଜେସନ୍ ଅଫ୍ ଓ୍ୱେଷ୍ଟ ଆଫ୍ରିକା)ର ଜେନେରାଲ ସେକ୍ରେଟାରୀଙ୍କୁ ସେ ରାତ୍ର ଭୋଜନ ପାଇଁ ଡ଼ାକିଛନ୍ତି । ସଂପୂର୍ଣ୍ଣ ଘରୋଇ ଢ଼ଙ୍ଗର ଭୋଜନ । ପଶ୍ଚିମ ଆଫ୍ରିକୀୟ ତାଙ୍କର କେତେଜଣ ରାଷ୍ଟ୍ରଦୂତ ବନ୍ଧୁ ସେଥିରେ ଯୋଗଦେବେ । ମୁଁ ସେ ରାତ୍ରି ଭୋଜନରେ ଯୋଗଦେଇ ପାରିଲେ ସେ ଅତ୍ୟନ୍ତ ଖୁସୀ ହେବେ । ମୁଁ ଧନ୍ୟବାଦ ଦେଇ ମୋର ସମ୍ମତି ଜଣାଇ ଦେଲାକ୍ଷଣି ହିଁ ସେ ଅଚାନକ ଭାବେ ମୁଁ ଆମିଷ ଖାଏ ନା ନିରାମିଷାଶୀ ବୋଲି ପଚାରିଦେଲେ । ଆଉ କଥା ଛଳରେ ଆମ ପ୍ରଧାନମନ୍ତ୍ରୀ ଶ୍ରୀଯୁକ୍ତ ଦେଶାଇ ଏବଂ ନିଶାନିବାରଣ କଥା ପକାଇ ଦେଇ ବୁଝିନେଲେ ଯେ, ମୁଁ ଆଲ୍‌କୋହଲିକ୍ ଡ୍ରିଙ୍କ୍‌ସ ପିଏନାହିଁ । ତା'ପରେ ଯେ ସେ ମୋ ପାଇଁ ସ୍ୱତନ୍ତ୍ର ଖାଦ୍ୟ ଓ ପାନୀୟର ବନ୍ଦୋବସ୍ତ କରିବା ପାଇଁ ଆଦେଶ ଦେଇଥିଲେ, ତାହାରି ସୂଚନା ଏଇ ରୋଜେଲିନ୍ ରେସ୍ତୁରାଁରେ ମିଳିଲା । ପ୍ରେସିଡ଼େଣ୍ଟ ଟଲବଟଙ୍କ ପଛକୁ ଲାଇବେରିଆ ଗଣରାଜ୍ୟର ସର୍ବଶ୍ରେଷ୍ଠ କ୍ଷମତାଶାଳୀ ବ୍ୟକ୍ତି ଏହି ମିଷ୍ଟର ଡ଼େନିସ୍ । ଭାରତରେ ଆମେ ଶିକ୍ଷାବିତ୍‌ମାନେ ଯେଉଁ ସମ୍ମାନ ପାଉ, ସେ କଥା ଜଣାଶୁଣା । ମାନ୍ୟବର ମନ୍ତ୍ରୀଙ୍କ ସହୃଦୟତା ତଥା ମହନୀୟ ଭଦ୍ରତା ତେଣୁ ମୋ ମନକୁ ବିଶେଷ ଭାବରେ ସ୍ପର୍ଶ କରିଥିଲା ।

ବାର୍ ରୁମ୍‌ରୁ ଯଥା ସମୟରେ ଆମେ ସମସ୍ତେ ଡ଼ାଇନିଂ ହଲ୍‌କୁ ଯାଇ ନିଜ ନିଜ ପାଇଁ ନିର୍ଦ୍ଦିଷ୍ଟ ସ୍ଥାନମାନଙ୍କରେ ବସିଗଲୁ । ନିରାଡ଼ମ୍ବର ସାଜସଜ୍ଜା । ଇଂରାଜୀରେ 'ୟୁ' ଅକ୍ଷର ପରି ସାନ ସାନ ଟେବୁଲମାନ ସଜା ହୋଇଥାଏ । ଆମ ଟେବୁଲରେ ଦୁଇଧାଡ଼ି, ସାମ୍‌ନା ଟେବୁଲରେ ମଧ ସେପରି ଦୁଇଧାଡ଼ି । ଅତିଥି ସଂଖ୍ୟା ପ୍ରାୟ ୩୦-୪୦ ଭିତରେ । ମୋର ଡ଼ାହାଣକୁ ବସିଥିଲେ ଘାନାର ରାଷ୍ଟ୍ରଦୂତ, ବାଁ ପାଖରେ ସିରାଲିଓଁ ଓ ସମ୍ମୁଖରେ ଗିନିର ରାଷ୍ଟ୍ରଦୂତ, ସେଣ୍ଟ୍ରାଲ ଟେବୁଲରେ ମନ୍ତ୍ରୀ ଡ଼େନିସ୍ ଓ ତାଙ୍କ ଡ଼ାହାଣକୁ ଏକୋଓ୍ୱାର ଜେନେରାଲ ସେକ୍ରେଟାରୀ ।

ମଶ୍‌ରୁମ୍ ସୁପ୍‌ରେ ଦିଆହେଲା ଇଡ଼୍‌ଲି ପରି ଗୋଲ ଗୋଲ ଗୋଟିଏ ଖାଦ୍ୟ । ରନ୍ଧା ପାଳୁଅ ପରି ମନେ ହେଉଥିଲେ ମଧ ଦେଖିବାକୁ ଜେଲିଫିସ୍ ପରି ସ୍ୱଚ୍ଛ, ନରମ ଓ ଚିକ୍କଣ ଏବଂ ସାମାନ୍ୟ ଅଠାଳିଆ । ସେ ସଙ୍ଗରେ ଟେବୁଲମାନଙ୍କରେ ଥୁଆହେଲା ମାଂସ ଏବଂ ମାଂସଝୋଳ । ରୋଜେଲିନ୍‌ର କର୍ତ୍ତ୍ରୀ ନିଜେ ସବୁ ଦେଖରେଖ

କରୁଥାଆନ୍ତି । ସେ ଗୋଟିଏ ମାଂସଝୋଳର ବାଉଲ ମୋ ପାଖକୁ ବଢ଼ାଇଦେଇ ସୂଚାଇଦେଲେ ଯେ, ତାହା ଚିକେନ୍ କରି, ଏବଂ କେବଳ ମୋରି ପାଇଁ । ବିଲାତୀ କାଇଦାରେ ଖାଇଲା ବେଳେ ଯେମିତି ଜଗିରଖି ପାଟିତୁଣ୍ଡ ନକରି, କଣ୍ଟାଚାମଚ ଗୁଣୁଗୁଣ ନକରି, ଓଠ ଚିପି ଚିପି ଖିଆଯାଏ - ଏଇଠି ଦେଖିଲି ସେମାନେ ଠିକ୍ ଆମପରି । ହୋ ହାଲ୍ଲା କରି ଖାଆନ୍ତି । ଦୂରରୁ ମନ୍ତ୍ରୀ ମହୋଦୟ ଡ଼ାକିଲେ - "ପ୍ରଫେସର ବେହେରା, ସେ ଧଳା ନରମା ଗୋଲ ଜିନିଷଟି 'ଫୁ ଫୁ' - କାସାଭାରେ ତିଆରି ଲାଇବେରିଆର ସ୍ପେସିଆଲ୍ । ମାଂସ ଝୋଳ ସାଙ୍ଗରେ ଖାଆନ୍ତୁ ଭଲ ଲାଗିବ । ଝୋଳ ସଙ୍ଗରେ ମିଳାଇ ଗିଳିଦେବେ, ଆଉ ପାଖରେ କଳାଭଳା ଗୁଣ୍ଡ ପରି ଗୋଟାଏ ଗୁଣ୍ଡ ଅଛି.. ଆମ କଦଳୀରୁ ତିଆରି - ଟିକିଏ ଗୁଣ୍ଡ ମିଶାଇ ଦିଅନ୍ତୁ - ବଢ଼ିଆ ଲାଗିବ ।" କର୍ତ୍ତ୍ରୀଙ୍କୁ ପୁଣି ପଚାରିଲେ - "ମେରୀ, ପ୍ରଫେସର ବେହେରାଙ୍କୁ ଚିକେନ୍ କରି ଦେଲ ନା ?" ଅନ୍ୟମାନଙ୍କୁ ବିଫ୍ ଦିଆହୋଇଥାଏ । ମନ୍ତ୍ରୀଙ୍କ ଟିପ୍ପଣୀରେ ଆମ ଟେବୁଲ ପାଖରେ କୋଳାହଳ ଆରମ୍ଭ ହୋଇଗଲା । ଟିକିଏ ଦୂରରୁ ଜଣେ ଭଦ୍ରଲୋକ ମୋର ଦୃଷ୍ଟି ଆକର୍ଷଣ କରି କହିଲେ - "ଆପଣ ଯେତେ ନେବେ ନିଅନ୍ତୁ, ତା'ପରେ ବାଉଲଟି ଏଆଡ଼େ ଢ଼ିଆଁଇ ଦିଅନ୍ତୁ ।" ଘାନା ପ୍ରତିବାଦ କଲେ । କହିଲେ, "ନିଜ ପାଖରେ ଥିବା ବାଉଲ ପ୍ରତି ଦୃଷ୍ଟି ଦିଅନ୍ତୁ । ଏଆଡ଼ିକି ଏମିତି ସାମ୍ରାଜ୍ୟବାଦୀ ନଜର ପକାଉଛନ୍ତି କାହିଁକି ? ଅନ୍ୟାନ୍ୟ ବାଉଲ୍ ସଙ୍ଗରେ ଏ ଚିକେନ୍ ବାଉଲ୍ଟି ଏ ଅଞ୍ଚଳର ।" ସମସ୍ତେ ହସିଉଠିଲେ । କୌଣସି ଲୌକିକତାପୂର୍ଣ୍ଣ ଆଦବ କାଇଦାର ନିୟନ୍ତ୍ରଣ ନାହିଁ । ଠିକ୍ ଆମ ଭାରତୀୟ ଭୋଜିଭାତର ମନଖୋଲା ଭାବ ଅତ୍ୟନ୍ତ ପ୍ରୀତିକର ମନେ ହେଉଥିଲା । ତା'ପରେ ଆସିଲା କିଛି ଭାତ ଏବଂ ଲାଇବେରିଆନ୍ ଚିଙ୍ଗୁଡ଼ି - ଲାଇବେରିଆର ଆଉ ଗୋଟିଏ ସ୍ପେସିଆଲ୍ ।

ଏତିକିବେଳେ ସାମ୍ନାରେ ଥୁଆ ହୋଇଥିବା ଖାଲି ଗ୍ଲାସ୍‌ମାନଙ୍କରେ ଜିନ୍ ମଧ୍ୟଭର୍ତ୍ତୀ କରାହୋଇସାରିଥିଲା । ଡ଼େପୁଟି ଚିଫ୍ ଅଫ୍ ପ୍ରୋଟୋକଲ ଠିଆହୋଇ ଆମ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କଲେ ଏବଂ କହିଲେ - "ମାନ୍ୟବର ରାଷ୍ଟ୍ରଦୂତଗଣ ଓ ସମ୍ମାନନୀୟ ଅତିଥିବୃନ୍ଦ ! ଲାଇବେରିଆ ଗଣରାଜ୍ୟର ବୈଦେଶିକ ମନ୍ତ୍ରୀ ମାନ୍ୟବର ସେସିଲ୍ ଡ଼େନିସ୍ ଜୁନିୟର ଏଠାରେ ଉପସ୍ଥିତ ଅଛନ୍ତି । ମୁଁ ଆପଣମାନଙ୍କୁ ମାନ୍ୟବର ମନ୍ତ୍ରୀଙ୍କ ସହ ଚିହ୍ନା କରାଇଦେଉଛି ।"

ମାନ୍ୟବର ମନ୍ତ୍ରୀ ତାଙ୍କ ଆସନରୁ ଉଠିଲେ ଏବଂ ସମସ୍ତଙ୍କ କରତାଳି ଓ ଅଭିବାଦନ ମଧ୍ୟରେ ଏକୋଓ୍ୱାର ଜେନେରାଲ ସେକ୍ରେଟାରୀ ଏବଂ ଆମ ସମସ୍ତଙ୍କୁ ସମ୍ବୋଧନ କରି କହିଲେ - "ମୁଁ ଆପଣମାନଙ୍କୁ ମୋର ଆନ୍ତରିକ ଅଭିବାଦନ

ଜଣାଇବା ସଙ୍ଗେ ସଙ୍ଗେ ଆମ ଲାଇବେରିଆ ଗଣରାଜ୍ୟକୁ ସ୍ୱାଗତ ଜଣାଉଛି । ଆମର ଏଇ ମିଳନ କେବଳ ଏକ ବନ୍ଧୁମିଳନ । ପଶ୍ଚିମ ଆଫ୍ରିକାର ସବୁ ରାଜ୍ୟରେ ଯେତେ ଅଧିବାସୀ ଅଛନ୍ତି, ସେ ସମସ୍ତେ ଏକ ପରିବାରର । ପରିବାରର ଜଣେ ସଦସ୍ୟ ଭାବରେ ମୁଁ ଆପଣଙ୍କୁ ମୋର ସାଧାରଣ ଖାଦ୍ୟ ଖାଇବାକୁ ଦେଇ ଆମ ଲୌକିକ ପ୍ରଥା ଅନୁଯାୟୀ ଅଭ୍ୟର୍ଥନା କଲି ।

ଆପଣମାନେ ଜାଣନ୍ତି ଆମର ଗୋଟିଏ କଥା ଅଛି ଯେ, ହାତୀକୁ ଜଣେ ଲୋକ ମାରି ଦେଇପାରେ; କିନ୍ତୁ ତାକୁ ଜଣେ ଲୋକ ବୋହିନେଇ ପାରେନି କିମ୍ବା ଜଣେ ଲୋକ ଖାଇପାରେନି । ସେଥିପାଇଁ ବହୁତ ଲୋକ ଏକଜୁଟ୍ ହେବା ଦରକାର । ଆମେ ଯଦି ଆଜି ହାତୀକୁ ବୋହିନେଇ ତାର ମାଂସ ଉପଭୋଗ କରିବାକୁ ଚାହୁଁ - ଆଫ୍ରିକାର ଆମ ଏହି ସମଗ୍ର ପଶ୍ଚିମ ଅଞ୍ଚଳକୁ ଆଗେଇନେଇ ତାର ପ୍ରଗତି ଉପଭୋଗ କରିବାକୁ ଚାହୁଁ, ଆମକୁ ଏକଜୁଟ ହେବାକୁ ପଡ଼ିବ । ଏକାସଙ୍ଗରେ ଠିଆହୋଇ ଏକମୁଖୀ ଭାବରେ କାମ କରିପାରିଲେ ହିଁ ଏ ଅଞ୍ଚଳର ତଥା ଅଞ୍ଚଳସ୍ଥିତ ପ୍ରତ୍ୟେକ ସାର୍ବଭୌମ ସ୍ୱାଧୀନ ଦେଶର ଉତ୍‌ଥାନ ସମ୍ଭବ ହେବ । ତା' ନକରି ପରସ୍ପର ମଧ୍ୟରେ ଟଣାଓଟରା ହେଲେ ସମସ୍ତଙ୍କ ପତନ ଅବଶ୍ୟମ୍ଭାବୀ... ।" ବକ୍ତୃତା ପରେ ସେ ତାଙ୍କ ଜିନ୍ ଗ୍ଲାସ୍ ଉଠାଇ ଏକୋଓ୍ୱାର ସଫଳତା କାମନା କଲେ । ଏକୋଓ୍ୱାର ଜେନେରାଲ ସେକ୍ରେଟାରୀ ତାଙ୍କ ଗ୍ଲାସ୍ ମିଳାଇଲେ । ଅନ୍ୟ ସମସ୍ତେ ଠିଆହୋଇ ନିଜ ନିଜ ଗ୍ଲାସ୍ ଉଠାଇ କହିଲେ 'ଏକୋଓ୍ୱାର ଜୟ ହେଉ ।' ମୁଁ ମଧ୍ୟ ସେଥିରେ ଯୋଗଦେଲି । ଏକୋଓ୍ୱାର ଜେନେରାଲ୍ ସେକ୍ରେଟାରୀ ତାଙ୍କ ଉତ୍ତରରେ ପଶ୍ଚିମ ଆଫ୍ରିକାର ଦେଶମାନଙ୍କ ମଧ୍ୟରେ ସାଂସ୍କୃତିକ ଏବଂ ଅର୍ଥନୈତିକ ସହଯୋଗର ଗୁରୁତ୍ୱ ବୁଝାଇ ଯାହା କହିଲେ ତାର ସାରମର୍ମ ମଧ୍ୟ ସେହି ଆଞ୍ଚଳିକ ଏକତା ହିଁ ଥିଲା । 'ୟୁନାଇଟେଡ୍ ଉଇ ଷ୍ଟାଣ୍ଡ ଡ଼ିଭାଇଡ଼େଡ଼୍ ଉଇ ଫଲ' । ମନ୍ତ୍ରୀ ମହୋଦୟ ତା'ପରେ ଆମ ସମସ୍ତଙ୍କ ମଧ୍ୟରୁ ଜଣ ଜଣକୁ ଚିହ୍ନାଇ ଦେଲେ । ମୁଁ ଅମୁକକୁ ଚିହ୍ନିପାରୁଛି କହିଲାବେଳେ ସେଇ ଭଦ୍ରଲୋକ ଠିଆହୋଇପଡ଼ନ୍ତି ଓ ସମସ୍ତେ କରତାଳି ଧ୍ୱନି ଦିଅନ୍ତି । ମିଳନର ଆୟୋଜନ କରିଥିବା ଯୋଗୁଁ ଆମ ସମସ୍ତଙ୍କ ତରଫରୁ ଗିନିର ରାଷ୍ଟ୍ରଦୂତ ମନ୍ତ୍ରୀ ମହୋଦୟଙ୍କୁ ଧନ୍ୟବାଦ ଦେଲେ । ଏ ଭିତରେ ରାତ୍ରିଭୋଜନର ଶେଷ ସାମଗ୍ରୀ ସ୍ୱରୂପ ସୁମିଷ୍ଟ ଏପଲ୍ ପାଏ ପରିବେଷଣ କରାଯାଇ ସାରିଥିଲା । ତାହା ଖାଇସାରିଲା ପରେ ଆମେ ସମସ୍ତେ ଡାଇନିଂ ହଲ୍‌ରୁ ବାହାରି ଆସିଲୁଁ। ବାର୍ ରୁମରେ କିନ୍ତୁ ସମସ୍ତେ ଆଉଥରେ ଜମା ହୋଇଗଲେ ଏବଂ ହୁଇସ୍କି ପାନର ଦ୍ୱିତୀୟ ପର୍ଯ୍ୟାୟ ଆରମ୍ଭ ହେଲା । ମଧ୍ୟରାତ୍ର ହୋଇ ଆସୁଥିବା ଦେଖି ଏବଂ ପରଦିନ ସକାଳେ ଶିକ୍ଷା

ମନ୍ତ୍ରଣାଳୟରେ ମୋର କାର୍ଯ୍ୟକ୍ରମ କଥା ମନେପକାଇ ମୁଁ ମନ୍ତ୍ରୀ ମହୋଦୟ ତଥା ଅନ୍ୟାନ୍ୟ ଭଦ୍ରବ୍ୟକ୍ତିମାନଙ୍କଠାରୁ ବିଦାୟ ନେଲି ।

ଲାଇବେରିଆ ଗଣରାଜ୍ୟରେ ମୋର ଏଇ ପ୍ରଥମ ରାତ୍ରୀ । ଅତ୍ୟନ୍ତ ସୌହାର୍ଦ୍ଦ୍ୟପୂର୍ଣ୍ଣ ପରିବେଶ, କିନ୍ତୁ ଡ୍ୟୁକର ହୋଟେଲ୍‌କୁ ଫେରିଆସିଲା ପରେ ଅନେକ ରାତିଯାଏ ନିଦହେଲାନି । ଏମାନଙ୍କ କଥା ହିଁ ଭାବୁଥିଲି । ପଶ୍ଚିମ ଆଫ୍ରିକାର ନଅଟି ଛୋଟ ଛୋଟ ସ୍ୱାଧୀନ ରାଜ୍ୟ, ସମସ୍ତେ ସେଇ ଆଫ୍ରିକୀୟ ନିଗ୍ରୋ । ଶାରୀରିକ ସାମଞ୍ଜସ୍ୟ ଏତେ ବେଶୀ ଏବଂ ସେମାନଙ୍କ ଢ଼ଙ୍ଗ ରଙ୍ଗ, ଚାଲିଚଳଣ ଏତେ ସମାନ ଯେ, ସେ ଭିତରୁ କିଏ କେଉଁ ଦେଶର ବାରିବା ଅସମ୍ଭବ । ଆକ୍ରାରେ ମୋର ତିନିଦିନ ରହଣି ଭିତରେ ମୁଁ ବୁଝିସାରିଥିଲି ଯେ, ଏହି ଆଫ୍ରିକୀୟମାନେ ଭଣା ଅଧିକେ ଠିକ୍ ଆମ ଭାରତୀୟ ଆଦିବାସୀଙ୍କ ପରି, ସାଧାରଣ ଭାବରେ ସରଳ ଓ ନିଷ୍କପଟ, କିନ୍ତୁ ଏମାନଙ୍କ ମଧ୍ୟରେ ଅଜସ୍ର ଗୋଷ୍ଠୀ । ଗୋଷ୍ଠୀ ଗୋଷ୍ଠୀ ମଧ୍ୟରେ ବୈବାହିକ ସମ୍ପର୍କ ମଧ୍ୟ ନାହିଁ । ପ୍ରତ୍ୟେକ ଗୋଷ୍ଠୀର ଭିନ୍ନ ଭିନ୍ନ ଭାଷା ଆଉ କୌଣସି ଭାଷାର ଲିପି କିମ୍ବା ଲିଖିତ ଭାଷା ନାହିଁ । ଛୋଟ ଗୋଟିଏ ଗୋଷ୍ଠୀ ହିଁ ସେମାନଙ୍କ ସମାଜ ତଥା ଜାତି । ଆଉ ସେଇ ଗୋଷ୍ଠୀର ଆବାସ ଭୂମି ସେମାନଙ୍କ ଜନ୍ମଭୂମି, ସେଇ ଗୋଷ୍ଠୀର ମୁଖ୍ୟ ସେମାନଙ୍କ ରାଜାଗୋଷ୍ଠୀର ଭୂତପ୍ରେତକୁ ପୂଜା କରୁଥିବା ପୂଜାରୀ ସେମାନଙ୍କ କୁଳ ପୁରୋହିତ, ବୈଦ୍ୟ ତଥା ଭୂତ ଭବିଷ୍ୟତଜ୍ଞାତା ଜ୍ୟୋତିଷ ।

ଅନେକ ବର୍ଷ ତଳେ ଇଉରୋପୀୟ ଦେଶ ସବୁ ଆଫ୍ରିକାର ଏ ଅଞ୍ଚଳକୁ ନିଜ ନିଜ ମଧ୍ୟରେ ବାଣ୍ଟି ନେଇଥିଲେ । ମୁଖ୍ୟ ଅଂଶୀଦାର ଥିଲେ ଫ୍ରାନ୍ସ ଓ ଇଂଲଣ୍ଡ । ସ୍ପେନ ଏବଂ ପର୍ତ୍ତୁଗାଲ ମଧ୍ୟ କିଛି ଅଂଶ ପାଇଥିଲେ । ଆମେରିକା କୌଣସି ଉପନିବେଶ ସୃଷ୍ଟି କରି ନଥିଲା ସତ କିନ୍ତୁ ଏଇ ଲାଇବେରିଆର ଅବସ୍ଥିତି ପଛରେ ତାହାର ହିଁ ଥିଲା ଅଦୃଶ୍ୟ ହସ୍ତ । ସ୍ୱାଧୀନ ଲାଇବେରିଆର ଚାରିଆଡ଼େ ଇଉରୋପୀୟ ଉପନିବେଶ – ତାକୁ ଗିଳି ଦେବାପାଇଁ ପ୍ରତ୍ୟେକଙ୍କ ଆଗ୍ରହ । ତଥାପି ସେ ବଞ୍ଚିରହିଲା କେବଳ ଏଇ ଆମେରିକାର ପ୍ରଚ୍ଛନ୍ନ ସହାୟକ ଶକ୍ତିବଳରେ । ସେ ସବୁ ରାଜ୍ୟ ଏବେ ସ୍ୱାଧୀନ । ବିଦେଶୀ ଶାସନ କେତେକାଂଶରେ ଏମାନଙ୍କୁ ଜାତୀୟତାବୋଧ ଶିକ୍ଷା ଦେଇଛି । ଏକ ଶାସନରେ ଥିବା ସମୁଦାୟ ଅଞ୍ଚଳ ଆଜି ଗୋଟିଏ ଦେଶରେ ପରିଣତ ହୋଇଛି ଆଉ ସେ ଦେଶ ଭିତରେ ଥିବା ସବୁ ଗୋଷ୍ଠୀ ଗୋଟିଏ ଜାତି ହୋଇଛନ୍ତି । ତଥାପି ଆଜି ମଧ୍ୟ ଦେଶପ୍ରୀତି ଠାରୁ ଏମାନଙ୍କ ଏହି ଗୋଷ୍ଠୀପ୍ରୀତି ବେଶୀ । ସେଥିପାଇଁ ଆଫ୍ରିକାର ବିଭିନ୍ନ ଦେଶମାନଙ୍କରେ ଏତେବେଶୀ ବିଚ୍ଛିନ୍ନତାବାଦୀ ସଂଘର୍ଷ ଦେଖାଦିଏ । ଛୋଟ ଛୋଟ ଦେଶମାନଙ୍କୁ ଏକଜୁଟ୍ କରିବା ଉଦ୍ଦେଶ୍ୟ ନେଇ ଅର୍ଥନୈତିକ ଏବଂ ସାଂସ୍କୃତିକ

କ୍ଷେତ୍ରରେ ଏକୋଓ୍ୱାର ଯେପରି ଜନ୍ମ, ସାରା ଆଫ୍ରିକାର ଦେଶମାନଙ୍କ ମଧ୍ୟରେ ସ୍ୱାଧୀନତା ଚେତନା ଆଣିବା ପାଇଁ ଏବଂ ଏକତା ଆଣିବା ପାଇଁ ସେପରି ଓ.ଏ.ୟୁ.ର ଜନ୍ମ; କିନ୍ତୁ ସେମାନଙ୍କ ମଧ୍ୟରେ ସେଭଳି ଏକତା କାହିଁ? ଅନ୍ତରର ସଦ୍ଭାବ କାହିଁ?

ଧର୍ମ ଅବା ପାରସ୍ପରିକ ବନ୍ଧନ ସୃଷ୍ଟି କରିପାରିଥାଆନ୍ତା । ତାଙ୍କ ନିଜସ୍ୱ କୌଣସି ପୁରାତନ ଧର୍ମ ମଧ୍ୟ ନାହିଁ । ଏବେ ସେମାନଙ୍କ ଭିତରେ ଖ୍ରୀଷ୍ଟିୟାନ ଧର୍ମ ଏବଂ ଇସ୍‌ଲାମର ଦ୍ରୁତ ପ୍ରସାର ଚାଲିଛି; କିନ୍ତୁ ଆକ୍ରାରେ ମୋର ରହଣିବେଳେ ବୁଝିପାରିଥିଲି ଯେ, ପଡ଼ୋଶୀ ପଡ଼ୋଶୀଙ୍କ ମଧ୍ୟରେ ଆଜିଠାରୁ ଧର୍ମଗତ ବିଦ୍ୱେଷ ଦେଖାଦେଲାଣି । ଉଭୟ ଗୋଷ୍ଠୀର ଧର୍ମ ପ୍ରଚାରକମାନେ ଦାବୀ କରନ୍ତି ଯେ, ତାଙ୍କ ଧର୍ମ ହିଁ ସ୍ୱର୍ଗର ଏକମାତ୍ର ଦ୍ୱାର । ସେ ଦ୍ୱାର ଦେଇ ନ ଗଲେ ସ୍ୱର୍ଗପୁରୀକୁ ପଶିବାପାଇଁ ଆଉ ଅନ୍ୟ ପଥ ନାହିଁ । ଯେଉଁମାନେ ଅନ୍ୟବାଟରେ ଚାଲିଛନ୍ତି ସେମାନେ ଶେଷରେ ବାଟବଣା ହେବେ ଯାହା । ସ୍ୱାଭାବିକ୍ ଭାବରେ ତେଣୁ ଭିନ୍ନ ଭିନ୍ନ ଧର୍ମାବଲମ୍ବୀମାନଙ୍କ ମଧ୍ୟରେ ଟଣାଓଟରା ଆରମ୍ଭ ହୋଇଯାଇଛି । ଏଣେ ଋଷ, ଆମେରିକା ଏବଂ ଚୀନ୍‌ର କୂଟ ରାଜନୀତି - ଆଫ୍ରିକାର ଅନ୍ୟାନ୍ୟ ଅଞ୍ଚଳ ପରି ପଶ୍ଚିମ ଅଞ୍ଚଳ ମଧ୍ୟ ସମ୍ପୂର୍ଣ୍ଣ ଭାଗ ଭାଗ ।

ମୋର ନିଜ ଅଜାଣତରେ ମୁଁ ଆମ ଭାରତବର୍ଷ କଥା ମଧ୍ୟ ଭାବି ବସିଥିଲି । ଆମେ ଆଜି ଭାରତୀୟ ବୋଲି କେତେ ଗର୍ବ କରୁ; କିନ୍ତୁ ଆମର ଇତିହାସ ମଧ୍ୟ କେବଳ ଦ୍ୱନ୍ଦ୍ୱର ହିଁ ଇତିହାସ । ଅଭିଶପ୍ତ ବ୍ରିଟିଶ୍ ଶାସନ ଆସି ନ ଥିଲେ ଆମର ଅବସ୍ଥା ଆଜି କ'ଣ ହୋଇଥାଆନ୍ତା ସେ କଥା କଳ୍ପନା କରିହୁଏନି । ଆମେ ବୋଧହୁଏ ଅଙ୍ଗ, ବଙ୍ଗ, କଳିଙ୍ଗ, ମଗଧ, ବିଦର୍ଭ ପ୍ରଭୃତି ସାର୍ବଭୌମ ରାଜ୍ୟମାନଙ୍କର ଅଧିବାସୀ ହୋଇ ନିଜ ନିଜ ଭିତରେ ଭିଡ଼ାଓଟରା ଲଗାଇଥାନ୍ତୁ । ଅନ୍ୟ କେଉଁ ଦେଶର ରାଜକନ୍ୟାଙ୍କୁ ଜୋର ଜବରଦସ୍ତି ଭିଡ଼ି ଆଣି ରାଜପୁତ୍ରଙ୍କ ହାତରେ ସମର୍ପି ଛାତି ଫୁଲାଉଥାନ୍ତୁ । ଯଦିଓ ଭାରତବର୍ଷର ଐତିହ୍ୟ ସଂସ୍କୃତି ଏବଂ ଧର୍ମ ମଧ୍ୟ ଖଣ୍ଡା ଅଧିକେ ଏକ ଥିଲା, ୟୁରୋପୀୟ ଦେଶମାନେ ଯେପରି ଧର୍ମ ଏକ ଥିଲେ ମଧ୍ୟ ଭାଷା ଭିତରେ ଅଥବା ରାଜଶକ୍ତି ବଳରେ ଭାଗ ଭାଗ ହୋଇଯାଇଥିଲେ, ଆମେ ବି ସେପରି ଭାଗ ଭାଗ ହୋଇଥାଆନ୍ତୁ। ଓ୍ୱାଟରଲୁଠାରେ ନେପୋଲିୟନ ପରାଜିତ ହୋଇ ନ ଥିଲେ ଏହି ଆଫ୍ରିକାର ଅଞ୍ଚଳମାନ ଇଉରୋପୀୟ ଦେଶମାନଙ୍କ ମଧ୍ୟରେ ଭାଗ ବଣ୍ଟାଆରା ହେଲାପରି ହୁଏତ ଆମର ମଧ୍ୟ ପଣ୍ଡିଚେରୀକୁ କେନ୍ଦ୍ର କରି ଦକ୍ଷିଣ ଅଞ୍ଚଳ ହୋଇଥାଆନ୍ତା ଏକ ଫରାସୀ ଉପନିବେଶ । ଗୋଆକୁ କେନ୍ଦ୍ର କରି ପଶ୍ଚିମ ଅଞ୍ଚଳ ହୋଇଥାଆନ୍ତା ପର୍ତ୍ତୁଗୀଜ ଉପନିବେଶ। କଲିକତାକୁ କେନ୍ଦ୍ରକରି ପୂର୍ବ ଅଞ୍ଚଳ

ରହିଥାଆନ୍ତା ବ୍ରିଟିଶ୍ ଶାସନର ଅଧୀନରେ । ଆଉ ହୁଏତ ବାହାଦୁର ଶାହାଙ୍କର କେଉଁ ଜଣେ ବଂଶଧର ସାକୀ ଓ ସୁରା ନେଇ ଦିଲ୍ଲୀର ରାଜଦରବାରରେ ମସଗୁଲ୍ ରହିଥାଆନ୍ତେ । ସମୟର ଗତି ସଙ୍ଗେ ସଙ୍ଗେ ଆମେ ସମସ୍ତେ ସ୍ୱାଧୀନ ହେଲାପରେ ଅବସ୍ଥା ଆଉ କେଉଁ ରୂପ ନେଇଥାଆନ୍ତା ସେ କଥା ଅବା କିଏ କହିବ ?

ବ୍ରିଟିଶ୍ ଶାସନାଧୀନ କାଳର ମୋର ଗୋଟିଏ ଅଦ୍ଭୁତ ଅନୁଭୂତି ମୁଁ ମନେ ପକାଉଥିଲି ।

ସମ୍ୱଲପୁରରୁ ମୁଁ ଯାଉଥାଏଁ କଳାହାଣ୍ଡି । ବ୍ରିଟିଶ୍ ଶାସିତ ସମ୍ୱଲପୁର ଅଞ୍ଚଳ ଅତିକ୍ରମ କରିସାରିଲା ପରେ ଗଡ଼ଜାତ ରାଜ୍ୟ ସୋନପୁର ଡେ଼ଇଁ ଆମେ ଯେତେବେଳେ ବସ୍‌ରେ ସେ ଦିନର ପାଟଣା ରାଜ୍ୟରେ ପଶିଗଲୁ, ପାଟଣା ଗଡ଼ଜାତ ରାଜ୍ୟର ପୋଲିସ୍ ବସ୍ ଅଟକାଇ ସବୁ ଯାତ୍ରୀଙ୍କର ବାକ୍‌ସପତ୍ର ଖୋଲି ଲଗେଜ୍ ଯାଞ୍ଚକରି ବସିଲା । କଷ୍ଟମସ୍ ଚେକ୍ । କାହିଁ କେବର କଥା, ଆମେ ସେତେବେଳେ କଷ୍ଟମସ୍ କଣ ସେ କଥା ମଧ ଜାଣି ନ ଥିଲୁ।  ଯେଉଁମାନେ ବିରକ୍ତ ହୋଇ ଆପତ୍ତି ଉଠାଇଲେ, ସେ ସମସ୍ତେ ପୋଲିସ୍ ଥାନାକୁ ଯିବାକୁ ବାଧହେଲେ । ରକ୍ଷା କରିବାକୁ କେହିନାହିଁ। ତାଙ୍କ ରାଜ୍ୟରେ ରାଜା ହିଁ ସର୍ବେସର୍ବା – ରାଜାଙ୍କ ଆଦେଶ ତାଙ୍କ ଗଡ଼ଜାତ ରାଜ୍ୟରେ କେହି ଅମାନ୍ୟ କରିବାର ପ୍ରଶ୍ନ ହିଁ ନାହିଁ । ଯାହାର ବାକ୍‌ସ ଗଣ୍ଠିଲିରେ ନୂଆ ଲୁଗାପଟା ସବୁ ଥିଲା, ସେ ସବୁପାଇଁ ଯାତ୍ରୀମାନେ ଟ୍ୟାକ୍ସ ଦେବାକୁ ବାଧହେଲେ । ଯେଉଁ ଜଣେ ଦି'ଜଣ ନୂଆ ବୋହୂ ବସ୍‌ରେ ଥିଲେ, ସେମାନଙ୍କର ଗହଣାଗାଣ୍ଠି ପାଇଁ ମଧ ପଇସା ଦେବାକୁ ପଡ଼ିଲା । ସେ ଦିନ ନାନା ରକମର ଏପରି ଜୋରଜୁଲମ୍ ସବୁର ବିରୁଦ୍ଧରେ ପ୍ରତିବାଦ କରି ବାମଣ୍ଡାର ଦୟାନନ୍ଦ ଶତପଥୀ ଜଙ୍ଗଲ ଭିତରେ ମୁଣ୍ଡ ଲୁଚାଇ ବୁଲୁଥିଲେ । ସାରଙ୍ଗଧର ଦାସଙ୍କ ଢେ଼ଙ୍କାନାଳରେ କବି ସଚି ରାଉତରାୟ ଅମର କରି ଯାଇଥିବା ବାଜିରାଉତ ପ୍ରାଣବଳି ଦେଇ ସାରିଥିଲା – ପବିତ୍ର ମୋହନ ପ୍ରଧାନ ତାଳଚେରର ହଜାର ହଜାର ଉତ୍ପୀଡ଼ିତ ପ୍ରଜାଙ୍କ ନେତୃତ୍ୱ ଦେଇ ସେମାନଙ୍କ ସହ ପଳାଇ ବୁଲୁଥିଲେ ।

ଗାନ୍ଧୀଜୀଙ୍କ ମହାନ୍ ନେତୃତ୍ୱରେ ବ୍ରିଟିଶ୍ ରାଜଛତ୍ରର ଛାୟା ଏ ଦେଶରୁ ଯେତେବେଳେ ଅପସରି ଗଲା, ଭାରତବର୍ଷ ଭିତରେ ପାଞ୍ଚଶହରୁ ଉର୍ଦ୍ଧ୍ୱ ଏପରି ଗଡ଼ଜାତି ସମ୍ରାଟ ବର୍ଷାଦିନିଆ ଛତୁପରି ଦେଖାଦେଇଥିଲେ । କେବଳ ଆଜିର ଓଡ଼ିଶା ଭିତରେ ମୁଣ୍ଡଟେକି ଉଠିଥିଲେ ସାରୁଗଛ ମୂଳେ ବେଙ୍ଗଟିଏ ବସି ଆପେ ବୋଲାଉଛି ରାଜାଙ୍କ ଅପେକ୍ଷା ଆହୁରି ପରାକ୍ରମୀ ଛବିଶ ଜଣ ରାଜ ଚକ୍ରବର୍ତ୍ତୀ । ସେମାନଙ୍କ

ଭିତରେ କେତେଜଣ ପ୍ରଜାପ୍ରିୟ ଭଲ ରାଜା ମଧ୍ୟ ଥିଲେ, କିନ୍ତୁ ସେମାନଙ୍କ ପୁଅ, ନାତି, ଅଣନାତି, ପଣନାତି, 'ସର୍ପକରିଣ କଲୁ ଜାତ, ସ୍ୱଭାବ ଛାଡ଼ିବି କେମନ୍ତ' ହେବା ପୂର୍ବରୁ ହିଁ ଯୁଗଜନ୍ମା ଲୌହମାନବ ସର୍ଦ୍ଦାର ପଟେଲ ରାଜ ସର୍ପଯଜ୍ଞ କରି ସେ ସମସ୍ତଙ୍କୁ ଆହୁତି ଦେଇସାରିଥିଲେ । ତା' ହୋଇ ନ ଥିଲେ ଅନ୍ୟାନ୍ୟ ଦେଶର ମୁସଲମାନମାନେ 'ହାଜ୍' ଯାତ୍ରା ପାଇଁ ମକ୍କା ଗଲାପରି ଆମେ ଗୋଟିଏ ସ୍ୱାଧୀନ ସାର୍ବଭୌମ ଗଡ଼ଜାତ ରାଜ୍ୟର ଓଡ଼ିଆମାନେ ପାସପୋର୍ଟ ନେଇ ଭିସା କରି କଷ୍ଟମ୍ସ ଚେକ୍ ଦେଇ ଆଜି ହୁଏ ତ ଜଗନ୍ନାଥ ଦର୍ଶନ ପାଇଁ ଆଉ ଗୋଟିଏ ସାର୍ବଭୌମ ଓଡ଼ିଆ ରାଜ୍ୟକୁ ତୀର୍ଥଯାତ୍ରାରେ ଯାଉଥାଆନ୍ତୁ ।

ଭାବନାର ଏପରି ସବୁ ଅସରନ୍ତି ଜାଲ ଭିତରେ ଛନ୍ଦିହୋଇ ଯାଇ ମୁଁ କେତେବେଳେ ଯେ କ୍ଳାନ୍ତିରେ ଶୋଇ ପଡ଼ିଥିଲି ମୋର ଖିଆଲ ନାହିଁ । ନିଦ ଭାଙ୍ଗିଲାବେଳକୁ ଲାଇବ୍ରେରିଆରେ ମୋର ପ୍ରଥମ ରାତ୍ରି କଟି ସାରିଥିଲା ।

# ମନରୋଭିଆରେ ଏକ ବିଚିତ୍ରା କାର୍ଯ୍ୟକ୍ରମ

'ଜୋଡ଼ୋ-ଜୋଡ଼ୋ-ଜୋଡ଼ୋ'

'କାଠୁଆ-କାଠୁଆ-କାଠୁଆ'

ରଙ୍ଗମଞ୍ଚର ନାଲି ଭେଲ୍‌ଭେଟ୍ ପରଦା ଅପସାରିତ ହେବା ସଂଗେ ସଂଗେ ହିଁ ହାତରେ ଚୁଟୁକି ଫୁଟାଇ ଆଖି ଓ ଭୂରୁ ନଚାଇ ଦୋହଲି ଦୋହଲି ସମତାନରେ ଗାଇ ଉଠିଥିଲେ ଟିକି ଟିକି ବାରଜଣ ଛାତ୍ର ଓ ଛାତ୍ରୀ । ଝିଅମାନଙ୍କର ଚିତ୍ରବିଚିତ୍ର ଚକ୍‌ଚକିଆ ରଙ୍ଗୀନ କନାରେ ତିଆରି ମେକ୍‌ସିରେ ପାଦ ପର୍ଯ୍ୟନ୍ତ ଢ଼ଙ୍କା ହୋଇଥିବା ଦେହ, ମୁଣ୍ଡର ସରୁ ସରୁ ଠିଆ ବେଣୀ ଆଉ ପୁଅମାନଙ୍କର ନୀଳ ଫୁଲ୍‌ପେଣ୍ଟ, ଧଳାସାର୍ଟ ଆଉ ନାଲି ଟାଏ ସାଙ୍ଗକୁ କଳା କଳା ମୁହଁ । କଣ୍ଢେଇ ନାଚର ଗୋଟିଏ ଗୋଟିଏ ସୁନ୍ଦର କଣ୍ଢେଇ ପରି ସେ ସମସ୍ତେ ଦେଖାଯାଉଥିଲେ ।

'ୱେଲ୍ କମ୍--ୱେଲ୍ କମ୍ ୱେଲ୍ କମ୍--'

ନିସ୍ତବ୍ଧତା ଭିତରେ ସ୍ୱାଗତ ସଙ୍ଗୀତ ଅଡ଼ିଟୋରିୟମ୍‌ରେ ଗୁଞ୍ଜରି ଉଠୁଥିଲା । ପୁଅ ଝିଅଙ୍କ ଦୁଇପାଖରେ ଠିଆ ହୋଇଥିଲେ ଜଣେ ଜଣେ ଶିକ୍ଷୟତ୍ରୀ । ସେମାନେ ହାତରେ ତାଳିମାରି ଏବଂ ମଞ୍ଚରେ ସାମାନ୍ୟ ପାଦ କଚାଡ଼ି ତାଳ ଦେଉଥିଲେ । ଟିକିଏ ଦୂରରେ ପିଆନୋ ବଜାଉଥିଲେ ଆଉ ଜଣେ ଶିକ୍ଷୟତ୍ରୀ ।

ସ୍କୁଲ ଛାତ୍ରଛାତ୍ରୀଙ୍କ ଗୋଟିଏ ବିଚିତ୍ରା କାର୍ଯ୍ୟକ୍ରମରେ ଏପରି ଏକ ନୂତନ ଢ଼ଙ୍ଗର ଆରମ୍ଭ ଦେଖି ମୁଁ ଟିକିଏ ସଳଖି ବସିଲି । 'ଜୋଡ଼ୋ, କାଠୁଆ' ସବୁ ହିଁ ଆଫ୍ରିକୀୟ ଉପଜାତିମାନଙ୍କ ବିଭିନ୍ନ ଭାଷାରେ ଥିଲା - ସ୍ୱାଗତମ୍ ।

ଆଫ୍ରିକୀୟ ମୁକ୍ତି ଆନ୍ଦୋଳନ ପାଇଁ ପାଣ୍ଠି ସଂଗ୍ରହ ଅଭିଯାନ ଚାଲିଥାଏ ଲାଇବେରିଆର ରାଜଧାନୀ ମନରୋଭିଆ ସହରରେ। ସେହି ଅଭିଯାନରେ ସକ୍ରିୟ ସାହାଯ୍ୟ ଦେବା ଉଦ୍ଦେଶ୍ୟ ନେଇ ବ୍ୟୁରୋ ଅଫ୍ ଇନ୍‌ଷ୍ଟ୍ରକ୍‌ଶନ୍ (ଆମ ଡ଼ିରେକ୍ଟୋରେଟ୍ ଅଫ୍ ପବ୍ଲିକ୍ ଇନ୍‌ଷ୍ଟ୍ରକସନ୍ ପରି)ର ତତ୍ତ୍ୱାବଧାନରେ ସହରରେ ଥିବା ସବୁ ସରକାରୀ ଓ ବେସରକାରୀ ହାଇସ୍କୁଲ ମିଳିତ ଭାବେ ଏହି ବିଚିତ୍ର କାର୍ଯ୍ୟକ୍ରମର ଆୟୋଜନ

କରିଥାଆନ୍ତି ନଗରୀର ସର୍ବବୃହତ୍ ହଲ୍ ଇ.ଯେ. ରୟଲ୍ ବିଲଡ଼ିଂ ଅଡ଼ିଟୋରିୟମ୍‌ରେ । ନଗରୀର ସ୍କୁଲ ଛାତ୍ରଛାତ୍ରୀଙ୍କ ସଂଖ୍ୟା ପ୍ରାୟ ଚାଳିଶ ହଜାର - ଆମେରିକାନ୍ କୋ-ଅପରେଟିଭ୍ ସ୍କୁଲ, ବ୍ରିଟିଶ୍ ସ୍କୁଲ, ଟ୍ରେନିଂ ଇନ୍‌ଷ୍ଟିଚିଉଟ ସ୍କୁଲ, ସେଣ୍ଟ ମେରୀ, ଟବ୍‌ମେନ୍ ଜୁନିୟର ହାଏ, ଲଟ୍ ଏଣ୍ଡ୍ କେରି ମିଶନ୍ ପ୍ରଭୃତି ଏ ସ୍କୁଲମାନଙ୍କ ମଧ୍ୟରେ ଅନ୍ୟତମ। ଟବ୍‌ମେନ ହାଏ-ସି-କ୍ଲବ ଓ କରିନାଭେନଫେର କେତେଜଣ ଖ୍ୟାତନାମା ଆର୍ଟିଷ୍ଟ ଥାଆନ୍ତି ଟିକେଟ୍ କ୍ରେତାଙ୍କ ପାଇଁ ବିଶେଷ ଆକର୍ଷଣ । ଶିକ୍ଷାମନ୍ତ୍ରୀ ଥିଲେ ମୁଖ୍ୟ ଅତିଥି । ଶିକ୍ଷା ମନ୍ତ୍ରଣାଳୟରୁ ନିମନ୍ତ୍ରିତ ହୋଇ ମୁଁ ଜଣେ ବିଶିଷ୍ଟ ଅତିଥିଙ୍କ ଆସନ ଗ୍ରହଣ କରିଥିଲି ।

ବିଚିତ୍ରା କାର୍ଯ୍ୟକ୍ରମର ଦାୟିତ୍ୱରେ ଥିବା ଜଣେ ଲେଡ଼ି ସୁପରଭାଇଜର୍‌ଙ୍କ ଅନୁରୋଧ କ୍ରମେ ସହାୟକ ଶିକ୍ଷାମନ୍ତ୍ରୀ କାର୍ଯ୍ୟକ୍ରମ ଉଦ୍‌ଘାଟନ କଲେ । ପ୍ରାୟ ଦୁଇ ମିନିଟ୍‌ର ତାଙ୍କ ଚୁମ୍ବକୀୟ ଭାଷଣ ମୋତେ ବେଶ୍ ଭଲ ଲାଗିଲା, ଆଉ ତା ସଙ୍ଗେ ବିଜୁଳି ଝଲକ୍ ପରି ମନେ ପଡ଼ିଗଲା ଅନ୍ୟ ଏକ ବିଚିତ୍ରା କାର୍ଯ୍ୟକ୍ରମ ଉଦ୍‌ଘାଟନ ଭାଷଣର ଏକ ଅବିସ୍ମରଣୀୟ ଏବଂ ଦୁଃଖଦ ଅନୁଭୂତି ।

x x x

ମୁଁ ଥାଏ ବୁର୍ଲା ଇଞ୍ଜିନିୟରିଂ କଲେଜର ଅଧ୍ୟକ୍ଷ । କଲେଜର ଛାତ୍ରମାନେ ତାଙ୍କର ବାର୍ଷିକ ଉତ୍ସବ ପାଳୁଥାଆନ୍ତି । ବୁର୍ଲା ଇଞ୍ଜିନିୟରିଂ କଲେଜର ନାଟକ ଓ ବିଚିତ୍ରା କାର୍ଯ୍ୟକ୍ରମ ଖୁବ୍ ଭଲହୁଏ ବୋଲି ଏମିତି ଉତ୍ସବମାନଙ୍କରେ ବୁର୍ଲା ସହର ଓ ଆଖପାଖ ଗାଁ ମାନଙ୍କରୁ ଆସିଥିବା ଦେଖଣାହାରୀଙ୍କ ସମାଗମରେ କଲେଜ ପ୍ରାଙ୍ଗଣ ଭରପୂର ହୋଇଯାଏ । ସେ ବର୍ଷ ସମ୍ବଲପୁର ମହିଳା କଲେଜରେ ବୁଦ୍ଧଦେବଙ୍କ ସମ୍ବନ୍ଧୀୟ ଏକ ଗୀତିନାଟ୍ୟ ଏତେ ଚମତ୍କାର ହୋଇଥିଲା ଯେ, ମୁଁ ସେ କଲେଜର ଅଧ୍ୟକ୍ଷାଙ୍କୁ ବିଶେଷ ଅନୁରୋଧ କରି ସେହି ଗୀତିନାଟ୍ୟ ଆମ ଇଞ୍ଜିନିୟରିଂ କଲେଜର ଉତ୍ସବରେ ଆଉଥରେ ହେବାପାଇଁ ଅଧ୍ୟକ୍ଷାଙ୍କ ସହ ତାଙ୍କ ଛାତ୍ରୀ କଳାକାରମାନଙ୍କୁ ସମ୍ବଲପୁରରୁ ନେଇ ଆସିଥିଲି ଆଉ ପ୍ରତିଶ୍ରୁତି ଦେଇଥିଲି ଯେ, ସେମାନେ ରାତି ୯.୩୦ ସୁଦ୍ଧା ସମ୍ବଲପୁରକୁ ଫେରିଯିବେ ।

ସଭାସ୍ଥଳକୁ ଘଣ୍ଟାଏ ଡେ଼ରିରେ ଆସି ମାନ୍ୟବର ମୁଖ୍ୟ ଅତିଥି କହିଲେ ଯେ, ଜରୁରୀ କାମ ଥିବା ଯୋଗୁ ତାଙ୍କୁ ଅତିଶୀଘ୍ର ଫେରିଯିବାକୁ ପଡ଼ିବ । ସେ ମୁଖ୍ୟଅତିଥିଙ୍କ ଭାଷଣ ପଛକୁ ନରଖି ଆଗକୁ ନେଇ ଆସିବାକୁ ଅନୁରୋଧ କଲେ ଏବଂ ତାହାହିଁ ହେଲା । ସ୍ୱାଗତ ଭାଷଣ ଓ ସେକ୍ରେଟାରୀଙ୍କ ରିପୋର୍ଟ ପରେ ପରେ

୭.୩୦ ବେଳକୁ ମୁଖ୍ୟଅତିଥି ତାଙ୍କ ଅଭିଭାଷଣ ଆରମ୍ଭ କଲେ । ଶିଳ୍ପ କାରଖାନା ସବୁ କଞ୍ଚାମାଲରୁ ଯେପରି ବ୍ୟବହାର୍ଯ୍ୟ ସାମଗ୍ରୀ ତିଆରି କରନ୍ତି କଲେଜ ସବୁ ସେପରି ମଣିଷ ତିଆରି କରନ୍ତି ବୋଲି କହିବାକୁ ଯାଇ ଅତିଥି ମହୋଦୟ କହିଲେ ଯେ, ବୁର୍ଲା ଇଞ୍ଜିନିୟରିଂ କଲେଜ ଗୋଟିଏ ମଣିଷ ତିଆରି କାରଖାନା। ଗଙ୍ଗାଧର ମେହେର କଲେଜ ଗୋଟିଏ ମଣିଷ ତିଆରି କାରଖାନା । ରାଜେନ୍ଦ୍ର କଲେଜ ଡ଼େଇଁ ସେ ଯେତେବେଳେ କଟକ ମେଡ଼ିକାଲ କଲେଜ ଗୋଟିଏ ମଣିଷ ତିଆରି କାରଖାନା କହି ରେଭେନ୍ସା କଲେଜକୁ ପହଞ୍ଚିଲେ ଏବଂ ଧୀରେ ଧୀରେ ପୁରୀ ବାଲେଶ୍ୱର କଲେଜମାନଙ୍କ ନାମଧରି ବସିଲେ, ମୁଁ ଟିକିଏ ପ୍ରମାଦ ଗଣିଲି । ତା'ପରେ ଗୋଟିଏ କଥାରୁ ଆଉ ଗୋଟିଏ କଥା । ୮ ବାଜି ୮.୩୦ ହେବା ଉପରେ । କି ଭୟଙ୍କର ବୋରିଂ ସେ ଭାଷଣ । ସମସ୍ତେ ବିଚିତ୍ରା କାର୍ଯ୍ୟକ୍ରମ ଏବଂ ନାଟକ ଦେଖିବା ପାଇଁ ଉତ୍କଣ୍ଠିତ । ପିଲାମାନେ ଘନ ଘନ ତାଳି ଦେବାକୁ ଆରମ୍ଭ କଲେଣି । ତାଳି ଶୁଣି ମୁଖ୍ୟ ଅତିଥି ମହାଶୟ ତାଳିର ଉଦ୍ଦେଶ୍ୟ ବୁଝିବେ କଣ, ଦ୍ୱିଗୁଣିତ ଉତ୍ସାହରେ କହି ଚାଲିଥାଆନ୍ତି । ୯ଟା ପାଖାପାଖି । ଷ୍ଟେଜ୍ ପଛଆଡୁ ମୋ ପାଖକୁ ଖଣ୍ଡିଏ ଛୋଟ ଲେଖା ଆସିଲା – ତହିଁରେ ଲେଖା ହୋଇଥାଏ – 'ଆମ କଲେଜ ଝିଅଙ୍କ ଗୀତିନାଟ୍ୟ ଯଦି ଶୀଘ୍ର ଆରମ୍ଭ ନ କରନ୍ତି, ଆମେ ବାଧହୋଇ ଆମର ଆଇଟମ୍ ପରିବେଷଣ ନ କରି ସମ୍ବଲପୁରକୁ ଫେରିଯିବୁ ।' ମୁଁ ବିକଳିଆ ଆଖିରେ ମୁଖ୍ୟ ଅତିଥିଙ୍କୁ ଅନାଇଥାଏ । ସେ 'ମୁଁ ଶେଷରେ ଏ କଥା କହୁଛି ଯେ...' କହି ଅଭିଭାଷଣ ଶେଷହେଲା ବୋଲି ସମସ୍ତଙ୍କ ମନରେ ଆଶାର ସଞ୍ଚାର କରାଇଦେଇ ପୁଣି ସେହି ଶେଷକଥାରୁ ନୂଆ ଖିଅ ବାହାର କରିଦିଅନ୍ତି । ପିଲାମାନେ ଗୋଡ଼ ଘଷିବାକୁ ଆରମ୍ଭ କଲେଣି । 'ବନ୍ଦ କରନ୍ତୁ' ଚିତ୍କାର କାନେ ଆସିଯିବ ମୁଁ ସେ ଆଶଙ୍କାରେ ରୁଚି ବିହୀନ ଜାଣି ମଧ ବାଧହୋଇ ଖଣ୍ଡିଏ ଚିଟ୍‌ରେ ସମୟ ବେଶୀ ହୋଇଗଲାଣି ବୋଲି ଲେଖି ଅତିଥି ମହୋଦୟଙ୍କୁ ଧରାଇଦେଲି । ସେ ପଢ଼ିଲେ – ଚିଟ୍‌ଟିକୁ ସଯତ୍ନରେ ଭାଙ୍ଗି ପକେଟ୍‌ରେ ଭର୍ତ୍ତିକଲେ – 'ମୁଁ ଜାଣୁଛି ଯେ ଯା ପରେ ଆପଣଙ୍କ ବିଚିତ୍ରା କାର୍ଯ୍ୟକ୍ରମ ରହୁଛି' ବୋଲି କହିଲେ ଆଉ ମଣିଷ ଜୀବନରେ ବିଚିତ୍ରା କାର୍ଯ୍ୟକ୍ରମର ଉପଯୋଗିତା ସମ୍ବନ୍ଧରେ ନୂତନ ଭାଷଣ ଆରମ୍ଭ କରିଦେଲେ । ମୁଁ ସବୁ ଆଶା ଭରସା ଛାଡ଼ି ମୃଗୁଣୀ ସ୍ତୁତି ବୋଲିବି କି ଗଜୋଦ୍ଧାରଣ ସ୍ତବ ଆରମ୍ଭ କରିବି ସେ କଥା ଭାବୁଛି, ଯାହା ଘଟିବା କଥା ଘଟିଲା । କିଏ ଜଣେ ବୋର୍-ବୋର୍ ପଛଆଡୁ ପାଟିକଲା – ତା'ପରେ ଚାରିଆଡୁ 'ବୋର୍ ବୋର୍ କୋଳାହଳ । ମୁଖ୍ୟ ଅତିଥି ଏଥର ତାଙ୍କ ଭାଷଣ ଶେଷ କରୁଛନ୍ତି କହି ଯେତେବେଳେ ଧୈର୍ଯ୍ୟ ସମ୍ବନ୍ଧରେ କିଛି କହିବାକୁ ଆରମ୍ଭ କଲେ,

ସମସ୍ତେ ଏକାସଙ୍ଗରେ କରତାଳି ଆରମ୍ଭ କରିଦେଲେ । ସେ କରତାଳିର ଆଉ ବିରାମ ନାହିଁ । ମୁଖ୍ୟ ଅତିଥି ଆଉ କଣ କହୁଥିଲେ ମୁଁ ବି ଶୁଣି ପାରିଲିନି; କିନ୍ତୁ ବସିଲାବେଳେ ସେ ବିରକ୍ତ ହୋଇ ଛାତ୍ରମାନଙ୍କ ଉପରେ ଆଉ ଟିକିଏ କଡ଼ା କଟକଣା ଜାରିକରିବାକୁ ମୋତେ ପରାମର୍ଶ ଦେଲେ ଓ ପରେ ପରେ ବିଦାୟ ନେଲେ । ସେତେବେଳେ ସମୟ ୯.୩୦ । ମୁଁ ବିଳମ୍ବ ଯୋଗୁ ମହିଳା କଲେଜର ଅଧ୍ୟକ୍ଷାଙ୍କଠାରୁ କ୍ଷମାମାଗି ଚା ଓ ଜଳପାନ ବିରତି ବଦଳରେ ଗୀତିନାଟ୍ୟ ଆଇଟମ୍‌କୁ ସାଙ୍ଗେ ସାଙ୍ଗେ ଦେବାପାଇଁ ଛାତ୍ର ପ୍ରତିନିଧିମାନଙ୍କୁ ଅନୁରୋଧ କଲି; କିନ୍ତୁ ସେ ଆଇଟେମ୍ ପରେ ଛାତ୍ରଙ୍କ କାର୍ଯ୍ୟକ୍ରମ ଦେଖିବା ପାଇଁ ଆମ କେତେଜଣଙ୍କ ଛଡ଼ା କଲେଜ ପ୍ରାଙ୍ଗଣରେ ଆଉ କେହି ନଥିଲେ ।

x x x

ସହାୟକ ଶିକ୍ଷାମନ୍ତ୍ରୀଙ୍କ ଉଦ୍‌ଘାଟନ ଭାଷଣ ପରେ ଛୋଟ ପିଲାଙ୍କ ଗୋଟାଏ କୋରସ୍ ସଙ୍ଗୀତ ଏବଂ ତା'ପରେ ପୁଅ ଓ ଝିଅଙ୍କ ନାଚ । ଏଇ ନାଚ ସବୁ ଖୁବ୍ ଉପଭୋଗ୍ୟ ହୋଇଥିଲା । ଆଫ୍ରିକୀୟ ଢ଼ଙ୍ଗରେ କେତେ ପୁଅଙ୍କର ଚିତ୍ରିତ ଦେହ ଓ ମୁହଁ, ନୀଳଗାଇ ଶିଙ୍ଗ ଖଚିତ ଶିର ଭୂଷଣ ଆଉ ଅତି ଚଞ୍ଚଳ ଗତି ପଞ୍ଜାବୀ ଭାଙ୍ଗ୍ରା ଆଉ ସମ୍ବଲପୁରୀ ଡ଼ାଲଖାଇ ଠାରୁ ମଧ୍ୟ ଆହୁରି ଦ୍ରୁତ ହସ୍ତ ପଦ ଚାଳନା । କାଳିସୀ ଲାଗିଲେ ଯେମିତି ଦେହ ଥରାନ୍ତି, ସେମିତି ଦେହ ଥରାଇ ପ୍ରତ୍ୟେକ ଅଙ୍ଗ ଛିଞ୍ଚାଡ଼ି ଦେଉଁଥିବେ – ପୁଅଙ୍କ ଦେହର ମାଂସପେଶୀ ସବୁ ବାହାରି ପଡ଼ିଥିବ, ଆଉ ଗୋଟା ଗୋଟା ଗଣି ହୋଇଯାଉଥିବ । ଗୋଡ଼କୁ ଗୋଡ଼ତାଳ କିନ୍ତୁ ବେଶ୍ ମିଶୁଥିବ । ଭୟଙ୍କର ଜୋର୍‌ରେ ଗୋଟାଏ ଶବ୍ଦକୁ ତୁହାଇ ତୁହାଇ ରଡ଼ୁଥିବେ । ପଛରେ ନାନାଢ଼ଙ୍ଗର ବାଦ୍ୟ – ଡ୍ରମ୍, କଙ୍ଗୋ – ଟମ୍‌ଟମ୍ । କାଠ ହଣ୍ଡିରେ ଓ ବାଉଁଶ ନଳୀରେ ଗୋଡ଼ିଦିଆ ମେଣ୍ଡି ଓ ସୀସା । ସେ ବାଦ୍ୟରେ କୋମଳତା ଅପେକ୍ଷା କର୍କଶତା ଯଥେଷ୍ଟ ମାତ୍ରାରେ । ବେଶୀ କୌଣସି ଏକ ଯୁଦ୍ଧବାଦ୍ୟ ପରି – ନାଚର କୌଣସି ଅଂଶ ସରିଗଲେ ବାଦକ ମାନେ ତାଙ୍କର ସମସ୍ତ ବାଜା ଏପରି ହଠାତ୍ ବନ୍ଦ କରିଦିଅନ୍ତି ଯେ, ମନେହୁଏ ସତେ ଯେମିତି କିଛି ଗୋଟାଏ ଛିଣ୍ଡି ପଡ଼ିଲା । ଭୟଙ୍କର ହୋ ହଲ୍ଲା ଏବଂ କୋଳାହଳ ପରେ ହଠାତ୍ ଗଭୀର ନିସ୍ତବ୍‌ଧତା ଆସିଗଲେ ମନରେ ଯେପରି ପ୍ରତିକ୍ରିୟା ଦେଖାଦିଏ ସେହି ଧରଣର ଅନୁଭୂତି ।

ତା'ପରେ ଆସନ୍ତି ରାଗିଣୀ ଧରି ଝିଅମାନେ ଠିକ୍ ସେପରି ଉଦ୍ଦାମ ନୃତ୍ୟ କରି କରି, ସେଥିରେ ନଥାଏ ଲାଳିତ୍ୟ ଓ ନୃତ୍ୟକଳା । ନୃତ୍ୟର ଚଞ୍ଚଳ ଗତି ଭିତରେ

ଗୁନ୍ଥିହୋଇ ଦେଖାଯାଏ ନାନା ଢଙ୍ଗର ଶାରୀରିକ ବ୍ୟାୟାମ କେତେ ଠିକ୍ ଆମ ବେଙ୍ଗ ଚାଲି, ବିଛା ଚାଲି, ପୁଚିଖେଳ ପରି । ତା'ପରେ ପୁଅ ଝିଅଙ୍କ ମିଶାମିଶି ନାଚ - ଏକ୍ରୋବେଟିକ୍ସ ଢଙ୍ଗରେ ନାନାଦି ଅଙ୍ଗ ଚାଳନା କୌଶଳ - ନାଚୁ ନାଚୁ ଜଣେ ବସିପଡ଼େ ତ ଆଉ ଜଣେ ତା ଉପରେ ଡ଼େଇଁଯାଏ - କେଉଁ ପୁଅର କାନ୍ଧରେ କେଉଁ ଜଣେ ଝିଅ ଉଠିଯାଏ ପିରାମିଡ୍ ଢଙ୍ଗରେ - ପୁଅ ଏଣେ ତାର ନାଚିଚାଲିଥାଏ, ଝିଅକୁ କାନ୍ଧରେ ଟେକିଧରି - ବାଦ୍ୟ ସବୁ ଉଠୁଥାଏ ପଡୁଥାଏ ସମତାଳରେ । ଅତି ଉନ୍ମାଦନାଭରା ସେ ନୃତ୍ୟ ।

ଗୀତରେ ମଧ୍ୟ ନୂତନତା । ଆମ ଆଧୁନିକ କିମ୍ବା ଶାସ୍ତ୍ରୀୟ ସଂଗୀତ ସଙ୍ଗରେ ତ କୌଣସି ସାମଞ୍ଜସ୍ୟ ନାହିଁ - ୟୁରୋପୀୟ ସଂଗୀତ ସଙ୍ଗରେ ମଧ୍ୟ କୌଣସି ସାମଞ୍ଜସ୍ୟ ନ ଥିଲା ପରି ମନେହୁଏ । ଗୋଟିଏ ଗୀତ ସଂପୂର୍ଣ୍ଣ ଗୀତିହୀନ କେବଳ ମାତ୍ର ଧ୍ୱନି । ସେରିବାରେ ଡ଼େଡ଼େ ସେରିବା..... ସେରିବାରେ ଡ଼େଡ଼େ ସେରିବା । ତିନି କି ଚାରି ଦଳ ପୁଅ ଓ ଝିଅ ଗୋଟିଏ ଦଳ ରାଗ ଟେକୁଥିଲା ବେଳେ ଆଉ ଗୋଟିଏ ଦଳ ଧୀରେ ଧୀରେ ଖସାଉଥିବେ, ମଝିରେ ଉଠୁଥିବ ପଡୁଥିବ - 'ସେରିବାରେ ଡ଼େ ଡ଼େ ସେରିବା' ସତେ ଯେମିତି ଗୋଟିଏ ସମୁଦ୍ର ଲହରୀ ମାଡ଼ିଆସୁଛି, କୂଳରେ ପିଟିହୋଇ ଜୋର୍‌ରେ ଶବ୍ଦକରି ପୁଣି ଫେରିଯାଇ ଧୀରେ ଧୀରେ କେଉଁଠି ମିଳାଇଯାଉଛି ।

କ୍ଲାସ୍‌ରୁମ୍‌ର ଗୋଟିଏ ଦୃଶ୍ୟ । ସ୍କୁଲର ଏକମାତ୍ର ଶିକ୍ଷକ ଏବଂ ସେ ଏପର୍ଯ୍ୟନ୍ତ ଆସି ନାହାନ୍ତି । କେତେ ପିଲା କ୍ଲାସ୍ ରୁମ୍‌ରେ ବସି ପେଁକାଳୀ ବଜାଉଛନ୍ତି । ଜଣେ ବଲ୍‌ଟିଏ ଧରି ଫଟ୍ ଫଟ୍ କରୁଛି - କେଉଁ ପୁଅ କେଉଁ ଝିଅକୁ ଦେଖି ଖତାଇ ଦେଉଛି । ସ୍କୁଲର ସହାୟକ ସୁପର୍‌ଭାଇଜର (ଆମ ସ୍କୁଲ ସବ୍ ଇନ୍‌ସିପେକ୍ଟର ପରି) ତାଙ୍କ ପରିଦର୍ଶନରେ ପହଞ୍ଚିଗଲେ। ତାଙ୍କ ପ୍ରଶ୍ନର ଉତ୍ତର ଦେଇ ପିଲାଙ୍କ ପ୍ରେସିଡ଼େଣ୍ଟ (ପ୍ରିଫେକ୍ଟ) ଖନେଇ ଖନେଇ କହିଲା ଯେ ଶିକ୍ଷକ ଏଯାଏଁ ଆସିନାହାନ୍ତି ଏବଂ ସେ ମନଇଚ୍ଛା ଆସନ୍ତି - ଅନେକ ଡ଼େରିରେ। ଯୋଡ଼ିଦେଲା ଯେ, କେବେ କେବେ ସେ ଆଦୌ ଆସନ୍ତିନି । ପଢ଼ାପଢ଼ି କିଛି ହୁଏନି, କିନ୍ତୁ ପିଲାମାନେ ଶିକ୍ଷକଙ୍କୁ ଡ଼ରି ଉପରକୁ ରିପୋର୍ଟ କରନ୍ତିନି ।

ଏତିକିବେଳେ ଶିକ୍ଷକ ଆସିଲେ - ଟିକିଏ ଢ଼ଳି ଢ଼ଳି । ସାମାନ୍ୟ ନିଶାଲାଗିଛି। ସହାୟକ ସୁପର୍‌ଭାଇଜର ଗୋଟିଏ ଚେୟାର୍‌ରେ ବସିଲେ, ଆଉ ଶିକ୍ଷକ ହାଜିରା ନେଇ ପଢ଼ାଇବାକୁ ଆରମ୍ଭ କଲେ। ପଚାରିଲେ, 'ପିଲାମାନେ, କଣ ପଢ଼ିବ?' ଦୁଇତିନି ଜଣ କହିଲେ - ଅଙ୍କ। ପ୍ରେସିଡ଼େଣ୍ଟ କହିଲା - 'ମେ- ମେ- ମେଥ' ।

ମେଥ୍ ଆରମ୍ଭ ହେଲା ୭+୭ରୁ । ଶିକ୍ଷକ ନିଜେ ପଚାରୁଥାଆନ୍ତି - ପିଲାଙ୍କୁ କିଛି ଆସୁ ନ ଥାଏ। କେବଳ ସେଇ ପ୍ରେସିଡେଣ୍ଟ ହିଁ ଠିକ୍ ଉତ୍ତର ଦିଏ। ଶିକ୍ଷକ ପଚାରିଲେ - 'ଏଥର କଣ ପଢ଼ିବ ?' ପିଲାମାନେ କହିଲେ - 'ସ୍ପେଲିଂ' ବନାନ୍ । ସେ ପାଲା ଟିକିଏ ଚାଲିଲା । ତାପରେ ପ୍ରଶ୍ନ - ପିଲାମାନେ କହିଲେ 'ସାମାଜିକ ଶିକ୍ଷା', 'ଲାଇବେରିଆର ପ୍ରଥମ ପ୍ରେସିଡ଼େଣ୍ଟ କିଏ'ରୁ ପ୍ରଶ୍ନ ଆରମ୍ଭ ହେଲା ।

ସହାୟକ ସୁପର୍‌ଭାଇଜର୍ ଅଧୈର୍ଯ୍ୟ ହୋଇ ସ୍ୱଗତୋକ୍ତି କଲେ - 'କି ଅସମ୍ଭବ କଥା' । ଶିକ୍ଷକଙ୍କୁ ପଚାରିଲେ, 'ତମେ କଣ ଏମିତି ପିଲାଙ୍କୁ ସେମାନେ କଣ ପଢ଼ିବେ ବୋଲି ପଚାରି ପଢ଼ାଅ ?' ଶିକ୍ଷକ ଅବିଚଳିତ- ଜବାବ୍ ହିଁ ଦେଲେନାହିଁ । ଶିକ୍ଷକ ଏଥର କହିଲେ, ଆଜିର ପଢା ଶେଷ । କାଲି ଗୁରୁବାର କ୍ଲାସ୍ ନାହିଁ । ତା'ପର ଦିନ ଶୁକ୍ରବାର, କ୍ଲାସ୍ ବନ୍ଦ । (ଲାଇବେରିଆରେ ପ୍ରତ୍ୟେକ ହପ୍ତାରେ ଶନିବାର, ରବିବାର ଦୁଇଦିନ ତ ଛୁଟି )। ପିଲାମାନେ ଚାଲି ଯାଉଛନ୍ତି, ସୁପର୍‌ଭାଇଜର ପହଞ୍ଚିଗଲେ । (ଡ଼େପୁଟି ଇନ୍‌ସପେକ୍ଟର) - ଟ୍ରାଉଜର୍ ଉପରେ ଗମ୍ ବୁଟ୍, ସାର୍ଟ ଉପରେ କୋଟ୍ ଓ ମୁଣ୍ଡରେ ଟୋପି । ଏଥର ସହାୟକ ସୁପରଭାଇଜର ଓ ସୁପରଭାଇଜର୍‌ଙ୍କ କଥୋପକଥନ ଚାଲିଲା - ଶିକ୍ଷକ ପାଖରେ ବସି ଢୁଳୋଉଛନ୍ତି ।

ସହାୟକ ସୁପର୍‌ଭାଇଜର ରିପୋର୍ଟ କଲେ, 'ନିହାତି ଅପଦାର୍ଥ ଏ ଶିକ୍ଷକ କିଛି ପଢ଼ାଇ ଜାଣେନି । 'ଅନ୍‌ଟ୍ରେନ୍‌ଡ', ତାକୁ ଟ୍ରେନିଂ ନ ଦେଲେ ଲାଭନାହିଁ କହି ସୁପାରିସ୍ କଲେ ଯେ, 'ତାକୁ ଏଥର ବେତନ ସହ ଟ୍ରେନିଂ ପାଇଁ ପଠାଇଦେବା ।' ସୁପରଭାଇଜର୍ ପଚାରିଲେ - 'ଏମିତି ଲୋକ ତେବେ ଶିକ୍ଷକ ହେଲା କେମିତି ? ତାକୁ ପୁରାପୁରି ବିଦାୟ ଦେଉନ କାହିଁକି ?' ସହାୟକ କହିଲେ - ଟ୍ରେନିଂ ନ ଦେଲେ, ବିଦାୟ ଦେବାକୁ ହିଁ ହେବ ।

ଶିକ୍ଷକ ଧଡ଼ପଡ଼ ହୋଇ ଉଠିଲେ । କହିଲେ, 'କଣ କହୁଚ - ବିଦାୟ ଦେବ ? ମୋର ଦାମିକା କୋଟ୍ କଣ ମାହାଳିଆ ପଡ଼ିଛି ? ତାକୁ ତା'ହେଲେ ଆଗ ଫେରାଅ ।'

ସୁପରଭାଇଜର ସହାୟକଙ୍କୁ ପଚାରିଲେ 'କୋଟ୍ ? ଏ କଣ କହୁଛି ? ତମେ କ'ଣ ତା'ଠାରୁ କୌଣସି କୋଟ୍ ନେଇ ଚାକିରୀ ଦେଇଛ ? କୋଟ୍ ତା'ହେଲେ କଣ ହେଲା ?'

ସହାୟକ ସୁପରଭାଇଜର ସୁପରଭାଇଜରଙ୍କ କୋଟ୍‌କୁ ଆଙ୍ଗୁଠି ଦେଖାଇ କହିଲେ - 'ଏଇ ଆପଣ ଯେଉଁ କୋଟ୍‌ଟି ପିନ୍ଧିଛନ୍ତି ।' ହାସ୍ୟରୋଳ ଭିତରେ ନାଟିକାର ସମାପ୍ତି ହେଲା ।

ଆଉ କେତୋଟି ଆଇଟମ୍ ପରେ ଶେଷ ଆଇଟମ୍ ଥିଲା ଜଣେ ଓସ୍ତାଦ୍‌ଙ୍କ କନ୍‌ସାର୍ଟ । ଭାରି ସୁନ୍ଦର । ଗୀତ ପ୍ରାୟ କିଛିନାହିଁ – ମାତ୍ର ଗୋଟିଏ ଧାଡ଼ି – 'ଆଫ୍ରିକା ମଷ୍ଟ ବି ଫ୍ରି ।' ମାଇକ୍ ପାଖରେ ଗାୟକ ଗାନ ଧରିଥାଆନ୍ତି – 'ଆଫ୍ରିକା..... ଆଫ୍ରିକା.... ଆଫ୍ରିକା ମଷ୍ଟ ବି ଫ୍ରି ....ଆ...ଫ୍ରିକା ।' ତାଙ୍କ ପଛରେ ତିନିଜଣ ଗିଟାର୍ ଧରି ଦେହ ହଲାଇ ବଜାଉଥାନ୍ତି । ଓସ୍ତାଦଙ୍କ ସୁନ୍ଦର ଗଳାର କମ୍ପନରେ ହଲ୍ ସତେ ଯେମିତି ଦୋହଲି ଯାଉଥାଏ । ଅଖଣ୍ଡ ନିସ୍ତବ୍ଧତା– ସମସ୍ତଙ୍କ ଉଚ୍ଛାଟିଆ ଭାବପ୍ରବଣ ମନ– ଓସ୍ତାଦ୍ ରଡ଼ି ରଡ଼ି ଗାଉଥାଆନ୍ତି 'ମଦର୍ ଆଫ୍ରିକା....ଆ....ଆ...ଫ୍ରିକା । ଆଖି ତାଙ୍କର ଜଳି ଉଠୁଥାଏ– ଦେହ ଥରି ଯାଉଥାଏ ।

୧୯୬୦ରେ ଇଣ୍ଡିଏନ୍ ସାଏନ୍ସ କଂଗ୍ରେସର କଟକ ଅଧିବେଶନ ବେଳେ ଅକ୍ଷୟ ମହାନ୍ତି ଗାଇଥିଲେ କାଞ୍ଚିବିଜୟ । ତାଙ୍କର ସେ ଦିନର ସ୍ୱର ଲହରୀରେ ସାମିଆନା ସବୁ ଥରି ଯାଇଥିଲା । ସେ ଗାନ ଶୁଣି ବିରାଟ ଶ୍ରୋତୃମଣ୍ଡଳୀ ଚମତ୍କୃତ ହୋଇ ଯାଇଥିଲେ। ତାପରେ ମୁଁ ଅକ୍ଷୟ ମହାନ୍ତିଙ୍କ ଅନେକ ଗୀତ ଶୁଣିଛି – କାଞ୍ଚି ବିଜୟ ମଧ କିନ୍ତୁ ସେ ଲହର, ସେ କମ୍ପନ ସେ ମୂର୍ଚ୍ଛନା ପାଇନି – ମୋ ମନ ଭିତରେ ସେ ରକମର ମାନସିକ ପ୍ରତିଧ୍ୱନି ଆଉ କେବେ ହୋଇନି । ସେ ଦିନ ଆମେ ସମସ୍ତେ ହୋଇଯାଇଥିଲୁ ମନ୍ତ୍ରମୁଗ୍‌ଧ ।

ଆଜି ଏଇ ଓସ୍ତାଦ୍‌ଙ୍କୁ ଶୁଣିଲା ବେଳେ ମୋତେ ସେଦିନର କଥା ମନେପଡୁଥିଲା । କି ଚମତ୍କାର ଗଳା। କି ମୂର୍ଚ୍ଛନା – କି କମ୍ପନ।

ରାତି ୧୨ଟା ଉପରେ । ସମସ୍ତେ ଘରକୁ ଫେରିଯିବାକୁ ବ୍ୟସ୍ତ ହେଲେଣି । ମୁଁ କିନ୍ତୁ ଏକ ନୂତନତାରେ ସମୟ ଜ୍ଞାନ ହରାଇ ବସିଥିଲି ।

ଶିକ୍ଷାମନ୍ତ୍ରୀ ତାଙ୍କ ସଂକ୍ଷିପ୍ତ ଭାଷଣରେ କହିଲେ, ଆମ ଛାତ୍ରଛାତ୍ରୀଙ୍କ ଭିତରେ କେତେ ଯେ ପ୍ରତିଭା ପୁରି ରହିଛି । ସେ ପ୍ରତିଭାକୁ ଜାଗରିତ କରି, ଏଇ ପୁଷ୍ପ କଳିକାମାନଙ୍କୁ ପ୍ରସ୍ଫୁଟିତ କରି ସେମାନଙ୍କୁ ଲୋକଲୋଚନକୁ ଆଣିବା ଆମର କର୍ତ୍ତବ୍ୟ । ଶିକ୍ଷାମନ୍ତ୍ରୀଙ୍କ ଭାଷଣ ଶୁଣି ମୋ ମନ ଭିତରେ କିଛି ଗୋଟାଏ ଚିହ୍ନା ସ୍ମୃତି ଜାଗରିତ ହେଉଥିଲା – ଜଣାଶୁଣା ଅନୁଭୂତି ଗୁଞ୍ଜରି ଉଠୁଥିଲା । ଭାବଗତ ସମାନ ଧରଣର ମାନସିକ ପ୍ରତିକ୍ରିୟା ବୋଧହୁଏ ଦେଉଥିଲା ଅନ୍ତରର ସମ ପ୍ରତିଧ୍ୱନି ।

କାର୍ଯ୍ୟକ୍ରମର ସମାପ୍ତି ପରେ ଡ଼େରିହେଲା ବୋଲି ସେମାନେ ସୌଜନ୍ୟ ରକ୍ଷା କରିବାକୁ ଯାଇ ମୋତେ କ୍ଷମା ମାଗିଥିଲେ । ମୁଁ କିନ୍ତୁ ଭାବୁଥିଲି ଯେ, କାର୍ଯ୍ୟକ୍ରମଟି ଅତିଶୀଘ୍ର ସରିଯାଇଛି । ଏପରି ଏକ କାର୍ଯ୍ୟକ୍ରମ ଦେଖିବା ପାଇଁ ମୋତେ ସୁଯୋଗ

ଦେଇଥିବାରୁ ମୁଁ ଶିକ୍ଷାମନ୍ତ୍ରୀ, ତାଙ୍କ ସହଧର୍ମିଣୀ ଏବଂ ସହାୟକ ଶିକ୍ଷାମନ୍ତ୍ରୀଙ୍କୁ ଧନ୍ୟବାଦ ଦେଇଥିଲି ।

ହୋଟେଲ୍‌କୁ ଫେରିଲାପରେ ବେଶ୍ କିଛି ବେଳଯାଏ ମୁଁ ଏଇ ବିଚିତ୍ର କାର୍ଯ୍ୟକ୍ରମ କଥା ଭାବୁଥିଲି, ଆଉ ଭାବୁଥିଲି ଆମ ଦେଶର କଥା । ଆମ ଛାତ୍ରଛାତ୍ରୀଙ୍କ ମଧ୍ୟରେ ମଧ୍ୟ ଏତେ ବେଶୀ ପ୍ରତିଭା କିନ୍ତୁ ବଣ ମାଳତୀ ବଣରେ ଝଡ଼ିଗଲା ପରି ସେମାନେ ବି ଝଡ଼ି ଯାଆନ୍ତି । କିଏ ସେମାନଙ୍କୁ ଚିହ୍ନେ? କିଏ ସେମାନଙ୍କ ସୁଗନ୍ଧ ପାଏ? ସ୍କୁଲମାନଙ୍କରେ ଗୀତ ନାଚ ଶିଖିବା ପାଇଁ ନିମ୍ନତମ ସୁବିଧା ସୁଯୋଗ ମଧ୍ୟ ନାହିଁ । ଗାଁ କଥା ତ ଛାଡ଼ ଅଧିକାଂଶ ସହରରେ ଟାଉନ୍ ହଲ୍‌ଟିଏ କିମ୍ବା ଅଡ଼ିଟୋରିୟମ୍‌ଟିଏ ବି ନାହିଁ । ସିନେମା ଛଡ଼ା ଅବସର ବିନୋଦନ ପାଇଁ ଛାତ୍ରଗୋଷ୍ଠୀର କଣ ବା ସୁବିଧା ସୁଯୋଗ ଅଛି ? ଆଉ ଶସ୍ତା ଲଗାମ୍‌ଛଡ଼ା ସିନେମା । ଏଇ ଶସ୍ତା ସିନେମା ହିଁ ଆମ ଜାତୀୟ ଜୀବନକୁ କଳୁଷିତ କରିବାରେ ମୁଖ୍ୟତଃ ଦାୟୀ; କିନ୍ତୁ ଶିକ୍ଷାନୀତି ଓ ଶିକ୍ଷା ପଦ୍ଧତି ହୁଏ ସେଥିପାଇଁ ଦୋଷୀ । ମଝିରେ ମଝିରେ କଲେଜମାନଙ୍କରେ ଗୋଟିଏ ଅଧେ ଯେଉଁ ସାଂସ୍କୃତିକ କାର୍ଯ୍ୟକ୍ରମ ହୁଏ, ସେଥିପାଇଁ ମଧ୍ୟ କାହାରି ବିଶେଷ ଆଗ୍ରହ ଥିଲାପରି ମନେହୁଏନି । ନିଜ ନିଜ ମଧ୍ୟରେ ଅଥବା ଆଖପାଖ କଲେଜରେ ସାଙ୍ଗସାଥୀ ମହଲରେ ଯେଉଁ ଲୁକ୍‌କାୟିତ ପ୍ରତିଭା ଥାଏ, ତାକୁ ଉତ୍ସାହ ଦେଲେ ଅନ୍ୟମାନେ ସମାଲୋଚନା କରିବେ, ଏହି ଭୟରେ ଅଯଥା ଗୁଡ଼ାଏ ଖର୍ଚ୍ଚକରି ସେଇ ନୀତିଦିନିଆ ରେଡ଼ିଓ ଆର୍ଟିଷ୍ଟ ଆଉ ଅର୍କେଷ୍ଟ୍ରା ପାର୍ଟିକୁ ହିଁ ସମସ୍ତେ ଡ଼ାକନ୍ତି । ସାଂସ୍କୃତିକ ପ୍ରତିଭା ଅଦିନରେ ସମାଧି ପ୍ରାପ୍ତ ହୁଏ ।

ଏସବୁ ଭାବୁ ଭାବୁ ମୁଁ କେତେବେଳେ ଶୋଇ ପଡ଼ିଥିଲି ଜାଣେନି ।

# ମନରୋଭିଆରେ ମୋର ଏକ ପଦଯାତ୍ରା

'ହେ ମହାଶୟ ! ଟିକିଏ ଶୁଣିବେକି ?'

ବୁଢ଼ା ବୁଦା ଭିତରେ କଣ ଗୋଟାଉଥିଲା କେଜାଣି, ମୁଣ୍ଡଟେକି ପଚାରିଲା - 'ମୁଁ ?' ମୁଁ କହିଲି - 'ହଁ, ଟିକିଏ ଶୁଣିବେ ?'

ବୁଢ଼ା ହଲି ହଲି ପାଖକୁ ଆସିଲା । କେନ୍ଦୁକାଠପରି ଦେହ, ଚେପ୍‌ଟା ନାକ, ମୋଟା ଓଠ ଓ କଦମ୍ବ କେଶର ପରି ବାଳ । ନୀଳରଙ୍ଗର ଟ୍ରାଉଜର୍ ଉପରେ ମୋଟା ଛିଟ କନାର ଟି ଶାର୍ଟ - ରବର ଚଟି । ମୁଁ ପଚାରିଲି 'ଦୟାକରି କହିବେ କି ଏ ଘାସକୁ କଣ କହନ୍ତି ?'

ବୁଢ଼ା ମୋତେ ଟିକିଏ ଭଲକରି ଚାହିଁଲା କହିଲା 'ଏ ଘାସ ?'

କହିଲି - 'ହଁ।'

'ଘାସକୁ କଣ କହନ୍ତି ?'

'ହଁ ।'

'ଏ ଘାସକୁ ଏଇଠି କଣ କହନ୍ତି ?'

'ହଁ ।'

ମୁହଁରେ ସାମାନ୍ୟ ହସ ଖେଳାଇ ବୁଢ଼ା କହିଲା - 'ଏ ଘାସକୁ କହନ୍ତି - ଫି । ହଁ ମହାଶୟ ଏ ଘାସର ନାମ ହେଲା - ଫି ।'

ନାଁଟି ଠିକ୍ ଧରିପାରିଛି ନା ନାହିଁ ଜାଣିବା ଉଦ୍ଦେଶ୍ୟରେ ସ୍ୱରରେ ପ୍ରଶ୍ନବାଚୀ ଦେଇ ମୁଁ ଦୋହରାଇଲି 'ଫି ?' ବୁଢ଼ା କହିଲା - 'ଇଏସ୍ ସା - ୱି କଲ୍ ଇଟ୍ ଫି ।'

ବୁଢ଼ା ତା'ପରେ ଅନ୍ୟମନସ୍କ ଭାବରେ ଏଆଡ଼େ ସେଆଡ଼େ ଅନାଇ ସେମିତି କିଛି ଗୋଟାଏ ଖୋଜି ବସିଲା । ତା' ମୁହଁରୁ ବାହାରୁଥିଲା ଗୋଟିଏ ଅଜଣା ଗୀତର ସ୍ୱର ଲହର୍ - ପମ୍ ପମ୍ ପମ୍ ପମ୍ ଟାରା..ରା...ରା ।'

ମୁଁ ଧନ୍ୟବାଦ ଦେଇ ଆଗେଇ ଗଲି । ବୁଢ଼ା ପଛରୁ ଚିତ୍କାରକଲା 'ହେ ଓଭେ ଦେଆ ।' ମୁଁ ଓଲଟି ଚାହିଁଲି । ବୁଢ଼ା କହିଲା 'ୟୁ ଗଟ୍ ମି ? ଇଏସ୍ ସା ୱି ସିଓ କଲ୍ ଇଟ୍ ଫି ।'

ମୁଁ ନ ହସି ରହିପାରିଲିନି । ବୁଢ଼ା ଉଦ୍ଦେଶ୍ୟରେ ହାତ ହଲାଇ ହଲାଇ ଆଗେଇ ଚାଲିଲି । ବୁଢ଼ାର ଗୀତ ପବନରେ ଭାସି ଆସୁଥିଲା ଟାରା...ରା..ରା...ପମ୍.... ପମ୍.....ପମ୍.... ।

ବୁଢ଼ା କଣ ଗୋଟାଉଥିଲା କେଜାଣି । ବୋଧହୁଏ କିଛି କନ୍ଦ ଖୋଳୁଥିଲା ଅଥବା କୌଣସି ବଣୁଆ ଫଳ ତୋଳୁଥିଲା । ହୁଏତ କୌଣସି ଅଳିଆ ଗଦାରୁ କିଛି ଦରାଣ୍ଡୁଥିଲା । ମଦ କିନ୍ତୁ ପିଇଥିଲା ପେଟେ ।

ଆଫ୍ରିକୀୟ ନଗ୍ନ ପ୍ରକୃତିର ସନ୍ତାନ ଏମାନେ । ଭଣା ଅଧିକେ ଆମ ଆଦିବାସୀଙ୍କ ପରି ସରଳ ନିଷ୍କପଟ ଏବଂ ସହଜ ବିଶ୍ୱାସୀ । ପ୍ରଗତିର ଆଧୁନିକ ମାପକାଠିରେ ଏମାନେ ଆମ ଆଦିବାସୀଙ୍କଠାରୁ ଆହୁରି ନିମ୍ନସ୍ତରରେ ରହିବା କଥା; କିନ୍ତୁ ବେଶଭୂଷା ଦେଖି ମନେ ହେଉଥିଲା ଯେ, ଏମାନଙ୍କ ମଜୁରିଆ ଶ୍ରେଣୀ ଲୋକଙ୍କ ଆର୍ଥିକ ମାନଦଣ୍ଡ ଆମ ମଧ୍ୟବିତ୍ତ ଶ୍ରେଣୀ ଲୋକଙ୍କ ମାନଦଣ୍ଡ ଠାରୁ ମଧ୍ୟ ଆହୁରି ଉପରେ। ତେଣୁ କିଛି ଗୋଟାଏ ରହସ୍ୟ କେଉଁଠି ଲୁଚି ରହିଥିଲା ପରି ମନେ ହେଉଥିଲା । ଆଉ ସେ ରହସ୍ୟ ଉଦ୍‌ଘାଟନ କରିବା ପାଇଁ ଉତ୍କଣ୍ଠିତ ହୋଇ ମୁଁ ସେଦିନ ବାହାରି ପଡ଼ିଥିଲି ।

ଲାଇବେରିଆ ଆସିଲା ପରେ ତାର ରାଜଧାନୀ ମନରୋଭିଆର ଡ୍ୟୁକର ଇଣ୍ଟର୍-କଣ୍ଟିନେଣ୍ଟାଲ୍ ହୋଟେଲରେ ମୁଁ ଥିଲି ଜଣେ ରାଜଅତିଥି - ଭଣା ଅଧିକେ ଏକ ଧରଣର ରାଜବନ୍ଦୀ। ନବତଳ ପ୍ରାସାଦର ସାତ ତାଲାରେ ଥିଲା ମୋର କୋଠରି। କୋଠରିର କୋଣରୁ କୋଣକୁ ନରମ ଗାଲିଚା। ଡବଲ୍ ବେଡ୍, ଖଟରେ ଡବଲ୍ ଡନ୍‌ଲପପିଲୋର ଗଦି, ହଂସୁଲୀ ତୂଳୀର ତକିଆ, ସଫା ଫିନ୍ ଫିନ୍ ଚଦର ଉପରେ ଅତି ନରମା ପଶମର କମ୍ବଳ, ମୋଟା ହଳଦିଆ ମସ୍‌ଲିନ୍‌ର ବେଡ୍‌କଭର, ଶୀତତାପ ନିୟନ୍ତ୍ରଣ ଲୁକ୍‌କାୟିତ - ଛାତରୁ ଚଟାଣକୁ ଲାଗିଥିବା ସିଟ୍ କାଚରେ ଡବଲ ପର୍ଦ୍ଦା। ଦଉଡ଼ି ଟାଣି ଘୁଞ୍ଚାଇଦେଲେ ଦେଖିବାକୁ ମିଳେ ଆଟଲାଣ୍ଟିକ୍ ମହାସାଗର ଓ ମନରୋଭିଆ ନଗରୀର ମନୋରମ ଦୃଶ୍ୟ।

ରୁମ୍ ରେଣ୍ଟ୍ ଦିନକୁ ୨୧ ଡଲାର ଓ ଖାଇବା ଖର୍ଚ୍ଚ ଦିନକୁ ହାରାହାରି ୨୦ ଡଲାର, ଦିଓଟି ମିଶି ଭାରତୀୟ ମୁଦ୍ରାରେ ଦିନକୁ ପ୍ରାୟ ୩୭୦ ଟଙ୍କା। ଲାଇବେରିଆ ଗଣରାଜ୍ୟ ସରକାରଙ୍କୁ ବୈଷୟିକ ଶିକ୍ଷା ସମ୍ବନ୍ଧରେ କିଛି ପରାମର୍ଶ ଦେବାକୁ ଆସି ମୁଁ ଥିଲି ସେ ସରକାରଙ୍କ ଅତିଥି - ଖଟିଖିଆ ଲାଇବେରିଆନ୍‌ମାନଙ୍କ ଜୀବନରୁ ବହୁତ ଦୂରରେ।

ଏପରି ସୌଖୀନତା ଭିତରେ କାହିଁକି ମୋ ଛାତିରେ ପବନ ରୁନ୍ଧ ହୋଇଯାଏ। ମନେହୁଏ ମୁଁ ଯେପରି କାହାର କିଛି ପ୍ରାପ୍ୟ ଛଡ଼ାଇ ନେଉଛି। ମନ ଆଦୌ ହାଲୁକା

ଲାଗେନି, କିଏ ସତେ ଯେମିତି ଭିତରେ ଭିତରେ କେଞ୍ଚୁଥାଏ, ଆଉ କହେ – 'ତୋ ପାଇଁ ଦିନକୁ ଯାହା ଖର୍ଚ୍ଚ ହେଉଛି ସେତିକିରେ ଗୋଟିଏ ପରିବାରର କେତେ ମାସ ଚଳିଯାଆନ୍ତା। ଏତେ ଏତେ ଲୋକ ଭୋକ ଉପାସରେ ଛଟପଟ ହେଉଥିବାବେଳେ ଏପରି ଭୋଗ ବିଳାସ !' ଅଜାଣତରେ ମନ ଭିତରେ ଭାବନା ଖେଳିଯାଏ, ମୁଁ ସତେ ଯେମିତି କିଛି ଚୋରି କରୁଛି।

ଛାତ୍ରଜୀବନର କଥା ମନେପଡ଼େ।

ହାଇସ୍କୁଲର ହଷ୍ଟେଲ ଜୀବନରେ ପଟା ଖଟ ଉପରେ ଖଣ୍ଡିଏ ଦରି ଓ ତା' ଉପରେ ଖଣ୍ଡିଏ ମୋଟା ହାତବୁଣା ଚଦର ହିଁ ଥିଲା ଆମ୍ଭମାନଙ୍କ ପଲଙ୍କ ସୁପାତି। ଧନୀ ଦରିଦ୍ରର ପାର୍ଥକ୍ୟ ସେଠାରେ ପ୍ରାୟ ନ ଥିଲା। କେଉଁ ଭାଗ୍ୟବାନର ଭାଗ୍ୟରେ ତକିଆଟିଏ ଜୁଟିଯାଏ, ନ ହେଲେ ବିଛଣା ଚଦର ତଳେ ଚଉଥା ହୋଇଥିବା ଧୋତି ଓ ଚଦର ଉପରେ ଗାମୁଛା ହିଁ ସାଧାରଣ ଭାବରେ ସମସ୍ତଙ୍କର ତକିଆ। କିରୋସିନ୍‌ରେ ଜଳୁଥିବା ଲଣ୍ଠନ ଆମ ଟେବୁଲ ଲେମ୍ପ। ସୁଇଚ୍ ଟିପି ଲାଇଟ୍ ଜଳାଇବା ବଦଳରେ ଲଣ୍ଠନ ଜାଳି ବତୀ ଟେକିବାକୁ ହୁଏ, ଆଉ ବତୀ ଉଠାଉଥିବା କଳ ଯେତେବେଳେ ବିଗିଡ଼ିଯାଏ, କାଚ ତଳକୁ ଖସାଇ ହାତରେ ବତୀକୁ ଉପରକୁ ଟାଣିବାକୁ ପଡ଼େ। ଫିତା ମୁଣ୍ଡରେ ଲାଗିଥିବା କଳାକୁ ଛିଣ୍ଡାଇ ତଳେ ପୋଛିଦେବା ଆକାଂକ୍ଷାକୁ ଦବାଇନେବାକୁ ପଡ଼େ ଯେହେତୁ ଘର ସଫା ରଖିବା ମଧ୍ୟ ଥାଏ ଆମମାନଙ୍କ କାମ। ଏକା କୋଠରିରେ ରହୁଥିବା ସବୁ ପିଲାଙ୍କ ଭିତରେ ପଇସା ଚାନ୍ଦାକରି କିଣା ହୋଇଥିବା ଝାଡୁରେ ପାଳିକରି ଥରକୁ ଥର ଆମେ ସବୁ ଘର ଓଳାଉଁ। କୂଅରୁ ନିଜେ ପାଣି କାଢ଼ି ମୁଣ୍ଡ ଉପରେ ତାକୁ ହାତିଶୁଣ୍ଢିଆ ସାଓ୍ୱାର କରୁ। ଲୁଗା ଶୁଖାଇ ସନ୍ଧ୍ୟାବେଳେ ନିଜେ ନିଜେ ଶୁଖିଲା ଲୁଗା ସଂଗ୍ରହ କରି ନେଉଁ। ଆମ ହଷ୍ଟେଲ ବଗିଚାରେ ମାଟି ହାଣୁ ଆଉ ଆମ ଭିତରେ ବଣ୍ଟା ହୋଇଥିବା ନିଜ ନିଜ ଜମିରେ ସବୁଠାରୁ ଭଲ ପନିପରିବା କରିବା ପାଇଁ ପ୍ରତିଯୋଗିତା କରୁଁ। ଆମକୁ ଯେଉଁ ଶିକ୍ଷକମାନେ ଦିଗ୍‌ଦର୍ଶନ ଦେଉଥିଲେ, ସେମାନଙ୍କ ଭିତରୁ କେହି ଗୃହତ୍ୟାଗୀ ସନ୍ୟାସୀ ନ ଥିଲେ କିମ୍ବା ଆମ ହଷ୍ଟେଲ କୌଣସି ଜଟାଜୁଟଧାରୀଙ୍କ ଆଶ୍ରମ ନ ଥିଲା। ମେକଲେଙ୍କ ପ୍ରବର୍ତ୍ତିତ ଇଂରାଜୀ ଶିକ୍ଷାର ଡିଗ୍ରୀ ଡିପ୍ଲୋମାଧାରୀମାନେ ହିଁ ଆମ ଶିକ୍ଷକ ଥିଲେ; କିନ୍ତୁ ଭାରତୀୟ ସଂସ୍କୃତି ତଥା ପରମ୍ପରା ସହିତ ସେମାନେ କେବଳ ଯେ ପରିଚିତ ଥିଲେ, ତା' ନୁହେଁ, ସେହି ପରମ୍ପରା ପ୍ରଦର୍ଶିତ ମାର୍ଗରେ ନିଜେ ପରିଚାଳିତ ହୋଇ ସେମାନଙ୍କ ତତ୍ତ୍ୱାବଧାନରେ ଥିବା ଛାତ୍ରମାନଙ୍କୁ ମଧ୍ୟ ସେ ବାଟରେ କଢ଼ାଇନେବାପାଇଁ ସଦାସର୍ବଦା ଚେଷ୍ଟା କରୁଥିଲେ। ସେମାନଙ୍କ ବ୍ୟକ୍ତିଗତ ଜୀବନ ଧାରଣ ପ୍ରଣାଳୀ ଅଜାଣତରେ ଆମକୁ ପ୍ରେରଣା ଯୋଗାଉଥିଲା।

ତା'ପରେ ଆସିଲା କଲେଜ ଜୀବନ । ସେତେବେଳେ ଭାରତର ଆକାଶରେ ଦେଖାଦେଇ ସାରିଥିଲେ - ଜ୍ୱଳନ୍ତ ଶୁକ୍ରତାରା ଗାନ୍ଧିଜୀ । ଆଣ୍ଠୁଯାଏ ଚୌଡ଼ା ଧୋତି, ଫୁଙ୍ଗୁଳା ଦେହ କିମ୍ବା ଖଣ୍ଡିଏ ମୋଟା ଚଦରର ଘୋଡ଼ଣୀ, ହଳେ ଚପଲ, ଆଉ ଅଣ୍ଟାରେ ଝୁଲୁଥିବା ଗୋଟାଏ ପକେଟ୍‌ୱାଚ - ସେ ଥିଲେ ଭାରତୀୟ ଜୀବନ ଓ ଚିନ୍ତାଧାରାର ପ୍ରତୀକ, ଆମ ଛାତ୍ର-ସମାଜର ଚରମ ଆଦର୍ଶ । ଗୁରୁଜନମାନଙ୍କ ସରଳ ତ୍ୟାଗପୂତ ଜୀବନ ଓ ଉଚ୍ଚ ଚିନ୍ତାଧାରା ଅଜାଣତରେ ଆମମାନଙ୍କ ମନ ଉପରେ ପ୍ରଭାବ ପକାଉଥିଲା - 'ଯଦ୍ ଯଦାଚରତି ଶ୍ରେଷ୍ଠଃ - ତତ୍ତ୍ୱଦେବେ ତରୋଜନାଃ, ସ ଯତ୍ ପ୍ରମାଣଂ କୁରୁତେ ଲୋକସ୍ତତ୍ ଅନୁବର୍ତ୍ତତେ' ନ୍ୟାୟରେ ।

ଆଜି କିନ୍ତୁ ସମୟ ବଦଳି ଯାଇଛି । ସରଳ ଓ ନିରାଡ଼ମ୍ବର ଭାରତୀୟ ସଂସ୍କୃତି ନିଜ ଗୌରବ ହରାଇ ଭୋଗ ବିଳାସମୟ ପାଶ୍ଚାତ୍ୟ ସଭ୍ୟତାର ରାଜଦରବାରରେ ହୋଇଛି ନତମସ୍ତକ - ନିଜକୁ କରିଛି ଦୀନହୀନ । କଥା ଓ କାମ ଭିତରେ ଦେଖାଦେଇଛି ଆକାଶ ଓ ପାତାଳର ବ୍ୟବଧାନ । କେବଳ କେତେଜଣଙ୍କୁ ଛାଡ଼ିଦେଲେ, ଗାନ୍ଧିଜୀଙ୍କ ସେଦିନର ପଟ୍ଟଶିଷ୍ୟମାନେ ମଧ୍ୟ ଆଜି କ୍ଷମତା ମୋହ ଓ ଭୋଗବିଳାସର ସ୍ୱର୍ଣ୍ଣମୃଗ ପଛରେ ଅଣନିଃଶ୍ୱାସୀ ହୋଇ ଗୋଡ଼ାଉଛନ୍ତି । ମୁକ୍ତିଯୁଦ୍ଧର ବିରତି ତଳେ କେଉଁ ରାସ୍ତାକଡ଼ ପୋଲର ପାରାପେଟ ଉପରେ ବନ୍ଧୁଗହଣରେ ବସି ଚୀନାବାଦାମ୍ ଛଡ଼ାଇ ଖାଉଁ ଖାଉଁ ବୁହେ ହସି ବେଦମ ହେବା ପରିବର୍ତ୍ତେ ଆଜି ସେମାନେ ପଞ୍ଚତାରକାବିଶିଷ୍ଟ ହୋଟେଲରେ ସୁଇମିଂ ପୁଲ୍ ଚାରିଆଡ଼େ ଅର୍ଦ୍ଧନଗ୍ନ ନରନାରୀଙ୍କ ଗହଣରେ ବସି ରହି ଖରା ପୋଇଁ ହ୍ୱିସ୍କି ଓ ସୋଡ଼ା ଗ୍ଲାସ୍‌ରେ ଚୁମା ଦେଲାବେଳେ ଭାରତର ଲୋକସଂଖ୍ୟାର ଷାଠିଏ ଭାଗ ଦାରିଦ୍ର୍ୟର ସୀମାରେଖା ତଳେ ନା ସତୁରି ଭାଗ ସେ ସମ୍ବନ୍ଧରେ ଯୁକ୍ତି ବାଢୁଛନ୍ତି; ଅଥବା ଯାବତୀୟ ଦୋଷତ୍ରୁଟି ପାଇଁ ମେକେଲେଙ୍କ ପ୍ରବର୍ତ୍ତିତ ଶିକ୍ଷାପଦ୍ଧତି ଦାୟୀ ବୋଲି ତର୍କ କାଢୁଛନ୍ତି । ନୈତିକତାହୀନ ନେତୃତ୍ୱ ଏବଂ ଆଦର୍ଶବିହୀନ ଉଚ୍ଛୃଙ୍ଖଳ ସମାଜ ଆଜି ଛାତ୍ରଜୀବନର ମାନକୁ ଓଲଟ ପାଲଟ କରିଦେଇଛି । ଗାନ୍ଧୀ-ଅରବିନ୍ଦ-ଲାଲବାହାଦୁରଙ୍କ ଭାରତରେ ସମସ୍ତେ ଆଜି ଧସାଇ ପଶୁଛନ୍ତି ସେଇ ତିନି-ଚାରି-ପାଞ୍ଚ ତାରକା ବିଶିଷ୍ଟ ହୋଟେଲମାନଙ୍କ ଭିତରକୁ- କିଏ କେଉଁ ମତଲବ ନେଇ । ଠେଲି ପେଲି ହୋଇ ମୁଁ ବି ଆଜି ଏକ ସମ୍ମାନିତ ଅତିଥି ରୂପରେ ସେପରି ଗୋଟିଏ ହୋଟେଲ ଭିତରେ ।

x x x

ସେଦିନ ସକାଳେ ଦାନ୍ତଘଷି ସାରିଲା ପରେ ରୁମ୍ ସର୍ଭିସ୍‌କୁ ଫୋନ୍‌କରି କପେ ଚା' ପଠାଇଦେବା ପାଇଁ କହିଥିଲି । ବିଲାତି କାଏଦାରୁ ବୋଧହୁଏ ଭାରତୀୟମାନେ

ସକାଳେ ଚା' ଖାଇବାରେ ଅଭ୍ୟସ୍ତ ହୋଇଯାଇଛନ୍ତି - ଆମେରିକାନ୍ କାଏଦାରେ କେବଳ ବ୍ରେକ୍‌ଫାଷ୍ଟ ଖାଇଲାବେଳେ ହିଁ ଚା' କିମ୍ବା କଫି ମିଳେ - ଆଗରୁ ନୁହେଁ । ବେଲ୍ ବୟ ଟ୍ରେରେ ଚା' ସରଞ୍ଜାମ ସବୁ ଧରି ନେଇଆସିଲା । କଳା ଟ୍ରାଉଜର୍, ଧଳା ଶାର୍ଟ - ବୋ ଟାଏ ନାଲି ଭେଷ୍ଟ (କୋଟ୍) ଆଉ କଳା ଜୋତା ଥିଲା ତାର ପରିଧାନ । ବେଶ୍ କମ୍ ବୟସର ମନେ ହେଉଥାଏ ।

ପରଦା ଟାଣିଦେଇ ମନ୍‌ରୋଭିଆ ସହରର କେତୋଟି ବଡ଼ ବଡ଼ କୋଠା ଚିହ୍ନାଇ ଦେବାପାଇଁ ତାକୁ କହିଲି । ସେ ଚିହ୍ନାଇ ଦେଲା - ପାଖରେ ଦିଶୁଥିବା ଗ୍ରୀକ୍ ଷ୍ଟାଇଲ୍‌ର ବିରାଟ କୋଠାଟି ମେସିନିକ୍ ହାଉସ୍ - ଦୂରରେ ଗୋଲ ଗମ୍ବୁଜ ଥିବା ପ୍ରାସାଦଟି ପାର୍ଲିଆମେଣ୍ଟ ଭବନ ଓ ତା' ସାମନାର ସୁନ୍ଦର କୋଠାଟି ପ୍ରେସିଡ଼େଣ୍ଟ ଟଲ୍‌ବାର୍ଟଙ୍କ ପ୍ରାସାଦ । ଦୂରରେ ଦିଶୁଥିବା ଅନ୍ୟ ବଡ଼ କୋଠାଟି ଟେମ୍ପଲ୍ ଅଫ୍ ଜଷ୍ଟିସ୍ । ଏଠାର ସୁପ୍ରିମ୍ କୋର୍ଟ, ବାଁ ପାଖରେ ସାତ ମହଲା କୋଠା ଶିକ୍ଷା ମନ୍ତ୍ରଣାଳୟ । ତାର ଏ ପାଖରେ ମିନିଷ୍ଟ୍ରି ଅଫ୍ ଇକନମିକ୍ ଏଫେୟାର୍ସ, ଆଉ ସେଇ ହ୍ରଦ ପରି ଯାହା ଦିଶୁଛି - ସେଇଟା ମେସୁରାଡ଼ୋ ନଦୀ - ସମୁଦ୍ରରେ ପଡ଼ିବା ଆଗରୁ ସହରକୁ ଦୁଇଭାଗ କରିଦେଇଛି ।

ସେ ମୋତେ ଏଥର ପଚାରିଲା, "ଆପଣ କଣ ଜଣେ ପର୍ଯ୍ୟଟକ ?" ମୁଁ ଉତ୍ତରଦେଲି - "ନା, ମୁଁ ଆସିଛି ଭାରତରୁ ତମ ସରକାରଙ୍କୁ ଓ ବିଶ୍ୱବିଦ୍ୟାଳୟକୁ ବୈଷୟିକ ଶିକ୍ଷା ସମ୍ବନ୍ଧରେ କିଛି ପରାମର୍ଶ ଦେବାପାଇଁ ।" ପିଲାର ମୁହଁ ଉଜ୍ଜ୍ୱଳ ହୋଇଉଠିଲା - କହିଲା, "ମୋର ଇଞ୍ଜିନିୟରିଂ ପଢ଼ିବା ପାଇଁ ଭାରି ଇଚ୍ଛା, କିନ୍ତୁ ପଇସା ଅଭାବ । ଏବର୍ଷ ହାଇସ୍କୁଲରୁ ପାସ୍ କଲାପରେ ୟୁନିଭାର୍ସିଟିରେ ନାମ ଲେଖାଇ ପାରିଲିନି । ଏଇଠି କିଛିଦିନ କାମ କରି ପଇସା କିଛି ବଞ୍ଚାଇ ୟୁନିଭାର୍ସିଟିରେ ବିଜ୍ଞାନ ପଢ଼ିବି ଓ ତା'ପରେ ସ୍କଲାରସିପ୍‌ଟିଏ ପାଇଲେ ପଢ଼ିବି ଇଞ୍ଜିନିୟରିଂ ।"

କଥା ଛଳରେ ମୁଁ କହିଲି - "ମୁଁ ଯାହା ଦେଖୁଛି, ମନେକରୁଛି ତମ ଏଇଠିକା ସ୍କୁଲମାନଙ୍କରେ ବେଶ୍ ଭଲ ପଢ଼ାପଢ଼ି ହେଉଥିବ । ତମେ କେଉଁ ସ୍କୁଲରେ ପଢୁଥିଲ ?" ପିଲାଟି ମୁହଁ ଶୁଖାଇ ଦେଲା - "ନା, ଆମ ସ୍କୁଲମାନଙ୍କରେ ପଢ଼ାପଢ଼ି ନିହାତି ବାଜେ - ମୁଁ ଗୋଟିଏ କାଉଣ୍ଟି ସ୍କୁଲ (ମଫସଲ ସ୍କୁଲ)ରୁ ପାସ୍‌କଲି ସେଇଠି କିଛି ପଢ଼ାପଢ଼ି ହୁଏନି । ଶିକ୍ଷକମାନେ ଅକ୍ସିଜେନ୍, ହାଇଡ୍ରୋଜେନ୍, କାର୍ବୋନ୍ କଥା କହନ୍ତି, କିନ୍ତୁ କିଛି ଦେଖାଇ ଦିଅନ୍ତିନି, ଆମେ କିଛି ଦେଖିବାକୁ ପାଉନା - ନ ଦେଖିଲେ ଠିକ୍ ଜାଣିହେବ କେମିତି ।"

"କାହିଁକି ତମ ସ୍କୁଲମାନଙ୍କରେ କଣ ଭଲ ଶିକ୍ଷକ ନାହାନ୍ତି । ଭଲ ଲାବୋରେଟରି ନାହିଁ?"

ସେ ଜବାବ୍ ଦେଲା, "ଏମାନେ କେବଳ ସହରମାନଙ୍କରେ ସବୁ ସୁବିଧା କରି ଦେଇଛନ୍ତି । ଆମକୁ କିଏ ପଚାରିବ? ସବୁ ଏତେ ମହଙ୍ଗା, ଆମ ବାପାମା'ମାନେ ଏତେ ଗରିବ । କେଉଁଠୁ ପଇସା ପାଇବେ ଯେ ବହିପତ୍ର କିଣିବାପାଇଁ? ଏଇଠି ତ ସବୁ ବହିପତ୍ର ଆମେରିକାରୁ ଆସେ - ସେ ଯେଉଁ ଆପଣଙ୍କ ଟେବୁଲ ଉପରେ ଡ଼ାଏରିଟି ପଡ଼ିଛି, ସେଡ଼ିକି ବହିଟିଏ ବି ୧୫ ଡ଼ଲାର୍ ହେବ, ସବୁ ଏତେ ଦାମ୍ ।"

"ଏଇଠି ତମପରି କାମ କରୁଥିବା ଲୋକେ କେତେ ପାଆନ୍ତି ।"

"ମାସକୁ ୫୦, ୬୦ ଡ଼ଲାର ମିଳିଲେ ଖୁବ୍ ବେଶି"... ମୁହଁ ମୋଡ଼ି ଯୋଡ଼ିଦେଲା "ଏ ହୋଟେଲରେ ପର୍ଯ୍ୟଟକମାନଙ୍କ ଦିନକର ଖର୍ଚ୍ଚ ।"

ମନରୋଭିଆରେ ପହଞ୍ଚି ମୁଁ ଯାହାସବୁ ଦେଖୁଥିଲି ସେ ସବୁ ଯେ ଉପର ଦେଖାଣିଆ ଗୋଟାଏ ସୋ - ଗୋଟାଏ ମୁଖା, ସେଥିରେ ମୋର ସନ୍ଦେହ ନ ଥିଲା । ଆଫ୍ରିକା ଏତେ ଉନ୍ନତ ଏବଂ ଆଫ୍ରିକାନ୍‌ମାନଙ୍କ ଜୀବନଧାରଣାର ମାନ ଏତେ ଉଚ୍ଚ ହୋଇପାରେନା । ସରକାରୀ ଅତିଥି ଭାବରେ ମୁଁ ଯାହାସବୁ ଦେଖୁଥିଲି, ତାହାଥିଲା ଲାଇବେରିଆର ଗୋଟିଏ ପାଖ - ଚନ୍ଦ୍ରର ଉଜ୍ଜ୍ୱଳ ପାଖପରି । ଅନ୍ୟ ପାଖଟି ବୋଧହୁଏ ଅନ୍ଧାର, ସେ ପାଖ କେଉଁଠି ଲୁଚିରହିଛି । ମୁଁ ଚାହୁଁଥିଲି ଲାଇବେରିଆର ପ୍ରକୃତ ଆଫ୍ରିକାନ୍ ରୂପ ଦେଖିବାପାଇଁ, ଆଉ ତାକୁ ଟିକିଏ ପାଖରୁ ଚିହ୍ନିବା ପାଇଁ ।

ଶନିବାର ଓ ରବିବାର ଏଇଠି ଅଫିସ୍ ସବୁ ବନ୍ଦ, ସରକାରୀ ଗାଡ଼ିର ଡ୍ରାଇଭରକୁ ମୁଁ କହି ଦେଇଥିଲି ଯେ, ରବିବାର ଦିନ ସେ ଆସିବା ଦରକାର ନାହିଁ । ମୁଁ ହୋଟେଲରୁ ବାହାରି ପଡ଼ିଥିଲି ଚାଲି ଚାଲି ଡ୍ୟୁକର ହୋଟେଲର 'ମା ବା ପଏଣ୍ଟ ପାହାଡ଼ ଉପରୁ ତଳକୁ । ଇଚ୍ଛାଥିଲା ସମୁଦ୍ର କୂଳକୁ ଯାଇ ଟିକିଏ ଘୁରିଆସିବି, ଆଉ ସୁବିଧା ଦେଖି ଏ ପାଖର ଦିନ-ମଜୁରିଆଙ୍କ ସଙ୍ଗରେ ଟିକିଏ ମିଶି ତାଙ୍କ ଜୀବନଯାପନ ପ୍ରଣାଳୀ ଦେଖିବି।

ମନରୋଭିଆର ପ୍ରଧାନ ରାଜପଥ ବ୍ରଡ଼୍‌ଷ୍ଟ୍ରୀଟ୍‌ରେ ୬ଟି ଲେନ୍ - ଗୋଟିଏ ଦିଗରୁ ଅନ୍ୟ ଦିଗକୁ ପାଖାପାଖି ତିନିଟି ଲେଖାଏଁ ଗାଡ଼ି ଯାଇପାରେ । ଦି'ପାଖରେ ଗୋଟିଏ ଗୋଟିଏ ଲେନ୍ ସାଧାରଣତଃ ଗାଡ଼ି ପାର୍କ ପାଇଁ ବ୍ୟବହୃତ ହୁଏ ଆଉ ୪ଟି ଲେନ୍‌ରେ ଗାଡ଼ି ସବୁ ଅନବରତ ଛୁଟିଥାଏ । ସମୁଦ୍ର କୂଳକୁ ଯିବା ବାଟରେ କିନ୍ତୁ କେବଳ ଦୁଇଟି ଲେନ୍ ମଝିରେ ଧଳାରଙ୍ଗର ପଟି ରୋଡ଼କୁ ବିଭାଗ କରିଦେଇଛି। ଦି'ଆଡିକି ମଣିଷ ଚଲା ଫୁଟପାଥ୍। ରୋଡ୍ ଦି ପାଖର କୃଷ୍ଣଚୂଡ଼ା ଗଛମାନଙ୍କରେ ଫୁଲ ଭର୍ତ୍ତି

ସତେ ଯେମିତି କେହି ହୋଲି ଖେଳି ସେମାନଙ୍କ ଉପରେ ଫଗୁ ଢାଳି ଦେଇଛି । ମଝିରେ ମଝିରେ ଆମ୍ବଗଛର ପତ୍ରପରି ଥିବା ପତ୍ରବିଶିଷ୍ଟ ଗଛମାନଙ୍କରେ ପେନ୍ଥା ପେନ୍ଥା ବାଇଗଣି ରଙ୍ଗର ଫୁଲ- କୃଷ୍ଣଚୂଡ଼ା ପରି । ନୂଆଣିଆ ଟିଣ ଚଦରଦିଆ କୋଠାମାନଙ୍କ ବାଡ଼ ଭିତରେ କନିଅର, ମନ୍ଦାର, କାଠଚମ୍ପା, କ୍ରୋଟନ୍ । ପାହାଡ଼ର ଚାରିକଡ଼େ ଝାଉଁ-ଆମ୍ବ-ଛୋଟପାମ୍-ଅମୃତଭଣ୍ଡା - ଠିକ୍ ଆମ ଦେଶ ପରି ଏ ଦେଶର ଗଛଗୁଡ଼ିକ । ମନେ ହେଉଥିଲା ପାହାଡ଼ର ଗୋଟିଏ କଡ଼କୁ ଦେଖାଯାଉଥିବା ଗଛଟି ଲଙ୍କାଆମ୍ବ - ଯଦିଓ ତାହା ଲଙ୍କାଆମ୍ବ ନ ଥିଲା ।

ସିମେଣ୍ଟ ଫୁଟ୍‌ପାଥ୍‌ଟି ସରୁ ହୋଇଯାଇ ଶେଷରେ ଗେରୁଆ ମୁରମ୍‌ର ମଣିଷ ଚଲାବାଟରେ ପରିଣତ ହେଲା । ସେହି ମଣିଷ ଚଲା ବାଟର ଦୁଇ ପାଖରେ ପ୍ରାୟ ଆଣ୍ଠୁଏ ଉଚ୍ଚର ଘାସ-ନିଘଞ୍ଚ ।

ପ୍ରଥମେ ଭାବିଥିଲି ବୁଢ଼ା ବୋଧହୁଏ ଘାସ କାଟୁଛି ଗାଈ ପାଇଁ; କିନ୍ତୁ ଜାଣି ସାରିଥିଲି ଯେ, ଏ ଦେଶରେ ଗାଈଗୋରୁ କିମ୍ବା ଘୋଡ଼ା ନାହାନ୍ତି, ସିଟିସି ମାଛିଙ୍କ ଦୌରାତ୍ମ୍ୟ ତଥା ଖୁରା ଫଟା ରୋଗ ଯୋଗୁଁ । ବୁଦା ଭିତରେ ବୁଢ଼ା କଣ କରୁଥିଲା କେଜାଣି ! ମୁଁ ତାକୁ ଡ଼ାକିଥିଲି ଘାସର ନାଁ ଜାଣିବା ପାଇଁ ଯେତେ ନୁହଁ, ସେଇ ଆଳରେ ତା' ସଙ୍ଗରେ ଦି'ପଦ କଥାବାର୍ତ୍ତା ହେବାପାଇଁ । ବୁଢ଼ା କିନ୍ତୁ ଗପକରିବା ଅବସ୍ଥାରେ ନଥିଲା । ମୁଁ ଆଗେଇଗଲି ସେଇ ମଣିଷ ଚଲା ବାଟରେ ।

ଏକ ପାଖରେ ପାହାଡ଼ - ଅନ୍ୟ ପାଖରେ ସମୁଦ୍ର ଆଉ ମଝିରେ ଏଇ ରାସ୍ତା । ସମୁଦ୍ର କୂଳ ପାଖେଇ ଆସିଲା ପରେ ଦେଖିଲି ବେଳାଭୂମି ପ୍ରାୟ ନାହିଁ - ଠିକ୍ ପଣ୍ଡିଚେରୀର ସମୁଦ୍ର କୂଳପରି । କୂଳରେ ଛୋଟ ଛୋଟ କଳା ପଥରର ଧାଡ଼ି ପାଚେରୀ ପରି ଠିଆହୋଇ ରହିଛି, ଆଉ ସେଇ କଳା ପଥରମାନଙ୍କ ଛାତିରେ ପାହାର ପରେ ପାହାର ପିଟି ଚାଲିଛି ମହାସାଗର- ପଥରୁଦ୍ଧ କରିଥିବା ହେତୁ ବୋଧହୁଏ କ୍ରୋଧରେ ଥରି ଥରି - ମୁହଁରୁ ଫେଣ ନିଗାଡ଼ି ।

ଟିକିଏ ଆଗରେ ରାସ୍ତାର ଡ଼ାହାଣ ଦିଗକୁ କେତୋଟି ଘର ଦେଖିଲି । ମନେହେଲା ଚିହ୍ନା ଚିହ୍ନା - କେଉଁଠି ଦେଖିଛି । କଟକରେ ହିନ୍ଦ୍ ସିନେମା ପାଖରୁ ମହାନଦୀ ଆଡ଼ିକି ଗଲାବେଳେ ତାଳଦଣ୍ଡା କୂଳରେ ! ସମ୍ବଲପୁର ରୋଡ୍ ଷ୍ଟେସନ୍ ପାଖରେ । ରାଉରକେଲା ରିଂ ରୋଡ଼୍‌ରୁ ଫର୍ଟିଲାଇଜର ପ୍ଲାଣ୍ଟ ଆଡ଼ିକି ଗଲାବେଳେ ? କଲିକତା ନଗରୀର ହାଓଡ଼ା ଷ୍ଟେସନ୍ ପାଖାପାଖି ନା ନିଜାମୁଦ୍ଦିନ୍ ଷ୍ଟେସନ୍, ପହଞ୍ଚିବା ପୂର୍ବରୁ ଭାରତର ରାଜଧାନୀ ଦିଲ୍ଲୀ ନଗରୀରେ ? ସେ ଘର ସବୁ ଆଡ଼ିକି ମୁହାଁଇଲି । ଦୁନିଆଯାକର ଫଟାଟୁଟା ଏଜ୍‌ବେଷ୍ଟସ୍ ସିଟ୍, କଳଙ୍କିଧରା ଅଥବା

ଅଲକାତର ଡ୍ରମ୍‌କଟା ଟିଣ ଚଦରର ଘେରା କାନ୍ଥ ବାଡ଼, ଘାସପତ୍ର ଆଉ ଯାବତୀୟ ଭଙ୍ଗାରୁଜା ଜିନିଷରେ ଛପର ଦିଆଯାଇଥିବା ଛାତ। ଗୋଟିଏ ଘର ସାମ୍‌ନାରେ କେତେ ଯୁବକ ଠିଆହୋଇଥାଆନ୍ତି - ପାଖରେ କେତୋଟି ଛୋଟ ପିଲା - ଟିକିଏ ଦୂରରେ କେତେଜଣ ମହିଳା । ଯୁବକଦଳକୁ ପଚାରିଲି ସେ ଘର ଗୋଟାଏ ଛୋଟ ହୋଟେଲ୍ ନା କୌଣସି ପ୍ରାଇଭେଟ୍ ଘର । ସେମାନେ ମୋ ପ୍ରଶ୍ନ ବୁଝିପାରିଲେନି । ପୁଣି ପଚାରିଲି ସେ ସମସ୍ତେ କ'ଣ ସେଇଠି ଚା' ପା ଖାଇବା ପାଇଁ ଜମା ହୋଇଛନ୍ତି ? ସେମାନେ ପରସ୍ପରକୁ ଚହାଁଚହିଁ ହେଲେ, ଜଣେ କଥା ବୁଝିଲା କହିଲା, 'ଆମେ ଏଇଠି ରହୁଁ ।' ମୁଁ ପଚାରିଲି, 'ଭଡ଼ା ଦେଇ ?' ସେ ଟିକିଏ ଥମିଯାଇ ଓଲଟାଇଲା - 'କାହିଁକି ପଚାରୁଛନ୍ତି ?' ମୁଁ କହିଲି - 'ମୁଁ ଭାରତରୁ ଆସିଛି - ସେମାନେ କେମିତି ରହନ୍ତି - କ'ଣ ଖାଆନ୍ତି, କିପରି ଚଳନ୍ତି, ଜାଣିବାକୁ ମୋର ଭାରି ଆଗ୍ରହ ।' ଅନ୍ୟମାନେ ପଚାରିଲେ - 'ଇଣ୍ଡିଆ କେଉଁଠି - ଯୁବକଟି ସେମାନଙ୍କୁ ବେଶ୍ ବୁଝାଇ ଦେଲା, ପରେ ପରେ ମୋର ପ୍ରଶ୍ନର ଉତ୍ତରଦେଇ କହିଲା - 'ଆମେ ଏଇଠି ରହୁ ଆଉ ଏଇଠି ଖାଉଁ ।'

ରହିବା ପାଇଁ ଆଉ ଖାଇବା ପାଇଁ ଦିନକୁ କେତେଦିଅ ?'

'ଏକ ଡ଼ଲାର୍ ।'

'ଏକ ଡ଼ଲାର୍‌ରେ ରହିବା ଖର୍ଚ୍ଚ ଓ ଖାଇବା ଖର୍ଚ୍ଚ ?'

ସେ ପଚାରିଲା - 'କଣ ଖୁବ୍ ବେଶି ହେଲା ନା ଖୁବ୍ କମ୍ ?'

ମୁଁ ଖାଲି ହସିଦେଲି । କହିଲି - 'ଏକ ଡ଼ଲାର୍‌ରେ କ'ଣ ଯଥେଷ୍ଟ ଖାଇବାକୁ ମିଳେ ? ଏଥର ସେ ମଧ୍ୟ ହସିଲା - କହିଲା - 'କାହିଁକି ନୁହେଁ ? ଚାଉଳ ଗୋଟିଏ ମେଜରକୁ ପ୍ରାୟ ୨୦-୨୨ ସେଣ୍ଟ୍, ଆଉ କସାଭୁର ଦାମ୍ ବା କେତେ ?

ମୁଁ କହିଲି - 'ଆପଣଙ୍କ ପରି ଲୋକ ତ ଥରକୁ ଦୁଇ ମେଜର୍ ଚାଉଳ ଖାଇଦେଉଥିବେ !' ସମସ୍ତେ ହସିଲେ - କହିଲେ 'ନା, ଗୋଟିଏ ମେଜର୍‌ରେ ଜଣକର ଦୁଇଓଳି ଚଳିଯିବ, ଆଉ ଗୋଟିଏ କସାଭୁକୁ ତିନି ଚାରି ଲୋକ ଖାଇବେ । ଫଳ ମୂଳ ତ ଟୋକେଇକୁ କେତେ ସେଣ୍ଟ୍ - ଆଉ ସମୁଦ୍ର ଏବଂ ଝିଲର ମାଛ ।'

ମୋତେ ଟିକିଏ ଆଶ୍ଚର୍ଯ୍ୟ ଲାଗିଲା । କସାଭୁ ଅବଶ୍ୟ କନ୍ଦମୂଳ ପରି - ସେଥିରୁ ଏମାନେ ନାନା ରକମର ତରକାରି କରନ୍ତି । ପତ୍ରକୁ ଶାଗ କରନ୍ତି । ଅମୃତଭଣ୍ଡା, କଦଳୀ ତ ପ୍ରଚୁର । ଆମ୍ବ, ମୌସୁମ୍ବି, ପାମ୍‌ନଟ୍‌ଗୁଡ଼ିକ ତ ଏଠାର ଜଙ୍ଗଲୀ ଗଛ-ଜଙ୍ଗଲରୁ ଯିଏ ଯେତେ ଗୋଟାଇ ଆଣିପାରିଲା । ଆଉ ଆମ୍ବ ଏତେ ବେଶୀ ହୁଏ ଯେ, ଏମାନେ କୁଆଡ଼େ ଦିନ ଦିନ ଧରି ଖାଲି ଆମ୍ବ ଖାଇ ଚଳିଯାଆନ୍ତି। ଠିକ୍

କେତେକାଂଶରେ ଆମ ଫୁଲବାଣୀ କୋରାପୁଟର ଆଦିବାସୀଙ୍କ ପରି । କଥାବାର୍ତ୍ତାରୁ ବୁଝିଲି, ଏମାନଙ୍କ ଭିତରୁ ଅନେକ ଦିନମଜୁରିଆ । ମଜୁରୀର ହାର ଦିନକୁ ଦେଢ଼ ଡ଼ଲାରରୁ ଦୁଇ ଡ଼ଲାର । ରହିବା ଓ ଖାଇବାରେ ଗୋଟିଏ ଡ଼ଲାର ଗଲାପରେ ବାକି ଯାହାବଳେ, ସେଥିରେ ସେମାନେ ମଦ ପିଅନ୍ତି, ମଉଜ ମଜଲିସ୍ କରନ୍ତି, ଆଉ ଭଲ ଲୁଗାପଟା ପିନ୍ଧନ୍ତି । ଆଦିବାସୀ କାହିଁକି - ଆମ ମଧ୍ୟବିତ୍ତ ସହରିଆଙ୍କ ଠାରୁ ମଧ୍ୟ ଏମାନଙ୍କ ବେଶଭୂଷା ଆହୁରି ଦାମିକା ଓ ସୁନ୍ଦର । ପୁଅମାନେ ପ୍ରାୟ ଟ୍ରାଉଜର୍ ପିନ୍ଧନ୍ତି ଓ ଚିଙ୍କ୍‌ଲୁଥ୍‌ର ଶାର୍ଟ - ବେଳେବେଳେ ସୁନ୍ଦର ମେସିନ୍ ଏମ୍ବ୍ରୋଏଡେରୀ କରା। ଘାନାରେ ବୟସ୍କ ଲୋକେ ମୋଟା ଚାଦର ଘେରାଇ ହୋଇଥିବା ଅଥବା ଆରବୀୟ ଲମ୍ବାକୋଟ ପିନ୍ଧୁଥିବା ଦେଖିଥିଲି - ଏଇଠି କିନ୍ତୁ ସମସ୍ତେ ପ୍ରାୟ ଆମେରିକାନଙ୍କ ପରି ଲୁଗାପଟା ପିନ୍ଧନ୍ତି । ଝିଅମାନେ ଆମେରିକାନ୍‌ମାନଙ୍କ ପରି ସ୍କାର୍ଟ ବ୍ଲାଉସ୍ ପିନ୍ଧୁଥିଲେ ମଧ୍ୟ ଅନେକ ମେକ୍‌ସି ଓ ମେକ୍‌ସି ପରି ମୋଟା ଛିଟର ଲାପା ପିନ୍ଧନ୍ତି । ମୁଣ୍ଡରେ ସୁନ୍ଦର ଛିଟ କନା ପଗଡ଼ି ପରି ଭିଡ଼ି ଦେଇଥାଆନ୍ତି । ଅନେକଙ୍କ କାନରେ ଥାଏ ଇଏର୍ ରିଙ୍ଗ୍ - ହାତୀଦାନ୍ତ ଠାରୁ ବ୍ରୋଞ୍ଜ ପର୍ଯ୍ୟନ୍ତ ଜିନିଷରେ ତିଆରି ଅଦ୍ଭୁତ ଡ଼ିଜାଇନ୍‌ର - ଆଫ୍ରିକା ମହାଦେଶର ନକ୍‌ସା ଠାରୁ ଆରମ୍ଭ କରି କେଉଁ ଗୋଟାଏ ଅଖାଡୁଆ ମଣିଷର କିମ୍ୱା ଜନ୍ତୁର ଆକାର ପର୍ଯ୍ୟନ୍ତ । ଘାନାରେ ମା' ମାନେ ଯେମିତି ଛୁଆମାନଙ୍କୁ ପଛପଟେ ବାନ୍ଧିକରି ବୁଲନ୍ତି, ଏଇଠି ବି ଉଣା ଅଧିକେ ସେମିତି । ଆମେରିକାର ପ୍ରଭାବ ଏଇଠି ଖୁବ୍ ବେଶି - ସ୍ୱାଧୀନ ଗଣରାଜ୍ୟ ହେଲେ ମଧ୍ୟ ଠିକ୍ ଗୋଟିଏ ଆମେରିକାନ୍ କଲୋନୀ ପରି । ସେଥିପାଇଁ ଲାଇବେରିଆକୁ ଏଆଡ଼ିକି କଳା ଆମେରିକା - ଛୋଟ ଆମେରିକା - ଆଫ୍ରିକାନ୍ ଆମେରିକା ବୋଲି ଅନେକେ କହନ୍ତି । ସେପରି ନାମକରଣ କେତେକାଂଶରେ ସ୍ୱାଭାବିକ ମଧ୍ୟ ।

୪୦୦ ବର୍ଷ ତଳେ ଏହି ଆଫ୍ରିକା ମହାଦେଶର ମଣିଷ ଓ ମଣିଷ ଛୁଆ ସବୁ ବଣର ହରିଣ ପରି ଧରା ହୋଇ ଆରବ ଦେଶର ବଜାରମାନଙ୍କରେ ବିକ୍ରୀ ହେଉଥିଲେ । ଆଫ୍ରିକାର ଟ୍ରାଇବାଲ୍ ଚିଫ୍ ସାମନ୍ତ ରାଜାମାନେ ଆରବ ତଥା ଗୋରା ବେପାରୀମାନଙ୍କ ଠାରୁ ବିଦେଶୀ ମଦ ଓ ନାନା ରଙ୍ଗର ପୋଷାକ ପରିଚ୍ଛଦ ତଥା ସାଜ ସରଞ୍ଜାମ ପାଇ ତାଙ୍କ ନିଜ ଗୋଷ୍ଠୀ ଅଧୀନସ୍ଥ ନିଗ୍ରୋମାନଙ୍କୁ ମୂଲ ଲଗାଇବା ବାହାନାରେ ସଂଗ୍ରହ କରି ନେବାପାଇଁ ଅନୁମତି ଦେଉଥିଲେ । ଥରେ ଜାହାଜରେ ଚଢ଼ାଇ ଦେଲାପରେ ଏଇ ତଥାକଥିତ ମଜୁରିଆମାନେ ଗାଈ, ବଳଦ, ଛେଳି, ମେଣ୍ଢା ପରି ନିଃସହାୟ ହୋଇପଡୁଥିଲେ । ଦୟାମୟା ଶୂନ୍ୟ ଅର୍ଥଲିପ୍ସୁ ବେପାରୀମାନେ ସେମାନଙ୍କୁ ବଜାରର ପଣ୍ୟଦ୍ରବ୍ୟ କରି ସ୍ୱାମୀଠାରୁ ସ୍ତ୍ରୀକୁ ମା'ଠାରୁ ପୁଅ ଓ ଝିଅକୁ ଅଲଗା ଅଲଗା କରି ବିକ୍ରୀ କରୁଥିଲେ, ଆଉ ସେମାନଙ୍କୁ କିଣି ନେଉଥିଲେ

ଆମେରିକାର ଗୋରା ଲୋକମାନେ ତାଙ୍କ କପା ଚାଷ ହେଉଥିବା ଜମିମାନଙ୍କରେ ବେଠି ଖଟାଇବା ପାଇଁ । ଗାଈ ବଳଦର ମାଲିକ ଯେପରି ବାଛୁରୀମାନଙ୍କ ମଧ୍ୟ ମାଲିକ ବନିଯାଏ, ଏହି କ୍ରୀତଦାସମାନଙ୍କ ପୁଅ ଝିଅମାନେ ମଧ୍ୟ ଠିକ୍ ସେପରି ତାଙ୍କ ମାଲିକର ପଣ୍ୟଦ୍ରବ୍ୟ ହୋଇଯାଉଥିଲେ । ବିକ୍ରୀ ବନ୍ଧକ ପାଇଁ । ସେହି କଳା କ୍ରୀତଦାସମାନଙ୍କ ଦୁଃଖମୟ ଜୀବନ କାହାଣୀ 'ଟମକକାଙ୍କ କୁଟୀର'ରେ ବର୍ଣ୍ଣନା କରି ଲେଖିକା ଷ୍ଟୋ ଅମର ହୋଇଯାଇଛନ୍ତି ।

ଦିନ ଆସିଲା, ୟୁରୋପ ଏବଂ ଆମେରିକାର କେତେ ନୀତିବାନ ଗୋରାଲୋକ ଏହି ଘୃଣ୍ୟ କ୍ରୀତଦାସ ପ୍ରଥା ବିରୁଦ୍ଧରେ ସ୍ୱର ଉତ୍ତୋଳନ କଲେ, ଆଉ ଯୁକ୍ତରାଷ୍ଟ୍ର ଆମେରିକାରେ ଦେଖାଦେଲେ ମହାପୁରୁଷ ଆବ୍ରାହମ୍ ଲିଙ୍କନ୍ । ଯୁକ୍ତରାଷ୍ଟ୍ରରେ ଗୃହଯୁଦ୍ଧ ଆରମ୍ଭହେଲା । କ୍ରୀତଦାସ ପ୍ରଥା ଲୋପହେଲା ସତ କିନ୍ତୁ ଆତତାୟୀର ଗୁଳିରେ ନିଜର ପ୍ରାଣ ବଳି ଦେଇ ଲିଙ୍କନ୍ ହେଲେ ଅମର ଶହୀଦ୍। ଶ୍ରୀମତୀ ମିଚେଲ୍‌ଙ୍କ ଐତିହାସିକ ଉପନ୍ୟାସ 'ଗନ୍ ଉଇଥ୍ ଦ ଉଇଣ୍ଡ୍' ଏହି କ୍ରୀତଦାସମାନଙ୍କ ମୁକ୍ତି ଓ ସ୍ୱାଧୀନତା ପ୍ରାପ୍ତି ତଥା ଯୁକ୍ତରାଷ୍ଟ୍ରର ଗୃହଯୁଦ୍ଧ ସମ୍ବନ୍ଧୀୟ ଏକ ଅମର କୃତୀ ।

ପ୍ରାୟ ୧୫୫ ବର୍ଷ ତଳେ କ୍ରୀତଦାସଙ୍କ ବଂଶଧର ଭିତରୁ କେତେ ନିଜ ଆଫ୍ରିକା ମା'ର କୋଳକୁ ଆଉଥରେ ଫେରିଯିବା ପାଇଁ ସ୍ୱପ୍ନ ଦେଖିଥିଲେ । ଆମେରିକାନ୍ କଲୋନାଇଜେସନ୍ ସୋସାଇଟି ନାମକ ଗୋଟିଏ ସଂସ୍ଥା ଗଠିତ ହେଲା ଓ ସେ ସଂସ୍ଥାର କେତେ ସଭ୍ୟ ପଶ୍ଚିମ ଆଫ୍ରିକାର ଏହି ଅଞ୍ଚଳରେ ଥିବା ଟ୍ରାଇବଲ୍ ଚିଫ୍‌ମାନଙ୍କ ସଙ୍ଗରେ କଥାବାର୍ତ୍ତା କରି ଓ ସେମାନଙ୍କଠାରୁ ସନନ୍ଦ ନେଇ ୧୮୨୨ ଖ୍ରୀଷ୍ଟାବ୍ଦରେ ମନ୍‌ରୋଭିଆ ପାଖର ପ୍ରୋଭିଡେନ୍‌ସ ଦ୍ୱୀପରେ ଓହ୍ଲାଇଲେ । ପରେ ପରେ ସେମାନେ ମୂଳ ଭୂଖଣ୍ଡକୁ ପଶି ବସତି ସ୍ଥାପନ କଲେ । ତା'ପରେ ତୁହାକୁ ତୁହା ନୂଆ ଦଳ ସବୁ ଆସିଲେ, ନୂଆ ସନନ୍ଦ ହେଲା ଓ ନୂଆ ବସତି ସବୁ ସ୍ଥାପିତ ହେଲା । ୧୮୩୮ ରେ ଏହି ବସତି ସବୁ ଏକାଠି ହୋଇ ନିଜ ଭିତରେ ଗୋଟିଏ ସ୍ୱାୟତ୍ତ ଶାସନ ସଂସ୍ଥା ଗଢ଼ିନେଲେ । ପରେ ପରେ ଇଉରୋପୀୟନ୍ କଲୋନୀମାନଙ୍କ ପ୍ରରୋଚନାରେ ପଡ଼ି କେତେ ଟ୍ରାଇବଲ୍ ଚିଫ୍ ଏଇ ସଂସ୍ଥା ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିଥିଲେ; କିନ୍ତୁ ଆମେରିକାର ବଳରେ ବଳୀୟାନ୍ ଏଇ ନୂତନ ସଂସ୍ଥା ଯୁଦ୍ଧରେ ଜୟଲାଭ କଲା ଓ ୧୮୪୭ ରେ ସେହି ସ୍ୱାୟତ୍ତ ଶାସିତ ଅଞ୍ଚଳ ହେଲା – 'ଲାଇବେରିଆ ଗଣରାଜ୍ୟ', ଆଫ୍ରିକା ମହାଦେଶର ପ୍ରଥମ କଳା ସ୍ୱାଧୀନ ଓ ସାର୍ବଭୌମ ଗଣରାଜ୍ୟ । ଭାରତ ସ୍ୱାଧୀନ ହେବାର ଠିକ୍ ୧୦୦ ବର୍ଷ ପୂର୍ବରୁ ଏହି ରାଜ୍ୟ ସ୍ୱାଧୀନ ହୋଇଥିଲା ।

ଯେଉଁ କଳାଲୋକେ ଆମେରିକାରୁ ଆସିଲେ, ତାଙ୍କ ପୂର୍ବପୁରୁଷ ଆଫ୍ରିକୀୟ ଥିଲେ ସତ – ଏମାନେ କିନ୍ତୁ ଆଚାର ବିଚାର ଚାଲିଚଳଣ, ଢଙ୍ଗରଙ୍ଗ ଓ

କଥାଭାଷାରେ ଥିଲେ ସଂପୂର୍ଣ୍ଣ ଆମେରିକାନ୍ । କେବଳ ରକ୍ତ ଓ ଦେହର ରଙ୍ଗ ଛଡ଼ା ଅନ୍ୟ କୌଣସି ବିଷୟରେ ଆଫ୍ରିକୀୟ ଅଧିବାସୀ କଳାଲୋକଙ୍କ ସହିତ ଏମାନଙ୍କ ସାମଞ୍ଜସ୍ୟ ନଥିଲା । ନୂତନ ପ୍ରତିଷ୍ଠିତ ଲାଇବେରିଆ ଗଣରାଜ୍ୟର ଶାସନ ପଦ୍ଧତି, ଚଳନ୍ତି ମୁଦ୍ରା ଓ ଏପରିକି ଭାଷା ମଧ୍ୟ ହେଲା ଆମେରିକାନ୍ । ଆମେରିକାନ୍ ଇଂଲିଶ୍ ହେଲା ଦେଶର ଭାଷା, ଆମେରିକାନ୍ ଡ଼ଲାର୍ ହେଲା ଦେଶର ମୁଦ୍ରା – ରାଜ୍ୟର ସର୍ବୋଚ୍ଚ ଅଧିକାରୀ ହେଲେ ନିର୍ବାଚିତ ପ୍ରେସିଡ଼େଣ୍ଟ । ଛୋଟ ଛୋଟ ଜିଲ୍ଲା ସବୁ ହେଲା ଷ୍ଟେଟ୍ ଓ  ଜାତୀୟ ପତାକା ମଧ୍ୟ ଷ୍ଟାରସ୍ ଏଣ୍ଡ୍ ଷ୍ଟ୍ରାଇପସ୍‌ର ରୂପ ନେଲା । ତେଣୁ ପୋଷାକ ପରିଚ୍ଛଦ ମଧ୍ୟ ହେଲା ଆମେରିକାନ୍ – ଆମେରିକାର ଶିକ୍ଷା ଦୀକ୍ଷା, ଆମେରିକାର ଅର୍ଥବଳ ଓ ଆମେରିକାର ଶାସନପଦ୍ଧତି ନେଇ ୧୩୦ ବର୍ଷର ସ୍ୱାଧୀନତା ପରେ ମଧ୍ୟ ଦେଶର ଅବସ୍ଥା ଏପରି ହେଲା କାହିଁକି ?

ସେ ଘର ପାଖରୁ ଆଗେଇ ଗଲାବେଳେ ସେହି ଚିନ୍ତା ହିଁ ମୋ ମନକୁ ଆଲୋଡ଼ିତ କରୁଥିଲା । ଅନେକ ବର୍ଷ ତଳେ ଯୁକ୍ତରାଷ୍ଟ୍ର ଆମେରିକାରେ ଥିଲାବେଳେ ମୁଁ ସହରମାନଙ୍କରେ କଳା ଲୋକଙ୍କ ବସ୍ତି (ସ୍ଲମ୍) ସବୁ ଦେଖିଥିଲି । ଏହି କଳା ଆମେରିକାନ୍‌ମାନେ ତେବେ କଣ ନିଜେ ଗୋଟିଏ ଗୋଟିଏ ନବାବ୍ ବନି ଦେଶୀୟ କଳାମାନଙ୍କ ବସ୍ତି ସୃଷ୍ଟି କରୁଛନ୍ତି ? ଯୁକ୍ତରାଷ୍ଟ୍ର ଆମେରିକାର ବ୍ୟକ୍ତିକୈନ୍ଦ୍ରିକ ସ୍ୱାଧୀନ ଅର୍ଥନୀତି ତେବେ କଣ ନାଗରିକ ଓ ନାଗରିକ ଭିତରେ ଏପରି ଆର୍ଥିକ ତାରତମ୍ୟ ଓ ବ୍ୟବଧାନ ସୃଷ୍ଟି କରେ ? ସେ ସବୁ ଭାବି ଭାବି ମୁଁ କିଛିଦୂର ଯାଇଛି, ରାସ୍ତାର ଅନ୍ୟକଡ଼ରେ ଗୋଟିଏ ଗାଡ଼ି ଠିଆହେବାର ଲକ୍ଷ୍ୟକଲି । ଗାଡ଼ିରୁ ଯେଉଁ ଭଦ୍ର ମହିଳା ଓହ୍ଲାଇଲେ ସେ ଆମ ଭାରତୀୟ ଶାଢ଼ୀ ପିନ୍ଧିଥିଲେ । ମୁଁ ଠିଆହୋଇ ସେ ଆଡ଼ିକି ଅନାଇଥାଏଁ । ଗାଡ଼ିରୁ ଜଣେ ଭଦ୍ରଲୋକ ଓହ୍ଲାଇ ମୋ ଆଡ଼ିକି ଅନାଇଲେ । ମୋର ପୋଷାକରୁ ବୋଧହୁଏ ଜାଣିପାରିଲେ ଯେ, ମୁଁ ଭାରତୀୟ – ମୋତେ ରାସ୍ତାର ସେ ପାଖକୁ ଯିବାକୁ ଇଙ୍ଗିତ ଦେଲେ । ଦ୍ରୁତଗାମୀ ଗାଡ଼ିମାନଙ୍କୁ ଲକ୍ଷ୍ୟ କରି କରି ମୁଁ ରାସ୍ତା ଡ଼େଇଁଗଲି । କରମର୍ଦ୍ଦନ ପରେ ଯେତେବେଳେ ପରିଚୟ ଦିଆନିଆ ହେଲା – ମୁଁ ଜାଣିଲି ସେମାନେ ଭାରତୀୟ । ଚିନ୍ତା ଭିତରେ ବୁଡ଼ିରହି ମୁଁ ଲକ୍ଷ୍ୟ କରି ନ ଥିଲି ଯେ, ସମୁଦ୍ର କୂଳରେ ଥିବା ଦୁଇଟି ଉଏରହାଉସ୍ ପାଖରେ କେତୋଟି ସୁନ୍ଦର କୋଠା ଛିଡ଼ାହୋଇ ରହିଛି । ଭଦ୍ରଲୋକ ଓ ଭଦ୍ର ମହିଳା ସେ ଭିତରୁ ଗୋଟିଏ ଫ୍ଲାଟ୍‌କୁ ଯିବାପାଇଁ ମୋତେ ନିମନ୍ତ୍ରଣ କଲେ । ଘର ଭିତରକୁ ଗଲାପରେ ମୁଁ ଜାଣିଲି ହଂକଂର ବିଖ୍ୟାତ ଭାରତୀୟ ବ୍ୟବସାୟୀ ୱାତନ୍‌ମଲଙ୍କ ମନରୋଭିଆରେ ଥିବା ପ୍ରତିଷ୍ଠାନକୁ ମୁଁ ଆସିଛି । ବୟସ୍କ କେ.ଡ଼ି. ଦାସ୍‌ବାନୀ ଏଠାକାର ବ୍ୟବସାୟ ପ୍ରତିଷ୍ଠାନର ଡ଼ାଇରେକ୍ଟର । ଏ ଘରଟି ଦାସ୍‌ବାନୀଙ୍କ ବାସଗୃହ ଏବଂ ଯେଉଁ ଭଦ୍ରଲୋକ ମୋତେ

ପାଛୋଟି ନେଲେ, ସିଏ ପ୍ରତିଷ୍ଠାନର ଜଣେ ମାଲିକ - ଏବେ ମନରୋଭିଆ ଗସ୍ତରେ । ୧୯୪୭ରେ ଆମେରିକାରୁ ଭାରତ ଫେରିଆସିବା ବାଟରେ ହଂକଂରେ ମୁଁ ସେମାନଙ୍କ ବ୍ୟବସାୟ ପ୍ରତିଷ୍ଠାନ ଦେଖି ଚମତ୍କୃତ ହୋଇଥିଲି ଓ ଭାରତୀୟମାନେ ବ୍ୟବସାୟରେ ଏତେ ଉପରକୁ ଉଠିପାରନ୍ତି ଜାଣି ଗର୍ବ ଅନୁଭବ କରିଥିଲି ।

ମିସେସ୍ ଦାସଓ୍ୱାନୀଙ୍କ ଚା' ଅତି ଚମତ୍କାର ଲାଗୁଥିଲା । ଏଇଠି ଗାଈ ମଇଁଷି ନାହିଁ ବୋଲି ତଟକା ଦୁଧ ସ୍ୱପ୍ନ - ଟିଣ ଦୁଧ ବା କନ୍‌ଡ଼େନ୍‌ସଡ଼ ମିଲ୍‌କ ବେଳେବେଳେ ଖଟାଳିଆ ଧରି ଯାଇଥାଏ - ଚା' ପୁଣି ଅତି ପାଣିଆ - ତଥାପି କପେ ଚା' କିମ୍ବା କଫିକୁ ୮୦ ସେଣ୍ଟ୍ । ଭାରତରେ ଘରକୁ ଯିଏ ବୁଲିବାକୁ ଆସେ, ତା ସାଙ୍ଗରେ ଅଥବା କାହା ଘରକୁ ବୁଲିବାକୁ ଗଲେ ସେଇଠି ଚା' ଖାଇ ଖାଇ ପ୍ରତ୍ୟେକ ସାଧାରଣ ଭାରତୀୟଙ୍କ ଚା'ଖିଆ ଅଭ୍ୟାସ ବଢ଼ି ଯାଇଥାଏ - ଭଲ ଚା' କପେ ନ ମିଳିଲେ କିଛି ଗୋଟାଏ ଅତ୍ୟାବଶ୍ୟକ ଜିନିଷର ଅଭାବ ଥିଲାପରି ମନେହୁଏ - ମନ ଉଦାସ ଲାଗେ । ମିସେସ୍ ଦାସଓ୍ୱାନୀଙ୍କୁ ଆଉ କପେ ଚା' ମାଗି ମୁଁ ମଣିଷ ମନରେ ଚା' ଅଭାବର ପ୍ରଭାବ ବଖାଣୁଥିଲି । ଏ ଭିତରେ ଆଉ ଗୋଟିଏ ଯୋଡ଼ି ଭାରତୀୟ ସ୍ୱାମୀ ସ୍ତ୍ରୀ ସେ ଘରକୁ ଚାଲିଆସିଥିଲେ । ଗପ ବେଶ୍ ଜମିଉଠିଲା । ମନରୋଭିଆରେ ଭାରତର ଜଣେ ନୂତନ ଆଗନ୍ତୁକଙ୍କ ମାନସିକ ପ୍ରତିକ୍ରିୟାର କାହାଣୀ ସେ ସମସ୍ତେ ବେଶ୍ ଉପଭୋଗ କରୁଥିଲେ । ବୈଷୟିକ ଶିକ୍ଷାକ୍ଷେତ୍ରରେ ଭାରତ ଓ ଲାଇବେରିଆର ସମ୍ବନ୍ଧ ଘନୀଭୂତ ହେବାର ସମ୍ଭାବନା ଜାଣି ସେମାନେ ଅତ୍ୟନ୍ତ ଖୁସି ହୋଇଯାଇଥିଲେ ।

ଧୀରେ ଧୀରେ ଆମ କଥାବାର୍ତ୍ତା ସାଧାରଣ ଢ଼ଙ୍ଗରେ ମୋଡ଼ନେଇ ସେଇ ପୁରୁଣା ବିଷୟବସ୍ତୁ ଭିତରକୁ ପଶିଯାଇଥିଲା । ପରିବର୍ତ୍ତିତ ପରିସ୍ଥିତିରେ ଭାରତର ଶିକ୍ଷାପଦ୍ଧତି ବଦଳିବା ଉଚିତ୍ କି ନୁହେଁ ଠାରୁ ଆରମ୍ଭକରି ପିଲାଙ୍କ ପାଇଁ ଏପ୍‌ଟିଚ୍ୟୁଡ୍ ଟେଷ୍ଟ ପର୍ଯ୍ୟନ୍ତ । ଶେଷରେ ଆସିଲା ସେଇ ନିୟୁତ ଡ଼ଲାରର ପ୍ରଶ୍ନମାଳିକା, ଶ୍ରୀମତୀ ଗାନ୍ଧୀ ହାରିଲେ କାହିଁକି ? ମାର୍ଚ୍ଚ ମାସରେ ନୂଆ ଇଲେକସନ୍ କରାଇବା ପଛରେ ରହସ୍ୟ କଣ ଥିଲା ? ନାନା ମତବାଦର ସମ୍ମିଶ୍ରଣରେ ଜନ୍ମ ନେଇଥିବା ଜନତାପାର୍ଟି ଫାଟିଯିବ ନାହିଁ ତ ? ସଂଜୟ ଗାନ୍ଧୀ ରାଜନୀତିର ରଙ୍ଗମଞ୍ଚକୁ ଆସି ନ ଥିଲେ ଶ୍ରୀମତୀ ଗାନ୍ଧୀଙ୍କ ଆସ୍ଥାନରେ କିଛି ଆଞ୍ଚ ଆସିଥାଆନ୍ତା କି ?

ବିଶେଷ କିଛି କହିବା ପରିବର୍ତ୍ତେ ସାମାନ୍ୟ ହସିଦେଇ ମୁଁ ସେମାନଙ୍କ ମତ ଜାଣିବାକୁ ଚାହିଁଥିଲି । ଭାରତୀୟ ହେଲେ ମଧ୍ୟ ଇଉରୋପ, ଆମେରିକା ଏବଂ ଆଫ୍ରିକା ସେମାନଙ୍କ ଦୈନନ୍ଦିନ କ୍ରୀଡ଼ାସ୍ଥଳୀ ହୋଇଥିବା ଯୋଗୁ ଏ ସମ୍ବନ୍ଧରେ ସାରା ପୃଥିବୀର

ପ୍ରତିକ୍ରିୟା ଜାଣିବାର ସୁଯୋଗ ପାଇ ସେମାନେ ଆମ୍ଭମାନଙ୍କ ଠାରୁ ନିଶ୍ଚୟ ସ୍ପଷ୍ଟତର ଧାରଣା କରିପାରିଥିବେ । ତାଙ୍କର ସେହି ଧାରଣା ମୁଁ ଜାଣିବାକୁ ଚାହିଁଥିଲି । ସେମାନେ ମଧ୍ୟ ତାଙ୍କର ମତ ବ୍ୟକ୍ତକରି କହିଥିଲେ ଯେ, ଭାରତୀୟ ରାଜନୀତିର ରୂପରେଖ ଯାହାହେଉ ନା କାହିଁକି, ଏକଥା କିନ୍ତୁ ନିଶ୍ଚିତ ଯେ, ବିଗତ ଦୁଇବର୍ଷ ଭିତରେ ଭାରତର ସମ୍ମାନ ପୃଥିବୀର ପ୍ରାୟ ସବୁ ଦେଶରେ ଯଥେଷ୍ଟ ବଢ଼ିଯାଇଥିଲା, ଆଉ ଆଣବିକ ବିସ୍ଫୋରଣ ପରେ ପରେ ଭାରତର ଅର୍ଥନୈତିକ ପୁନରୁତ୍‌ଥାନ୍ ସମସ୍ତଙ୍କୁ ଚମତ୍କୃତ କରିଦେଇଥିଲା । ସେମାନଙ୍କଠାରୁ ମୁଁ ଶୁଣିବାକୁ ପାଇଲି ଯେ, ଇଉରୋପ ଏବଂ ଆମେରିକାରେ ସାଧାରଣ ଲୋକଙ୍କ ଧାରଣା ଯେ, ଶ୍ରୀମତୀ ଗାନ୍ଧୀଙ୍କ ଏଷ୍ଟ୍ରୋଲଜର - ଜ୍ୟୋତିଷମାନେ ହିଁ ତାଙ୍କୁ ଏବେ ନିର୍ବାଚନ କରାଇନେବା ପାଇଁ ପ୍ରରୋଚନା ଦେଇଥିଲେ ଏବଂ ଏବେ ଇଲେକ୍‌ସନ୍ ହେଲେ ତାଙ୍କ ବିଜୟ ସୁନିଶ୍ଚିତ ବୋଲି ଧାରଣା ଦେଲେ । ଶ୍ରୀମତୀ ଗାନ୍ଧୀ ଯେ ନିର୍ବାଚନରେ ହାରିବେ ଏକଥା ଭାରତର କୌଣସି ଏଷ୍ଟ୍ରୋଲଜର କହି ନ ଥିଲା । କେବଳ କହିଥିଲା ଫ୍ରାନ୍ସର ସେହି ଭଦ୍ର ମହିଳା ଯିଏ ଡ଼ି. ଗଲଙ୍କ ମରଣ ଓ ନିକ୍‌ସନଙ୍କ ପତନ ସମ୍ବନ୍ଧରେ ଭବିଷ୍ୟ ବାଣୀ ଦେଇଥିଲା, ସିଏହିଁ କହିଥିଲା ଯେ, ୧୯୭୭ ମସିହା ଶ୍ରୀମତୀ ଗାନ୍ଧୀଙ୍କ ପାଇଁ ଅତି ଖରାପ ବର୍ଷ ।

ଘୁରି ଫେରି ଆମେ ପଶି ଆସିଥିଲୁ ଏଷ୍ଟ୍ରୋଲଜି ଭିତରକୁ । ସେମାନେ ପଚାରିଥିଲେ ମୁଁ ଏଷ୍ଟ୍ରୋଲଜିରେ ବିଶ୍ୱାସ କରେ ନା ନାହିଁ । ଜାତକ ନ ମିଳିଲେ ଆମେ କଣ ଆଜି ବି ପୁଅ ଝିଅଙ୍କ ବିବାହ ଭାଙ୍ଗିଦେଉ । ମୋ ବିବାହ ବେଳେ ଜାତକ ମିଳା ହୋଇଥିଲା ନା ନାହିଁ ଏପରି ଆଉ କେତେ କଥା । ହାସ୍ୟରୋଳ ଭିତରେ ମୁଁ ସେମାନଙ୍କୁ କହିଥିଲି ଯେ, ଦୁଇପାଖରେ ବାପା ମା ଯଦି ପ୍ରସ୍ତାବର ସପକ୍ଷରେ ଏବଂ ପୁଅ ଝିଅ ଯଦି ରାଜି, ତେବେ ଜାତକ ମିଳୁ ନ ଥିଲେ ମଧ୍ୟ ବେଳେ ବେଳେ ୧୦-୧୫ ଟଙ୍କା ଖର୍ଚ୍ଚରେ ଜାତକ ମିଳିଯାଏ ।

ରାତି ବେଶି ହୋଇ ଆସୁଥିବା ଦେଖି ମୁଁ ବିଦାୟ ମାଗିଲି । ଓ୍ୱାତନ୍‌ମଲ ଜୁନିୟରଙ୍କ ଠାରୁ ଇଙ୍ଗିତ ପାଇ ବୟସ୍କ ଦାସଓ୍ୱାନୀ ନିଜେ ତାଙ୍କ ଗାଡ଼ିରେ ମୋତେ ଡ୍ୟୁକର ହୋଟେଲ୍‌ରେ ଛାଡ଼ିଦେଇଗଲେ । ଆସିଲାବେଳେ ମୁଁ ଜାଣିପାରିଲି ଯେ ଅଜାଣତରେ ମୁଁ ହୋଟେଲରୁ ଅନେକ ବାଟ ଚାଲିଯାଇଥିଲି ।

ଦାସଓ୍ୱାନୀଙ୍କ ଘରେ କଥାବାର୍ତ୍ତା ବେଳେ ଶୁଣିଥିଲି ଯେ, କେତେ ବର୍ଷ ତଳେ ଭାରତର ଗୋଟିଏ ପାର୍ଲିଆମେଣ୍ଟାରୀ ଦଳ ଏଇ ମନ୍‌ରୋଭିଆକୁ ଆସିଥିଲେ । ଆଉ ସେ ଦଳର ନେତାଥିଲେ ଡ଼. ହରେକୃଷ୍ଣ ମହତାବ । ମୁଁ ଭାବୁଥିଲି ଯେ,

ଲାଇବ୍ରେରିଆକୁ ଆସିବାରେ ମୁଁ ହୁଏତ ପ୍ରଥମ ଓଡ଼ିଆ । ଡ଼. ମହତାବ ଆଗରୁ ଆସିଛନ୍ତି ଜାଣି ମୋ ମନ ଭିତରେ କେଉଁ ଏକ ଅଜ୍ଞାତ କୋଣରେ ଥିବା ଆତ୍ମାଭିମାନର ଗୋଟାଏ ବେଲୁନ୍ ଫାଟିଲା ସତ, କିନ୍ତୁ ଡ଼. ମହତାବ ମୋ ଆଖିକି ଆହୁରି ବଡ଼ ଦେଖାଗଲେ ।

ପରଦା ଟାଣିଦେଇ କୋଠରୀ ଭିତରୁ ସହର ଆଡ଼ିକି ଅନାଇଲି । ଆଲୋକମାଳାରେ ମନ୍‌ରୋଭିଆ ଉଦ୍ଭାସିତ ହୋଇଯାଇଥିଲା । ରାଜପଥରେ ଖଞ୍ଜା ହୋଇଥିବା ନିଅନ୍ ଲାଇଟ୍‌ର ନୀଳାଭ ପୃଷ୍ଠଭୂମିରେ ଦୂରେଇ ଯାଉଥିବା କାର୍‌ମାନଙ୍କ ପଛପଟରେ ନାଲି ଆଲୁଅ ସବୁ ଅପୂର୍ବ ସୁନ୍ଦର ଦେଖାଯାଉଥିଲେ । ରାତ୍ରିର ଅନ୍ଧକାରରେ ସମୁଦ୍ର ଏବଂ ଆକାଶ ଏକ ହୋଇଯାଇଥିଲା କିନ୍ତୁ କୂଳର ସାମାନ୍ୟ କିଛିଦୂରରେ ବିଭିନ୍ନ ସ୍ଥାନରେ ଲଙ୍ଗର ପକାଇ ସାଗର ବକ୍ଷରେ ଠିଆହୋଇ ରହିଥିବା ଚାରୋଟି ଜାହାଜ ସମୁଦ୍ରର ତରଙ୍ଗ ଉପରେ ସେମାନଙ୍କ ଆଲୋକମାଳା ଖେଳାଇ ବୈଚିତ୍ର୍ୟ ସୃଷ୍ଟି କରୁଥିଲେ । ଅନେକ ଦୂରରେ ଆକାଶ ଓ ସାଗରକୁ ଦୁଇଭାଗ କରି ଦେଖାଯାଉଥିଲେ ଆଉ କେତୋଟି ଜାହାଜ, ପାଖେଇ ଆସିଲାବେଳେ ସେମାନଙ୍କ ଆଲୋକିତ ରୂପ ସ୍ପଷ୍ଟତର ହୋଇଉଠୁଥିଲା । ଆଉ ଟିକିଏ ପାଖକୁ ଆସିଲାପରେ ଏମାନେ ବି ବୋଧହୁଏ ଲଙ୍ଗର ପକାଇ ବନ୍ଦର ଭିତରକୁ ପଶିବା ପାଇଁ ସକାଳକୁ ଅପେକ୍ଷା କରିବେ !

ହଠାତ୍ କାହିଁକି ମୋର କଳିଙ୍ଗ ବୋଇତ ଆଉ ଓଡ଼ିଆ ସାଧବ ପୁଅଙ୍କ କଥା ମନେପଡ଼ିଗଲା । ମନେ ପଡ଼ିଗଲା ଆ-କା-ମା-ଭୈ ଆଉ ବୋଇତ ବନ୍ଦାଣ କଥା । ଶହ ଶହ ବର୍ଷ ତଳେ ହୁଏତ ଆମର ପୂର୍ବପୁରୁଷମାନେ ମଧ୍ୟ ଏମିତି ଜାହାଜ ଭେଳା ନେଇ ଆଫ୍ରିକା ମହାଦେଶର ଏହି କୂଳକୁ ଆସି ଏମିତି ଲଙ୍ଗର ପକାଇ ତାଙ୍କର ପଣ୍ୟଦ୍ରବ୍ୟ ଦିଆନିଆ କରିବା ପାଇଁ ଅପେକ୍ଷା କରୁଥିଲେ । 'କଳିଙ୍ଗାଃ ସାହସିକାଃ'ର ସେ ସ୍ମୃତି ସବୁ ବୋଧହୁଏ ସମୟର ଗର୍ଭରେ ଚିରଦିନ ପାଇଁ ଲୀନ ହୋଇଯାଇଛି । ଆଜି ତେଣୁ କିଏ କହିବ ପ୍ରଥମ ଓଡ଼ିଆ ପୁଅ ଏ ଅଞ୍ଚଳକୁ କେବେ ଆସିଥିଲା !

# ଲାଇବେରିଆ ଗଣରାଜ୍ୟ ଭିତରେ

ସହାୟକ ଶିକ୍ଷାମନ୍ତ୍ରୀ ମିଷ୍ଟର ଉଇଲ୍‌ସନଙ୍କ ସହ ମୁଁ ଆସିଥିଲି ହାର୍ପର । ଲାଇବେରିଆର ପୂର୍ବତନ ରାଷ୍ଟ୍ରପତି ସ୍ୱର୍ଗୀୟ ଟବମେନଙ୍କ ଜନ୍ମସ୍ଥାନ ଏଇ ହାର୍ପର ସହର – ଛୋଟ ହେଲେ ମଧ୍ୟ ବେଶ୍ ସୁନ୍ଦର । ଗଣରାଜ୍ୟର ଯେଉଁ ଛୋଟ ଖଣ୍ଡିଏ ଭୂଖଣ୍ଡ କେପ୍ ପାମାସ୍‌ଠାରେ ଆଟଲାଣ୍ଟିକ୍ ମହାସାଗରକୁ ପଶିଯାଇଛି, ସେଇ ଭୂଖଣ୍ଡରେ ହିଁ ଗଢ଼ିଉଠିଛି ଏଇ ସହର – ଅଧା ସ୍ଥଳଭାଗରେ ତ ଆଉ ଅଧେ ସତେ ଯେମିତି ସମୁଦ୍ର ଭିତରେ। ଆକାଶ ମାର୍ଗରେ ଉଡ଼ିଆସିଲେ ମନ୍‌ରୋଭିଆରୁ ସିଧାସଳଖ ପ୍ରାୟ ୨୫୦ ମାଇଲ୍ ଦୂରରେ ଏଇ ହାର୍ପର ରାଜ୍ୟର ଠିକ୍ ଅନ୍ୟ ପ୍ରାନ୍ତରେ ।

ଲାଇବେରିଆର ସର୍ବପ୍ରଥମ ଇଞ୍ଜିନିୟରିଂ ଶିକ୍ଷା ଅନୁଷ୍ଠାନକୁ ଏଇ ହାର୍ପର ସହରରେ ଅବସ୍ଥାପିତ କରିବା ପାଇଁ ସ୍ୱପ୍ନ ଦେଖିଥିଲେ ପ୍ରେସିଡ଼େଣ୍ଟ ଟବ୍‌ମେନ୍ । ସହରର ଟିକିଏ ଦୂରରେ ୬୦୦ ଏକରରୁ ବେଶି ଜମିନେଇ ସେ ସେଠାରେ ପ୍ରାୟ ଦେଢ଼କୋଟି ଟଙ୍କାର କୋଠାବାଡ଼ି ତିଆରି କରାଇ ସାରିଥିଲେ; କିନ୍ତୁ କୌଣସି ଇଂଜିନିୟରିଂ ଶିକ୍ଷାର କାର୍ଯ୍ୟକ୍ରମ ଆରମ୍ଭ କରାଇବା ପୂର୍ବରୁ ଏବଂ ଅନୁଷ୍ଠାନ ପାଇଁ ଯଥାଯୋଗ୍ୟ ଅଧ୍ୟାପକ ଏବଂ କର୍ମଚାରୀ ନିଯୁକ୍ତି କରିବା ପୂର୍ବରୁ ହିଁ ତାଙ୍କର ହଠାତ୍ ମୃତ୍ୟୁ ହୋଇଗଲା । ଟଲବାର୍ଟ ହେଲେ ଦେଶର ନୂତନ ରାଷ୍ଟ୍ରପତି ।

ଯୁକ୍ତରାଷ୍ଟ୍ର ଆମେରିକା ପରି ଲାଇବେରିଆରେ ମଧ୍ୟ ନିର୍ବାଚିତ ପ୍ରେସିଡ଼େଣ୍ଟ ହିଁ ଦେଶର ସର୍ବେସର୍ବା, ସବୁ କ୍ଷମତାର ଅଧିକାରୀ। ସେ ନିଜ ମନ ମୁତାବକ ଲୋକ ବାଛି ମନ୍ତ୍ରୀମଣ୍ଡଳରେ ନିଯୁକ୍ତି ଦିଅନ୍ତି । ପ୍ରେସିଡ଼େଣ୍ଟ ଟଲବାର୍ଟଙ୍କ ନୂତନ ମନ୍ତ୍ରିମଣ୍ଡଳରେ ଶିକ୍ଷାମନ୍ତ୍ରୀ ହେଲେ ଲାଇବେରିଆ ବିଶ୍ୱବିଦ୍ୟାଳୟର ପୂର୍ବତନ କୁଳପତି ଡ଼କ୍ଟର ହଫ୍ । ପ୍ରଭାବଶାଳୀ ବୈଦେଶିକ ମନ୍ତ୍ରୀ ସେସିଲ୍ ଡ଼େନିସ୍ ଜୁନିୟରଙ୍କ ପତ୍ନୀ ସେହି ବିଶ୍ୱବିଦ୍ୟାଳୟର ବିଜ୍ଞାନ ବିଭାଗର ଡ଼ିନ୍ । ପ୍ରେସିଡ଼େଣ୍ଟ ଟଲବାର୍ଟ ନିଷ୍ପତ୍ତି ନେଲେ ଯେ, ଲାଇବେରିଆର ସର୍ବପ୍ରଥମ ଇଂଜିନିୟରିଂ କଲେଜ୍ ବିଶ୍ୱବିଦ୍ୟାଳୟର ଏକ ଅଙ୍ଗରୂପେ ବିଶ୍ୱବିଦ୍ୟାଳୟର ଅଧୀନରେ ରହିବ ଏବଂ ବିଜ୍ଞାନ ବିଭାଗ ଓ ବୈଷୟିକ ଜ୍ଞାନ ବିଭାଗରେ ପରିଣତ ହୋଇ ଡ଼ିନ୍ ମିସେସ୍ ଡ଼େନିସ୍‌ଙ୍କ ତତ୍ତ୍ୱାବଧାନରେ

ପରିଚାଳିତ ହେବ । ତେଣୁ ପ୍ରଥମ ଇଂଜିନିୟରିଂ କଲେଜର ଅବସ୍ଥିତି ମନ୍‌ରୋଭିଆଠାରେ ହିଁ ରହିବା ସ୍ୱାଭାବିକ୍ ହୋଇପଡ଼ିଲା । ଏହି ପରିବର୍ତ୍ତିତ ପରିସ୍ଥିତିରେ ହାର୍ପରଠାରେ ତିଆରି ହୋଇଥିବା କୋଠାବାଡ଼ି ସବୁ ଅନ୍ୟ କୌଣସି ଧରଣର ବୈଷୟିକ ଶିକ୍ଷା ପାଇଁ ଉପଯୋଗ କରାଯାଇପାରିବ ନା ନାହିଁ ସେ ବିଷୟ ତନଖି ଦେଖିବାପାଇଁ ମୋତେ ଅନୁରୋଧ କରାଯାଇଥିଲା । ପ୍ରଚ୍ଛନ୍ନ ଉଦ୍ଦେଶ୍ୟ ହୁଏତ ଥିଲା ଯେ, ଭାରତ ସେହି ବୈଷୟିକ ଶିକ୍ଷା ଅନୁଷ୍ଠାନ ପାଇଁ ସବୁ ସାଜ ସରଞ୍ଜାମ ତଥା ବୈଷୟିକ ଜ୍ଞାନ ଅନ୍ତର୍ଦ୍ଦେଶୀୟ ସାହାଯ୍ୟ ସ୍ୱରୂପ ମାଗଣା ଯୋଗାଇଦେବ ।

ଏ ଅବସରରେ ଲାଇବେରିଆର ସାରା ଆଭ୍ୟନ୍ତରୀଣ ଅଞ୍ଚଳ ଘୁରି ବୁଲିବାକୁ ମୋତେ ସୁଯୋଗ ମିଳିଯିବ ବୋଲି ମୁଁ ବେଶ୍ ଖୁସୀ ହେଉଥିଲି । ମନ୍‌ରୋଭିଆରେ ମୋର କିଛି କାଳର ରହଣୀ ଭିତରେ ମୁଁ ବୁଝିସାରିଥିଲି ଯେ, ସହରମାନଙ୍କ ଭିତରେ ପ୍ରକୃତ ଆଫ୍ରିକାକୁ ଖୋଜି ବୁଲିବା ମରୀଚିକା ପଛରେ ଧାଇଁ ଜଳର ସନ୍ଧାନ ନେବା ସଙ୍ଗେ ସମାନ । ଗୁଣାତ୍ମକ ଦୃଷ୍ଟିରୁ ପୃଥିବୀର ସବୁ ବଡ଼ ବଡ଼ ସହର ଭଣା ଅଧିକେ ଏକାଧରଣର - ସେଇ ବଡ଼ ବଡ଼ କୋଠାବାଡ଼ି, ବିରାଟ ବିରାଟ ହୋଟେଲ୍, କିସମ୍ କିସମ୍‌ର ହାଟବାଟ, ଦୋକାନ ବଜାର, ସିନେମା ଥିଏଟର୍, ଚିଡ଼ିଆଖାନା, ମ୍ୟୁଜିୟମ୍ ନାଇଟ୍‌କ୍ଲବ୍‌ସ, ନାନାଧରଣର ଯାନବାହାନ, ହୋ ହାଲ୍ଲା, ପ୍ରସେସନ୍ ଆଉ ରଙ୍ଗ ବେରଙ୍ଗ ଆଖିଝଲସା ଅପ୍ରାକୃତିକ ଝଲମଲ୍ । ସହରଟି ଯେଉଁ ଦେଶର ହେଉନା କାହିଁକି ତା'ର ଚରମ ଆକାଂକ୍ଷା ସତେ ଯେମିତି ସେହି ଏକ - କେମିତି ଆକାଶକୁ ମୁଣ୍ଡଟେକି ନ୍ୟୁୟର୍କ, ଲଣ୍ଡନ, ପ୍ୟାରିସ୍, ଟୋକିଓର ଝଲକ୍ ଦେବ । ନାନା ଦିଗରୁ, ନାନା ଅଞ୍ଚଳରୁ ଆଉ ନାନା ଦେଶରୁ ଏକାଠି ଠୁଳ ହୋଇଥିବା ସହର ଅଧିବାସୀ ମାନସିକ ଆଭିମୁଖ୍ୟ ମଧ ଭଣା ଅଧିକେ ଏକାଧରଣର, ଋଣ କରି ଘିଅ ପିଇବା ମନୋବୃତ୍ତି ପରସ୍ପର ପରସ୍ପରକୁ ଡେଇଁଯିବା ମନୋଭାବ । ସତରେ ଯାହାନୁହନ୍ତି ସେପରି ଦେଖାଇ ହେବାପାଇଁ ତୀବ୍ର ଲାଳସା, କାକ ହେଲେ ମଧ ମୟୂରର ପୁଚ୍ଛ ଖଞ୍ଜି ମୟୁର ପରି ଦେଖାଯିବା ପାଇଁ ଉଗ୍ର ବାସନା । ଫଳରେ କାହିଁ କେଉଁଠି ଦରବୁଢ଼ୀଟିଏ ମଧ ନିଜ ରେଖାଙ୍କିତ ମୁହଁକୁ ନାନାରକମର ପ୍ରଲେପ ଏବଂ ପଲସ୍ତରା ଦେଇ ଫେଶନ୍ ମଡ଼େଲ୍‌ର ରୂପ ଦେଖାଇ ଅନ୍ୟମାନଙ୍କ ଦୃଷ୍ଟି ଆକର୍ଷଣ କରିବାକୁ ପ୍ରାଣପଣେ ଚେଷ୍ଟା କରୁଥାଏ ତ ଆଉ କେଉଁଠି ପେଟପୁରା ଖାଇବାକୁ ପାଉନଥିବା ବେକାର ଯୁବକ ଲକ୍ଷପତିର ଠାଣି ବାଢୁଥାଏ ଅଥବା ଅକଟାବାଳ ନେଇ ଛିଣ୍ଡା କାମିଜ ପିନ୍ଧି ବେପରବାଏ ଏବଂ ବେଖାତିର ଢ଼ଙ୍ଗରେ ଦେଖାଇ ହେଉଥାଏ ସତେ ଯେମିତି ସେ ଗୋଟାଏ ଅତ୍ୟାଧୁନିକ ହିପ୍‌ପୀ ।

ମଫସଲ ହିଁ ଯେ କୌଣସି ଜାତି ଏବଂ ଦେଶର ପ୍ରାଣକେନ୍ଦ୍ର । ନାଡ଼ିର ସ୍ପନ୍ଦନ ଯେପରି ଶାରୀରିକ ସ୍ୱାସ୍ଥ୍ୟର ଇଙ୍ଗିତ ଦିଏ, ମଫସଲର ରାସ୍ତାଘାଟ, ଘରଦ୍ୱାର ଏବଂ ତହିଁରେ ବସବାସ କରୁଥିବା ଲୋକଙ୍କ ବେଶଭୂଷା, ଚାଲିଚଳଣ ଏବଂ ସେମାନଙ୍କ ଜୀବନ ଧାରଣ ପ୍ରଣାଳୀ ହିଁ ଜାତିର ପ୍ରକୃତ ସ୍ୱରୂପ ଚିହ୍ନାଇ ଦିଏ ଏବଂ ଦେଶ ତଥା ଜାତୀୟ ଜୀବନର ଅନାବିଳ ପ୍ରତିଫଳନ ଦିଏ ।

ଲାଇବେରିଆ ଆସିଲା ପରେ ହିଁ ମୁଁ ଆଫ୍ରିକାର ସେହି ଆବିଳତାବିହୀନ ଅନ୍ତର ଖୋଜି ବୁଲୁଥିଲି, ଆଉ ସୁବିଧା ପାଇଲାକ୍ଷଣି ଅଭ୍ୟନ୍ତର ଅଞ୍ଚଳ ଭିତରକୁ ଚାଲିଯାଇ ଆଫ୍ରିକୀୟମାନଙ୍କ ପ୍ରାଣପୂର୍ଣ୍ଣ ଏବଂ ସ୍ଫୂର୍ତ୍ତିମୟ ଜୀବନର ଆଭାସ ପାଇ ପୁଲକିତ ହୋଇଯାଇଥିଲି । ଦିନକର ଘଟଣା । ଜାତିସଂଘର ଆର୍ଥିକ ତଥା ବୈଷୟିକ ସାହାଯ୍ୟରେ ଗଢ଼ି ଉଠିଥିବା ଗୋଟିଏ ଛୋଟ ଶିକ୍ଷଶିକ୍ଷା ଅନୁଷ୍ଠାନ ଦେଖିବା ପାଇଁ ଆମେ ଯାଉଥିଲୁ କାକାଟା । ମନ୍‌ରୋଭିଆରୁ କିଛିଦୂର ଗଲାପରେ ଆରମ୍ଭ ହୋଇଥିଲା ଫାୟାରଷ୍ଟୋନ୍ କମ୍ପାନୀର ରବର ପ୍ଲେଣ୍ଟେସନ୍ । ମାଇଲ୍ ପରେ ମାଇଲ୍ ରାସ୍ତାର ଦୁଇଆଡ଼େ ଆଖି ନପାଇବା ଯାଏ ଧାଡ଼ିକି ଧାଡ଼ି ରବର ଗଛ ସବୁ ଆକାଶକୁ ମୁଣ୍ଡଟେକି ଠିଆ ହୋଇଛନ୍ତି । ମଝିରେ ଚାଲିଯାଇଛି ସୁନ୍ଦର ଚିକ୍କଣ କଳାରାସ୍ତା । ପ୍ଲେଣ୍ଟେସନ୍ ପରେ ଦେଖାଦେଲା ଘୋର ଅରଣ୍ୟ । ବିରାଟ ଗଛ ସବୁ ସତେ ଯେମିତି ସୂର୍ଯ୍ୟମଣ୍ଡଳକୁ ଛୁଇଁବାପାଇଁ ପ୍ରତିଯୋଗିତା ଆରମ୍ଭ କରି ଦେଇଛନ୍ତି । କେଉଁ କେଉଁଠି ଶୀର୍ଣ୍ଣକାୟ ଲତା ସବୁ ଗଛମାନଙ୍କୁ କୁଣ୍ଢାଇ ଧରିଛନ୍ତି, ଆଉ ଗଛ ଏବଂ ଗଛର ମଝିରେ ଛୋଟ ବଡ଼ ବୁଦା ସବୁ ପରସ୍ପରର ହାତ ଛନ୍ଦି ପାଟି ମେଲାଇ ଆକାଶକୁ ଅନାଇଛନ୍ତି ପ୍ରତିଯୋଗିତାର ଶେଷ ପରିଣତି ଜାଣିବା ଆଶାରେ । ଜନପ୍ରାଣୀର ଦେଖା ଦର୍ଶନ ନାହିଁ । କାହାଣୀ ପେଡ଼ି ବର୍ଣ୍ଣିତ ଚଢ଼େଇର ଥଣ୍ଟ କିମ୍ବା କାଠୁରିଆର ବେଣ୍ଟ ଶବ୍ଦ ମଧ ନାହିଁ । ହଠାତ୍ ଦୂରରେ ସଡ଼କର ବାଁ କଡ଼ରେ ଗୋଟିଏ ମଣିଷ ମୂର୍ତ୍ତିର ଛାୟା ଦେଖାଦେଲା । ବେଶର ନୂତନତା ବୋଧହୁଏ ମୋର ବିଶେଷ ଦୃଷ୍ଟି ଆକର୍ଷଣ କରିଥିଲା, ଆଉ ମୁଁ ଡ୍ରାଇଭର୍ ମାଇକେଲ୍‌କୁ ଗାଡ଼ିର ଗତି ମନ୍ଥର କରିବା ପାଇଁ ଅନୁରୋଧ କଲି । ପାଖକୁ ଆସିଲାରୁ ଜଣାପଡ଼ିଲା ଜଣେ ଯୁବତୀ ଝିଅ । କାଦୁଅ ବୋଳା ଦେହ, ସଂପୂର୍ଣ୍ଣ ଖୋଲା ଛାତି । ଅଣ୍ଟା ପାଖରେ ସାଧା କନାର ଛୋଟ ଖଣ୍ଡିଏ ସ୍କାର୍ଟ ଏବଂ ମୁଣ୍ଡରେ ରୁମାଲ ପରି ଖଣ୍ଡିଏ ଛୋଟ କନାର ଘୋଡ଼ଣୀ । ଅପୂର୍ବ ସେ ରୂପ – ଆମ ଆଡ଼ିକି ମୁହଁଟେକି ମଧ ଚାହିଁଲାନି, ନିଜ ବାଟରେ ନିଜେ ଚାଲିଗଲା- ସାଙ୍ଗ ସାଥୀ ନାହିଁ – ଡ଼ରଭୟ ନାହିଁ ।

ମିଷ୍ଟର ଉଇଲ୍‌ସନ୍ ବୁଝାଇଦେଲେ ଯେ, ସେ ସେଣ୍ଡି ସୋସାଇଟିର ଝିଅ । ଏ ସୋସାଇଟିର ଅବିବାହିତା ଝିଅମାନେ ବିବାହ ପୂର୍ବରୁ ଏମିତି ଖୋଲା ଦେହରେ ରହନ୍ତି । ଏକରକମର ପଳୁଆ ଚିକ୍କଣ ମାଟି, ବକ୍ ପାଉଡ଼ର୍ ଏବଂ ନାନା ରକମର ବାସନା ଅତର ମିଶାଇ ନିଜ ଦେହରେ ଲେପଦିଅନ୍ତି, ଆଉ କୌଣସି ଧରଣର ଅଳଙ୍କାର ପିନ୍ଧନ୍ତିନି । ସେ ବେଶରୁ ଜଣାପଡ଼େ ଯେ, ଝିଅଟି ଉପଯୁକ୍ତ ବରପାତ୍ରର ସନ୍ଧାନରେ ଅଛି । ବିବାହ ପାଇଁ ଇଚ୍ଛୁକ ଅବିବାହିତ ପୁଅମାନେ ମଧ୍ୟ ନିଜ ଦେହରେ ଏମିତି ମାଟି ବୋଳିହୁଅନ୍ତି । ସେମାନେ ପୋରୋ ସୋସାଇଟିର । ଏଇ ପୋରୋ ଏବଂ ସେଣ୍ଡି ସୋସାଇଟିର ପୁଅଝିଅମାନେ ବାଇବେଲ୍ ପଢ଼ନ୍ତି ଏବଂ ଗୀର୍ଜାଘରେ ପ୍ରାୟ ନାଚନ୍ତି । ଏକାଠି ନାଚିଲା ବେଳେ ହିଁ ଏମାନେ ନିଜ ନିଜ ଜୀବନସାଥୀ ସ୍ଥିର କରିଥାନ୍ତି । ପୋରୋ ସୋସାଇଟିର ପୁଅମାନେ କେମିତି ଦିଶନ୍ତି ଦେଖିବାକୁ ମୋର ଆଗ୍ରହ ହୋଇଥିଲା ଏବଂ ମୁଁ ସେପରି ସୁଯୋଗକୁ ଅପେକ୍ଷାକରି ରହିଲି । କାକାଟାରୁ ଫେରିବା ବାଟରେ ରାସ୍ତାକଡ଼ରେ ଗୋଟିଏ ଛୋଟ ହାଟ ପଡ଼ିଲା । ଠିକ୍ ଆମ ଆଦିବାସୀବହୁଳ ପାର୍ବତ୍ୟ ଅଞ୍ଚଳର ହାଟ ପରି ସେ ହାଟ ନିହାତି ଛୋଟ । ପଣ୍ୟଦ୍ରବ୍ୟ ଭିତରେ ଥିଲା ମୁଖ୍ୟତଃ ଛୋଟ ଛୋଟ ପୋଡ଼ାମାଛ, ସାମାନ୍ୟ କିଛି ଚାଉଳ, କାସାଭ୍ରୁ, କିଛି ପିଆଜ ଏବଂ ମରିଚ । ନିହାତି ଛୋଟ ଛୋଟ ସରୁ ବାଇଗଣ, କେତେ ରକମର ବଣୁଆ ଫଳ, ପାମ୍ ତେଲ, ସଲପ ମଦ । କ୍ରେତାମାନେ ଗ୍ରାମୀୟ ଅଞ୍ଚଳର । ପୁଅଝିଅଙ୍କ ଲୁଗାପଟା ଠିକ୍ ସହରିଆଙ୍କ ଲୁଗାପଟା ପରି ଟ୍ରାଉଜର୍ ଏବଂ ସାର୍ଟ, ମେକ୍‌ସି, ଲାପା କିନ୍ତୁ ମଇଳା, ଲୋଟାକୋଟା ଏବଂ ବେଳେ ବେଳେ ଛିଣ୍ଡା । ପିଆଜ ଓ ମରିଚ ସହରରେ ଭଲ ମିଳେନି, ଆଉ ଏଇଠି ଟିକିଏ ଶସ୍ତା କହି ମିଷ୍ଟର୍ ଉଇଲସନ୍ ଦର କଷାକଷି ଆରମ୍ଭ କରିଗଲା ବେଳେ ହଠାତ୍ ସେଣ୍ଡି ସୋସାଇଟିର ଆଉ ଗୋଟାଏ ସେଇ କାଦୁଆ ବୋଳା ଝିଅ ଅନ୍ୟ ୨-୩ ଜଣ ସାଧା ବେଶଧାରୀ ହାଟୁଆଙ୍କ ସଙ୍ଗରେ ଦେଖାଦେଲା । ଆମ ଆଦିବାସୀ ଅଞ୍ଚଳର ହାଟ ପରି ଏ ହାଟଗୁଡ଼ିକ ମଧ୍ୟ ବନ୍ଧୁବାନ୍ଧବଙ୍କ ମିଳନସ୍ଥଳୀ ପରି ମନେ ହେଉଥାଏ, ଯେହେତୁ କିଣାବିକା ଅପେକ୍ଷା ଲୋକଙ୍କ ଭିତରେ ଗପସପ ହିଁ ପ୍ରଧାନ ପରି ଜଣାପଡୁଥାଏ ।

ବେଶ୍ ଭିଡ଼ିମୋଡ଼ି ହେଲା ଦେହ । କାଦୁଅବୋଳା ରଙ୍ଗରେ ଝିଅଟି ଅପୂର୍ବ ଦେଖାଯାଉଥିଲା । ଠିଆ ଠାଣିରେ ଥିଲା ଏକ ଚମତ୍କାରିତା । ଲଜ୍ଜା ଯଦି ନାରୀର ଭୂଷଣ, ତେବେ ସେ ଥିଲା ସଂପୂର୍ଣ୍ଣ ଭୂଷଣହୀନା । ଖୋଲା ଛାତି ଯୋଗୁଁ ତାର ଚାଲିଚଳଣରେ କୌଣସି ସଙ୍କୋଚଭାବ ପ୍ରକାଶ ପାଉନଥିଲା । ଅର୍ଦ୍ଧନଗ୍ନ ପ୍ରକୃତିର ସତେ ଯେମିତି ସେ ଥିଲା ଏକ ଅର୍ଦ୍ଧନଗ୍ନ ସନ୍ତାନ ।

ଅନେକ ବର୍ଷ ତଳେ ଆସାମର କାଜିରଙ୍ଗା ରକ୍ଷିତ ଅରଣ୍ୟରେ ଥରେ ମୁଁ ଗୋଟିଏ କାଦୁଅମଖା ଅରଣାମଇଁଷୀକୁ ଅତି ନିକଟରୁ ଦେଖିଥିଲି । ଏ ଝିଅ ଏବଂ ସେ ଅରଣା ମଇଁଷୀ ଭିତରେ କିଛି ଗୋଟିଏ ସାମଞ୍ଜସ୍ୟ ଥିଲା । କୋମଳ ଆଖି କିନ୍ତୁ ତହିଁରେ ଥିଲା ଏକ ଜ୍ୱଳନ୍ତ ତୀବ୍ରତା । ଗ୍ରୀବା ଭଙ୍ଗୀରେ ଥିଲା ଅହମିକା ଏବଂ ଏକ ଆହ୍ୱାନ । 'ଆଉ ଏଆଡ଼ିକି ପାଦେ ତ ଦେଖୁଛୁ ଏ ଶିଙ୍ଘ'ର ଭାବ । ତଥାପି ମନରେ କୌତୂହଳ ଜନ୍ମୁଥିଲା ତାଳିମାରି କିଛି ଗୋଟିଏ ଖେଳ ଦେଖିବାକୁ - ଜାଣିବାକୁ ସେ ମୁଣ୍ଡ ନୁଆଇଁ ଆଗକୁ ଧସାଇ ଆସିବ ନା ଓଲଟିପଡ଼ି ପୁଚ୍ଛଟେକି ପଳାୟନ କରିବ ।

କୁକୁର ଛୁଆ, ହରିଣ ଛୁଆ ସଙ୍ଗରେ ଖେଳପରି ପ୍ରକୃତି ସଙ୍ଗରେ ଖେଳ ସତରେ ମଣିଷ ମନରେ ସ୍ୱଚ୍ଛ ଆନନ୍ଦ ସଞ୍ଚାର କରେ । ଏ ଝିଅର ଭାବଭଙ୍ଗୀ ସେହି ଆନନ୍ଦର ଉଦ୍ରେକ କରୁଥିଲା । ପୋରୋ ସୋସାଇଟିର କୌଣସି ପୁଅକୁ କିନ୍ତୁ ମୁଁ କେଉଁଠି ଦେଖିପାରିନଥିଲି । ତେଣୁ ହାର୍ପର ଯିବା ପୋଗ୍ରାମ ଶୁଣି ଆଶାକରି ନେଇଥିଲି ଯେ, ଏଥର ପୋରୋ ସୋସାଇଟିର ପୁଅମାନଙ୍କୁ ଦେଖିବା ସଂଗେ ସଂଗେ ଆଉ ନୂଆ ନୂଆ କଥା ସବୁ ଦେଖିବାର ସୁଯୋଗ ପାଇବି; କିନ୍ତୁ ଉପକୂଳବର୍ତ୍ତୀ ଅଞ୍ଚଳର ଅନେକ ନଦୀ ଏବଂ ଝିଲ୍ ଉପରେ ପୋଲ ନ ଥିବା ଯୋଗୁଁ ସିଧାସଳଖ କୌଣସି ରାସ୍ତା ନ ଥିବାରୁ ଆମକୁ ମନ୍‌ରୋଭିଆରୁ ଗୋଟିଏ ଛୋଟ ଉଡ଼ାଜାହାଜରେ ହାର୍ପର ଆସିବାକୁ ପଡ଼ିଥିଲା ।

ଲାଇବେରିଆ ଗଣରାଜ୍ୟ ୯ଟି କାଉଣ୍ଟିରେ ବିଭାଜିତ । ଯୁକ୍ତରାଷ୍ଟ୍ର ଆମେରିକାର ଷ୍ଟେଟ୍‌ମାନଙ୍କରେ ଯେପରି କ୍ଷମତାଶୀଳ ନିର୍ବାଚିତ ଗଭର୍ଣ୍ଣର ସବୁଥାଆନ୍ତି, ଏଠାରେ ପ୍ରତ୍ୟେକ କାଉଣ୍ଟିରେ ସେପରି ନିର୍ବାଚିତ ସୁପରିଣ୍ଟେଣ୍ଡେଣ୍ଟ ରହନ୍ତି । ତେଣୁ ଆମକୁ ପାଛୋଟି ନେବାପାଇଁ ବିମାନ ବନ୍ଦରକୁ ନିଜ ଅଞ୍ଚଳର ସୁପରିଣ୍ଟେଣ୍ଡେଣ୍ଟ ଆସିଥିବା ଦେଖି ମି. ଉଇଲସନ୍ ତାଙ୍କ ସାଙ୍ଗରେ ମୋତେ ଚିହ୍ନା କରାଇ ଦେଲାବେଳେ ତାଙ୍କର ଏ ସୌଜନ୍ୟକୁ ବିଶେଷ ଭାବରେ ଉଲ୍ଲେଖକରି ତାଙ୍କୁ ଧନ୍ୟବାଦ ଦେଇଥିଲେ । ଆମକୁ ନେବାପାଇଁ ଆସିଥିବା ସରକାରୀ ଗାଡ଼ିକୁ ଚିହ୍ନିତ କରାଇଦେଇ ସୁପରିଣ୍ଟେଣ୍ଡେଣ୍ଟ ମହୋଦୟ ଯେତେବେଳେ ସେଠାରୁ ଚାଲିଗଲେ, ମି. ଉଇଲସନ୍ ପରାମର୍ଶ ଦେଲେ ଯେ, ଏଇ ସୁପରିଣ୍ଟେଣ୍ଡେଣ୍ଟଙ୍କ ଅଫିସ୍‌କୁ ଯାଇ ତାଙ୍କୁ ଯଥାରୀତି ସମ୍ମାନଦେବା ଆମର ପ୍ରଥମ କର୍ତ୍ତବ୍ୟ ହେବ । ସେତେବେଳେ ସେ ବୁଝାଇ ଦେଇଥିଲେ ଯେ, କାଉଣ୍ଟି ସୁପରିଣ୍ଟେଣ୍ଡେଣ୍ଟମାନେ ତାଙ୍କ ନିଜ କାଉଣ୍ଟିର ସର୍ବଶ୍ରେଷ୍ଠ ଶାସନକର୍ତ୍ତା ଏବଂ ଅଞ୍ଚଳର ହର୍ତ୍ତାକର୍ତ୍ତା ବିଧାତା । ତାଙ୍କ ଅନୁମତି ନନେଇ କୌଣସି ଅପରିଚିତ ଲୋକ ଅଞ୍ଚଳ ଭିତରେ ବୁଲିବା ନିରାପଦ ନୁହେଁ । ତେଣୁ ହାର୍ପରରେ ଆମ

କାର୍ଯ୍ୟକ୍ରମ ଆରମ୍ଭ କରିବା ପୂର୍ବରୁ ସୁପରିଣ୍ଟେଣ୍ଡେଣ୍ଟଙ୍କ ଠାରୁ ଯଥା ନିୟମ ଅନୁମତି ନେବା ଉଦ୍ଦେଶ୍ୟରେ ଆମେ ତାଙ୍କ ଅଫିସ୍ ଆଡ଼କୁ ମୁହାଁଇଲୁ ।

ପୁରୁଣାକାଳିଆ ରୋମାନ୍ ଢ଼ାଞ୍ଚାର କୋଠା । ଛୋଟ ହେଲେ ମଧ୍ୟ ବାରନ୍ଦାର ଉଚ୍ଚ ଗୋଲେଇ ଖମ୍ବ, କୋଠାର ତ୍ରିଭୁଜାକୃତି ମୁକୁଟ ଏବଂ ବାରନ୍ଦା ଉପରକୁ ଉଠିବା ପାଇଁ ପନ୍ଦରରୁ ବେଶି ପାହାଚ ଅଫିସ୍ ଭବନର ଗାମ୍ଭୀର୍ଯ୍ୟ ବୃଦ୍ଧି କରିଥିଲା । ଦୁଇ ମହଲା କୋଠାର ଉପର ମହଲାରେ ସୁପରିଣ୍ଟେଣ୍ଡେଣ୍ଟଙ୍କ ଖାସ୍ କମରା – ଉଣା ଅଧିକେ ଆମ ମାଜିଷ୍ଟ୍ରେଟ୍‌ମାନଙ୍କ କୋର୍ଟରୁମ୍ ପରି କୋଠରୀଟି ବେଶ୍ ବଡ଼ – ପ୍ରାୟ ଗୋଟାଏ ହଲ୍; କିନ୍ତୁ ଆସବାବପତ୍ରବିହୀନ ।

ହଲ୍‌ର ଏକ କୋଣରେ ଥିଲା କୌଣସି ମାଜିଷ୍ଟ୍ରେଟ୍‌ଙ୍କ ପାଇଁ ଉଦ୍ଦିଷ୍ଟ ମଞ୍ଚ ପରି ଗୋଟିଏ ଛୋଟ ମଞ୍ଚ । ମଞ୍ଚର ପରିଧିକୁ ପର୍ଦ୍ଦାପରି ତାକୁ ଛାତିଏ ଉଚ୍ଚ ପର୍ଯ୍ୟନ୍ତ ଘୋଡ଼ାଇ ରଖିଥିଲା ମେହେଗାନି କାଠର ଗୋଟିଏ ଗୋଲେଇ ମେଜ୍ । ଗଣରାଜ୍ୟର ଦିଓଟି ଛୋଟ ଛୋଟ ଜାତୀୟ ପତାକା ଛକିମାରି ପରସ୍ପରର ବିପରୀତ ଦିଗକୁ ମୁହାଁଇ ମେଜର ଠିକ୍ ମଝିରେ ଖଞ୍ଜି ହୋଇଥିଲେ । ମେଜ୍‌ର ଅର୍ଦ୍ଧ ଆଡୁଆଳରେ ଏବଂ ମଞ୍ଚ ଉପରେ ପଡ଼ିଥିବା ଚୌକିରେ ଆସୀନ ହୋଇ ରହିଥିଲେ ସୁପରିଣ୍ଟେଣ୍ଡେଣ୍ଟ – ବୋଧହୁଏ ଆମର ଅପେକ୍ଷାରେ । ଟିକିଏ ଦୂରରେ ଟିଣ ଚୌକିମାନଙ୍କରେ ବସିଥିଲେ ପ୍ରାୟ ୧୫, ୨୦ ଜଣ ଭଦ୍ରଲୋକ ।

ସହକାରୀ ଶିକ୍ଷାମନ୍ତ୍ରୀ ବିଧିମତେ ମୋତେ ମାନ୍ୟବର ସୁପରିଣ୍ଟେଣ୍ଡେଣ୍ଟଙ୍କୁ ଚିହ୍ନାଇ ଦେଲେ । ସୁପରିଣ୍ଟେଣ୍ଡେଣ୍ଟ ମୋର କରମର୍ଦ୍ଦନ କରି ଆମପାଇଁ ଉଦ୍ଦିଷ୍ଟ ଚୌକିମାନଙ୍କରେ ବସିବାକୁ ଇଙ୍ଗିତ ଦେଲେ । ଆମେ ବସିଗଲା ପରେ କୌଣସି ଆଧୁନିକ ଦୋକାନୀ କେହି ଜଣାଶୁଣା ଧନୀ ଗ୍ରାହକ ଦୋକାନ ଭିତରକୁ ପଶିଆସିଲା ବେଳେ ଯେପରି ଦୁଇହାତ ମେଳାଇ ମୁଣ୍ଡ ନୁଆଁଇ ସ୍ୱାଗତ କରେ ସେପରି ଭଙ୍ଗୀରେ ଭାଷଣ ଆରମ୍ଭ କଲେ ।

"ଏକ ବନ୍ଧୁରାଷ୍ଟ୍ରରୁ ଆଗତ ଜଣେ ପ୍ରିୟବନ୍ଧୁ ଭାବରେ ମୁଁ ଆପଣଙ୍କୁ ଲାଇବେରିଆ ଗଣରାଜ୍ୟର ଆମ ଏହି ଅଞ୍ଚଳକୁ ସ୍ୱାଗତ କରୁଛି । ମୋର ସଂପୂର୍ଣ୍ଣ ଆଶା ଏବଂ ବିଶ୍ୱାସ, ଆପଣଙ୍କ ଏ ଆଗମନ ଆମ ରାଜ୍ୟପାଇଁ ହିତକର ହେବ ଏବଂ ଆମ ଦୁଇରାଜ୍ୟର ଲୋକଙ୍କ ଭିତରେ ପ୍ରତିଷ୍ଠିତ ହୋଇସାରିଥିବା ବନ୍ଧୁତାକୁ ଆହୁରି ସୁଦୃଢ଼ କରିବ । ଆପଣ ଯେଉଁ କାର୍ଯ୍ୟ ପାଇଁ ଆମର ରାଜ୍ୟକୁ ଆସିଛନ୍ତି, ଆପଣଙ୍କ ସେ କାର୍ଯ୍ୟ ସଫଳ ହେଉ । ମୁଁ ଆପଣଙ୍କୁ ଅନୁମତି ଦେଉଛି ଯେ, ଆପଣ ଏ ଅଞ୍ଚଳରେ ଯେ କୌଣସି ସ୍ଥାନକୁ ଯିବାକୁ ଚାହିଁବେ ସେ ସ୍ଥାନକୁ ନିର୍ବିଘ୍ନରେ ଯାଇପାରିବେ ।"

ଆଦବ୍‌କାଏଦା ପୂର୍ଣ୍ଣ ଏପରି ଏକ ସ୍ୱାଗତ ସମ୍ବର୍ଦ୍ଧନା ପାଇଁ ମୁଁ ଆଗରୁ ପ୍ରସ୍ତୁତ ହୋଇ ନ ଥିଲି । ଲୌକିକତା ବ୍ୟତୀତ ଭଦ୍ରଲୋକଙ୍କ ମନରେ ଯେ କୌଣସି ଆନ୍ତରିକତା ନ ଥିଲା ସେ କଥା ଜଣାପଡ଼ିଯାଉଥିଲା । ତାଙ୍କ ରଙ୍ଗଢ଼ଙ୍ଗରେ ପ୍ରକାଶ ପାଉଥିଲା ଆତ୍ମଗାରିମା ତଥା ଆତ୍ମାଭିମାନର ଏକ ସ୍ପଷ୍ଟ ଭାବମୂର୍ତ୍ତି । ତାଙ୍କ ଭାଷାରେ ଥିଲା ସୌଜନ୍ୟପୂର୍ଣ୍ଣ ପାଶ୍ଚାତ୍ୟ ପ୍ରବଞ୍ଚନାର ମାୟାଜାଲ । ମୋର ମନେହେଲା ମୁଁ ସତେ ଯେମିତି କୌଣସି ଗୋଟିଏ ଐତିହାସିକ ନାଟକ ଦେଖୁଛି । ଶହ ଶହ ବର୍ଷ ତଳେ ସେଦିନର ଆଫ୍ରିକୀୟ ଚିଫ୍‌ମାନେ ତାଙ୍କ ମନଲାଖି ପଣ୍ୟଦ୍ରବ୍ୟ କିଛି ପାଇଗଲା ପରେ ହୁଏତ ଏମିତି ଆରବ, ଇଉରୋପୀୟ ଅଥବା ଆମେରିକାନ ବ୍ୟବସାୟୀମାନଙ୍କୁ ନିଜ ଅଞ୍ଚଳରେ ଅବାଧରେ ଘୁରି ବୁଲି ନିରୀହ ନିଗ୍ରୋ ଅଧିବାସୀ ତଥା ତାଙ୍କ ପୁଅ ଝିଅଙ୍କୁ ବନ୍ୟଜନ୍ତୁ ପରି ଧରିନେବାକୁ ଅନୁମତି ଦେଉଥିଲେ । ଅନୁମତି ପାଇସାରିଲା ପରେ ସେ ଦିନର ବ୍ୟବସାୟୀମାନେ ଯେପରି ଭାବରେ ଧନ୍ୟବାଦ ଦେଉଥିବେ, ସେକଥା ମୁଁ କଳ୍ପନା କରୁଥିଲି । ଆଜିର ଯୁଗରେ ମଧ୍ୟ ଅଯଥା ପ୍ରଶଂସା ନ କରିବା ଫଳରେ ଇଦି ଅମୀନଙ୍କ ୟୁଗାଣ୍ଡାରେ କେତେଜଣ ଇଂରାଜୀ ଭଦ୍ରଲୋକଙ୍କ ଯେଉଁ ଦଶା ଘଟିଥିଲା, ସେ କଥା ମଧ୍ୟ ମୋର ମନେ ପଡୁଥିଲା । ନାଟକର ଗୋଟିଏ ଚରିତ୍ର ରୂପରେ ଏବଂ ନାଟକୀୟ ଢ଼ଙ୍ଗରେ ମୁଁ ମଧ୍ୟ ଯନ୍ତ୍ରବତ୍ ଆରମ୍ଭକଲି ।

"ହେ କେପ୍‌ପାମାସ୍ କାଉଣ୍ଟିର ମହା ପ୍ରତାପଶାଳୀ ସର୍ବଶକ୍ତିମାନ ସୁପରିଣ୍ଟେଣ୍ଡେଣ୍ଟ ମହୋଦୟ ! ଆପଣଙ୍କ ଅଞ୍ଚଳରେ ନିର୍ବିଘ୍ନରେ ଘୂରି ବୁଲିବାପାଇଁ ଆପଣ ମୋତେ ଯେଉଁ ଅନୁମତି ଦେଲେ, ସେଥିପାଇଁ ମୁଁ ଅତ୍ୟନ୍ତ ବାଧିତ । ସେହି ଅନୁମତି ପାଇ ମୁଁ ଆପଣଙ୍କୁ ଅଶେଷ ଧନ୍ୟବାଦ ଦେଉଛି ।

ପଶ୍ଚିମ ଆଫ୍ରିକୀୟ ଘୋର ଅରଣ୍ୟବେଷ୍ଟିତ ଯେଉଁ ଏକ ଅଞ୍ଚଳ ଘନ ତିମିରିରେ ଅଚ୍ଛନ୍ନ ହୋଇପଡ଼ିଥିଲା, ଆପଣଙ୍କ ସୁଶାସନ ଫଳରେ ସେ ଅଞ୍ଚଳ ଆଜି ସୁଆଲୋକିତ । ସୁନ୍ଦର ହାର୍ପର ସହର ତହିଁର ଏକ ଜ୍ୱଳନ୍ତ ପ୍ରମାଣ । ଆପଣଙ୍କ ମହାନ୍ ଦେଶକୁ ପ୍ରଗତିର ପଥରେ ଦ୍ରୁତ ଆଗେଇ ନେବାପାଇଁ ଆପଣ, ଆପଣଙ୍କ ବନ୍ଧୁ ତଥା ସହକର୍ମୀମାନେ ଯେଉଁ ଅବିଶ୍ରାନ୍ତ ଉଦ୍ୟମକରି ଚାଲିଛନ୍ତି, ସେ ଉଦ୍ୟମର ସହାୟକ ହେବା ନିମନ୍ତେ ଆମ ମହାନ୍ ଦେଶର ଲୋକେ ତଥା ନେତୃବୃନ୍ଦ ଅତ୍ୟନ୍ତ ଆଗ୍ରହୀ । ଆପଣଙ୍କ ରାଜ୍ୟର ଅଧିବାସୀମାନଙ୍କ ପାଇଁ ଆମ ରାଜ୍ୟର ଶୁଭେଚ୍ଛା ନେଇ ମୁଁ ଏ ରାଜ୍ୟକୁ ଆସିଛି । ବୈଷୟିକ ଶିକ୍ଷାକ୍ଷେତ୍ରରେ ଆମ ଦେଶ କିପରି ଭାବରେ ଆପଣଙ୍କ ଦେଶକୁ ସାହାଯ୍ୟ ଦେଇପାରିବ, ତାହାହିଁ ପ୍ରଣିଧାନ କରିବା ମୋର ଲକ୍ଷ୍ୟ । ତତ୍‌ସଂଗେ ଆପଣଙ୍କ ଯେଉଁ ଛାତ୍ରଛାତ୍ରୀମାନେ ବୈଷୟିକ ଉଚ୍ଚଶିକ୍ଷା ପାଇଁ ଭାରତ

ଯିବାକୁ ଆଗ୍ରହୀ, ସେମାନଙ୍କ ମଧ୍ୟରୁ କେତେଜଣଙ୍କୁ ମଧ୍ୟ ମୁଁ ଏ ଅବସରରେ ବାଛିନେବି । ଆପଣଙ୍କ ସହଯୋଗ ବିନା ମୋର କାର୍ଯ୍ୟ ସାଧନ ସମ୍ଭବ ହେବନାହିଁ । ସେପରି ସହଯୋଗ ପାଇବାର ସୂଚନା ଦେଇଥିବାରୁ ମୁଁ ଆଉଥରେ ଆପଣଙ୍କୁ ଧନ୍ୟବାଦ ଦେଉଛି ଏବଂ ଆଶାକରୁଛି ଯେ, ଆପଣଙ୍କ ଦକ୍ଷ ଏବଂ ସୁଶାସନ ଫଳରେ ଏ କାଉଣ୍ଟି ଅଚିରେ ଲାଇବେରିଆ ଗଣରାଜ୍ୟର ସର୍ବଶ୍ରେଷ୍ଠ କାଉଣ୍ଟିରେ ପରିଣତ ହେବ ।"

ସୁପରିଣ୍ଟେଣ୍ଡେଣ୍ଟ ମହୋଦୟ ଖୁସିରେ ତାଳି ମାରୁଥିଲେ । ମୁଁ କିନ୍ତୁ ବସିଗଲାବେଳେ ଲଙ୍କାଗଡ଼ରେ କପିଟିଏ ପରି ମନେକରୁଥିଲି ଏବଂ ଭାବୁଥିଲି ଯେ, କେତେଶହ ବର୍ଷ ପୂର୍ବରୁ ଆସିଥିଲେ ହୁଏତ ଏମାନେ ମୋତେ ଧରିନେଇ ଖୁସିରେ ପୋଡ଼ି ଖାଇଥାଆନ୍ତେ ।

ତା'ପରେ ଉପସ୍ଥିତ ଭଦ୍ରବ୍ୟକ୍ତିମାନଙ୍କ ସଙ୍ଗରେ ଚିହ୍ନା କରାଇଦେଇ ମୋତେ ଯଥାବିଧି ସାହାଯ୍ୟ ଦେବାକୁ ସେ ସମସ୍ତଙ୍କୁ ଆଦେଶ ଦେଇଥିଲେ । ସେହି ଭଦ୍ରବ୍ୟକ୍ତିମାନଙ୍କ ମଧ୍ୟରେ ଥିଲେ ଶ୍ରୀ ଆନନ୍ଦ ଯୋଶେଫ୍, ଆମ କେରଳର ଜଣେ ଯୁବକ ଶିକ୍ଷକ ।

x x x

ମନରୋଭିଆରେ ଥିଲାବେଳେ ମୁଁ ଶିକ୍ଷା ବିଭାଗର କର୍ମକର୍ତ୍ତାମାନଙ୍କ ସଙ୍ଗରେ ଆଲୋଚନା କରି ଆଖପାଖରେ ଥିବା ସାଧାରଣ ଶିକ୍ଷା ଏବଂ ଶିଳ୍ପଶିକ୍ଷା ଅନୁଷ୍ଠାନମାନ ଘୂରି ଘୂରି ତଥା ଶିକ୍ଷା ସମ୍ବନ୍ଧୀୟ ନାନାବିଧ ତଥ୍ୟ ସଂଗ୍ରହ କରି ଏମାନଙ୍କ ଶିକ୍ଷା ପଦ୍ଧତି ସମ୍ବନ୍ଧରେ ଯତ୍‌କିଞ୍ଚିତ୍ ଧାରଣା କରି ସାରିଥିଲି । ସେତେବେଳେ ମୋର ମନେ ହୋଇଥିଲା ଯେ, ଏମାନଙ୍କ ଶିକ୍ଷା ପଦ୍ଧତି ଅନେକାଂଶରେ ଯୁକ୍ତରାଷ୍ଟ୍ର ଆମେରିକାର ଶିକ୍ଷା ପଦ୍ଧତି ପରି ଏବଂ ଗୁଣାତ୍ମକ ଦୃଷ୍ଟିରୁ ଆମ ନିଜ ଶିକ୍ଷାପଦ୍ଧତି ଠାରୁ ଉଚ୍ଚତର । ହାର୍ପରରେ ମୋର ରହଣୀକାଳ ଭିତରେ ସେ ଶିକ୍ଷା ପଦ୍ଧତିର ପ୍ରୟୋଗକାଳୀନ ଦୋଷତ୍ରୁଟି ଲକ୍ଷ୍ୟ କରିବାର ସୁଯୋଗ ପାଇଥିଲି ଏବଂ ମୋର ବିଶ୍ୱାସ ଦୃଢ଼ୀଭୂତ ହେଲା ଯେ, କୌଣସି ଶିକ୍ଷାପଦ୍ଧତିର ତାତ୍ତ୍ୱିକ ଗୁଣ ଅପେକ୍ଷା ତାର ପ୍ରୟୋଗାତ୍ମକ ରୀତି ହିଁ ବେଶୀ ଗୁରୁତ୍ୱପୂର୍ଣ୍ଣ । ଭଲ ଶିକ୍ଷାପଦ୍ଧତି ଅନୁସରଣ କରି ମଧ୍ୟ ଶିକ୍ଷାକ୍ଷେତ୍ରରେ ଏମାନଙ୍କ ଦୁର୍ଭାଗ୍ୟଜନକ ଅବସ୍ଥା ତହିଁର ଏକ ଜ୍ୱଳନ୍ତ ନିଦର୍ଶନ । ଭାରତରେ ସାମାଜିକ ବିଶୃଙ୍ଖଳା ବ୍ୟାଧିର କାରଣ ସମ୍ବନ୍ଧରେ ଜାଣିଶୁଣି ଅଥବା ଅଜାଣତରେ ଭୁଲ୍ ନିଦାନ କରି ଯେଉଁମାନେ ସେ ବ୍ୟାଧିପାଇଁ ଆମ ଶିକ୍ଷାପଦ୍ଧତି ଉପରେ ସବୁ ଦୋଷ ଲଦି

ଦିଅନ୍ତି ଚଳାଇ ଛାତ୍ର ତଥା ଶିକ୍ଷକ ସମାଜର ମେରୁଦଣ୍ଡକୁ ଦୋହଲାଇ ଦେବାରେ ସାହାଯ୍ୟ କରନ୍ତି, ସେମାନଙ୍କ ଅବଗତି ନିମନ୍ତେ ଲାଇବେରିଆ ଗଣରାଜ୍ୟର ଶିକ୍ଷାପଦ୍ଧତି ସମ୍ବନ୍ଧରେ ଏଠାରେ ସାମାନ୍ୟ ଆଲୋଚନା କରାଯାଇପାରେ ।

ଏମାନଙ୍କ ସ୍କୁଲଶିକ୍ଷାର ଶିକ୍ଷାକାଳ ୧୨ ବର୍ଷ । ପ୍ରଥମ ୬ ବର୍ଷକୁ ପ୍ରାଥମିକ ଏବଂ ପରବର୍ତ୍ତୀ ୬ ବର୍ଷକୁ ହାଇସ୍କୁଲ ଶିକ୍ଷା କୁହାଯାଏ । ହାଇସ୍କୁଲ ୬ ବର୍ଷ ପୁଣି ସମ ଦୁଇଭାଗରେ ବିଭକ୍ତ – ପ୍ରଥମ ୩ ବର୍ଷ ଜୁନିୟର ହାଏ ଏବଂ ଶେଷ ତିନିବର୍ଷ ସିନିୟର ହାଏ । ସିନିଅର ହାଏର ୩ ବର୍ଷରେ ଗଣିତ ଏବଂ ସାମାଜିକ ଜ୍ଞାନ ସହ ପଦାର୍ଥ ବିଜ୍ଞାନ, ରସାୟନ, ଉଦ୍ଭିଦ ତଥା ପ୍ରାଣୀବିଜ୍ଞାନ ମଧ୍ୟ ପଢ଼ାଯାଏ । ଯେଉଁ ଛାତ୍ରଛାତ୍ରୀମାନେ ଧନ୍ଦାମୂଳକ ଶିକ୍ଷା ପାଇଁ କୌଣସି ଶିଳ୍ପ ଶିକ୍ଷା ଅନୁଷ୍ଠାନକୁ ପଢ଼ିବାକୁ ଯାଆନ୍ତି, ସେମାନେ ଜୁନିଅର୍ ହାଏ (୬+୩ ବର୍ଷ) ପରେ ୪ ବର୍ଷିଆ ପାଠ୍ୟକ୍ରମ ପଢ଼ନ୍ତି । ଏହି ୪ ବର୍ଷ ଭିତରେ ସେମାନେ ଯେ କୌଣସି ଗୋଟିଏ ଶିଳ୍ପ ଅଥବା ଧନ୍ଦା ସମ୍ବନ୍ଧରେ ପାରଦର୍ଶିତା ଲାଭକଲା ବେଳେ ସେଥିପାଇଁ ଯେତେ ପରିମାଣରେ ଫିଜିକ୍ସ, କେମେଷ୍ଟ୍ରୀ ପ୍ରଭୃତି ବିଜ୍ଞାନ ଏବଂ ଗଣିତ ଦରକାର ସେତକ ମଧ୍ୟ ପ୍ରୟୋଗାତ୍ମକ ରୀତିରେ ତତ୍ତ୍ୱସହ ପଢ଼ନ୍ତି । ୧୨ ବର୍ଷିଆ ହାଇସ୍କୁଲ ସାର୍ଟିଫିକେଟ୍ ଏପରି ଛାତ୍ରଛାତ୍ରୀଙ୍କ ପାଇଁ ୧୩ ବର୍ଷିଆ ଶିଳ୍ପ ଡ଼ିପ୍ଲୋମାରେ ପରିଣତ ହୁଏ ।

ଜୁନିଅର୍ ହାଏ ପାସ୍ କରିଥିବା ଛାତ୍ରଛାତ୍ରୀମାନଙ୍କ ପାଇଁ ବୁକର୍ ୱାସିଂଟନ୍ ଇନ୍‌ଷ୍ଟିଚ୍ୟୁଟ୍‌ରେ ଯେଉଁ ୪ ବର୍ଷିଆ ପାଠ୍ୟକ୍ରମ ରହିଛି । ସେଥିରେ ୧୧ଟି ଶିଳ୍ପ ଶିକ୍ଷା ଦିଆଯାଏ ଯଥା – କୃଷି ବିଜ୍ଞାନ, ବୁକ୍‌କିପିଂ ଏବଂ ସେକ୍ରେଟେରିଏଟ୍ ପ୍ରାକ୍ଟିସ୍ । ଡ୍ରାଫ୍‌ଟିଂ (ଆର୍କିଟେକ୍‌ଚର ପରି), ମେସିନିଷ୍ଟ, ବିଲ୍ଡିଂ କନ୍‌ଷ୍ଟ୍ରକସନ୍, ଅଟୋମୋବାଇଲସ୍, ପ୍ଲମ୍ବିଙ୍ଗ୍ (ଜଳଯୋଗାଣ), ଇଲେକ୍ଟ୍ରିସିଟି, ଇଲେକ୍‌ଟ୍ରନିକ୍ସ (ରେଡ଼ିଓ ଇତ୍ୟାଦି) ହୋମ୍‌ସାଇନ୍ସ ଏବଂ ହୋମ୍ ଇକନମିକ୍ସ (ଗୃହବିଜ୍ଞାନ) । ଚାରିବର୍ଷର ଶିକ୍ଷା ଫ୍ରେସ୍‌ମେନ୍, ସୋପୋମୋର୍ ଜୁନିଏର୍ ଏବଂ ସିନିଏର୍‌ରେ ବିଭକ୍ତ । ପ୍ରତିଦିନର ପାଠ୍ୟକ୍ରମରେ ୩ ଘଣ୍ଟା ଥିଓରୀ, ୩ ଘଣ୍ଟା ଶିଳ୍ପଧନ୍ଦାର ପ୍ରାକ୍‌ଟିକେଲ ଏବଂ ୧ ଘଣ୍ଟା ଶାରୀରିକ ବ୍ୟାୟାମ କିମ୍ବା ଖେଳ ରହିଥାଏ । ହପ୍ତାକୁ ୫ ଦିନ କ୍ଲାସ୍ ହୁଏ ।

ବୈଦେଶିକ ସାହାଯ୍ୟପ୍ରାପ୍ତ ଏହି ଶିଳ୍ପଶିକ୍ଷା ଅନୁଷ୍ଠାନଗୁଡ଼ିକ ଯନ୍ତ୍ରପାତି ଏବଂ ସାଜ ସରଞ୍ଜାମରେ ଯେପରି ଭରପୂର, ସେପରି ଉପଯୁକ୍ତ ତାଲିକାପ୍ରାପ୍ତ ଶିକ୍ଷକ ମାନଙ୍କ ଦ୍ୱାରା ମଧ୍ୟ ପରିଚାଳିତ । ଫଳରେ ଧନ୍ଦାମୂଳକ ଶିକ୍ଷାପ୍ରାପ୍ତ ଛାତ୍ରଛାତ୍ରୀମାନଙ୍କ ଚାହିଦା ଏତେ ବେଶୀ ଯେ, ସେମାନେ ପାଶ୍ କରିବା ପୂର୍ବରୁ ହିଁ ଚାକିରୀ ପାଇଯାଆନ୍ତି ଏବଂ

ପାଶ୍‌କରି ସାରିଲା କ୍ଷଣି ନିଜ ନିଜ କାମରେ ଯୋଗଦିଅନ୍ତି । ପାଶ୍ କରିଥିବା ଛାତ୍ରଛାତ୍ରୀଙ୍କ ପରି ଯେ ବିଶ୍ୱବିଦ୍ୟାଳୟରେ ବିଏ, ବିଏସ୍‌ସି ପଢ଼ିବାକୁ ଚାହେଁ, ସେ ବିଶ୍ୱବିଦ୍ୟାଳୟରେ ନାମଲେଖାଇପାରେ ଅଥବା ଜାତିସଂଘ ଦ୍ୱାରା ପରିଚାଳିତ ଆର୍.ଏମ୍.ଟି.ସି. ପରି ଅନୁଷ୍ଠାନମାନଙ୍କରେ ପୁଣି ଦୁଇବର୍ଷିଆ ଉଚ୍ଚଶିକ୍ଷା ବା ଟ୍ରେନିଂ ପାଇପାରେ । ସ୍ୱାବଲମ୍ବୀ ହେବା ସଂଗେ ସଂଗେ ଉଚ୍ଚଶିକ୍ଷା ପାଇଁ ସବୁ ଦ୍ୱାର ଉନ୍ମୁକ୍ତ ଥିବାଯୋଗୁଁ ଛାତ୍ରଛାତ୍ରୀମାନେ ସାଧାରଣ ହାଇସ୍କୁଲ ଅପେକ୍ଷା ଧନ୍ଦାମୂଳକ ଇନ୍‌ଷ୍ଟିଚ୍ୟୁଟ୍‌କୁ ବେଶି ପସନ୍ଦ କରନ୍ତି ।

ଆମ ନୂତନ ପ୍ରବର୍ତ୍ତିତ ୧୦+୨+୩ ଅନ୍ତର୍ଗତ ୧୦+୨ ଧନ୍ଦାମୂଳକ ଶିକ୍ଷା ଅପେକ୍ଷା ଏମାନଙ୍କ ୬+୩+୪ ଧନ୍ଦାମୂଳକ ଶିକ୍ଷା ଯେ ଉତ୍କୃଷ୍ଟତର ଏଥିରେ ସନ୍ଦେହନାହିଁ । ଆମ ନୂତନ ପଦ୍ଧତିରେ କେବଳ ଦୁଇବର୍ଷର ଧନ୍ଦାଶିକ୍ଷା ଥିଲାବେଳେ ଏମାନଙ୍କ ପଦ୍ଧତିରେ ୪ ବର୍ଷର ଧନ୍ଦାଶିକ୍ଷା ଦିଆଯାଏ । ଫଳରେ ସେପରି ଚାରିବର୍ଷର ଧନ୍ଦାଶିକ୍ଷା ପାଇଥିବା ଛାତ୍ର କିମ୍ବା ଛାତ୍ରୀ ପକ୍ଷରେ ସ୍ୱାବଲମ୍ବୀ ହେବା ସମ୍ଭାବନା ଖୁବ୍ ବେଶୀ ।

ଲାଇବେରିଆରେ ସାଧାରଣ ସ୍କୁଲଶିକ୍ଷା, ଶିଳ୍ପଶିକ୍ଷା ଏବଂ ଧନ୍ଦାମୂଳକ ଶିକ୍ଷା ସେହି ଏକା ଶିକ୍ଷା ଡ଼ାଇରେକ୍ଟର ଏବଂ ଶିକ୍ଷା ମନ୍ତ୍ରଣାଳୟ ଅଧୀନରେ ଥିବା ଫଳରେ ଶିକ୍ଷକ ନିଯୁକ୍ତି ଏବଂ ଗୋଟିଏ ଅନୁଷ୍ଠାନରୁ ଆଉ ଗୋଟିଏ ଅନୁଷ୍ଠାନକୁ ଛାତ୍ର ବଦଳିରେ ବିଶେଷ ଗୋଳମାଳ ଦେଖାଯାଏନି । ପୁଣି ଯେ କୌଣସି ଅନୁଷ୍ଠାନରୁ ପାଶ୍ କଲାପରେ ମଧ୍ୟ ବିଶ୍ୱବିଦ୍ୟାଳୟର ଦ୍ୱାର ଉନ୍ମୁକ୍ତ ଥିବା ଫଳରେ କୌଣସି ଅନୁଷ୍ଠାନର ଛାତ୍ରଙ୍କ ମଧ୍ୟରେ ହୀନମନ୍ୟତା କିମ୍ବା ଗୌଣ ମନୋଭାବ ଦେଖାଦିଏନି । ଆମ ଓଡ଼ିଶାରେ ଆଇ.ଟି.ଆଇ (ଇଣ୍ଡଷ୍ଟ୍ରିଆଲ୍ ଟ୍ରେନିଂ ଇନ୍‌ଷ୍ଟିଚ୍ୟୁଟ) ପରି ଶିଳ୍ପଶିକ୍ଷା ଅନୁଷ୍ଠାନମାନଙ୍କରେ ଯେଉଁ ଦୁଇବର୍ଷିଆ ପାଠ୍ୟକ୍ରମ ରହିଛି, ସେସବୁ ଆର୍ଥିକ ସ୍ୱଚ୍ଛଳତା ଭୋଗୁଥିବା ଶିଳ୍ପବିଭାଗ ଅଧୀନରେ । ପ୍ରାୟ ପ୍ରତ୍ୟେକ ଆଇଟିଆଇରେ ଯନ୍ତ୍ରପାତି ଏବଂ ସାଜ ସରଞ୍ଜାମ ଯଥେଷ୍ଟ । ହଷ୍ଟେଲ୍ ଏବଂ ଶିକ୍ଷକମାନଙ୍କ ଆବାସ ମଧ୍ୟ ଗୋଟିଏ ସାଧାରଣ କଲେଜ ତୁଳନାରେ ଯଥେଷ୍ଟ ବେଶି । ତଥାପି ଦୁଇବର୍ଷ ଭିତରେ ଅଧିକାଂଶ ଛାତ୍ର ଯଥୋଚିତ ଧନ୍ଦାଶିକ୍ଷା ପାଇପାରୁ ନଥିବା ଯୋଗୁ ସେମାନେ ସେପରି ଅନୁଷ୍ଠାନରୁ ପାଶ୍‌କରି ଆସିଲାପରେ ସ୍ୱାବଲମ୍ବୀ ହୋଇ ନିଜ ଗୋଡ଼ରେ ନିଜେ ଠିଆହୋଇ ପାରନ୍ତିନାହିଁ । ଫଳରେ ଅର୍ଦ୍ଧଶିକ୍ଷିତ ଶିଳ୍ପ ମଜୁରିଆ କିମ୍ବା ହେଲପର୍ ହୁଅନ୍ତି । ଏପରି ଆଇ.ଟି.ଆଇ ପାଶ୍ କରିଥିବା ସାର୍ଟିଫିକେଟ୍‌ଧାରୀ ଛାତ୍ର ବିଶ୍ୱବିଦ୍ୟାଳୟରେ ନାମ ଲେଖାଇ ପାରୁ ନ ଥିବା ଯୋଗୁଁ ଫମ୍ପା ଡ଼ିଗ୍ରୀ ସର୍ବସ୍ୱ ଦେଶରେ ସେ

ସାର୍ଟିଫିକେଟ୍‌ଧାରୀଙ୍କ ମନରେ ସ୍ୱାଭାବିକ୍ ଭାବରେ ହୀନମନ୍ୟତା ଦେଖାଦିଏ । ଫଳରେ ମଧ୍ୟବିତ୍ତ ଶ୍ରେଣୀ ପରିବାରର ଅଭିଭାବକମାନେ ନିଜ ପୁଅକୁ ସେପରି ଶିକ୍ଷା ଦେବାରେ ପଶ୍ଚାତ୍‌ପଦ ହୁଅନ୍ତି ।

ଏଣେ ସାଧାରଣ ଶିକ୍ଷା ଏବଂ କଲେଜ ଶିକ୍ଷା ଆର୍ଥିକ ଦୈନ୍ୟରେ ଘୋଷାରିହୋଇ ଚାଲୁଥିବା ଶିକ୍ଷା ବିଭାଗର ଅଧୀନରେ । ଲାବୋରେଟରୀ ଯନ୍ତ୍ରପାତି କିମ୍ବା ଲାଇବ୍ରେରୀ ପାଇଁ ପଇସା ନାହିଁ, ତଥାପି ନୂଆ କଲେଜ ସବୁ ସୃଷ୍ଟି ହୋଇଚାଲିଥାଏ । ସିଟ୍ ବଢୁଥାଏ । ଧନ୍ଦାମୂଳକ ଶିକ୍ଷା ଆରମ୍ଭ ହୁଏ, ଗୋପାଳନ ଶିକ୍ଷା ଦିଆଯାଏ, ହୁଏତ କଲେଜରେ ଗାଈଟିଏ ନାହିଁ । ତଥାପି ୧୦+୨ର +୨କୁ ଶିଳ୍ପ ବିଭାଗର ଆଇଟିଆଇ ସାଙ୍ଗରେ ଯୋଡ଼ି ଦିଆଯାଏନି କିମ୍ବା ଆଇଟିଆଇକୁ କୌଣସି କଲେଜ ସଙ୍ଗରେ ଯୋଡ଼ି ଦିଆଯାଏନି ଯେହେତୁ କେହି ନିଜ ପ୍ରଭାବ କମାଇବାକୁ ବୋଧହୁଏ ଅନିଚ୍ଛୁକ । ସେ ପାଖରେ ବିଶ୍ୱବିଦ୍ୟାଳୟ ତାର ପ୍ରବେଶ ଦ୍ୱାର ରୁଦ୍ଧକରି ବସିଥାଏ । ଆଇ.ଟି.ଆଇ.ର ସିଲାବସ୍‌କୁ ନିକିତିରେ ଓଜନକରି ଜାତିପ୍ରଥା ଥିବା ଓଡ଼ିଶାରେ ତଥା ଭାରତରେ ଶିକ୍ଷାକ୍ଷେତ୍ରରେ ମଧ୍ୟ ନାନା ଜାତି ସବୁ ଦେଖାଦିଅନ୍ତି । ଏପରି ଅବସ୍ଥାରେ ୧୦+୨ ଶିକ୍ଷା ମଧ୍ୟ ଗାନ୍ଧିଜୀଙ୍କ ମୌଳିକ ଶିକ୍ଷାର ଦଶା ଯେ, ଭୋଗିବ ସେ କଥା କିଏ କହିବ ?

ସ୍ୱାଭାବିକ୍ ଭାବରେ ମନରେ ପ୍ରଶ୍ନ ଉଠେ ଯେ, ଆମ ସ୍ୱାଧୀନତାପ୍ରାପ୍ତିର ୧୦୦ ବର୍ଷ ପୂର୍ବରୁ ଏକ ସ୍ୱାଧୀନ ଗଣରାଜ୍ୟ ଭାବରେ ପ୍ରତିଷ୍ଠିତ ହୋଇ ସାରିଥିବା ଲାଇବେରିଆ ଉତ୍କୃଷ୍ଟତର ଶିକ୍ଷାପଦ୍ଧତି ଅନୁସରଣ କରି ମଧ୍ୟ ଶିକ୍ଷାକ୍ଷେତ୍ରରେ ଏତେ ଅନୁନ୍ନତ ହେଲା କାହିଁକି । ସେ ବିଷୟର ଆଲୋଚନା କଲାବେଳେ ହିଁ କୌଣସି ଶିକ୍ଷାପଦ୍ଧତିର ଗୁଣାତ୍ମକ ଉତ୍କୃଷ୍ଟତା ଅପେକ୍ଷା ତାର ଯଥାଯଥ ପ୍ରୟୋଗ ହିଁ ବେଶି ମୂଲ୍ୟବାନ୍ ବୋଲି ମନେହୁଏ ।

ଲାଇବେରିଆର ସ୍କୁଲ କୋଠାବାଡ଼ି ସବୁ ଆମ ସ୍କୁଲ କୋଠାବାଡ଼ିରୁ କୌଣସି ମତେ ହୀନ ନୁହେଁ, କିନ୍ତୁ ହାଇସ୍କୁଲମାନଙ୍କରେ ଲାଇବ୍ରେରୀ ଏବଂ ଲାବୋରେଟରୀମାନଙ୍କର ଘୋର ଅଭାବ । ସାମାନ୍ୟ କାଗଜ ପେନ୍‌ସିଲ ଠାରୁ ଆରମ୍ଭ କରି ବହିପତ୍ର ପର୍ଯ୍ୟନ୍ତ ଛାତ୍ରଛାତ୍ରୀଙ୍କ ବ୍ୟବହାର୍ଯ୍ୟ ସବୁ ସରଞ୍ଜାମ ବାହାରୁ ଆସୁଥିବାରୁ ଏବଂ ସେ ସବୁର ମୂଲ୍ୟ ଅତ୍ୟଧିକ ଥିବା ଫଳରେ ଅଧିକାଂଶ ଛାତ୍ରଛାତ୍ରୀଙ୍କ ପାଖରେ ବହିପତ୍ର ନ ଥାଏ । ସେମାନେ ତେଣୁ ଅତ୍ୟଧିକ ମାତ୍ରାରେ କ୍ଲାସ୍ ନୋଟ୍ ଉପରେ ନିର୍ଭର କରନ୍ତି । ଶିକ୍ଷକମାନଙ୍କ ମଧ୍ୟରୁ ଅନେକେ ବିଏଡ୍ ଡ଼ିଗ୍ରୀଧାରୀ, କିନ୍ତୁ ଏଠାରେ ହାଇସ୍କୁଲ ପରେ ୪ ବର୍ଷିଆ ବିଏଡ୍ ପାଠ୍ୟକ୍ରମ ରହିଥିବାରୁ ଆମ ଭାରତରେ ବି.ଏ.ବି.ଏଡ୍ ଅଥବା ବିଏସ୍‌ସି. ବିଏଡ୍ ପରି କିଏ କଳା ଏବଂ କିଏ ବିଜ୍ଞାନରେ

ବିଶାରଦ ଜଣାପଡ଼େନି । ତେଣୁ ଶିକ୍ଷକ ନିଯୁକ୍ତିବେଳେ ତଥା କ୍ଲାସ୍ ବାଣ୍ଟିଲାବେଳେ କେଉଁ ଶିକ୍ଷକ କେଉଁ ବିଷୟ ପଢ଼ାଇବାକୁ ଉପଯୁକ୍ତ ସେ ବିଷୟରେ କର୍ମକର୍ତ୍ତାମାନେ ଯଥୋଚିତ ଧ୍ୟାନ ଦିଅନ୍ତିନି । ହାଇସ୍କୁଲ ସ୍ତରରୁ ଏମାନେ ଗଣିତ ଏବଂ ବିଜ୍ଞାନରେ ଦୁର୍ବଳ ଥିବା ଫଳରେ ବିଏଡ୍ ଶିକ୍ଷା ପରେ ମଧ୍ୟ ଶିକ୍ଷକମାନେ ସାଧାରଣତଃ ଗଣିତ ଓ ବିଜ୍ଞାନ ଶିକ୍ଷାଦାନରେ ଅପାରଗ ହୁଅନ୍ତି । ଗୋଟାଏ ଅନ୍ଧ ଆଉ ଗୋଟାଏ ଅନ୍ଧକୁ ବାଟ କଢ଼ାଉଥିଲା ପରି ଏହି ଅପାରଗ ଶିକ୍ଷକମାନଙ୍କ ଉପରେ ବିଜ୍ଞାନ ଏବଂ ଗଣିତର ଶିକ୍ଷାର ଭାର ପଡ଼େ । ଫଳରେ ଯାହାହେବା କଥା ।

ଏମାନଙ୍କ ପରୀକ୍ଷା ପ୍ରଣାଳୀ ମଧ୍ୟ ଅଦ୍ଭୁତ । ସେମେଷ୍ଟର୍ ସିଷ୍ଟମ୍ ପରି ଜଣାପଡୁଥିଲେ ମଧ୍ୟ ସେ ସିଷ୍ଟମ୍‌ର ଗୁଣ ପରିବର୍ତ୍ତେ ସବୁ ଦୋଷ ଦେଖିବାକୁ ମିଳେ । ସିନିଏର୍ ହାଏର ୩ ବର୍ଷ ଭିତରୁ ପ୍ରଥମ ବର୍ଷରେ ଫିଜିକ୍ସ ପଢ଼ାହୋଇ ପରୀକ୍ଷା ସରିଯାଏ ତ ଦ୍ୱିତୀୟ ବର୍ଷରେ କେମିଷ୍ଟ୍ରି ପଢ଼ା ହୋଇ ପରୀକ୍ଷା ସରିଯାଏ। ତୃତୀୟ ବର୍ଷରେ ପଢ଼ାହୁଏ ବୋଟାନୀ ଏବଂ ଯୁଲୋଜି । ଫଳରେ ସ୍କୁଲରୁ ପାଶ୍‌କରି ବାହାରି ଆସିଲାବେଳକୁ ତିନିବର୍ଷ ପୂର୍ବରୁ ପଢ଼ିଥିବା ବିଷୟ ଛାତ୍ର ପୁରାପୁରି ଭୁଲି ଯାଇଥାଏ । ତଥାପି ପାଶ୍ କରିବାରେ ତାକୁ ବିଶେଷ କିଛି ଅସୁବିଧା ହୁଏନି । ସାର୍ଟିଫିକେଟ୍ ପାଇବା ପାଇଁ କେନ୍ଦ୍ର ସ୍ତରରେ ଯେଉଁ ପରୀକ୍ଷା ହୁଏ, ତାର ମୂଲ୍ୟ କେବଳ ଶତକଡ଼ା ୩୦ ଏବଂ ସ୍କୁଲର ଅନ୍ତରୀଣ ପରୀକ୍ଷାର ମୂଲ୍ୟ ଶତକଡ଼ା ୭୦ । ଦୁଇଟି ମିଶିଲା ପରେ ପାଶ୍ ମାର୍କ ପ୍ରାୟ ଶତକଡ଼ା ୩୬ । କେନ୍ଦ୍ରର ପରୀକ୍ଷା ପୁଣି ହଁ ନାହିଁ ଚିହ୍ନିତ କରିଦେବା ଅବଜେକ୍ଟିଭ୍ ଟାଇପ୍‌ର । ଆଖିବୁଜି ସବୁ ହିଁ କିମ୍ବା ସବୁ ନାହିଁରେ ଛକିମାରି ଦେଲେ ମଧ୍ୟ ଶତକଡ଼ା ୩୦ ମିଳିଯିବା ସମ୍ଭାବନା ବେଶି । ତେଣୁ ଯେଉଁସବୁ ବିଷୟରେ ବିଶେଷ ଚିନ୍ତା କରିବାକୁ ପଡ଼େ ଅଥବା ଧ୍ୟାନ ଦେବାକୁ ହୁଏ, ସେ ସବୁ ବିଷୟରେ ଏମାନେ ସାଧାରଣତଃ ଦୁର୍ବଳ ।

ଛାତ୍ରଛାତ୍ରୀଙ୍କ ସର୍ବାଙ୍ଗୀନ ଉନ୍ନତି ହିଁ ଯେ କୌଣସି ଶିକ୍ଷାର ଲକ୍ଷ୍ୟ । ଶିକ୍ଷା କହିଲେ ମାନସିକ ଓ ବୌଦ୍ଧିକ ଶିକ୍ଷା ସଂଗେ ସଂଗେ ଶାରୀରିକ ଏବଂ ନୈତିକ ତଥା ଆଧ୍ୟାତ୍ମିକ ଶିକ୍ଷା ମଧ୍ୟ ବୁଝାଇଥାଏ । ତେଣୁ ଯେ କୌଣସି ଶିକ୍ଷା ପଦ୍ଧତିରେ ଏ ସବୁଥିରେ ଊଣାଅଧିକେ କିଛି କିଛି ରହିଥିବା ସ୍ୱାଭାବିକ୍ । କିନ୍ତୁ ଶିକ୍ଷା ପଦ୍ଧତିରୁ ପ୍ରୟୋଗ କାଳରେ ହିଁ ସବୁ ଗୋଳମାଳ ହୋଇଯାଏ ଏବଂ ଯାବତୀୟ ଦୋଷତ୍ରୁଟି ଦେଖାଦିଏ । ପୋଥିଗତ ତାତ୍ତ୍ୱିକ ବିଦ୍ୟାର ବ୍ୟାଖ୍ୟାନ ଯେ କୌଣସି ଶିକ୍ଷା ପଦ୍ଧତିର ଏକ ମୌଳିକ ଉପାଦାନ । ସେ ଶିକ୍ଷା ସ୍କୁଲ ଏବଂ କଲେଜମାନଙ୍କରେ ସାଧାରଣତଃ ମାନସିକ ଏବଂ ବୌଦ୍ଧିକ ସ୍ତରରେ ହିଁ ସୀମିତ ହୋଇଥାଏ । ନୈତିକ ତଥା ଆଧ୍ୟାତ୍ମିକ ଶିକ୍ଷାର କିଛି

ଅଂଶ ସ୍କୁଲ କଲେଜମାନଙ୍କରୁ ଆସୁଥିଲେ ହେଁ ସେ ସବୁ ମୁଖ୍ୟତଃ ସାଙ୍ଗ ସାଥୀ, ବାପ ମା' ନିଜ ଘରର ଏବଂ ପାରିପାର୍ଶ୍ୱିକ ପରିସ୍ଥିତି ତଥା ସାମାଜିକ ବାତାବରଣ ଉପରେ ବିଶେଷ ଭାବରେ ନିର୍ଭର କରେ । ଶିକ୍ଷକ ଏବଂ ଗୁରୁଜନଙ୍କ ମହାନ୍ ଆଦର୍ଶ ବିନା ଯେତେ ବକ୍ତୃତା ଶୁଣିଲେ ମଧ ନୈତିକ ଏବଂ ଆଧାତ୍ମିକ କ୍ଷେତ୍ରରେ କୋମଳମନା ଶିଶୁ ଅଥବା ଚଞ୍ଚଳମନା ଯୁବକ ଉପରେ ସେ ସବୁ ବକ୍ତୃତାର କିଛି ସ୍ଥାୟୀ ପ୍ରଭାବ ପଡ଼େନି । ଏ ସମ୍ବନ୍ଧରେ ଭାରତର ସ୍ୱାଧୀନତାକାଳୀନ ଗାନ୍ଧିଜୀଙ୍କ ତ୍ୟାଗପୂତ ଭାରତର ଛାତ୍ରଛାତ୍ରୀ ତଥା ଆଜିର ଯେନତେନ ପ୍ରକାରେଣ ଅର୍ଥ ଆହରଣକାରୀ କ୍ଷମତାଲିପ୍ସୁଙ୍କ ଭାରତରେ ଛାତ୍ରଛାତ୍ରୀଙ୍କ ଆଧାତ୍ମିକ ଚେତନା ତୁଳନା କରାଯାଇପାରେ । ଲାଇବେରିଆରେ ମୁଁ ଯାହା ଦେଖିଲି, ମୋର ମନେହେଲା ଯେ ନୈତିକ ଏବଂ ଆଧାତ୍ମିକ କ୍ଷେତ୍ରରେ ଶିକ୍ଷକ ଏବଂ ସମାଜର ଆଦର୍ଶାତ୍ମକ ଅବଦାନ ସେଠାରେ ଅତି ନିମ୍ନସ୍ତରରେ ।

ଆମ ଦେଶ ତୁଳନାରେ ଏମାନେ ଡେ଼ରିରେ ପାଠପଢ଼ା ଆରମ୍ଭ କରନ୍ତି । ଫଳରେ ହାଇସ୍କୁଲର ଶେଷ ପରୀକ୍ଷା ଦେଲାବେଳକୁ ଏମାନଙ୍କ ଭିତରୁ ଅଧିକାଂଶଙ୍କ ବୟସ ୨୦/୨୧ ବର୍ଷ । ପୁଅ ଓ ଝିଅଙ୍କ ପାଇଁ ସଂଖ୍ୟା ପ୍ରାୟ ଅଧାଅଧି । ଏଣେ ଏମାନଙ୍କ ସମାଜ ନୈତିକତା ଏବଂ ଚରିତ୍ର ଉପରେ ବିଶେଷ ଗୁରୁତ୍ୱ ଦିଏନି, ପୁଅ ଝିଅଙ୍କ ଅବାଧ ମିଳନ ତେଣୁ ଏଠାରେ ଏକ ସାଧାରଣ କଥା । ନାଚ, ଗାନ, ମଦ୍ୟପାନ ଏବଂ ମଉଜ ମଜଲିସ୍‌ର ଜୀବନ ସତେ ଯେମିତି ଏମାନଙ୍କ ସମାଜର ଚରମ ଲକ୍ଷ୍ୟ । ଯୁକ୍ତରାଷ୍ଟ୍ର ଆମେରିକାର ସହର ତଳି ନିଗ୍ରୋ ବସତିମାନଙ୍କ ଜୀବନ ଆଦର୍ଶ ପରି ଜଣାପଡ଼େ । ନୈତିକତାବିହୀନ ସମାଜର ଛାପ ସ୍କୁଲମାନଙ୍କରେ ପଡ଼େ । ଶିକ୍ଷକମାନେ ରକ୍ଷକ ହେବେ କଣ, ଭକ୍ଷକ ହୋଇପଡ଼ନ୍ତି । ଏମାନଙ୍କ ସ୍କୁଲ ସବୁ ତେଣୁ ଉଣାଅଧିକେ ପ୍ରେମ ଅଭିସାରର ଏକ ରଙ୍ଗଭୂମିରେ ପରିଣତ ହୋଇଯାଏ । ସନ୍ଧ୍ୟା ପରେ ପାଠପଢ଼ା ବଦଳରେ ଛାତ୍ରଛାତ୍ରୀଙ୍କ ମଧ୍ୟରେ ବଲ୍‌ଡ଼ାନ୍‌ସ ଏବଂ ଡ୍ରିଙ୍କିଙ୍ଗ୍ ସାଧାରଣ କଥା ହୋଇଯାଏ । ଘରେ ପଢ଼ାପଢ଼ିରେ ସୁଯୋଗ ଅଭାବ, ସ୍କୁଲରେ ଲାଇବ୍ରେରୀ, ଲାବୋରେଟେରୀ, ୱାର୍କସପ୍ ନାହିଁ । ବାପା ମା' ଶିକ୍ଷକ ଗୁରୁଜନଙ୍କ କର୍ତ୍ତୃତ୍ୱ ନାହିଁ, ଉଚ୍ଛୃଙ୍ଖଳ ସମାଜ – ଶିକ୍ଷାର ମାନଦଣ୍ଡ ତେଣୁ ଏଠାରେ ଅତି ନିମ୍ନ ଧରଣର ।

x x x

ହାର୍ପରରେ ମୂଳରୁ ହିଁ ଶ୍ରୀ ଯୋଶେଫ୍ ସହାୟକ ଶିକ୍ଷାମନ୍ତ୍ରୀଙ୍କୁ କହି ମୋତେ ତାଙ୍କ ଘରକୁ ନେଇଯାଇଥିଲେ । ହାର୍ପର ସହରର ଗୋଟିଏ ସୁନ୍ଦର କୋଠାର ଉପର

ମହଲାରେ ଯୋଶେଫ୍‌ଙ୍କ ଘର । ଘରେ ଶ୍ରୀମତୀ ଯୋଶେଫ୍ ଏବଂ ୪।୫ ବର୍ଷର ଗୋଟିଏ ମାତ୍ର ଝିଅ ।

ଭାରତ ଭିତରେ ଧର୍ମ, ଜାତି, ବର୍ଣ୍ଣ, ଭାଷା ଏବଂ ଏପରିକି ଅଞ୍ଚଳ ଭିତରେ ମଧ୍ୟ ଏତେ ଟଣାଓଟରା । ଭାରତ ବାହାରେ କିନ୍ତୁ ଜଣେ ଭାରତୀୟ ଆଉ ଜଣେ ଭାରତୀୟଙ୍କୁ ଦେଖିଲେ ଖୁସିରେ ନାଚିଉଠେ । ଯୋଶେଫ୍ ଦମ୍ପତ୍ତି ମୋତେ ଦେଖି ତାଙ୍କଘରୁ କେହି ଜଣେ ଆସିଲାପରି ମନେ କରିଥିଲେ । କେରଳ ଯୁବକ ଯୁବତୀମାନଙ୍କ ସାହସ ଏବଂ ଆତ୍ମବିଶ୍ୱାସ ସତରେ ଆମର ଗର୍ବର ବିଷୟ । ଯୋଶେଫ୍ କୁଆଡ଼େ ଯେତେବେଳେ ଏମ୍‌ଏସ୍‌ସି ପାଶ୍ କଲା, ଭାରତରେ ଚାକିରୀର କୌଣସି ଆଶା ନଦେଖି ସିଙ୍ଗାପୁର ଚାଲିଯାଇଥିଲା । ସିଙ୍ଗାପୁରରୁ ନୈରୋବୀ, ନିରୋବୀରୁ ମନରୋଭିଆ ଏବଂ ଶେଷରେ ହାର୍ପର । ଏମାନଙ୍କର ତ ବିଜ୍ଞାନ ଶିକ୍ଷକର ଘୋର ଅଭାବ । ଭାରତୀୟ ଶିକ୍ଷକମାନେ ଖୁବ୍ ଭଲ ବୋଲି ମଧ୍ୟ ଖ୍ୟାତି ଅଛି, ହାର୍ପର୍‌ର ସରକାରୀ ହାଇସ୍କୁଲରେ ତାଙ୍କ ପଦାର୍ଥ ବିଜ୍ଞାନର ଶିକ୍ଷକ ରୂପେ ଚାକିରୀ ମିଳିଗଲା । ନିଜ ଗୋଡ଼ରେ ଠିଆହୋଇ ସାରିଲାପରେ ସେ ବିବାହ କଲା ତା'ଠାରୁ ୨/୩ ବର୍ଷର ସାନ ଏବଂ କେରଳର ଏମ୍‌ଏସ୍‌ସି ଛାତ୍ରୀ ଶ୍ରୀମତୀ ଯୋଶେଫ୍‌ଙ୍କୁ । ଶ୍ରୀମତୀ ଯୋସେଫ ହାର୍ପରର ସେଇ ସ୍କୁଲରେ ଗଣିତର ଶିକ୍ଷୟିତ୍ରୀ ହୋଇଗଲେ ।

କି ସୁନ୍ଦର ଜୀବନ ଏ ଦୁହିଁଙ୍କର । ମୁଁ ଯେତେବେଳେ ଖୁସିରେ ସେକଥା ସୂଚାଇ ଦେଲି ଯୋଶେଫ୍ ଶ୍ରୀମତୀ ଯୋଶେଫ୍‌ଙ୍କୁ ଅନାଇ ହସି ହସି ଉତ୍ତରଦେଲା, "ଚଳି ଯାଉଛି । ଆଉ କେତେବର୍ଷ କୌଣସି ମତେ କଟାଇଦେଇ କିଛିଅର୍ଥ ସଂଗ୍ରହ କରିନେଲା ପରେ ଆମେ ଏ ନର୍କରୁ ଉଦ୍ଧାରପାଇ ନିଜଦେଶକୁ ଚାଲିଯିବୁ ।" ତା'ପରେ ସେମାନେ ତାଙ୍କର ଦୁଃଖ କାହାଣୀ ବର୍ଣ୍ଣନା କରୁଥିଲେ । ଶ୍ରୀମତୀ ଯୋଶେଫ୍‌ଙ୍କ ଆଖି କେତେବେଳେ ଛଳ ଛଳ ହୋଇଯାଉଥିଲା ତ ଆଉ କେତେବେଳେ ସେ ଆଖି ପୋଛୁ ପୋଛୁ ହସି ପକାଉଥିଲେ ।

ଶ୍ରୀମତୀ ଯୋଶେଫ୍‌ଙ୍କ ଶିକ୍ଷକତାର ଜୀବନ । ହାର୍ପର ହାଇସ୍କୁଲର ନିଗ୍ରୋ ପ୍ରିନ୍‌ସିପାଲ୍ ଧରି ନେଇଥିଲା ଯେ ଆଫ୍ରିକୀୟ ଝିଅମାନଙ୍କ ପରି ଶ୍ରୀମତୀ ଯୋଶେଫ୍ ମଧ୍ୟ ଭୋଗବିଳାସର ଏକ ସାମଗ୍ରୀ, ତା ହାତର ଗୋଟାଏ ଖେଳନା । ତାର ବିଶ୍ୱାସ ଥିଲା ଯେ, ସେ ତାଙ୍କୁ ଯେମିତି ନଚାଇବ ସେ ଖୁସିରେ ସେମିତି ନାଚିବେ। ଶ୍ରୀମତୀ ଯୋଶେଫ କିନ୍ତୁ ସାଧାରଣ ଭାରତୀୟ ମହିଳା ପରି ଦୂରେଇ ରହିଗଲେ । ପ୍ରିନ୍‌ସିପାଲ ଧରିନେଲା ଯେ, ସେ ଜଣେ ଆଫ୍ରିକୀୟ ନିଗ୍ରୋ ବୋଲି ଶ୍ରୀମତୀ ଯୋଶେଫ୍ ତା' ସାଙ୍ଗରେ ମିଳାମିଶା କରିବାକୁ ଚାହୁଁନାହାନ୍ତି । ଅନ୍ୟ ଶିକ୍ଷକମାନଙ୍କ ଆଖି ମଧ୍ୟ ଶ୍ରୀମତୀ

ଯୋଶେଫଙ୍କ ଉପରେ ପଡିଥିଲା। କୌଣସି ଶିକ୍ଷୟିତ୍ରୀ ଯେ ପ୍ରିନ୍‌ସପାଲଙ୍କ କାମନାର ଅଗ୍ରଗତିକୁ ଏପରି ପ୍ରତ୍ୟାଖ୍ୟାନ କରିଦେଇପାରିବ ସେ ଧାରଣା ସେମାନଙ୍କ କଳ୍ପନାର ଅତୀତ ଥିଲା । ସେ ସମସ୍ତେ ଧରିନେଲେ ଯେ, ଭାରତୀୟମାନେ ବର୍ଣ୍ଣବୈଷମ୍ୟ ନୀତି ପୋଷଣ କରନ୍ତି ଏବଂ ନିଗ୍ରୋମାନଙ୍କ ସହ ଅବାଧ ମିଳନ ଚାହାନ୍ତିନି । ଫଳରେ ଯୋଶେଫ୍ ଦମ୍ପତ୍ତିଙ୍କ ଜୀବନରେ ଅପମାନର ଝଡ଼ଝଞ୍ଜା ଦେଖାଦେଲା ଏବଂ ଧୀରେ ଧୀରେ ସେମାନଙ୍କ ଜୀବନଯାପନ ଅସହ୍ୟ ହୋଇଉଠିଲା । ସେମାନେ ବୁଝିପାରିଲେ ଯେ ହାର୍ପରରେ ରହିବା ତାଙ୍କ ପକ୍ଷରେ ଆଉ ସମ୍ଭବ ହବନି । କିନ୍ତୁ ଯିବେ କୁଆଡ଼େ ? ଭାରତକୁ ଫେରିଗଲେ ବଞ୍ଚିବେ କେମିତି ? ତଥାପି ଇଜ୍ଜତ ଯେ ଭାରତୀୟ ମହିଳାର ଜୀବନ ସମ୍ବଳ। ଚାକିରୀ ଛାଡ଼ି ଦେବାପାଇଁ ଦୁହେଁ ନିଷ୍ପତ୍ତି ନେଲେ ।

ଯୋଶେଫ୍ ଦମ୍ପତ୍ତି ଚାକିରୀ ଛାଡ଼ିଦେଇ ହାର୍ପରରୁ ଚାଲିଯାଉଛନ୍ତି ଏ ଖବର ସହରରେ ରାଷ୍ଟ୍ର ହୋଇଗଲା । ଖ୍ରୀଷ୍ଟିୟାନ ପାଦ୍ରୀମାନେ ଏକଥା ଶୁଣିଲେ । ହାର୍ପରରେ ଯୋଶେଫ୍ ଦମ୍ପତ୍ତି ହିଁ ଖ୍ରୀଷ୍ଟିୟାନ୍ ସମାଜର ଆଦର୍ଶ ଦମ୍ପତ୍ତି । ତାଙ୍କର ନୈତିକତା ଏବଂ ଜୀବନ ଆଦର୍ଶକୁ ଦର୍ଶାଇ ଏଇ ପାଦ୍ରୀମାନେ ନିଗ୍ରୋ ଦମ୍ପତ୍ତିମାନଙ୍କୁ ଗଢ଼ିବାକୁ ଚାହୁଁଛନ୍ତି । ପ୍ରକୃତ ଘଟଣା ସେମାନେ ବୁଝିନେଲେ । ହାର୍ପରର ରାସ୍ତାଘାଟରେ ନାହିଁ ନଥିବା ଦୃଶ୍ୟ ଦେଖାଦେଲା । ଗୀର୍ଜାମାନଙ୍କରେ ଏ ବିଷୟରେ ଆଲୋଚନା ହେଲା । ଖ୍ରୀଷ୍ଟିୟାନ ସମାଜ ଯୋଶେଫ୍ ଦମ୍ପତ୍ତିଙ୍କ ଅଭିଭାବକ ରୂପରେ ଛିଡ଼ା ହୋଇଗଲେ । ପାଦ୍ରୀମାନଙ୍କ ଠାରୁ ଉତ୍ସାହ ପାଇ ସ୍କୁଲର ଛାତ୍ରଛାତ୍ରୀମାନେ ମଧ ତାଙ୍କ ପ୍ରିୟ ଶିକ୍ଷକ ଏବଂ ଶିକ୍ଷୟିତ୍ରୀଙ୍କୁ ଛାଡ଼ିବେନାହିଁ ବୋଲି ଜିଦ୍‌ଧରି ବସିଲେ । ଫଳରେ ସହକାରୀ ହସ୍ତକ୍ଷେପ ଦେଖାଦେଲା । ପ୍ରିନ୍‌ସିପାଲ୍ ଯୋଶେଫ୍ ଦମ୍ପତ୍ତି ପାଖରେ କ୍ଷମା ମାଗିବାକୁ ବାଧହେଲେ ।

ଏ ଭିତରେ କେତେବର୍ଷ କଟିଗଲାଣି । ତଥାପି ଶ୍ରୀମତୀ ଯୋଶେଫ୍‌ଙ୍କ ହୃଦୟର ସେ କ୍ଷତ ଆଜି ମଧ ପୁରାପୁରି ଶୁଖିନି । ଲୁହଭରା ଆଖିରେ ସେ କହୁଥିଲେ, "ଆମର ଧନ ସମ୍ପତ୍ତି ଏବଂ ହଜାର ହଜାର ଟଙ୍କା ଲୋଡ଼ାନାହିଁ । ଭାରତରେ ଆମକୁ ଯଦି ୪୦୦/୫୦୦ ଟଙ୍କାର ଚାକିରୀଟିଏ ମିଳିଯାଆନ୍ତା, ଆମେ ଆମର ଦେଶକୁ ଫେରିଯାଇ କି ଶାନ୍ତିରେ ନିଜ ଜୀବନ କଟାଇ ଦିଅନ୍ତୁ । ଏ ରାକ୍ଷସଙ୍କ ଦେଶର ଆର୍ଥିକ ସ୍ୱଚ୍ଛଳତାକୁ ଶତଧିକ୍ ।"

ଅଜାଣତରେ ମୋ ଆଖି ମଧ ଛଳ ଛଳ ହୋଇଯାଇଥିଲା । ଯୋଶେଫ୍‌ର ଝିଅ ଲିଲି ତା ବହିର ସବୁ ଚିତ୍ର ମୋତେ ଚିହ୍ନାଇ ଦେଲାପରେ ତାର ଯାବତୀୟ ବିଦ୍ୟାବୁଦ୍ଧି

ପରିଦର୍ଶିତ କରିଦେଇ କେତେବେଳୁ ଶୋଇଯାଇ ସାରିଥିଲା । ଲିଲିକୁ ନେଇ ଶୁଆଇଦେବା ପାଇଁ ଏବଂ ସେ ନିଜେ ମଧ୍ୟ ଏଥର ବିଶ୍ରାମ ନିଅନ୍ତୁ ବୋଲି ମୁଁ ଶ୍ରୀମତୀ ଯୋଶେଫ୍‌ଙ୍କୁ ଜିଗର କଲି ।

ରାତି ଅନେକ ବେଶି । ତଥାପି ଯୋଶେଫ୍ ଜିଦ୍ କଲା ଯେ ସେ ମୋ ପାଇଁ କପେ କଫି ତିଆରି କରିଦେବ ।

ପଶ୍ଚିମ ଆଫ୍ରିକାର କେଉଁ ଏକ ପାତାଳ ଗହ୍ୱରରେ ଥାଇ ମଧ୍ୟ ମୁଁ ମନେକରୁଥିଲି ମୁଁ ମୋର ଝିଅ, ଜ୍ୱାଇଁ ଏବଂ ନାତୁଣୀ ପାଖକୁ ଆସିଛି ।

# ଯାତ୍ରାର ଶେଷ ପର୍ଯ୍ୟାୟ

ହାର୍ପର୍‌ରେ ଆମ କାମ ସରିଯାଇଥିଲା ଆଉ ଆମେ ମନ୍‌ରୋଭିଆ ଫେରି ଆସିଥିଲୁ । ରନ୍‌ୱେରେ ଉଡ଼ାଜାହାଜ ମୋଡ଼ ନେବା ପର୍ଯ୍ୟନ୍ତ ମୁଁ କାଚ ଝରକା ଭିତରୁ ଯୋଶେଫ୍ ଆଉ ଶ୍ରୀମତୀ ଯୋଶେଫ୍‌ଙ୍କ ବିଦାୟକାଳୀନ ହାତ ହଲାକୁ ଅନାଇଥିଲି । ସେମାନଙ୍କ ସଙ୍ଗରେ ମୋ ଜୀବନରେ ଆଉ କେବେ ଦେଖାହେବା ସମ୍ଭାବନା ନ ଥିଲା । ତଥାପି କ୍ଷଣକ ପାଇଁ ମୋ ଆଖିକି ସବୁ କାହିଁକି ଝାପ୍‌ସା ଦେଖାଗଲା ଏବଂ ମିଷ୍ଟର୍ ଉଇଲସନ୍‌ଙ୍କ ପାଖରେ ମୋ ମାନସିକ ଦୁର୍ବଳତା ଘୋଡ଼ାଇବା ପାଇଁ ବୋଧହୁଏ ମୁଁ ରୁମାଲରେ ମୋ ଚଷମା ସଫା କରିବାକୁ ଚେଷ୍ଟା କରୁଥିଲି ।

ଛୋଟ ଉଡ଼ାଜାହାଜଟିରେ ଆମେ ଥିଲୁ ମାତ୍ର ଆଠଜଣ ଯାତ୍ରୀ । ତିନିଜଣ ଗୋରାଲୋକଙ୍କ ଭିତରୁ ଆମ ଆଗରେ ବସିଥିବା ଭଦ୍ରଲୋକ ଜଣକ ଥିଲେ ଆମେରିକାନ୍ । କଥାବାର୍ତ୍ତାରୁ ମନେ ହେଉଥିଲା ଡ଼ାହାଣ ପାଖରେ ବସିଥିବା ଦୁଇଜଣଯାକ ଭଦ୍ରଲୋକ ଜର୍ମାନ୍ । ସେମାନଙ୍କ ଆଗରେ ବସିଥିବା ସରୁ ଆଖିଆ ହଳଦିଆ ଯାତ୍ରୀ ଦୁଇଜଣ ନିଶ୍ଚୟ ଚାଇନିଜ୍ । ହାର୍ପର୍ ପାଖରେ କେଉଁଠି ଚୀନ୍‌ର ସାହାଯ୍ୟରେ ଗଢ଼ି ଉଠୁଥିବା ଗୋଟିଏ ଚିନି କାରଖାନା ପରିଦର୍ଶନ କରିବାକୁ ଆସି ସେମାନେ ହୁଏତ ମନରୋଭିଆ ଫେରିଯାଉଥିଲେ । ଆମେରିକାନ୍ ଆଗରେ ବସିଥିବା ଭଦ୍ରଲୋକ ଜଣକ ନିଶ୍ଚୟ ଲେବାନିଜ୍ - ଆମ ସିନ୍ଧି ଆଉ ମାର୍‌ୱାଡ଼ିଙ୍କ ପରି ବ୍ୟବସାୟରେ ଅତି ଧୁରନ୍ଧର । ଏମାନେ ବୋଧହୁଏ କୌଣସି ବ୍ୟବସାୟ ମତଲବ୍ ନେଇ ହାର୍ପର ଯାଇଥିଲେ । ବାକି ଆମେ ଦୁଇଜଣ ସହାୟକ ଶିକ୍ଷାମନ୍ତ୍ରୀ ମିଷ୍ଟର୍ ଉଇଲ୍‌ସନ୍ ଓ ମୁଁ ।

ଆମେରିକାନ୍ ଭଦ୍ରଲୋକ ମିଷ୍ଟର୍ ଉଇଲସନ୍‌ଙ୍କ ପାଖରୁ ପାତ୍ରଟିକୁ ମାଗିନେଇ ତନଖିବା ଯାଏ ମୁଁ ଖିଆଲ କରି ନ ଥିଲି ଯେ ମିଷ୍ଟର୍ ଉଇଲସନ୍ ଯେଉଁ ବସ୍ତୁଟିକୁ ଏତେ ଯତ୍ନରେ ନିଜ କୋଳରେ ବସାଇ ରଖିଥିଲେ, ସେଇଟା ଗୋଟାଏ ଖାଲି ମାଟି ଘଡ଼ା । କାଚ କିମ୍ବା ମାଟିର ପାତ୍ରକୁ ଲଗେଜ୍ ବୁଥ୍‌ରେ ଦେଲେ ଅଥବା ନିଜ ଗୋଡ଼ ପାଖରେ ତଳେ ଥୋଇଦେଲେ ଉଡ଼ାଜାହାଜ ଉଠିଲାବେଳେ କିମ୍ବା ଓହ୍ଲାଇଲା ବେଳେ

ଯେଉଁ ଝଟ୍‌କା ଲାଗେ ସେଥିରେ ତାହା ଯେ ଗଡ଼ିଯାଇ ଭାଙ୍ଗିଯାଇପାରେ ସେକଥା ଅତି ସ୍ପଷ୍ଟ । ତେଣୁ କୌଣସି ଯାତ୍ରୀ ସେପରି କିଛି ବସ୍ତୁକୁ କୋଳରେ ଧରି ନେଉଥିବା ଦେଖିଲେ ଆଶ୍ଚର୍ଯ୍ୟ ଲାଗେନି । ମିଷ୍ଟର୍ ଉଇଲସନ୍‌ଙ୍କ ମା' ତ ହାର୍ପର୍‌ରେ ରହନ୍ତି, ମୁଁ ଧରି ନେଇଥିଲି ଯେ, ମିଷ୍ଟର୍ ଉଇଲସନ୍‌ଙ୍କ ତାଙ୍କ ମା' ଦେଇଥିବା ଆଚାର କିମ୍ବା ଭଜା ବଡ଼ି ପରି କିଛି ଘରୁଆ ସାମଗ୍ରୀ ଏଇ ଛୋଟ ହାଣ୍ଡିଟିରେ ତାଙ୍କ ମନରୋଭିଆର ଘରକୁ ନେଉଛନ୍ତି । ସେଥିପାଇଁ ଆମେରିକାନ୍ ଭଦ୍ରଲୋକଙ୍କ ସହ ତାଙ୍କ କଥାବାର୍ତ୍ତା ଶୁଣି ମୁଁ ଚକିତ ହୋଇଗଲି । ପାତ୍ରଟିକୁ ଭଲକରି ଓଲଟ ପାଲଟ କରି ଏପାଖ ସେପାଖ ଅନାଇ ଗମ୍ବୁଜ ପରି ହୋଇଥିବା ଢ଼ାଙ୍କୁଣୀକୁ ଭଲକରି ତନଖି କରି ଆମେରିକାନ୍ ଭଦ୍ରଲୋକ ପଚାରିଲେ, 'ଏ ପାତ୍ରଟି କ'ଣ କାଠରେ ତିଆରି ?'

ମିଷ୍ଟର୍ ଉଇଲସନ୍ ଟିକିଏ ଜ୍ଞାନୀ-ହସ ହସିଲେ । କହିଲେ, 'ନା ଏଇଟା ମାଟିରେ ତିଆରି ।'

ଆମେରିକାନ୍ ଭଦ୍ରଲୋକ ଆଶ୍ଚର୍ଯ୍ୟ ହେଲେ । କଥାରେ ପ୍ରଶ୍ନବାଚୀ ଦେଇ ଦୋହରାଇଲେ, 'ମାଟି ?'

'ଆଚ୍ଛା ! ଖାଲିମାଟି ! ପଟେରିଜ୍ ! ଇଟାଲି ଦେଶରେ ତିଆରି ନା ? କ'ଣ ହାର୍ପର୍‌ର କେଉଁଠି ଜମିତଳୁ ବାହାରିଲା ? ମନ୍‌ରୋଭିଆର ମ୍ୟୁଜିୟମ୍‌କୁ ନେଉଛନ୍ତି ?' ଜିଜ୍ଞାସା କଲେ ଆମେରିକାନ୍ ଭଦ୍ରଲୋକ ।

ମନେହେଲା ମିଷ୍ଟର ଉଇଲନ୍‌ଙ୍କ ଛାତି ଗର୍ବରେ ପୂରି ଉଠିଲା । ମାତବର ଢ଼ଙ୍ଗରେ ସାମାନ୍ୟ ହସି ପାଟି ଚିପି ସେ ଜାବବ ଦେଲେ, "ଏ ପାତ୍ର ଆମ ଦେଶର ଗୋଟିଏ ନିଜସ୍ୱ କଳା । ଗିନି ଦେଶରୁ ପାଖ ହେବ, ଆମ ଲୋଫା କାଉଣ୍ଟିର 'ଉନ୍‌ଜାମା' ସହରରେ ଜଣେ କାରିଗର ଅଛି, ଏ ସମଗ୍ର ଅଞ୍ଚଳରେ ସେ କେବଳ ଏମିତି ମାଟିପାତ୍ର ତିଆରି କରିପାରେ । ମାଟି କେମିତିକା ହେବା ଦରକାର, କେଉଁଠୁ ଆଣିବାକୁ ହେବ, ସେଥିରେ କଣ ମିଶିବ, ତାକୁ କେମିତି ଗଢ଼ିବ, ଆଉ କେତେ ପରିମାଣର ଉତ୍ତାପରେ ତାକୁ ପୋଡ଼ିବାକୁ ହେବ, ସେସବୁ ସେ କେବଳ ଜାଣେ । ଏ ପାତ୍ର ପାଇଁ ବିଦେଶରୁ ମଧ୍ୟ ବରାଦ୍ ଆସେ । ତେଣୁ ସହଜରେ ମିଳେନି । ହାର୍ପର୍ ସହରରୁ ସେ ସହର ପ୍ରାୟ ୩୦୦ ମାଇଲ । ଅନେକ କାଳ ଚେଷ୍ଟା କରି କରି ମୁଁ ଏଥର ଗୋଟାଏ ପାଇଲି । ଅତି ଚମତ୍କାର ଜିନିଷଟାଏ ନା ?"

'ରୋମ୍‌ରେ ଯେମିତି ମାଟି ପାତ୍ରମାନଙ୍କରେ ମଦ ରଖୁଥିଲେ, ଆପଣ ବି କ'ଣ ଏଥିରେ ମଦ ରଖିବେ ?'

"ମଦ ? ନୋ ! ମୁଁ ଏଥିରେ ପିଇବା ପାଣି ରଖିବି । ଯାର ବିଶେଷତ୍ୱ ଏହି ଯେ, ଏଥିରେ ପାଣି ରଖିଲେ ପାଣି ବେଶ୍ ଥଣ୍ଡା ରହେ, ରେଫ୍ରିଜିରେଟରରେ ରଖିଲା ପରି; କିନ୍ତୁ ଏତେବେଶି ନୁହେଁ, କେମିତି ଗୋଟାଏ ରୁଚିକର ଥଣ୍ଡା ।"

ଆମେରିକାନ୍ ହାତରୁ ପାତ୍ରଟିକୁ ନେଇଆସି ନିଜ କୋଳରେ ଥୋଇ ସେ ମୋ ଆଡ଼ିକି ଅନାଇଲେ, ଆଉ ମୁଁ କିଛି ମନ୍ତବ୍ୟ ଦେଉ ନ ଥିଲେ ମଧ୍ୟ ଉତ୍ସାହର ସହିତ ଯୋଡ଼ିଦେଲେ ଯେ, 'ଘରକୁ ଯାଇ ସେ ଏଥିରେ ଗୋଟାଏ ପରସ୍ତ ରଙ୍ଗ ବୋଳିଦେବେ । ପାତ୍ରଟି ଆହୁରି ସୁନ୍ଦର ଦେଖାଯିବ, ମଜଭୂତ ହେବ ଏବଂ ପାଣି ବି ଆହୁରି ବେଶି ଥଣ୍ଡା ରହିବ ।'

ମୁଁ ଏଥର ମୁହଁ ଫିଟାଇଲି । କହିଲି, "ରଙ୍ଗ ବୋଳିବେନି, ରଙ୍ଗ ବୋଳିଲେ ମାଟିପାତ୍ରରେ ଥିବା ଛୋଟ ଛୋଟ ଛିଦ୍ର ସବୁ ବୁଜି ହୋଇଯାଏ । ଫଳରେ ବାଷ୍ପୀୟକରଣ ଶକ୍ତି କମିଯାଏ ଏବଂ ପାଣି ଯେତେ ଥଣ୍ଡା ହେବା କଥା ସେତିକି ଆଉ ହୁଏନି ।'

ସେ ଆଶ୍ଚର୍ଯ୍ୟ ହୋଇ ମୋ ଆଡ଼ିକି ଅନାଇଲେ । ବୋଧହୁଏ ମାଟିପାତ୍ର ସମ୍ବନ୍ଧରେ ମୋର ଜ୍ଞାନର ଗଭୀରତା ଉପଲବ୍ଧି କରି ହେଉଥିଲେ ? ପଚାରିଲେ, "ଆପଣ କେମିତି ଜାଣିଲେ ? ଆପଣଙ୍କ ଦେଶରେ କଣ ଏମିତି ମାଟିପାତ୍ର ତିଆରି ହୁଏ ?"

ଆମର ଘରେ ଘରେ ଏମିତି ନାନା ରକମର ମାଟିପାତ୍ର ସବୁ ନାନା ଉଦ୍ଦେଶ୍ୟରେ ବ୍ୟବହୃତ ହୁଏ । ମୋ ପାଖରୁ ସେକଥା ଶୁଣି ସେ ସତେ ଯେମିତି ସେ ସବୁ ପାଟିମେଲା କରି ଢୋକି ପକାଇଲେ । ଆଉ ଗୁଣୁଗୁଣୁ ହୋଇ ମନ୍ତବ୍ୟ ଦେଲେ ଭାରତ ତେବେ ଅନେକ ପ୍ରଗତିଶୀଳ ।

ଏ ଘଟଣା ଆଫ୍ରିକୀୟ ପ୍ରଗତିର ଗୋଟିଏ ନିଖୁଣ ଚିତ୍ର ଦିଏ ଏବଂ ଏ ମାଟିପାତ୍ର ହୁଏ ତ ସେ ପ୍ରଗତିର ଏକ ଅନାବିଳ ପ୍ରତୀକ ।

ମନେହୁଏ ଯେ, ଏ ଦେଶମାନଙ୍କର ସଭ୍ୟତାର ମୂଳଦୁଆ ବା ବେସ୍ ବୋଲି କିଛିନାହିଁ ଏବଂ ସେ ସଭ୍ୟତାର ଶିଖର ଉପରକୁ ଉଠିବାକୁ କୌଣସି ସୋପାନ ମଧ୍ୟ ନାହିଁ। ଅନ୍ୟମାନଙ୍କୁ ତାଙ୍କ ବସ୍ତୁବାଦୀ ପ୍ରଗତିର ଶିଖରଦେଶରେ ବସିଥିବା ଦେଖି ଏମାନେ ଚାହିଁଛନ୍ତି ଯେ ସେମାନେ ବି ଏକାଥରେ ତଳୁ ଡିଆଁମାରି ସେପରି ପ୍ରଗତିର ଶିଖରଦେଶରେ ବସିଯିବେ । ଧନୁଃଶର ଯୁଗରୁ ଏକାଥରେ ପହଞ୍ଚିଯିବେ ଆଣବିକ ଯୁଗରେ । ଗଛର ଗଣ୍ଡିରେ ପାଦଦେଇ ଗଛ ଉପରକୁ ଚଢ଼ିବାକୁ ଏମାନେ ଚେଷ୍ଟିତ ନୁହନ୍ତି । ଯନ୍ତ୍ରର ବ୍ୟବହାର ଯଦି ଆଧୁନିକ ପ୍ରଗତିର ଏକ ପରିମାପକ, ଏମାନଙ୍କ

ପ୍ରଗତି ଦେଖି ମନେହୁଏ ସତେ ଯେମିତି କେହି ଏମାନଙ୍କୁ ଗୋଟାପଣେ ଟେକାଟେକି କରି ଗଛର ଡ଼ାଳରେ ବସାଇଦେଇଛି । ତେଣୁ ଏମାନଙ୍କର ଯାହାସବୁ ପ୍ରଗତି ଦେଖିବାକୁ ମିଳେ, ସେ ସବୁ କେମିତି ଅସ୍ୱାଭାବିକ୍, ଅପ୍ରାକୃତିକ ଏବଂ ଖାପଛଡ଼ା ପରି ଲାଗେ । ମନେହୁଏ ସତେ ଯେମିତି ଏମାନେ ଯେଉଁ ଗଛ ଡ଼ାଳରେ ବସିଛନ୍ତି, ସେ ଗଛର ଚେର ହିଁ ଆଦୌ ନାହିଁ ।

ପ୍ରଗତିର ପ୍ରତ୍ୟେକ କ୍ଷେତ୍ରରେ ସେଇ ଏକାରକମର ବିଚିତ୍ର ଦୃଶ୍ୟ ଦେଖିବାକୁ ମିଳେ, ସତେ ଯେମିତି ଦୁଇ ଚରମ ବିନ୍ଦୁର କୌଣସି ବ୍ୟବଧାନହୀନ ସହାବସ୍ଥାନ ଘଟିଛି । ମୁଁ ପ୍ରଥମ କରି ରବର୍ଟ ଆନ୍ତର୍ଜାତିକ ବିମାନ ବନ୍ଦରରେ ଓହ୍ଲାଇ ଯେଉଁଦିନ ମନରୋଭିଆ ଯାଇଥିଲି, ସେଦିନ ନାନା ଅସଂଗତି ଲକ୍ଷ୍ୟକରି ବିସ୍ମିତ ହୋଇଯାଇଥିଲି । ସବୁ କେମିତି ଅପ୍ରତ୍ୟାଶିତ ମନେ ହେଉଥିଲା, ଏବେ କିନ୍ତୁ ସେ ସବୁ ଅସଂଗତି ସହଜରେ ବୁଝିହୋଇ ଯାଉଥିଲା ।

ସଭ୍ୟତା କିମ୍ବା ସଂସ୍କୃତି ବୋଲି ତ ଏମାନଙ୍କର ବିଶେଷ କିଛି ନ ଥିଲା – ଏମାନେ ଯେତେବେଳେ ସିଧାସଳଖ ପାଶ୍ଚାତ୍ୟ ସଭ୍ୟତାର ସଂସ୍ପର୍ଶରେ ଆସିଲେ, ସେହି ପାଶ୍ଚାତ୍ୟ ସଭ୍ୟତାର ଚାକଚକ୍ୟ ଏମାନଙ୍କୁ ଏକାଥରେ ମୋହାଚ୍ଛନ୍ନ କରିଦେଲା । ସାହାରାର ଉତ୍ତରକୁ ଥିବା ଆଫ୍ରିକାର ଆରବ ଅଞ୍ଚଳ ସଙ୍ଗେ ଏ ନିଗ୍ରୋ ଅଞ୍ଚଳର ଅବସ୍ଥା ତୁଳନା କଲେ ଏ କଥା ସ୍ପଷ୍ଟ ଜଣାପଡ଼ିଥାଏ । ଯେହେତୁ ସେ ଆରବ ଅଞ୍ଚଳମାନଙ୍କରେ ସେମାନଙ୍କ ନିଜର ଧର୍ମ ସଂସ୍କୃତି ତଥା ସଭ୍ୟତା ପ୍ରାଚୀନ କାଳରୁ ରହିଆସିଥିଲା' ଇଉରୋପୀୟ ଉପନିବେଶ ହୋଇ ମଧ ସେ ଅଞ୍ଚଳର ଲୋକମାନେ ପାଶ୍ଚାତ୍ୟ ସଂସ୍କୃତି ଓ ସଭ୍ୟତାକୁ ଆପଣାର ବୋଲି ଗ୍ରହଣ କରିପାରି ନ ଥିଲେ । ଫଳରେ ଦେଖାଦେଇଥିଲା ସାଂସ୍କୃତିକ ସଂଘର୍ଷ । ଏ ଅଞ୍ଚଳର ଅବସ୍ଥା କିନ୍ତୁ ଭିନ୍ନଧରଣର ଥିଲା । ସାମ୍ରାଜ୍ୟବାଦୀ ମାନେ ଯେ ପାଶ୍ଚାତ୍ୟ ସଭ୍ୟତା ଏବଂ ସଂସ୍କୃତିକୁ ଏମାନଙ୍କ ଉପରେ ଜୋର ଜବରଦସ୍ତି ଲଦିଦେବାକୁ ଚେଷ୍ଟାକରିଥିଲେ ତା' ନୁହେଁ, ନିଗ୍ରୋ କ୍ରୀତଦାସ ମାନଙ୍କ ବଂଶଧରମାନେ ସେ ସଂସ୍କୃତିକୁ ଆପଣାର କରି ଆମେରିକାରୁ ଏ ଅଞ୍ଚଳକୁ ନେଇ ଆସିଥିଲେ । ତେଣୁ ସେ ପାଶ୍ଚାତ୍ୟ ସଂସ୍କୃତି କୌଣସି ବାଧା ବିନା ଅତି ସହଜରେ ଏ ଅଞ୍ଚଳର ବଣ ଜଙ୍ଗଲରେ ପଶିଗଲା ।

ଇଉରୋପ ଏବଂ ଆମେରିକାରୁ ଯେଉଁମାନେ ଏ ଅଞ୍ଚଳକୁ ଆସିଥିଲେ, ସେମାନେ ମୁଖ୍ୟତଃ ଏ ଅଞ୍ଚଳର ଖଣିଜ ଏବଂ ବନ୍ୟ ସମ୍ପଦ ତଥା ଅନ୍ୟାନ୍ୟ ପ୍ରାକୃତିକ ସମ୍ପଦରୁ ଲାଭ ଉଠାଇବା ପାଇଁ ଆସିଥିଲେ । ଲାଇବେରିଆ ଅତି ମୂଲ୍ୟବାନ୍ ଲୁହାପଥରରେ ଭରପୂର । ସେମାନେ ଖୁବ୍ ଶସ୍ତାରେ ଲୁହାଖଣି ସବୁର ପଟ୍ଟା

ନେଇଗଲେ । ଖୋଦନ ପାଇଁ ଶାବଳ କୋଦାଳ ନଥିବା ଦେଶରେ ଏକାଥରେ ଦେଖାଦେଲା ବିରାଟ ବିରାଟ ଖୋଦନ ଯନ୍ତ୍ରପାତି ସୋଭେଲ୍, କ୍ରେନ୍ ଡ୍ରେଗ୍‌ଲାଇନ୍ । ଝୁଡ଼ି ଟୋକେଇ ନ ଥିବା ଦେଶରେ ଦେଖାଦେଲା କନ୍‌ଭେୟର୍ ବେଲ୍ଟ । ଦେଶରେ ଇସ୍ପାତ ତିଆରି କଲେ ତ ଏ ଅନ୍ଧାରମୂଳକ ଶିଳ୍ପ ସମୃଦ୍ଧ ହୋଇଯିବ । ଏ ପାଶ୍ଚାତ୍ୟ ଦେଶମାନେ ଚାହୁଁଥିଲେ କଞ୍ଚାମାଲ ଏଠାରୁ ଅତି ଶସ୍ତାରେ ନେଇ ସେଇ କଞ୍ଚାମାଲରେ ତିଆରି ଉପକରଣ ସବୁ ଏ ଦେଶମାନଙ୍କରେ ଅତି ଚଢ଼ାଦରରେ ବିକ୍ରୀ କରିବେ । ଶଗଡ଼ କିମ୍ୱା ଘୋଡ଼ାଗାଡ଼ି ନ ଥିବା ଦେଶରେ ସାଦା କଚ୍ଚାରାସ୍ତା ନ ଥାଇ ମଧ୍ୟ ବିରାଟ ବିରାଟ ଡ଼ମ୍ପର ଏବଂ ଟ୍ରେଲର୍ - ଟ୍ରକମାନଙ୍କ ସାହାଯ୍ୟରେ ମାଲ୍ ସବୁ ନିଆ ଅଣା କରିବା ପାଇଁ ଏକାଥରେ ଦେଖାଦେଲା ସୁନ୍ଦର ଚିକ୍କଣ ବିଟୁମେନ୍‌ଦିଆ କଳାରାସ୍ତା । କଞ୍ଚାମାଲ ସବୁ ସମୁଦ୍ର ଉପରେ ଜାହାଜମାନଙ୍କରେ ଯିବା ପାଇଁ ଏବଂ ସେହି ଜାହାଜମାନଙ୍କରେ ତିଆରି ମାଲ ଆସିବ ବୋଲି ଗଢ଼ିଉଠିଲା ଅନେକ ବନ୍ଦର - ସେହି ପାଶ୍ଚାତ୍ୟ ଦେଶମାନଙ୍କ ଅର୍ଥରେ । କୋଟିପତି, ଖଣି ମାଲିକ ଏବଂ ବଡ଼ ବଡ଼ ବିଦେଶୀ ବ୍ୟବସାୟୀଙ୍କ ଯାତାୟତର ସୁବିଧା ପାଇଁ ତିଆରି ହେଲା ବିମାନ ବନ୍ଦର, ମୁଣ୍ଡଟେକି ଉଠିଲା ସୁନ୍ଦର ସୁନ୍ଦର ହୋଟେଲ୍ । କଳା ସାହେବମାନେ ତା' ସାଙ୍ଗକୁ ଯୋଡ଼ିଦେଲେ କାସିନୋ, ବାର୍, ନାଇଟ୍‌କ୍ଲବ୍ ଆଉ ଇନ୍ଦ୍ରିୟ ଭୋଗ ବିଳାସର ଯାବତୀୟ ସାମଗ୍ରୀ ।

ପୋଡ଼ା ଇଟା କିମ୍ୱା ଟାଇଲି ଖପରା ନ ଥିବା ଦେଶରେ ଦେଖାଦେଲା ସିମେଣ୍ଟ କଂକ୍ରିଟର ନବତଳ ପ୍ରାସାଦ । ସାଇକେଲ୍ ନ ଥିବା ଦେଶର ରାଜଦାଣ୍ଡରେ ଅନବରତ ଛୁଟିଚାଲିଲା ନାନା ରକମର ମୋଟର ଗାଡ଼ି, ଯାନବାହାନ ।

କୃଷିକ୍ଷେତ୍ରରେ ମଧ୍ୟ ଏପରି ଅସଂଗତି ଦେଖିବାକୁ ମିଳେ । ସାଧାରଣ ଭାବରେ ଏମାନଙ୍କ ଚାଷ ଠିକ୍ ଆମ ଆଦିବାସୀମାନଙ୍କ ପୋଡୁଅ ଚାଷ ପରି । ଏଇଠି ସେଇଠି ଝିଲ ଏବଂ ପାଟ ପାଖାପାଖି ପାଣି ଜମୁ ନ ଥିବା ଟିକିଏ ଉଚ୍ଚ ଜମିରେ ଜଙ୍ଗଲି ଗଛ ଏବଂ ବୁଦା ହାଣିଦେଇ ଏମାନେ ତହିଁରେ ନିଆଁ ଲଗେଇ ଦିଅନ୍ତି ଏବଂ କୋଡ଼ିରେ ମାଟି ଖୋସି ସାମାନ୍ୟ କିଛି ଧାନ ବୁଣିଦିଅନ୍ତି । ତଳି ପକାଇବା, ଜମି କାଦୁଅ କରି ତଳି କରାଇବା କିମ୍ୱା ବୁଣା ଧାନଗଛ ଟିକିଏ ବଡ଼ ହୋଇଗଲେ ବେଉଷଣ କରିବା ପ୍ରଶ୍ନ ନାହିଁ । ତଥାପି ଧାନଗଛ ସବୁ ବୁଦାଳିଆ ହୋଇ ପ୍ରଚୁର ଫଳେ । ଲଙ୍ଗଳ ନାହିଁ ଜୁଆଳି ନାହିଁ । ଜମି ହଳକରିବା ପାଇଁ ବଳଦ କିମ୍ୱା ଘୋଡ଼ା ନାହିଁ, ପୋଡୁଅ କିମ୍ୱା ମଇଁଷି ନାହାନ୍ତି, କୋଡ଼ିର ଉପର ସୋପାନ ହେଲା ଟ୍ରାକ୍ଟର କଳଲଙ୍ଗଳ ଏବଂ ତାର ଆନୁଷଙ୍ଗିକ କୃଷି ଯନ୍ତ୍ରପାତି ସରକାରୀ କୃଷି ଫାର୍ମରେ ଅଥବା ପୁଞ୍ଜିପତି ନିଗ୍ରୋ ଜମି

ମାଲିକମାନଙ୍କ ବ୍ୟକ୍ତିଗତ ଫାର୍ମମାନଙ୍କରେ । ଆମ ଆଦିବାସୀମାନେ ଯେମିତି ହରଡ଼ କାନ୍ଦୁଲ ପରି ବୁଦାଳିଆ ଗଛ ଚାଷ କରିବାକୁ ଭଲପାଆନ୍ତି ଏମାନେ ବି ସେମିତି ବୁଦାଳିଆ କାସାଭ୍ରୁ ଚାଷ କରିବାକୁ ପସନ୍ଦ କରନ୍ତି । ସାମାନ୍ୟ ଗୋଢ଼ିଆ କିମ୍ବା ମୁନିଆଁ ଲୁହା ଖଣ୍ଡକରେ ମାଟିରେ ଛୋଟ ଗାତଟିଏ ଖୋଳି କନ୍ଦ ଗୋଟାଏ ପୋତିଦେଲେ ସେହି ଗୋଟାଏ କନ୍ଦରୁ ଗୁଡ଼ିଏ ପିଲ ବାହାରି ବେଶ୍ ବୁଦାଟିଏ ସୃଷ୍ଟି ହୋଇଯାଏ ଏବଂ ପ୍ରତ୍ୟେକ ପିଲ ତଳେ ଦେଖାଦିଏ ଗୋଟାଏ ଗୋଟାଏ ସାରୁପରି ଓଜନିଆ କନ୍ଦ। କେତେ ମାସ ପରେ ବୁଦା ତଳୁ କନ୍ଦ ସଂଗ୍ରହ କଲାବେଳେ ଗୋଟିଏ ଛୋଟ କନ୍ଦ ଛାଡ଼ିଦେଲେ ହେଲା । ଥରେ ଲଗାଇଦେଲେ ୩।୪ ବର୍ଷ ଚାଲିଯାଏ କଦଳୀ ଗଛ ପରି ।

ଡ଼ାଲି ଜାତୀୟ ଖାଦ୍ୟ ଏମାନଙ୍କର ଖାଦ୍ୟର ଅଙ୍ଗ ନୁହେଁ, କିନ୍ତୁ ପ୍ରୋଟିନ୍ ପାଇଁ ଏମାନେ ପ୍ରଚୁର ପରିମାଣରେ ମାଛ ପାଆନ୍ତି । ସମୁଦ୍ର ଚିଙ୍ଗୁଡ଼ି ଏମାନଙ୍କ ଗୋଟିଏ ପ୍ରଧାନ ଅର୍ଥକାରୀ ରପ୍ତାନୀ ମାଲ । ତଥାପି ମାଛଚାଷ ନାହିଁ ।

ଆମେ ଦିନେ ରାସ୍ତାରେ ଗଲାବେଳେ ରାସ୍ତାକଡ଼ର ଗୋଟିଏ ପଟରେ କେତେଜଣ ଲୋକ ବନିସୀ ପକାଇ ମାଛ ଧରୁଥିବା ଦେଖିଲୁ । ଆମେରିକାନ୍ ପୋଲିଂ ଟାଇପ୍ ଫିସିଂ ରଡ୍ । ଖରାଦିନେ ତ ଏ ପାଟ ସବୁ ଶୁଖି ଯାଉଥିବ – ମାଛଚାଷ ନାହିଁ, ଏମାନେ ତେଣୁ ବନିସୀରେ ଛୋଟ ଛୋଟ ଗଡ଼ିଶା ଜାତୀୟ ପଙ୍କୁଆ ମାଛ ଧରୁଥିବେ ବୋଲି ମୁଁ ମନ୍ତବ୍ୟ ଦେଲି । ମିଷ୍ଟର୍ ଉଇଲସନ୍ କିଛି କହିବା ପୂର୍ବରୁ ଡ୍ରାଇଭର ମାଇକେଲ୍ ଝାମ୍ପି ପଡ଼ିଲା । କହିଲା, "ମାଛ କଥା ପଚାରୁଛନ୍ତି ? ଏପାଟ ମାନଙ୍କରେ ବଡ଼ ବଡ଼ ମାଛ ଭର୍ତ୍ତି। ପାଣି ଶୁଖିଗଲେ ଏ ମାଛ ସବୁ ମାଟି ଭିତରକୁ ଚାଲିଯାଆନ୍ତି, ମାଟି ଭିତରେ ଛୁଆ ଦିଅନ୍ତି, ଆଉ ବର୍ଷା ହେଲେ ବାହାରିଆସନ୍ତି ତାଙ୍କ ବାଲ୍‌ବଚ୍ଚା ନେଇ । ଯେସ୍‌ସା – ବିଗ୍ ବିଗ୍ ଉଆନ୍‌ସ, ହିଉଜ୍ ଉଆନ୍‌ସ – ଗୋଟିଏ ମାଛକୁ ଆମେ ତିନିଜଣ ଖାଇପାରିବାନି ।"

ମୁଁ କହିଲି "ସେଗୁଡ଼ିକ ଭୂତ କାହାଣୀ ମାଇକେଲ୍ । ମାଛଗୁଡ଼ାକ ମାଟି ଭିତରେ ରହିଲେ କଣ ଖାଇବେ ଆଉ ତାଙ୍କ ବାଲ୍‌ବଚ୍ଚାଙ୍କୁ କଣ ଖୁଆଇବେ ?" ମାଇକେଲକୁ ତା' ମନଲାଖି ଖୁସ୍ ଗପଟିଏ ବୋଧହୁଏ ମିଳିଯାଇଥିଲା । କହିଲା, "ବିଶ୍ୱାସ କରନ୍ତୁ । ଆଉ ଯାହାକୁ ବି ପଚାରନ୍ତୁ। ଆଫ୍ରିକାର କିଏ ଏକଥା ନ ଜାଣେ? ଆମ ଜଙ୍ଘ ସାଇଜର୍ ମାଛ ସବୁ ମାଟି ଭିତରୁ ବାହାରି ତାଙ୍କ ଛୁଆମାନଙ୍କ ପଲ ଧରି ଯେତେବେଳେ ପ୍ରଥମ ବର୍ଷାରେ ପାଟରେ ପାଣି ଟିକିଏ ହୋଇଯାଏ ସେ ପାଣିକୁ

ଆସନ୍ତି । ସମସ୍ତେ ସେମାନଙ୍କୁ ଧରିବାକୁ ଚେଷ୍ଟା କରନ୍ତି; କିନ୍ତୁ ନୋପ - ନେଭେ । କେହି ତାଙ୍କୁ ଧରିପାରନ୍ତିନି । ପାଣି ଭିତରେ 'ଇଏସ୍' ଆଉ ପାଣି ବାହାରେ 'ନୋ-ସା-ନେଭେ ।"

ମୁଁ ବୁଝିଲି ସେ ବୋଧହୁଏ ସାପ ପରି ଦିଶୁଥିବା ବଡ଼ ବଡ଼ ଇଲ୍ ଜାତୀୟ ମାଛ ଅଥବା ଶେଉଳ କଥା କହୁଛି । କାଦୁଅ ଶୁଖିଗଲେ ସେଗୁଡ଼ିକ କୁଆଡ଼େ ଫାଟମାନଙ୍କରେ ରହିଯାନ୍ତି । ପୁଣି ପଚାରିଲି - "ତାହେଲେ ତ ପାଣିଥିଲା ବେଳେ କାଦୁଅ ଚିପି ହାତରେ ମଧ ବଡ଼ମାଛ ଧରିପାରୁଥିବେ ?"

ମିଷ୍ଟର୍ ଉଇଲ୍‌ସନ ଏଥର ଜବାବ ଦେଲେ । କହିଲେ, "ହଁ ହାତରେ ଧରିପାରନ୍ତେ; କିନ୍ତୁ ପାଣି ଭିତରକୁ ପଶିବା ନିରାପଦ ନୁହେଁ । କେତେ ପାଣିରେ ଏମିତି ରୋଗ ସବୁ ରହିଛି ଯେ ମଣିଷ ପଶିଲେ ବାସ୍ କାହାର କଲିଜା ରାତାରାତି ୨।୩ ଇଞ୍ଚ ଲମ୍ବ ହୋଇଯାଏ, କାହାର ଗୋଡ଼ ଫୁଲି ହାତୀ ଗୋଡ଼ ପରି ମୋଟା ହୋଇଯାଏ । ଓ-ନୋ ! ପାଣିରେ ପଶିବା, ଏମିତି ପାଣିରେ ଗାଧୋଇବା କିମ୍ବା ଏମିତି ପାଣି ପିଇଦେବା ବଡ଼ ବିପଦ । ଆଉ ସେ ବେମାରୀ ସବୁ କଣ ତାର ନିଦାନ ବି କେହି ଜାଣନ୍ତିନି । ବେମାର ହେଲା ମାନେ ଲୋକ ମଲା । ସେଥିପାଇଁ ତ ଶୋଷକଲେ ଆମେ ବିଏର୍ ପିଉ । ବିଏର୍ ମଦ ଏସବୁ ନିରାପଦ । କୋକାକୋଲା ବି ପିଇପାରନ୍ତି । ଆଉ ଭଲ ହୋଟେଲ୍ ଦେଖି ପାଣି ମଧ ପିଇପାରନ୍ତି । ସେସବୁ ବିଶୋଧିତ ଜଳ । ତଥାପି ଭଲ ହୋଟେଲ୍ ବୋଲି ନିଶ୍ଚିତଭାବେ ଜାଣି ନ ଥିଲେ, ହୋଟେଲ୍‌ରେ ମଧ ପାଣି ପିଇବା ନିରାପଦ ନୁହେଁ ।"

ମୁଁ ପଚାରିଲି, "ତେବେ ବାଟୋଇମାନେ ବାଟରେ ଗଲାବେଳେ ଶୋଷ କଲେ କ'ଣ କରନ୍ତି ?"

ସେ ଉତ୍ତର ଦେଲେ, "ଜଙ୍ଗଲରେ ଅନେକ ଫଳମୂଳ ଅଛି ଯେ, ସେ ସବୁ ଖାଇଲେ ଶୋଷଯାଏ, ଆଉ ମଦ ତ ସବୁଠେଇଁ ମିଳେ । ଏ ଯେଉଁ ଖଜୁରି ଗଛ ସବୁ ଦେଖୁଛନ୍ତି ତା' ରସ । କେତେ ବାଟୋଇ ନଈନାଳର ପାଣି ମଧ ପିଇଦିଅନ୍ତି । ଦେହ ସେମିତି ଟାଣଥିଲେ ଉବୁରି ଯାଆନ୍ତି, ନ ହେଲେ ସେମାନଙ୍କ ନାନା ଅବସ୍ଥା ହୁଏ । ସମସ୍ତଙ୍କ ଦେହରେ ତ ମେଲେରିଆ ଅଛି । ମୁଁ ବରାବର ଇଞ୍ଜେକସନ୍ ନିଏ, ତଥାପି ମୋ ଦେହରୁ ମେଲେରିଆ ଯାଇନି । ମଝିରେ ମଝିରେ ଦେହରେ ଜର ଥାଏ, ତଥାପି ମୁଁ କାମ କରେ ।"

ମୁଁ ଶୁଣିଥିଲି ଏ ଦେଶର ଅଦ୍ଭୁତ ରୋଗ କଥା । ମିସେସ୍ ଦେଶାଇ ମଧ ଆକ୍ରାଠାରେ ମୋତେ ସେ ବିପଦ ସମ୍ବନ୍ଧରେ ସାବଧାନ୍ କରାଇ ଦେଇଥିଲେ । ତଥାପି

ଅବସ୍ଥା ଯେ ଏତେ ଗୁରୁତର, ସେ କଥା ମୁଁ ଜାଣି ନ ଥିଲି । ପଚାରିଲି ଡ଼ାକ୍ତରମାନେ କଣ ନାହାନ୍ତି ? ସେ କହିଲେ, 'ହଁ, ସହରମାନଙ୍କରେ ଅଛନ୍ତି, କିନ୍ତୁ ରୋଗର ନିଦାନ ଜାଣିଲେ ତ ! ଆମର ଅନେକ ଏମିତି ରୋଗ ଅଛି ଯାହାକି ସେମାନଙ୍କ ଡ଼ାକ୍ତରୀ ଶାସ୍ତ୍ରରେ ନାହିଁ । ଔଷଧ ତେଣୁ ଆସିବ କୁଆଡ଼ୁ ? ଆଉ ଔଷଧ କି ଦାମ୍ ! ଲୋକେ କିଣିପାରିଲେ ତ । ସାଧାରଣ ଅପରେସନ୍‌ର ବି ସୁବିଧା ନାହିଁ । କହିଲେ ଏଇ ଦେଖନ୍ତୁ ମୋ ମା'ଙ୍କ କଥା । ତାଙ୍କ ଆଖିକୁ ଭଲଦିଶୁନି । କିନ୍ତୁ ଅନ୍ୟ କେଉଁ ଦେଶକୁ ନେଲେ ତ ଆଖି ଅପରେସନ୍ କରାଇହେବ ?' ମୁଁ କହିଲି, "ଏଇ ସାଧାରଣ କାଟାରେକ୍ଟ ପାଇଁ ?" ଆଉ ସେ ଉତ୍ତର ଦେଲେ "କ'ଣ କରିବେ, ସେଥିପାଇଁ ବି ତ ସୁବିଧା ଦରକାର ।"

ଏ ଅଞ୍ଚଳର ପାଣି ଓ ପବନ କଥା ମୁଁ ଆଗରୁ ଶୁଣିଥିଲି । ଏହା ମଧ୍ୟ ଶୁଣିଥିଲି ଯେ, ଯେଉଁ ଇଉରୋପୀୟ ଏବଂ ଆମେରିକାନ୍‌ମାନେ ପ୍ରଥମେ ଲାଇବେରିଆର ଉପକୂଳରେ ପହଞ୍ଚିଥିଲେ, ଏଇ ପାଣି ପବନ ଯୋଗୁଁ ସେ ଭିତରୁ ଅଧିକାଂଶ ମଶାମାଛି ପରି ମରି ଯାଇଥିଲେ । ଲାଇବେରିଆର ଉପକୂଳ ଅଞ୍ଚଳକୁ ସେଥିପାଇଁ 'ଶ୍ୱେତାଙ୍ଗଙ୍କ ଶ୍ମଶାନ' ବୋଲି କୁହାଯାଉଥିଲା । ଆହୁରି ମଧ୍ୟ ଶୁଣିଥିଲି ଯେ, ଆଜି ବି ଅଦ୍ଭୁତ ଘଟଣା ସବୁ ଘଟେ । ସନ୍ଧ୍ୟାରେ କେହି ଗପସପ କରିଯାଉଛି, ଆଉ ହୁଏତ ଦିନେ ଦି'ଦିନ ପରେ ଶୁଣିବାକୁ ମିଳେ ଯେ, ସେ ଆଉ ଏ ସଂସାରରେ ନାହିଁ । ଔଷଧର ଦାମ୍ ସମ୍ବନ୍ଧରେ ମଧ୍ୟ ମୋର ବ୍ୟକ୍ତିଗତ ଅନୁଭୂତି ଥିଲା । କ୍ଲୋରୋକ୍ୱିନ୍, ଡିପେଣ୍ଡଲ୍ ପରି ସାଧାରଣ ବଟିକା ସବୁ ଯାହା ଆମ ଭାରତରେ ଗୋଟା ୧୫, ୨୦ ପଇସାରୁ କମ୍ ଦାମ୍‌ରେ ମିଳେ, ସେସବୁ ଏଇଠି ଗୋଟା ୩,୪ ଟଙ୍କା । ତଥାପି ଅନେକ ଔଷଧ ମିଳେନି ।

ଏହା ନିଃସନ୍ଦେହ ଯେ, ଜୀବନର ଏ କ୍ଷଣଭଙ୍ଗୁରତା କାଳକ୍ରମେ ଏମାନଙ୍କ ଜୀବନ ଦର୍ଶନକୁ ପ୍ରଭାବିତ କରିଛି । ସେଥିପାଇଁ ବୋଧହୁଏ ଆଜି ଏମାନେ ଜୀବନ ମରଣକୁ ଭଣା ଅଧିକେ ବେପରବାଏ ଢ଼ଙ୍ଗରେ ଦେଖନ୍ତି, ଆଉ ଯେଉଁ ସମୟ ଟିକକ ବଞ୍ଚନ୍ତି, ସେ ସମୟ ଭିତରେ ଖାଦ୍ୟପେୟ ବେଶଭୂଷା ନାଚଗାନ ଖୁନ୍ଦି ଦେବାକୁ ଚେଷ୍ଟାକରନ୍ତି ଏବଂ ଇନ୍ଦ୍ରିୟ ତୃପ୍ତିକୁ ଜୀବନର ଚରମ ଲକ୍ଷ୍ୟ ବୋଲି ଧରିନେଇ ତାକୁ ଏତେ ଜୋର୍ ଜାବୁଡ଼ି ଧରନ୍ତି ।

ଅନେକ ବର୍ଷ ତଳେ ଆମେରିକାରେ ଥିଲାବେଳର ଗୋଟାଏ ହାସ୍ୟକର ଘଟଣା ମୋର ମନେ ପଡ଼ିଯାଉଥିଲା । ଗୋଟାଏ ମୃତ୍ୟୁ ବୀମା କମ୍ପାନୀର ବିଜ୍ଞାପନ । କମ୍ପାନୀ ଘୋଷଣା କରୁଥିଲା ଆପଣ ମାସକୁ ମାତ୍ର ୧୦ ଡ଼ଲାର୍ ଦେଇ ଆମ କମ୍ପାନୀର ଡ଼େଥ୍

ଇନ୍‌ସୁରାନ୍ସ କରାଇ ନିଅନ୍ତୁ। ମାସକୁ ମାସ ଟଙ୍କା ଦେଲାପରେ ଆପଣଙ୍କୁ ଆଉକିଛି କରିବାକୁ ପଡ଼ିବନି, ଆଉ ଆପଣ ଦେଖିବେ ଆମର କରାମତି । ଆପଣ କେବଳ ମରିଯିବେ । ବାସ୍ ସେତିକି । ଦେଖିବେ ଆମ କମ୍ପାନୀ ଆପଣଙ୍କ ପାଇଁ କେମିତି ସବୁ ବନ୍ଦୋବସ୍ତ କରିଦେବ । ସୁନ୍ଦର ଚକଚକିଆ ମେହୋଗାନି କାଠର ଶବାଧାର ଆସିଯିବ । ଶବାଧାରର ସାଇଜ୍ ଏତେ ବଡ଼ଥିବ ଯେ, ଆପଣ ଅତି ସହଜରେ ଶୋଇ ଯାଇପାରିବେ । ଶବାଧାରର ଢ଼ାଙ୍କୁଣୀ ବନ୍ଦ କଲାବେଳକୁ କଣ୍ଟା ଏତେ ଧୀରେ ବାଡ଼େଇ ଦେବୁ ଯେ, ଆପଣ ସେ ଆବାଜ୍ ଶୁଣି ବି ପାରିବେନି । ଆଉ ଏମିତି ବଢ଼ିଆ ଯାଜକ ପୁରୋହିତ ଯୋଗାଡ଼ କରିଦିଆଯିବ ଯେ, ସେ ସିଧା ସ୍ୱର୍ଗଦ୍ୱାର ଯାଏ ଆପଣଙ୍କୁ ଆଲୁଅ ବତି ଦେଖାଇଦେବ । ଯଦି ଚାହିଁବେ, ଯେଉଁ ଫୁଲ ଆପଣ ସବୁଠାରୁ ବେଶି ଭଲପାଆନ୍ତି, ସେଇ ଫୁଲର ଗୋଟାଏ ତୋଡ଼ା ଆପଣଙ୍କ ଶବାଧାର ଉପରେ ରଖି ଦିଆଯିବ - ଅବଶ୍ୟ ସେଥିପାଇଁ ଦେୟ ଅଲଗା । ଗୋଟାଏ ଗୋଲାପ କଳିକାକୁ ଦେଢ଼ ଡ଼ଲାର ମାତ୍ର।

ମୁଁ ଭାବୁଥିଲି ଏ ଦେଶରେ ସେମିତି ମୃତ୍ୟୁ ବୀମାଟିଏ କରାଇନେଲେ ମନ୍ଦ ହୁଅନ୍ତାନି । ଅବଶ୍ୟ ଏଇଠି ତ ସେମିତି କମ୍ପାନୀ ନିଜେ ଦେବାଳିଆ ହୋଇଯିବ ।

ମୁଁ ଏବେ ବୁଝିପାରୁଥିଲି, ଏମାନେ ଆଗ ତାଙ୍କ ହାଏ-ପ୍ରିଷ୍ଟ ତଥା ଓରେକଲ୍‌ମାନଙ୍କୁ ଏତେ ସମ୍ମାନ ଦେଉଥିଲେ କାହିଁକି । ଏହି ପୁରୋହିତ ଜ୍ୟୋତିଷ ଭୂତ ଭବିଷ୍ୟତ ଜ୍ଞାତା ହୁଏ ! ପ୍ରିଷ୍ଟମାନେ ହିଁ ଥିଲେ ଏମାନଙ୍କ କୁଳବୈଦ୍ୟ ଡ଼ାକ୍ତର ।

ଏ ଓରେକଲ୍‌ମାନଙ୍କ କୁଆଡ଼େ ନିଜ ଅଭିଜ୍ଞତା ଏବଂ ଅନୁଭୂତି ବଳରେ ରୋଗୀକୁ ଦେଖି ତା' ରୋଗରେ ନିଦାନ କରିପାରୁଥିଲେ ଏବଂ ଜଙ୍ଗଲର କେତେ ଚେରମୂଳ ସଂଗ୍ରହ କରି ତହିଁରେ ସିଝା ହୋଇଥିବା ପାଣି ପିଆଇ ଅନେକ ରୋଗ ଭଲକରି ଦେଉଥିଲେ । ଆଉ ମଧ ଶୁଣିଥିଲି ଯେ, କେବଳ ବେଳେ ଏମାନେ କେଉଁ କାଚପରି ସ୍ୱଚ୍ଛ ପଥର ଖଣ୍ଡ ଭିତରକୁ ଅନାଇ ଭୂତ ଭବିଷ୍ୟତ ଦେଖି ପାରୁଥିଲେ ଏବଂ କେବେ ଅବା ନିଜ ପୂର୍ବ ପୁରୁଷଙ୍କ ଭୂତ ପ୍ରେତମାନଙ୍କ ସାହାଯ୍ୟ ନେଇ ସବୁ କଥା ଜାଣି ଯାଉଥିଲେ । ମୋର କୌତୂହଳ ବିମୋଚନ ପାଇଁ ମୁଁ ଦିନେ ମନରୋଭିଆ ପାଖ ଅଞ୍ଚଳରେ ଜଣେ ପାରାମାଉଣ୍ଟ ଚିଫ୍‌କୁ ଦେଖିବାକୁ ଯାଇଥିଲି । ଆଜି ମଧ ପ୍ରତ୍ୟେକ ଟ୍ରାଇବ୍ ବା ଗୋଷ୍ଠୀର ଗୋଟିଏ ଗୋଟିଏ ଅଞ୍ଚଳ ଥାଏ ଆଉ ସେ ଟ୍ରାଇବର୍ ମୁଖିଆମାନଙ୍କୁ ପାରାମାଉଣ୍ଟ ଚିଫ୍ କହନ୍ତି । ଏମାନେ କିନ୍ତୁ ଆଜିକାଲି ନିର୍ବାଚିତ ହେଉଛନ୍ତି ଚାରିବର୍ଷରେ ଥରେ । ଆମ ଭିନ୍ନ ଭିନ୍ନ ଜାତିଆଣ ସମାଜର ସମାଜପତିଙ୍କ ଠାରୁ ନିଜ ଗୋଷ୍ଠୀ ଉପରେ ଏମାନଙ୍କ କ୍ଷମତା ଅନେକ ବେଶି; କିନ୍ତୁ ଆଜି

ଆମଦେଶରେ ସମାଜପତିମାନଙ୍କ ଅବସ୍ଥା ଯାହା ଏଇ ପାରାମାଉଣ୍ଟ ଚିଫମାନଙ୍କ ଅବସ୍ଥା ମଧ୍ୟ ଜଣା ଅଧିକେ ସେଇଆ । ମୋର ସୌଭାଗ୍ୟକୁ ସେଇ ପାରାମାଉଣ୍ଟ ଚିଫ୍‌ଙ୍କ ଘରେ ଏମିତି ଜଣେ ହାଏ-ପ୍ରିଷ୍ଟଙ୍କୁ ମଧ୍ୟ ଭେଟିଥିଲି । ଆମ ପୁରୁଣାକାଳିଆ ରାଜା ଏବଂ ମନ୍ତ୍ରୀଙ୍କଠାରୁ ଏଇ ପାରାମାଉଣ୍ଟଚିଫ୍ ଏବଂ ହାଏ-ପ୍ରିଷ୍ଟଙ୍କ ପାରସ୍ପରିକ ସମ୍ପର୍କ ଭିନ୍ନଧରଣର ଥିଲା । ସେ ସମ୍ପର୍କ ଥିଲା ବନ୍ଧୁତ୍ୱପୂର୍ଣ୍ଣ ଏବଂ ଘନିଷ୍ଠ ।

ମିଷ୍ଟର୍ ଉଇଲ୍‌ସନ୍ ଚିହ୍ନାଇ ଦେଲାପରେ ମୁଁ ସେମାନଙ୍କୁ ଅଭିବାଦନ କଲି । ଦୁହେଁ ଖୋଲା ହସ ହସି ସ୍ୱାଗତ କଲେ । ପାରାମାଉଣ୍ଟ ଚିଫ୍ କହିଲେ 'ନୋ ସ୍ପିକ୍ ଇଂଲିଶ୍' ଆଉ ଦିହେଁ ହସିହସି ଗଡ଼ିଗଲେ । କି ଖୋଲାମନର ଲୋକ ସବୁ । ଚିହ୍ନାଇ ଦେଲାବେଳେ ମିଷ୍ଟର୍ ଉଇଲସନ୍ ତାଙ୍କ ଟ୍ରାଇବଲ୍ ଭାଷାରେ କହିଲେ ମୁଁ ଭାରତରୁ ଆସିଛି - ଇଣ୍ଡିଆ ବହୁତ ଦୂର । ହାଏ-ପ୍ରିଷ୍ଟ୍ ହସି ହସି କହିଲେ 'ଘାନା ପାଖରେ ତ' ।' ମିଷ୍ଟର ଉଇଲସନ୍ ବୁଝାଇବାକୁ ଚେଷ୍ଟାକରି କହିଲେ 'ନାହିଁ, ଆହୁରି ଦୂର - ବହୁତ ବହୁତ ଦୂର ସମୁଦ୍ର ସେପାରି', ହାଏ-ପ୍ରିଷ୍ଟ୍ ମୁଣ୍ଡ ଟୁଙ୍ଗାରିଲେ । କହିଲେ - 'କଙ୍ଗୋ', ତା'ପରେ ହସି ହସି ଯୋଡ଼ିଦେଲେ 'ୱିଲସନ୍ ଭାବିଛୁ ମୁଁ ଜାଣିନି ? ପୃଥିବୀର ସବୁକଥା ଜାଣିଛି ।' ଏଥର ପାରାମାଉଣ୍ଟଚିଫ୍‌ଙ୍କ ପାଳି - ହସରେ ସେ ଫାଟି ପଡ଼ିଲେ । ଦି' ତିନିଜଣ ବୁଢ଼ୀ ପାଖରେ ଆସି ବସି ଯାଇଥିଲେ । ପାରାମାଉଣ୍ଟଚିଫ୍‌ଙ୍କ ହସରେ ସେମାନେ ହସି ଉଠିଲେ । ହାତ ଉପରକୁ ଉଠାଇ କହିଲେ "କଙ୍ଗୋ । -ହିଃ... ହିଃ... ହିଃ ।"

କାହିଁକି କେଜାଣି ଆମେ ସମସ୍ତେ ସେ ହସରେ ଯୋଗ ଦେଲୁ । ଏମାନଙ୍କ ସରଳ ହସ ସତରେ ଅତି ସଂକ୍ରାମକ ।

ଏମାନଙ୍କ ସଙ୍ଗରେ କଥାବାର୍ତ୍ତା ହେଲାବେଳେ ଗୋଟିଏ କଥା ଲକ୍ଷ୍ୟ କରିଥିଲି । ମିଷ୍ଟର୍ ଉଇଲସନ୍ ଆମେରିକାରେ ଉଚ୍ଚଶିକ୍ଷା ପ୍ରାପ୍ତ ଜଣେ ଶିକ୍ଷାବିତ୍ ଏବଂ ଦେଶର ସହାୟକ ଶିକ୍ଷାମନ୍ତ୍ରୀ । ଇଂରାଜୀ ନ ଜାଣିଥିବାରୁ ମନେ ହେଉଥିଲା ଯେ, ପାରାମାଉଣ୍ଟଚିଫ୍ ଏବଂ ହାଏ-ପ୍ରିଷ୍ଟ ଦୁହେଁ ସ୍କୁଲର ଦ୍ୱାର ମାଡ଼ି ନାହାନ୍ତି । ତଥାପି ମିଷ୍ଟର୍ ୱିଲ୍‌ସନ୍ ଏମାନଙ୍କୁ ଯେମିତି ଚିହ୍ନିଥିଲେ ଏବଂ ସସମ୍ମାନେ କଥାବାର୍ତ୍ତା ହେଉଥିଲେ, ସେମାନେ ମଧ୍ୟ ବ୍ୟକ୍ତିଗତ ଭାବରେ ମିଷ୍ଟର ଉଇଲସନ୍‌ଙ୍କୁ ଚିହ୍ନିଥିଲେ ଏବଂ ପୂର୍ଣ୍ଣଶ୍ରଦ୍ଧା ଏବଂ ସ୍ନେହଶ୍ରଦ୍ଧା କଥାବାର୍ତ୍ତା ହେଉଥିଲେ। ଆମେ ଭାରତୀୟମାନେ ନିଜ ସଭ୍ୟତା ଏବଂ ସଂସ୍କୃତି ପାଇଁ କେତେ ଗର୍ବକରୁଁ - ଉପନିଷଦୀୟ ଜ୍ଞାନ ତଥା ଭାରତୀୟ ଦର୍ଶନ ପାଇଁ କେତେ ଡ଼ିଣ୍ଡିମ ପିଟୁଁ; କିନ୍ତୁ ସାନ ବଡ଼ ଭେଦଭାବ ଆମର ବୋଧହୁଏ ଅସ୍ଥିମଜ୍ଜାଗତ । ଆମ ଭିତରେ ଛୁଆଁ ଅଛୁଆଁର ଭେଦଭାବ, ବ୍ରାହ୍ମଣ, ଶୂଦ୍ର,

ଧନୀ, ଦରିଦ୍ରର ଭେଦଭାବ ଭରିରହିଛି । ବ୍ରାହ୍ମଣଙ୍କ ଭିତରେ ମଧ ସାନ ବଡ଼ ଅଛନ୍ତି, ଆଉ ଚାକିରିଆଙ୍କ ଭିତରେ ତ ଛାଡ଼ । ସତେ ଯେମିତି ମଣିଷ ମଣିଷ ସଙ୍ଗରେ ସମାନ ନୁହେଁ । ଆମେ ପୁଣି ବଡ଼ପାଟିରେ ବକ୍ତୃତା ଦେଉ ଯେ, ପ୍ରତ୍ୟେକ ମଣିଷ ଭିତରେ ଭଗବାନ ସମାନ ଭାବରେ ବିରାଜିତ ଅଛନ୍ତି ଏବଂ ପ୍ରତ୍ୟେକ ମଣିଷ ସେହି ସତ୍-ଚିତ୍ ଏବଂ ଆନନ୍ଦର ପ୍ରତୀକ - ନିଜେ ହିଁ ସତ୍ୟ-ଶିବ ଏବଂ ସୁନ୍ଦର । ସେ ଜ୍ଞାନର ପ୍ରୟୋଗ କଲାବେଳକୁ କିନ୍ତୁ ଓଲଟା କରି ବସୁ । ମଣିଷ ମଣିଷ ଭିତରେ ଏମାନଙ୍କ ସମଭାବ ଲକ୍ଷ୍ୟକଲେ ତେଣୁ ମନ ଉଲ୍ଲସିତ ହୋଇଯାଏ ।

ଆଦିମତା ସାଙ୍ଗକୁ ଏମାନଙ୍କ ମହାନତା ଲକ୍ଷ୍ୟ କଲେ ଆମ ଫୁଲବାଣୀ, କୋରାପୁଟ, କଳାହାଣ୍ଡିର ଆଦିବାସୀ କନ୍ଧ ମନେପଡ଼ନ୍ତି । କନ୍ଧଙ୍କ ପରି ଏମାନେ ବି ଅନେକାଂଶରେ ନିଷ୍କପଟ ଏବଂ ଖୋଲା। ଶୁଣାଯାଏ ଥରେ ଫୁଲବାଣୀରେ ଜଣେ କନ୍ଧକୁ 'ଯାହା କହିବି ସତ କହିବି' ବୋଲି ବିଚାରାଳୟରେ ଶପଥ ନେବାକୁ ଯେତେବେଳେ କୁହାଗଲା, ସେ ବିଚାରା କଥାଟିକୁ ବୁଝି ମଧ ପାରିଲାନି । ପଚାରିଲା - ଏଟା ଗୋଟେ କିସ ବାବୁ ! ସତ କହିବୁ ବୋଇଲେ କିସ ? ଯା ଦେଖିଛି ସେ କଥା ତ କହିବି । ସେ ବିଚାରାର ମୁଣ୍ଡକୁ ସତ କଣ, ଆଉ ମିଛ କଣ ସେ ଧାରଣା ହିଁକୁ ନ ଥିଲା। ଯା ପାଖରେ ମିଛନାହିଁ, ତା ପାଖକୁ ସତ ପୁଣି ଆସିବ କୁଆଡୁ ? ଯିଏ ପାପ ଧାରଣାରୁ ଦୂରରେ ସେ ପୁଣ୍ୟର କଳ୍ପନା ବା କରିବ କେମିତି ? ଯାହା ପ୍ରକୃତ, ଯାହା ବାସ୍ତବ, ତାହା ନିଜେ ଯେ ସତ୍ । ଏମାନେ ବି ଜଣା ଅଧିକେ ସେହି ଧରଣର ।

ଲାଇବେରିଆରେ ମୋର କାମ ପ୍ରାୟ ସରିଆସିଥିଲା । ଯାହାସବୁ ଦେଖିବାକଥା, ଯେଉଁମାନଙ୍କୁ ଦେଖା କରିବା କଥା ଏବଂ ଯେଉଁ ସବୁ ତଥ୍ୟ ସଂଗ୍ରହ କରିବା କଥା, ମୁଁ ସେ ସବୁ କରିସାରିଥିଲି । ମୋର ପୂର୍ଣ୍ଣବିଶ୍ୱାସ ଜନ୍ମିଯାଇଥିଲା ଯେ, ଏ ଦେଶ ସଙ୍ଗରେ ବୈଷୟିକ ଶିକ୍ଷା ସମ୍ବନ୍ଧୀୟ ଆମ ସମ୍ପର୍କ ଦୁଇ ଦେଶ ପାଇଁ ହିତକର ହେବ । ଆମଠାରୁ ବୈଷୟିକ ଶିକ୍ଷା ଆହରଣ କରି ଏମାନେ ଯେତେ ଲାଭବାନ୍ ହେବେ, ଆମେ ଏମାନଙ୍କ ମାଧମରେ ଏ ଅଞ୍ଚଳର ବିଭିନ୍ନ ରାଜ୍ୟମାନଙ୍କ ସହିତ ବାଣିଜ୍ୟ ତଥା ଅନ୍ୟାନ୍ୟ ସମ୍ପର୍କ ପ୍ରତିଷ୍ଠା କରିବା ପାଇଁ ସୁଯୋଗ ପାଇ ସେତିକି ଲାଭବାନ୍ ହେବୁ ।

ପ୍ରାକୃତିକ ସମ୍ପଦଭରା ଆଫ୍ରିକା ମହାଦେଶର ଅଧିକାଂଶ ରାଜ୍ୟ ଆର୍ଥିକ ଦୃଷ୍ଟିରୁ ସ୍ୱଚ୍ଛଳ, କିନ୍ତୁ ଅଧିକାଂଶ ରାଜ୍ୟରେ ରାଜନୈତିକ ସ୍ଥିରତା ନାହିଁ। ଲାଇବେରିଆ ଗଣରାଜ୍ୟ ଛୋଟ ହେଲେ ମଧ ଏହାର ଅନେକ ବିଶେଷତ୍ୱ ଅଛି । ଏ ଦେଶରେ ରାଜନୈତିକ ସ୍ଥିରତା ପ୍ରାୟ ଶହେ ବର୍ଷରୁ ବେଶି ହେବ ରହିଆସିଛି । କୌଣସି

ସାମରିକ ବିଦ୍ରୋହ ନାହିଁ କିମ୍ବା କୌଣସି ଗୋଟିଏ ଗୋଷ୍ଠୀ ଜୋର୍ ଜବରଦସ୍ତ ଶାସନ କ୍ଷମତା ନିଜ ହାତକୁ ନେଇଯିବା ପାଇଁ ଚେଷ୍ଟା କରୁଥିବା ଦୃଷ୍ଟାନ୍ତ ମଧ୍ୟ ଦେଖାଯାଇନାହିଁ । ଗଣତନ୍ତ୍ର ଶାସନ ପଦ୍ଧତି ଏଠାରେ ଚେର ମାଡ଼ି ସାରିଛି । ଆଫ୍ରିକାର ଏହି ଏକମାତ୍ର ରାଜ୍ୟ ଆମେରିକାନ୍ ଡ଼ଲାରକୁ ନିଜ ପ୍ରଚଳିତ ମୁଦ୍ରା ରୂପେ ବ୍ୟବହାର କରୁଥିବା ଯୋଗୁଁ ଏମାନଙ୍କ ମୁଦ୍ରାର ମୂଲ୍ୟ ସ୍ଥିତିଶୀଳ ଏବଂ ପ୍ରାୟ ସ୍ଥିର । ଫଳରେ ଏ ରାଜ୍ୟ ପଶ୍ଚିମ ଅଞ୍ଚଳର ପ୍ରଧାନ ବାଣିଜ୍ୟ କେନ୍ଦ୍ରରୂପେ ଗଢ଼ିଉଠିଛି । ଆମେରିକାନ୍ ଡ଼ଲାର୍ ସଂଗ୍ରହ କରିବା ଉଦ୍ଦେଶ୍ୟ ନେଇ ଆଫ୍ରିକାର ଅନେକ ଧନୀ ବ୍ୟବସାୟୀ ଏ ରାଜ୍ୟରେ ନିଜ ନିଜ ବାଣିଜ୍ୟ କେନ୍ଦ୍ର ପ୍ରତିଷ୍ଠିତ କରିସାରିଛନ୍ତି । ବ୍ୟବସାୟ କେନ୍ଦ୍ର ହେବା ଫଳରେ ଭାରତରେ କଲିକତା ନଗରୀ ଯେପରି ଓଡ଼ିଶା, ବିହାର, ମଧ୍ୟପ୍ରଦେଶ, ଆସାମ ପ୍ରଭୃତି ପ୍ରଦେଶମାନଙ୍କରେ ଉତ୍ପାଦିତ ପଣ୍ୟଦ୍ରବ୍ୟର ଶୁଳ୍କ ଅର୍ଥ ସଂଗ୍ରହ କରି ଧନୀ, ଏ ଦେଶ ମଧ୍ୟ ଆଫ୍ରିକାର ଗୋଟିଏ ବିରାଟ ଅଞ୍ଚଳର ବାଣିଜ୍ୟ କେନ୍ଦ୍ର ହୋଇ ସେପରି ଧନୀ ।

ଶାସନ କ୍ଷେତ୍ରରେ ମଧ୍ୟ ଏମାନେ ତାଙ୍କ ପାରଗତା ପ୍ରମାଣ କରିସାରିଛନ୍ତି । ନିଜ ନିଜ ପାଇଁ ଅର୍ଥ ସଂଗ୍ରହ କରିବାରେ ଏମାନେ ଯେପରି ଧୁରନ୍ଧର, ନିଜ ଦେଶ ପାଇଁ ଅର୍ଥ ସଂଗ୍ରହ କରିବାରେ ମଧ୍ୟ ସେପରି ପାରଙ୍ଗମ । ଜାତିସଂଘ ଏବଂ ବିଶ୍ୱସଂସ୍ଥାମାନଙ୍କ ପାଖରୁ ଏମାନେ ବିଶେଷ ସାହାଯ୍ୟ ପାଇଥାଆନ୍ତି । ଯେଉଁ ଦେଶର ନିଜର ବୋଲି ପ୍ରାୟ କୌଣସି ଜାହାଜ ନାହିଁ, ସେହି ଦେଶର ପତାକା ଉଡ଼ାଇ ଆଜି ସବୁଠାରୁ ବେଶି ଜାହାଜ ସମୁଦ୍ର ବକ୍ଷରେ ଯାତାୟତ କରୁଥିବା କଥା ହିଁ ଏମାନଙ୍କ ବିଚକ୍ଷଣତାର ପରିଚୟ ଦିଏ । ଅନ୍ତର୍ଦ୍ଦେଶୀୟ ଜାହାଜ ଚଳାଚଳ ପାଇଁ ଯେ କୌଣସି ଦେଶର ପତାକା ଦରକାର ହେଉଥିବା ଜାଣି ଏମାନେ ଜାହାଜ ରେଜିଷ୍ଟ୍ରେସନ୍ ଫିଜ୍ ଅନ୍ୟ ଦେଶମାନଙ୍କ ତୁଳନାରେ କେବଳ ଯେ ଅତିକମ୍ କରିଦେଲେ, ତା ନୁହେଁ ଏପରି ରେଜିଷ୍ଟ୍ରେସନ୍‌ର ବାର୍ଷିକ ଦେୟପାଇଁ ଜାହାଜମାନଙ୍କୁ ଲାଇବେରିଆର କୌଣସି ବନ୍ଦରକୁ ଆସିବା ପାଇଁ ମଧ୍ୟ ବାଧ୍ୟକଲେ ନାହିଁ । ଫଳରେ ଅନେକ ଦେଶର ଅନେକ ପଣ୍ୟବାହୀ ଜାହାଜ ଏ ଦେଶରେ ରେଜିଷ୍ଟ୍ରେସନ୍ କରାଇବା ଫଳରେ ଯେ ଜାହାଜ ମାଲିକମାନେ ଯେପରି ଲାଭବାନ୍ ହେଲେ, ଲାଇବେରିଆ ଗଣରାଜ୍ୟ ମଧ୍ୟ ଅତି ସହଜ ଉପାୟରେ ରେଜିଷ୍ଟ୍ରେସନ୍ ଫିଜ୍ ବାବଦରେ ପ୍ରଚୁର ଅର୍ଥ ସଂଗ୍ରହ କରିବାର ସୁଯୋଗ ପାଇଲା । ଏସବୁ ଜାହାଜ ନିଜ ଦେଶର ପତାକା ସଙ୍ଗରେ ଲାଇବେରିଆର ପତାକା ମଧ୍ୟ ଉଡ଼ାଇ ଥାଆନ୍ତି ଏବଂ ସେପରି ଜାହାଜ ଦେଖି ମନେହୁଏ ଅନ୍ୟ କୌଣସି ଦେଶ ସତେ ଯେମିତି ଲାଇବେରିଆର ଜାହାଜଟିକୁ ଭଡ଼ାରେ ନେଇଛି ।

ଏମାନଙ୍କ ଦେଶରେ ଅତି ମୂଲ୍ୟବାନ୍ ଧଳା ଅଥବା ରଙ୍ଗୀନ୍ ହୀରା ଖଣି ନାହିଁ । କେବଳ ଟାଣ ପଥରକଟା କଳାହୀରା ରହିଛି । ହୀରା ରପ୍ତାନୀ ଶୁଳ୍କ ଏତେକମ୍ ଯେ, ପାଖ ଦେଶମାନଙ୍କର ମୂଲ୍ୟବାନ୍ ହୀରା ସବୁ ଅନେକ ପରିମାଣରେ ଏ ଦେଶ ଭିତର ଦେଇ ରପ୍ତାନୀ ହୁଏ । ଅନ୍ୟ ଦେଶରୁ ଏପରି ଚୋରା ହୀରା ଲାଇବେରିଆ ଭିତରକୁ ଯେପରି ନ ପଶେ, ସେଥିପ୍ରତି 'କଡ଼ାଦୃଷ୍ଟି' ରଖିଥିବା ଲଗୁଆଳମାନେ ଏ ଧରଣର ଚୋରା କାରବାରକୁ ସରକାରୀ ଜଣାଶୁଣାରେ ପ୍ରୋତ୍ସାହନ ଦିଅନ୍ତି । ବାଣିଜ୍ୟକେନ୍ଦ୍ର ଏ ଲାଇବେରିଆରେ ଏପରି ଚୋରା କାରବାରର 'ରାକେଟ୍' ସବୁ କଳ୍ପନାତୀତ ଭାବରେ ବେଶି । ରାଜ୍ୟର ନେତାମାନେ କିନ୍ତୁ ଏପରି ନୈତିକତାବିହୀନ ଅର୍ଥ ସଂଗ୍ରହର ପନ୍ଥା ସମ୍ବନ୍ଧରେ ଚିନ୍ତିତ ନୁହନ୍ତି । ସେମାନଙ୍କ ମତ ଯେ, ଦେଶ ଯେ କୌଣସି ମତେ ଅର୍ଥ ସଂଗ୍ରହ କରି ସେ ଅର୍ଥରେ ଲୋକଙ୍କ ତଥା ଦେଶର ମଙ୍ଗଳ ସାଧନ କଲେ, ସେଥିରେ କିଛିଦୋଷ ନାହିଁ । 'ଲକ୍ଷ୍ୟପରି ପନ୍ଥା ମଧ୍ୟ ବିଶୁଦ୍ଧ ହେବା ଆବଶ୍ୟକ' ବିଶ୍ୱାସରେ ବିଶ୍ୱାସୀ ମଣିଷ ପକ୍ଷରେ ମତବାଦ ଗ୍ରହଣଯୋଗ୍ୟ ନୁହେଁ; କିନ୍ତୁ ଯେଉଁମାନେ କହନ୍ତି ଲକ୍ଷ୍ୟ ସାଧନ ପାଇଁ ଯେ କୌଣସି ପନ୍ଥା ଗ୍ରହଣୀୟ ସେମାନେ ନିଶ୍ଚୟ ଏ ଧରଣର ନେତୃତ୍ୱକୁ ପ୍ରଶଂସା ନ କରି ରହିପାରିବେନି ।

ନୈତିକତାବିହୀନ ଏହି ଅର୍ଥ ସଂଗ୍ରହର ପନ୍ଥା ସବୁ ସେ ବ୍ୟକ୍ତିଗତ ନୈତିକତାକୁ ମଧ୍ୟ ସ୍ପର୍ଶକରି ତାକୁ ଅତି ନିମ୍ନସ୍ତରକୁ ନେଇଆସିଛି ଏଥିରେ ସନ୍ଦେହ ନାହିଁ । ଲୁହାଖଣି, ରବର ପ୍ଲେଣ୍ଟେସନ୍, ପାମ୍ ପ୍ଲେଣ୍ଟେସନ୍ ମେହୋଗାନି କାଠ ସଂଗ୍ରହ, ଚିଙ୍ଗୁଡ଼ି ମାଛଧରା ପ୍ରଭୃତି ଯାବତୀୟ ଏକଚାଟିଆ ବ୍ୟବସାୟରେ ଲାଇସେନ୍ସ ବା ପଟ୍ଟା ଦେଲାବେଳେ କ୍ଷମତାଶୀଳ ବ୍ୟକ୍ତିମାନେ ଅବାଧ ବ୍ୟକ୍ତିଗତ ଫାଇଦା ଉଠାନ୍ତି । ଆମଦାନୀ ଲାଇସେନ୍ସ ପାଇଁ ମଧ୍ୟ ସେଇକଥା । ଜିନିଷ ସବୁ ଅଦ୍ଭୁତ ଚଢ଼ାଦରରେ ବିକ୍ରୀ ହୁଏ । ପ୍ରତିଦ୍ୱନ୍ଦ୍ୱିତାର ଅଭାବ, ଜିନିଷ ଯଥେଷ୍ଟ ପରିମାଣରେ ନାହିଁ, ଏଣେ ଲୋକଙ୍କ ହାତରେ ପ୍ରଚୁର ଅର୍ଥ ଯେତେ ଚଢ଼ାଦର ହେଲେ ମଧ୍ୟ ଜିନିଷ ସବୁ ବିକ୍ରୀ ହୋଇଯାଏ; ତେଣୁ ଆମଦାନୀ ଲାଇସେନ୍ସରେ ଦୁନିଆଯାକର ହାତ ସଫାଇ। କୋଠାବାଡ଼ି ତିଆରି ସମ୍ବନ୍ଧୀୟ ଠିକା କାମରେ ମଧ୍ୟ ସେଇକଥା।

ମୁଁ ବୁଝିପାରିଥିଲି ଯେ, ଲାଇବେରିଆର ଅନେକେ ତାଙ୍କ ଦେଶରେ ଭାରତୀୟ ବୈଷୟିକ ଜ୍ଞାନର ଆଗମନୀକୁ ସ୍ୱାଗତ କରୁଥିଲା ବେଳେ ସ୍ୱାର୍ଥାନ୍ୱେଷୀ କେତେ ଭାରତୀୟ ବିଶେଷଜ୍ଞମାନଙ୍କୁ ସନ୍ଦେହର ଆଖିରେ ଦେଖୁଥିଲେ । ମୁଁ ଜାଣିପାରିଥିଲି ଯେ ପାରସ୍ପରିକ ଯେ କୌଣସି ସମ୍ବନ୍ଧ ପାଇଁ ଏମାନେ ସରକାରୀ ସ୍ତରୀୟ ସମ୍ବନ୍ଧ ଅପେକ୍ଷା ଭାରତୀୟ ବ୍ୟକ୍ତିଗତ ପ୍ରଚେଷ୍ଟାକୁ ବିଶେଷ ପସନ୍ଦ କରିବେ । ଦୁଃଖର ସହିତ ମୁଁ ଏ

କଥା ମଧ୍ୟ ଲକ୍ଷ୍ୟ କରିଥିଲି ଯେ, ଆମ ଲାଭଖୋର୍ ଲଗାମଛଡ଼ା ବ୍ୟବସାୟୀମାନଙ୍କ ଯୋଗୁଁ ଭାରତ ଆଫ୍ରିକାର ଅନେକ ସ୍ଥଳରେ ନିଜ ସୁନାମ ହରାଇ ବସିଛି । ଶିକ୍ଷାକ୍ଷେତ୍ରରେ କିନ୍ତୁ ଅବସ୍ଥା ଥିଲା ଭିନ୍ନ ।

ଶ୍ରେଣୀକକ୍ଷରେ ଆଦିବାସୀ ହରିଜନ ଏବଂ ଅନ୍ୟାନ୍ୟ ଅନୁନ୍ନତ ଗୋଷ୍ଠୀର ଛାତ୍ରମାନଙ୍କ ସାଧାରଣ ବିକାଶ ସ୍ତରକୁ ଲକ୍ଷ୍ୟକରି ଶିକ୍ଷାଦାନରେ ଅଭ୍ୟସ୍ତ ଏବଂ ସାଧାରଣତଃ ଅତି ଅଳ୍ପରେ ସନ୍ତୁଷ୍ଟ, ଭାରତୀୟ ଶିକ୍ଷକ ତାର ପୂର୍ବଜମାନଙ୍କ ଉଚ୍ଚ ନୈତିକ ପରମ୍ପରାରୁ ଅନେକ ତଳକୁ ଖସି ସାରିଥିଲେ ମଧ୍ୟ ଆଫ୍ରିକାର ଯେଉଁ ଅଞ୍ଚଳରେ ଶିକ୍ଷକତା କରିଚି ସେଠାରେ ସେ ନିଜ ଦେଶ ପାଇଁ ଯଥେଷ୍ଟ ସୁନାମ ଅର୍ଜନ କରିପାରିଛି । ଆମେରିକା ଏବଂ ଇଉରୋପର ଛାତ୍ରମାନେ ଘରେ ଘରେ ଯେଉଁ ସବୁ ସୁବିଧା ସୁଯୋଗ ପାଆନ୍ତି ଏବଂ ସେମାନଙ୍କ ମାନସିକ ବିକାଶ ଯାହା ତାକୁ ସର୍ବନିମ୍ନ ବିକାଶସ୍ତର ବୋଲି ଗ୍ରହଣକରି ନେଉଥିବା ଆମେରିକାନ୍ ଏବଂ ଇଉରୋପୀୟ ଶିକ୍ଷକମାନେ କେବଳ ଯେ, ନିଗ୍ରୋ ଛାତ୍ରଛାତ୍ରୀଙ୍କ ମନୋବିଜ୍ଞାନ ବୁଝିପାରନ୍ତିନି ତା ନୁହେଁ । ସେମାନଙ୍କ ପାଇଁ ଆଫ୍ରିକାର ବେତନ ମଧ୍ୟ ଆକର୍ଷଣୀୟ ନୁହେଁ । ମୁଁ ତେଣୁ ଭାବୁଥିଲି ଯେ ଆଫ୍ରିକାର ଶିକ୍ଷାକ୍ଷେତ୍ର ଭାରତୀୟ ଶିକ୍ଷାବିତ୍‌ମାନଙ୍କ ପାଇଁ ଅପେକ୍ଷାକୃତ ଭାବେ ବେଶି ଉନ୍ମୁକ୍ତ ।

ଆହୁରି ଗୋଟିଏ କଥା । ଆଜି ଆମ ଭାରତରେ ଜନସଂଖ୍ୟା ସାଙ୍ଗକୁ କୃଷିଶିଳ୍ପ ତଥା ଶିକ୍ଷା କ୍ଷେତ୍ରରେ ଯେଉଁ ବିସ୍ଫୋରଣ ଦେଖାଦେଇଛି ତାର ଚରମ ପରିମାଣକୁ ସମ୍ଭାଳିବା ପାଇଁ ଆମ ଦେଶକୁ ଆଜିଠାରୁ ପ୍ରସ୍ତୁତ ହେବାକୁ ପଡ଼ିବ । 'ଛୋଟ ପରିବାର ସୁଖୀ ପରିବାର ।' ପ୍ରଚାର ଦ୍ୱାରା ଜନସଂଖ୍ୟା ବୃଦ୍ଧିକୁ ରୋକିବାକୁ ଚେଷ୍ଟା କଲାପରି କୃଷିଶିଳ୍ପ ତଥା ଶିକ୍ଷା ଜାଗରଣକୁ ତ ଆଉ ସଂକୁଚିତ କରାଯାଇ ନ ପାରେ । ଏ ଧରଣର ବିସ୍ଫୋଟନ ତ ସ୍ୱାଗତଯୋଗ୍ୟ । ଖାଦ୍ୟ ଆମଦାନୀ କରୁଥିବା ଭାରତ ଆଜି ଖାଦ୍ୟ ରପ୍ତାନୀ କରିବା ଉପରେ । ବ୍ରେନ୍-ଡ୍ରେନ୍ ହେଉଥିଲେ ମଧ୍ୟ ଭାରତୀୟ ଇଂଜିନିୟର, ବୈଜ୍ଞାନିକ, ଡ଼ାକ୍ତର, ନର୍ସ ତଥା କାରିଗରମାନେ ଆଜି ଦୂର ଦେଶମାନଙ୍କରେ ଧନ ଉପାର୍ଜନ କରି ବର୍ଷକୁ ପ୍ରାୟ ଦୁଇହଜାର କୋଟି ଟଙ୍କାର ବୈଦେଶିକ ମୁଦ୍ରା ଭାରତକୁ ପଠାଉଛନ୍ତି । ଶିଳ୍ପଜାତ ଦ୍ରବ୍ୟ ମଧ୍ୟ ଭାରତ ଆଜି ଯଥେଷ୍ଟ ମାତ୍ରାରେ ଉତ୍ପାଦନ କରୁଛି। ଏପରି ପରିସ୍ଥିତିରେ କୃଷି ଏବଂ ଶିଳ୍ପଜାତ ଦ୍ରବ୍ୟ ସହ ବୈଷୟିକ ଜ୍ଞାନ ଏବଂ କାରିଗରୀ ବିଦ୍ୟା-ବୈଷୟିକ ଜ୍ଞାନ ପ୍ରାପ୍ତ ମଣିଷ ଏବଂ କାରିଗର ଯଥୋଚିତ ପରିମାଣରେ କ୍ରମାଗତ ରପ୍ତାନୀ ନ କଲେ ନିକଟ ଭବିଷ୍ୟତରେ ଭାରତର ଅର୍ଥନୀତି ଭୁଷୁଡ଼ି ପଡ଼ିବାର ସମ୍ଭାବନା ରହିଛି ।

ଆଉ ମଧ ଆଜି ପୃଥିବୀରେ ଦେଖାଦେଇଛି ଇସ୍‌ଲାମର ପୁନର୍ଜାଗରଣ । ଗୋଟିଏ ପାଖରେ ଖ୍ରୀଷ୍ଟିୟାନ୍ ସଭ୍ୟତାର ପ୍ରତୀକ ଇଉରୋପ ଏବଂ ଆମେରିକା - ଅନ୍ୟପାଖରେ ସାମ୍ୟବାଦୀ ରୁଷ୍ ଏବଂ ପୂର୍ବ ଇଉରୋପୀୟ ଦେଶ ସମୂହ । ଏଣେ ବୌଦ୍ଧ ସଭ୍ୟତାର ମୁକୁଟମଣି ଉଦୀୟମାନ ସୂର୍ଯ୍ୟ ଜାପାନ । ପ୍ରଗତି କ୍ଷେତ୍ରରେ ଭାରତ ଯଦି ଏମାନଙ୍କ ସମକକ୍ଷ ନ ହୁଏ ତେବେ ଜାତି, ଗୋଷ୍ଠୀ, ଭାଷା ଛୁଆଁ ଅଛୁଆଁର କ୍ରୀଡ଼ାକ୍ଷେତ୍ର ଭାରତ ନିଜ ବିଶୃଙ୍ଖଳାରେ ନିଜେ ଛନ୍ଦିହୋଇଯାଇ ପୁଣି ଥରେ ବହିରାକ୍ରମଣ ପାଇଁ ତା'ର ଉତ୍ତର ପଶ୍ଚିମ ଦ୍ୱାର ଉନ୍ମୁକ୍ତ କରି ଦେଇ ନିଜ ଜ୍ଞାନର ଗାରିମା ନେଇ ହିମାଳୟର ଅଜଣା ଗୁମ୍ଫାମାନଙ୍କରେ ଆଶ୍ରୟ ନେବାକୁ ବାଧହେବ ।

ଆଫ୍ରିକା ମହାଦେଶର ବିରାଟ ଭୂଖଣ୍ଡକୁ ଚାରଣ ଭୂମିରେ ପରିଣତ କରିବା ପାଇଁ ସବୁ ବିକଶିତ ଦେଶ ଅତି ବ୍ୟଗ୍ର । ପୃଥିବୀର କ୍ରମବର୍ଦ୍ଧମାନ ଜନଶକ୍ତିକୁ ସମ୍ଭାଳିବା ପାଇଁ ଆଫ୍ରିକାର ଅସୀମ ଅରଣ୍ୟ ଅଞ୍ଚଳ ହିଁ କ୍ଷମ । ସମୟ ଥାଉ ଥାଉ ଆମକୁ ସେ ଭିତରେ ପ୍ରବେଶ କରିବାକୁ ହେବ । ଶିକ୍ଷା ତଥା ବୈଷୟିକ ଶିକ୍ଷା ହିଁ ହେବ ସେ ପ୍ରବେଶ ପାଇଁ ସର୍ବୋତ୍କୃଷ୍ଟ ମାଧ୍ୟମ ।

ମୁଁ ତେଣୁ ଭାବୁଥିଲି ଯେ, ଭାରତ ଯଦି ବୈଷୟିକ ଶିକ୍ଷା ଅନୁଷ୍ଠାନ ପ୍ରତିଷ୍ଠା କରିବାରେ ଲାଇବେରିଆକୁ ସାହାଯ୍ୟ ଦିଏ ଏବଂ ହାର୍ପରଠାରେ ତିଆରି ହୋଇଥିବା କୋଠାବାଡ଼ିକୁ କେନ୍ଦ୍ରକରି ଗୋଟିଏ ଟେକ୍‌ନିକାଲ୍ ଇନ୍‌ଷ୍ଟିଚ୍ୟୁଟ୍ ଗଢ଼ିତୋଳେ ତେବେ ତାହା ଏକ ଉଚିତ୍ ପଦକ୍ଷେପ ହେବ ।

ଲାଇବେରିଆ ଗଣରାଜ୍ୟର ପରିସ୍ଥିତି ଯେପରି ସେଥିରେ ଆମେ ଯଦି ହାର୍ପର୍ ଇନ୍‌ଷ୍ଟିଚ୍ୟୁଟ୍‌କୁ ଗଢ଼ିତୋଳିବାକୁ ଯାଇ କେବଳ ଜଣେ ଡ଼ାଇରେକ୍ଟର ଏବଂ କେତେଜଣ ଅଧ୍ୟାପକ ପଠାଇଦେଉ ତେବେ ତାର ଫଳ ଭଲ ନ ହୋଇ ଓଲଟା ହେବ । ଲାବୋରେଟରୀ ସାଜ ସରଞ୍ଜାମ, ୱାର୍କସପ୍ ଯନ୍ତ୍ରପାତି, ପୋଥିପତ୍ର ବିନା କେବଳ କେତେଜଣ ଶିକ୍ଷାବିତ୍ ବା କଣ କରିପାରିବେ । ଭାରତୀୟ ବିଶେଷଜ୍ଞମାନଙ୍କ ସମ୍ବନ୍ଧରେ ଭଲ ଧାରଣା ସୃଷ୍ଟି କରିବାକୁ ହେଲେ ଆମେ କେବଳ କୋଠାବାଡ଼ି ଛାଡ଼ି ଭାରତର ଯେ କୌଣସି ଗୋଟିଏ ଭଲ ବୈଷୟିକ ଅନୁଷ୍ଠାନକୁ ତାର ଯାବତୀୟ ସାଜ ସରଞ୍ଜାମ, ଜିନିଷପତ୍ର, କାରିଗର, ଅଧ୍ୟାପକଙ୍କ ସହ ହାର୍ପରକୁ ସ୍ଥାନାନ୍ତରିତ କରିବାକୁ ପଡ଼ିବ-ଅର୍ଥାତ୍ ଭାରତରେ ଗୋଟିଏ ବୈଷୟିକ ଶିକ୍ଷା ଅନୁଷ୍ଠାନ ଗଢ଼ିବାକୁ ଗଲେ ଯାହାସବୁ ଦରକାର ପଡ଼ନ୍ତା ସେ ସମସ୍ତ ବିଶେଷଜ୍ଞଙ୍କଠାରୁ ଆରମ୍ଭକରି ଜିନିଷପତ୍ର ପର୍ଯ୍ୟନ୍ତ, ସାମାନ୍ୟ ବିଜୁଳି ତାର, ପାଣି ପାଇପ୍‌ଠାରୁ ଆରମ୍ଭକରି କାଗଜ, ପେନ୍‌ସିଲ୍, ବହିପତ୍ର ପର୍ଯ୍ୟନ୍ତ, ଯନ୍ତ୍ରପାତି କଳକବ୍ଜା ଠାରୁ ଆରମ୍ଭକରି ଡ଼ାଇରେକ୍ଟର, ଅଧ୍ୟାପକ,

ଲାବୋରେଟରୀ ଏସିଷ୍ଟାଣ୍ଟ, ମେକାନିକ୍ ପର୍ଯ୍ୟନ୍ତ ଗୋଟାଏ ଜାହାଜରେ ବୋଝାଇ ସେଠାରେ ପହଞ୍ଚାଇବାକୁ ପଡ଼ିବ - ଯେପରି କୌଣସି କଥାରେ ମଧ୍ୟ ଅନୁଷ୍ଠାନର ଡ଼ାଇରେକ୍ଟରଙ୍କୁ ସେ ଦେଶର ମର୍ଜି ଉପରେ ନିର୍ଭର କରିବାକୁ ନ ପଡ଼େ । ପାଞ୍ଚ ବର୍ଷ ଭିତରେ ଅନୁଷ୍ଠାନଟି ଗଢ଼ିଦେଇ ସେ ସମୟ ଭିତରେ ସେମାନଙ୍କ ଶିକ୍ଷକ ତଥା କାରିଗରମାନଙ୍କୁ ଗଢ଼ିତୋଳି ତାଙ୍କ ହାତରେ ଅନୁଷ୍ଠାନଟିକୁ ସମର୍ପିଦେଇ ଫେରି ଆସିବାକୁ ହେଲେ ଭାରତକୁ ଅନ୍ୟୂନ ପାଞ୍ଚକୋଟି ଟଙ୍କା ସାହାଯ୍ୟ ସୂତ୍ରରେ ଦେବାକୁ ପଡ଼ିବ । ନିଜର ଶିକ୍ଷା ଅନୁଷ୍ଠାନମାନଙ୍କ ପାଇଁ ଅର୍ଥର ଅଭାବ ପଡୁଥିଲା ବେଳେ ଭାରତ ଏମିତି ୫ କୋଟି ଟଙ୍କାର ସାହାଯ୍ୟ ଦେଇପାରିବ ତ ? ମୋ ମନରେ ସନ୍ଦେହ ଜନ୍ମୁଥିଲା ।

ଏହି ଜଟିଳ ସମସ୍ୟାର ସମାଧାନ ପାଇଁ ଏହା ମଧ୍ୟ ଭାବୁଥିଲି ଯେ, ଏମାନେ ଯେଉଁ ଚଢ଼ା ଦରରେ ଅନ୍ୟ ଦେଶମାନଙ୍କଠାରୁ ସିମେଣ୍ଟ, ଲୁହାଛଡ଼ ପ୍ରଭୃତି କିଣୁଛନ୍ତି, ଆମଠାରୁ ସେହି ଦରରେ ଯଦି କିଛି କିଣି ନିଅନ୍ତେ, ତେବେ ସେ ପ୍ରାପ୍ୟ ଲାଭରୁ ଅତି ସହଜରେ ଏ ସାହାଯ୍ୟ ଦେଇହୁଅନ୍ତା । ମୁଁ ତେଣୁ କଳ୍ପନା କରୁଥିଲି ଏପରି ଗୋଟିଏ ପେକେଜ୍ ଡ଼ିଲ୍ । ସେମାନେ ଆମଠାରୁ କେତେ ପରିମାଣର ମାଲ୍ ତାଙ୍କ ବଜାରଦରରେ କିଣିବେ ଆଉ ଆମେ ତାଙ୍କ ପାଇଁ ଗୋଟିଏ ଭଲ ଅନୁଷ୍ଠାନ ଆମ ଅର୍ଥରେ ଏବଂ ସାହାଯ୍ୟଦାନ ସୂତ୍ରରେ ଗଢ଼ିଦେବୁ ।

ମନ୍ଦ ହୁଅନ୍ତାନି ! କିନ୍ତୁ ମନ ଭିତରେ କେତେ ଆଶଙ୍କା ଉପୁଜୁଥିଲା । ମୁଁ ନିଜେ ନିଜକୁ ପଚାରୁଥିଲି ଏମାନଙ୍କ ସ୍ୱାର୍ଥାନ୍ୱେଷୀ ଗୋଷ୍ଠୀ ଏ କଥା କରାଇଦେବେ ତ ! ଭାରତୀୟ ଶିଳ୍ପ ସାମଗ୍ରୀର ଅନୁପ୍ରବେଶକୁ ଶ୍ୱେତାଙ୍ଗମାନେ ନିର୍ବିବାଦରେ ଗ୍ରହଣକରି ନେବେ ତ ?

ରାଜନୈତିକ ସାମ୍ରାଜ୍ୟବାଦର ବିଲୋପ ସାଧନ ପାଇଁ ପରାଧୀନ ଭାବେ ଯେପରି ଦିନେ ଉପନିବେଶମାନଙ୍କୁ ପ୍ରେରଣା ଯୋଗାଇଥିଲା, ଅର୍ଥନୈତିକ ସାମ୍ରାଜ୍ୟବାଦର ପ୍ରସାର ପଥରେ ସ୍ୱାଧୀନ ଭାରତ ଯେ ପୁଣିଥରେ କଣ୍ଟକ ରୂପରେ ଦେଖାଦେବ ସେ ସମ୍ବନ୍ଧରେ ସମ୍ରାଜ୍ୟବାଦୀ ଶ୍ୱେତାଙ୍ଗମାନେ ସଂପୂର୍ଣ୍ଣ ସଚେତନ । ସେମାନେ ତେଣୁ ଆଫ୍ରିକୀୟ ତଥା ଆରବ ଅଞ୍ଚଳ ଭିତରେ ଭାରତର ଅନୁପ୍ରବେଶ ତଥା ଉପସ୍ଥିତିକୁ ଘୋର ସନ୍ଦେହର ଆଖିରେ ଦେଖନ୍ତି । ଉପରେ ଉପରେ ମୁଖା ପିନ୍ଧି ସେମାନେ ଭାରତକୁ ଆଦର କରୁଥିବା ଢ଼ଙ୍ଗ ଦେଖାଉଥିଲେ ମଧ୍ୟ ଅନ୍ତର ଭିତରେ ଭାରତକୁ ଘୃଣା କରନ୍ତି । ସୁଯୋଗ ପାଇଲେ ହିଁ ସେମାନେ ଭାରତକୁ ଭିଖାରୀଙ୍କ ଦେଶ, ବାଘ ଭୂତପ୍ରେତଙ୍କ ଦେଶ, ବୁଢ଼ାହଡ଼ା ବୁଲା ଗାଈ ବଳଦଙ୍କ ଦେଶ, ଭଣ୍ଡ ମଣିଷ -

ଭଗବାନ, ଜାତିଭେଦ ଏବଂ ଘୃଣ୍ୟ ଅସ୍ପୃଶ୍ୟତା ତଥା ବିଧର୍ମୀଙ୍କ ଦେଶ ବୋଲି ପ୍ରଚାର କରିବାକୁ ଛାଡ଼ନ୍ତିନି। ଧର୍ମଯାଜକମାନେ ହୁଅନ୍ତି ବେଳେବେଳେ ସେ ପ୍ରଚାରର ପୁରୋଧା - ଆଉ ନିଜ ମହାନ୍ ସଂସ୍କୃତି ସମ୍ବନ୍ଧରେ ଅଜ୍ଞ କେତେକ ଭାରତୀୟ ତାଙ୍କ ଜୀବନଧାରଣ ପ୍ରଣାଳୀ ଦ୍ୱାରା ଏପରି ଅପପ୍ରଚାର ପାଇଁ ଖୋରାକ୍ ସହ ପ୍ରମାଣ ମଧ୍ୟ ଯୋଗାଇ ଦିଅନ୍ତି ।

ଭାରତରେ ସରକାରୀ ବୃତ୍ତି ସହ ବୈଷୟିକ ଶିକ୍ଷା ନେବା ପାଇଁ ଇଚ୍ଛୁକ ଛାତ୍ରଛାତ୍ରୀ ବାଛିଲାବେଳେ ଛାତ୍ରଛାତ୍ରୀଙ୍କ ସମାବେଶରେ ମୋତେ ଯେଉଁ ପ୍ରଶ୍ନ ପଚରା ଯାଇଥିଲା ସେଥିରୁ ଭାରତ ସମ୍ବନ୍ଧରେ ଏମାନଙ୍କର କେତେ ଯେ ଭୁଲ୍ ଧାରଣା ସେ କଥା ମୁଁ ଜାଣିଥିଲି; କିନ୍ତୁ ଏହା ମଧ୍ୟ ସଂପୂର୍ଣ୍ଣରୂପେ ବୁଝିପାରିଥିଲି ଯେ, ନାନା ଅପପ୍ରଚାର ସତ୍ତ୍ୱେ ଆଫ୍ରିକାର ଯୁବଗୋଷ୍ଠୀ ଭାରତକୁ ଅତି ସମ୍ମାନଭରା ଆଖିରେ ଦେଖନ୍ତି ଏବଂ ଭାରତରୁ ପ୍ରେରଣା ପାଇବା ପାଇଁ ସବୁବେଳେ ଆଶା ରଖନ୍ତି ।

ଗାନ୍ଧିଜୀ ଏବଂ ଜବାହାରଲାଲଙ୍କ ଭାରତକୁ ଅନେକ ଆଫ୍ରିକୀୟ ଭଲରୂପେ ଜାଣନ୍ତି ସତ, କିନ୍ତୁ ବୁଦ୍ଧ, ଶଙ୍କର, ବିବେକାନନ୍ଦ, ଅରବିନ୍ଦଙ୍କ ଭାରତକୁ; ବାଲ୍ମିକୀ, ବ୍ୟାସ, କାଳିଦାସ, ଟେଗୋରଙ୍କ ଭାରତକୁ; ରମଣ, ବୋଷ, ରାମାନୁଜ, ଚନ୍ଦ୍ରଶେଖର, ଖୋରାନାଙ୍କ ଭାରତକୁ ଏମାନେ ଆଜିପର୍ଯ୍ୟନ୍ତ ଚିହ୍ନିନାହାନ୍ତି ।

ବୈଷୟିକ ଶିକ୍ଷାଦାନ ପାଇଁ ଭାରତୀୟ ଅଧ୍ୟାପକମାନେ ଯଦି ଏ ଅଞ୍ଚଳକୁ ଆସନ୍ତି, ଶିକ୍ଷାଦାନ ସଙ୍ଗେ ଭାରତର ଆତ୍ମାକୁ ଆଫ୍ରିକାରେ ଚିହ୍ନାଇଦେବା ହେବ ଏମାନଙ୍କ ପରମ କର୍ତ୍ତବ୍ୟ । ମୋର ରହଣିକାଳ ସରି ଆସିଲାବେଳକୁ ଏସବୁ କଥା ହିଁ ଚିନ୍ତା କରୁଥିଲି ।

ଲାଇବେରିଆ ଗଣରାଜ୍ୟରୁ ମୋର ବିଦାୟ ନେବା ସମୟ ଆସିଯାଇଥିଲା। ବୈଦେଶିକ ମନ୍ତ୍ରୀ ମିଷ୍ଟର ଡ଼େନିସ୍ ଯୁନିୟର୍ ତଥା ଶିକ୍ଷାମନ୍ତ୍ରୀ ଡକ୍ଟର ହପ୍‌କୁ ଶେଷ ଦେଖାକରି ମୁଁ ଗଣରାଜ୍ୟରେ ପାଇଥିବା ସୌହାର୍ଦ୍ଦ୍ୟପୂର୍ଣ୍ଣ ଆତିଥ୍ୟ ପାଇଁ ମୋର ଆନ୍ତରିକ ଧନ୍ୟବାଦ ଏବଂ କୃତଜ୍ଞତା ଜଣାଇ ଆସିଥିଲି । ଶୁଭ ବିଦାୟ ଦେବାପାଇଁ ଡେପୁଟି ଚିଫ୍ ପ୍ରୋଟୋକୋଲଙ୍କ ସହ ସହାୟକ ଶିକ୍ଷାମନ୍ତ୍ରୀ ମିଷ୍ଟର୍ ଉଇଲସନ୍ ବିମାନବନ୍ଦରକୁ ଆସିଥିଲେ ।

ଉଡ଼ାଜାହାଜକୁ ଯିବା ପୂର୍ବରୁ ମିଷ୍ଟର୍ ଉଇଲସନ୍ ମୋତେ ଗୋଟିଏ ପ୍ୟାକେଟ୍ ଧରାଇଦେଇ କହିଲେ, "ଲାଇବେରିଆ ଗଣରାଜ୍ୟର ଏ ସାମାନ୍ୟ ପ୍ରୀତି ଉପହାର ଗ୍ରହଣ କରନ୍ତୁ ।" ପ୍ୟାକେଟ୍‌ରେ ଥିଲା ଗୋଟିଏ ଧଳାଲାଞ୍ଜବାଲା ଲୋମଶ କଳା

ମାଙ୍କଡ଼ର ଛାଲ, ଗୋଟିଏ ଛୋଟବୋଡ଼ା ସାପର ଛାଲ, ଦୁଇଟି ନୀଳଗାଈର ଶିଙ୍ଘ ଏବଂ ବାଉଁଶ ପାତିଆର ଗୋଟାଏ ସାନ ଗୋଲ ପାଛିଆ । ଡେ଼ପୁଟି ଚିଫ୍ ଅଫ୍ ପ୍ରୋଟୋକଲ୍ ମଧ ଖଣ୍ଡିଏ ଚିଠି ସହ ସାନ ପ୍ୟାକେଟ୍‌ଟିଏ ଧରାଇ ଦେଲେ । କଳାକନାର ପ୍ରଚ୍ଛଦପଟ ଉପରେ ବିଭିନ୍ନ ଆକୃତିରେ କଟା ଧଳାକନାର ଛୋଟ ଖଣ୍ଡମାନ ଖଞ୍ଜି ଚିତ୍ରିତ ହୋଇଥିବା ଆଫ୍ରିକୀୟ କେତେ ଦୃଶ୍ୟ ସମ୍ବଳିତ ଗୋଟିଏ ଚିତ୍ରପଟ୍ଟ ସହ ବିଜ୍ଞାନ ଏବଂ ବୈଷୟିକ ଜ୍ଞାନର ଡିନ୍ ମିସେସ୍ ଡେ଼ନିସ୍ ଲେଖିଥିଲେ - "ଭାରତ ସୂକ୍ଷ୍ମକଳାର ଦେଶ । ଆମର ସୂକ୍ଷ୍ମକଳା କେବେ ତାର ସମକକ୍ଷ ହୋଇପାରିବନି । ତଥାପି ମୋର ଆଶା କାନ୍ଥରେ ଝୁଲାଯାଉଥିବା ଏହି ଏପ୍ଲିକ୍ ଚିତ୍ରପଟ୍ଟ ଦେଖି ଆପଣ ଆମ ଦେଶକୁ ମଝି ମଝିରେ ମନେ ପକାଉଥିବେ ।"

ପଶ୍ଚିମ ଆଫ୍ରିକାରୁ ମୁଁ ଫେରି ଆସୁଥିଲି ମୋ ପ୍ରିୟ ମାତୃଭୂମି ଭାରତକୁ ମନ ଭିତରେ ହର୍ଷ ଏବଂ ବିଷାଦର ଦ୍ୱନ୍ଦ୍ୱ ନେଇ । ସାଙ୍ଗରେ ଥିଲା ନାନାଦି ଅନୁଭୂତି ଏବଂ ନୂତନ ଅଭିଜ୍ଞତାରେ ଭରା ଏକ ବିରାଟ ବୁଜୁଳା ।

ଆଫ୍ରିକା ମହାଦେଶ ଅତିକ୍ରମ କରି ଆମେ ଭାରତ ମହାସାଗର ଉପରେ ଉଡ଼ି ଆସୁଥିଲୁ । ବୋଇଙ୍ଗ୍ ଜେଟ୍ ବିମାନର ଝରକା ଭିତର ଦେଇ ମୁଁ ଯେତେବେଳେ ତଳକୁ ଅନାଇ ଦେଉଥିଲି, ଦେଖୁଥିଲି ମେଘଶୂନ୍ୟ ଆକାଶତଳେ ମହାସାଗରର ଦିଗନ୍ତ ବିସ୍ତାରୀ ନୀଳ ଅମ୍ବୁ । ଅତି ନିକଟରୁ ଚାହିଁଲେ ମହାସାଗର ବିଶେ ଚଞ୍ଚଳ, ଚପଳ ଏବଂ ଫେନିଳ । ଏତେ ଉର୍ଦ୍ଧ୍ୱରୁ କିନ୍ତୁ ଦିଶୁଥିଲା ସୁଗଭୀର, ପ୍ରଶାନ୍ତ ଏବଂ କମନୀୟ, ଠିକ୍ ଆମ ମାତୃଭୂମି ପରି । ପାଖରୁ ଦେଖିଲେ ଛୁଆଁ ଅଛୁଆଁ ଭେଦଭାବରେ ଫେନିଳ ଏବଂ ଅସ୍ଥିର ଆମ ସଭ୍ୟତା କିନ୍ତୁ ଉର୍ଦ୍ଧ୍ୱରୁ ଚାହିଁଲେ ସର୍ବେ ଭବନ୍ତୁ ସୁଖୀନଃ - ସର୍ବେ ସ୍ୟନ୍ତୁ ନିରାମୟ...' ସମତ୍ୱ ଜ୍ଞାନରେ ସ୍ଥିର- ଗମ୍ଭୀର, ରତ୍ନଗର୍ଭା ଆମ ସଂସ୍କୃତି ।

ଆଉ ଯେତେବେଳେ ଉପରକୁ ଚାହିଁ ଦେଉଥିଲି, ଦେଖୁଥିଲି ଅନନ୍ତ ମହାକାଶ। ଶୂନ୍ୟ-ଶୂନ୍ୟ-ମହାଶୂନ୍ୟ- ତଥାପି ନୀଳ ଏବଂ ସୁନ୍ଦର । ଠିକ୍ ସେଇ ଲାଇବେରିଆ ଗଣରାଜ୍ୟ ପରି-ସଂସ୍କୃତି ବିହୀନ ଏବଂ ସଭ୍ୟତା ଶୂନ୍ୟ ସତ କିନ୍ତୁ ସତ୍ୟ, ଶ୍ରଦ୍ଧା ଏବଂ ସମତ୍ୱ ଭାବ ସମ୍ବଳିତ ଅନନ୍ତ ମାନବିକତାର ପୂର୍ଣ୍ଣ-ସୁନୀଳ ଏବଂ ସୁଷମାଭରା ।

ନାନାଦି ଚିନ୍ତା ଭିତରେ ଢେ଼ଙ୍କି କଥା ମନେ ପକାଉଥିଲି । ବିମାନ ଇଞ୍ଜିନ୍‌ର ସୁମଧୁର ଗୁଞ୍ଜନ ଭିତରେ ମୋର ନୂତନ ଅଭିଜ୍ଞତା କାନ ପାଖରେ ଥିରି ଥିରି କହୁଥିଲା 'ସ୍ୱର୍ଗକୁ ଗଲାବେଳେ ମଧ ଢେ଼ଙ୍କି ତା ସାଙ୍ଗରେ କିଛି ଧାନ ନେଇଯିବା ଭଲ । ନହେଲେ ସେ ସେଇଠି କୁଟିବ କଣ । ଧାନ କୁଟିବା ଯେହେତୁ ଢେ଼ଙ୍କିର ଧର୍ମ, ସେହି ଧର୍ମ ସାଧନ ପାଇଁ ସେ ଆତ୍ମନିର୍ଭରଶୀଳ ନ ହୋଇ ଅନ୍ୟର ଆଶ୍ରିତ ହେବ କାହିଁକି ?'

ମନ ଭିତରେ କିନ୍ତୁ ଆଉଜଣେ କେହି ଟିପ୍ପଣୀ କାଟୁଥିଲା 'ଧର୍ମ ନିଜେ ସେହି ଧାନ ନୁହେଁ?'

ବମ୍ବେ ପାଖେଇ ଆସିଲାବେଳକୁ ମୁଁ ନିଜେ ନିଜକୁ ପଚାରୁଥିଲି ଢେଙ୍କି ତେବେ କଣ ସ୍ୱର୍ଗକୁ ଗଲେ ତାର ଧର୍ମକୁ ହିଁ ସାଙ୍ଗରେ ନେଇଯାଏ? ଢେଙ୍କି କଣ ସ୍ୱର୍ଗରେ ଥିଲାବେଳେ ତାର ସେହି ପୂର୍ବ ସଞ୍ଚିତ ଧର୍ମକୁ ହିଁ କୁଟି ବସେ ?

⌘⌘

# କଥା ଓ ଲଥା

ପ୍ରଫେସର ଭୁବନେଶ୍ୱର ବେହେରା

ପ୍ରକାଶକ :

ଗ୍ରନ୍ଥମନ୍ଦିର, କଟକ - ୭୫୩୦୦୨

ପ୍ରଥମ ସଂସ୍କରଣ : ୧୯୭୮

# ସୂଚୀ

# ନାଚେ ବେନୁଆଁ ନାଚେ

ଦୂର ପାହାଡ଼ରେ ଯେତେବେଳେ ନିଆଁଲାଗେ ଆଉ ରାତିରେ ସେ ନିଆଁ ଗୋଟିଏ ବିରାଟ ସୁନାହାରର ରୂପ ନିଏ, ମାଙ୍କଡ଼ ବାହାଘରର ରୋଶଣି କଥା ମନେପଡ଼ିଯାଏ - ଆଉ ତା' ସାଙ୍ଗରେ ମନେପଡ଼େ ପିଲାଦିନର କେତେ ଅଭୁଲା ସ୍ମୃତି ।

ସେ ଦିନର ସ୍କୁଲଜୀବନ । ଛାଟ ବିନା ପାଠର କଳ୍ପନା ମଧ୍ୟ କେହି କରନ୍ତିନି । ମାଷ୍ଟରମାନଙ୍କୁ ତେଣୁ ବାପାଙ୍କ ଅନୁରୋଧ, ସେମାନେ ମନଇଚ୍ଛା ଯେତେ ମାଡ଼ ଦେବେ ଦିଅନ୍ତୁ, ପୁଅକୁ କୌଣସିମତେ ମଣିଷ କରନ୍ତୁ । ସେ କାଳର କର୍ତ୍ତବ୍ୟପରାୟଣ ଶିକ୍ଷକମାନେ ଏପରି ଅନୁରୋଧ ଏଡ଼ିଦେବେ ବା କେମିତି ? ଆମପରି ମାଙ୍କଡ଼ମାନଙ୍କୁ ମଣିଷ କରିବାକୁ ଯାଇ ପିଠିରେ ଗୋଟା ଗୋଟା କନିଅର ଛାଟ ଛିଣ୍ଡାଇଦିଅନ୍ତି - କିଛି ଗୋଟାଏ ବାହାନା ମିଳିଗଲେ ହେଲା । କିଏ କ୍ଲାସ୍‌ରେ କାହାକୁ ଦେଖି ହସୁଛି, କିଏ କାହାକୁ ଖତେଇ ହେଉଛି, କିନ୍ତୁ ତେନ୍ତୁଳି ଖାଉଛି, କିଏ କାହାର ଟାଙ୍ଗରା ମୁଣ୍ଡରେ ଥରେ ଦି'ଥର ଠଣା ମାରିଛି, କିଏ ଅବା କାହାର ଚୁଟି ଟାଣିଛି - ବାସ୍ ! ତଥାପି ସେଦିନ କାହା ବାଡ଼ିରେ ଗୋଟାଏ ଦି'ଟା କାକୁଡ଼ି ନିର୍ଲଜ୍ଜଭାବରେ ଝୁଲୁଥିବା ଦେଖିଲେ ଅଥବା କାହା ଗଛର ପିଜୁଳି କିମ୍ବା ଆମ୍ବ ଆମକୁ ଦେଖି ସାମାନ୍ୟ ଟିକିଏ ପବନରେ ବି ଅଣ୍ଡାହଲାଇ ମୁଣ୍ଡ ଟୁଙ୍ଗାରିଲେ ଲୋଭ ସମ୍ଭାଳି ହୁଏନି, ବୋଲି କହି କୌଣସି କୌଣସି ଶିକ୍ଷକ ଆମ ପିଠିର ଛାଲ ଉତାରିବାକୁ ଚେଷ୍ଟାକରନ୍ତି । ଆଉ ସେପରି ଦୋଷ କରିଥିବା ଯୋଗୁ ଦଣ୍ଡ ଯେ ଆମର ପ୍ରାପ୍ୟ ସେକଥା ବୁଝିହୁଏ । କିନ୍ତୁ ଏକଥା ବୁଝିହୁଏନି ଯେ, ପଞ୍ଚମ ଷଷ୍ଠ ଶ୍ରେଣୀ ପଢ଼ିଲାବେଳେ ଆମର କି ଅବା ବୟସ ! ସେଥିରେ ଆମେ କାହିଁକି ଯେ 'ନିଦ୍ରା ପରିହରି, ଚିନ୍ତାର ଲୋଚନ ଫେଡ଼ି ନିଃଶବ୍ଦେ ଜୀବନସ୍ରୋତ ଧାଉଁଛି କିପରି, ଭେଟିବାକୁ ମୃତ୍ୟୁସିନ୍ଧୁ କରାଳ ଲହରୀ' ବୋଲି ଜୀବନ ସମ୍ବନ୍ଧରେ ଚିନ୍ତାକରି ବସିବୁ, ଆଉ ଡୁଡୁ ବୋହୂଚୋରି, ଫୁଟବଲ ନଖେଳି 'କି ବେଗରେ ଯାଉଅଛି ଚାଲି, ସେହି ସ୍ରୋତ ସଂଗେ ଭାସି ଜୀବନର ସୁଖରାଶି' ବୋଲି ଶୋକୋଚ୍ଛ୍ୱାସ ଢ଼ାଳିବୁ । ଏସବୁର ଅର୍ଥ ବୁଝି ନପାରିଲେ ଅଥବା କିଛି ନବୁଝି ମୁଖସ୍ଥକରି ଓଗାଳିଲାବେଳେ ଭୁଲ୍‌ଭଟକା

ହେଲେ ଯେଉଁ ମାଡ଼ହୁଏ ସେତିକିବେଳେ ବିନା ଦୋଷରେ ମାଡ଼ ହେଉଛି ବୋଲି ଦେହରେ ନିଆଁ ଜଳେ, କିନ୍ତୁ କିଛି କରିହୁଏନି । ହଷ୍ଟେଲ୍ ଛାଡ଼ି ଅନ୍ୟ କେତେଜଣଙ୍କ ପରି ଘରକୁ ପଳାଇଗଲେ ବା ରକ୍ଷା - କିନ୍ତୁ ତେଣେ ବାପା ବସିଛନ୍ତି, ଜବରଦସ୍ତି ପୁଣି ସ୍କୁଲକୁ ନେଇ ଆସିବେ । ମାଆଙ୍କର ତ ଆପତ୍ତି କରିବାର କିଛି ଅଧିକାର ନାହିଁ। ଏସବୁ ବିଷୟରେ କୁଆଡ଼େ ତାଙ୍କର ମୁଣ୍ଡ ନଖେଳାଇବା କଥା - ଘରକୁ ପଳାଇଗଲେ ମାଡ଼ ଖାଲି ଦ୍ୱିଗୁଣିତ ହେବ ଯାହା । ତେଣୁ ଛାତ୍ରଙ୍କର ଏକମାତ୍ର ପରମବନ୍ଧୁ ଖରାଛୁଟି ପାଇଁ ଆମେ ଦିନ ଗଣିବସୁ । ସେହି ପ୍ରିୟ ଖରାଛୁଟି ପାଖେଇ ଆସିଲା ବେଳକୁ ହିଁ ଏମିତି ପାହାଡ଼ମାନଙ୍କରେ ମାଙ୍କଡ଼ ବାହାଘରର ରୋଶଣି ଦପ୍ ଦପ୍ କରି ଜଳିଉଠେ ।

ରୋଶଣି ଆଲୁଅ ଦେଖି ମୋର ପ୍ରବଳ ଇଚ୍ଛାହୁଏ କେମିତି ଏ ବାହାଘର ଥରେ ଦେଖନ୍ତି! ଏଡ଼ିକି ଟିକିଏ ଟିକିଏ ମାଙ୍କଡ଼ ଆଉ ସେମାନଙ୍କର କି ବିରାଟ ରୋଶଣି ! ଆଶ୍ଚର୍ଯ୍ୟ ଲାଗେ । ଆମ ସବ୍‌ଜାନ୍‌ତା ଉପର କ୍ଲାସର ପିଲାମାନେ କିନ୍ତୁ ଟିକିଏ ମାଙ୍କଡ଼ ବୋଲି କହିଲେ ବିରକ୍ତ ହୁଅନ୍ତି, ଆଉ ହନୁମାନ ଅଙ୍ଗଦ-ସୁଗ୍ରୀବଙ୍କ ସାଙ୍ଗରେ ମର୍କଟସୁନ୍ଦରୀମାନଙ୍କ କଥା କହିବସନ୍ତି । ଆମର ବିଶ୍ୱାସ ହୋଇଯାଏ ଯେ, ଯୁବରାଜ ଅଙ୍ଗଦଙ୍କ ବାହାଘରର ଏ ରୋଶଣି ।

ତେବେ ଯୁବରାଜ ଅଙ୍ଗଦ ଏମିତି ପ୍ରତିବର୍ଷ ଖରାଛୁଟି ପାଖେଇ ଆସିଲାବେଳକୁ କାହିଁକି ଯେ ବାହାହୁଅନ୍ତି ଆଉ ସବୁ ରାତିରେ କାହିଁକି ଏ ବାହାଘରର ପ୍ରଶେସନ୍ ପାହାଡ଼ରୁ ପାହାଡ଼ ଡ଼େଇଁ ଚାଲିଥାଏ, ଆଉ ବେଳେ ବେଳେ ପୁଣି ସେହି ପୁରୁଣା ପାହାଡ଼ରେ ଉଙ୍କିମାରେ, ସେ କଥା ବୁଝିହୁଏନି । ସେଇ ବୁଦ୍ଧିଆ ସବ୍‌ଜାନ୍‌ତାମାନେ ସେ କଥା ମଧ ବୁଝାଇଦିଅନ୍ତି । କେତେ ରୋଶଣିଆ ମାଙ୍କଡ଼ କୁଆଡ଼େ ଏତେବାଟ ଚାଲି ଚାଲି ଥକିଗଲା ପରେ ତାଙ୍କ ଯୂଥପତି ଆଉ ପ୍ରହରୀଙ୍କ ମାଡ଼ଭୟରେ ସେମାନଙ୍କ ଅଜାଣତରେ କେଉଁ ଗଛମୂଳେ ଲୁଚିରହନ୍ତି, ଆଉ ସମସ୍ତେ ଚାଲିଗଲା ପରେ ସୁବିଧା ଦେଖି ପୁଣି ତାଙ୍କର ରୋଶଣି ଧରି ବାହାରନ୍ତି ସେଇ କିଷ୍କିନ୍ଧା ଅଭିମୁଖରେ । ଗୋଟିଏ ଜଟିଳ ସମସ୍ୟାର ଏପରି ଏକ ସରଳ ସମାଧାନ ହୋଇଯାଏ ।

ବିରାଟ ବିରାଟ ମାଙ୍କଡ଼ଙ୍କ କଥା ଶୁଣିଲା ପରେ ରାତିରେ ଲୁଚି ଛପି ସେ ବାହାଘର ଦେଖିଯିବାକୁ ଆଉ ସାହସ ହୁଏନି - ଇଚ୍ଛା ଇଚ୍ଛାରେ ହିଁ ରହିଯାଏ । ତଥାପି ସେ ମାଙ୍କଡ଼ ବାହାଘରର ରୋଶଣି ମନରେ ପୁଲକ ଦିଏ । ଖରାଛୁଟି ପାଖେଇ ଆସିଲା ବୋଲି ଜାଣି ହୋଇଯାଏ ଏବଂ ଘରକଥା ବାରମ୍ବାର ମନେପଡ଼େ । ହଷ୍ଟେଲ୍‌ର ଅସିଝା ଡ଼ାଲି ଆହୁରି ପାଣିଆ ଲାଗେ, ବଗଡ଼ା ଭାତ ତଣ୍ଟିକୁ ଗଳେନି, ତରକାରି ରାଗରେ

ପାଟି ଜଳାଏ । ସତରେ ମା' ଯେମିତି ରାନ୍ଧନ୍ତି ! ଆଉ ଏ ଭୁଷୁଣ୍ଡା ଝାଲୁଆ ରାନ୍ଧୁଣିଆଗୁଡ଼ାକ ! କିଏ ଖାଇଲେ କି ନଖାଇଲେ ତାଙ୍କର ଯାଏ ଆସେ କେତେ ? ଏ ହଷ୍ଟେଲ୍ ସୁପରିଣ୍ଟେଣ୍ଡେଣ୍ଟମାନେ କାହିଁକି ଯେ ଏଗୁଡ଼ାକୁ ରଖନ୍ତି ?

ଛୁଟିରେ ଡ଼ାଳମାକୁଡ଼ି ଖେଳ କଥା ମନେପଡ଼େ । ବାପା କ'ଣ ସନ୍ ଷ୍ଟ୍ରୋକ୍ ଫ୍ରୋକ୍ କଥା କହି ଦିନ ଦି'ପହର ବେଳେ ଏଇ ଡ଼ାଳମାକୁଡ଼ି ଖେଳିବା ପାଇଁ ଆମ୍ବତୋଟାକୁ କିମ୍ବା ପହଁରିବା ପାଇଁ ପୋଖରୀକୁ ନଯିବାକୁ ତାଗିଦ୍ କରି ଦେଇଥାଆନ୍ତି - କିନ୍ତୁ ଖରାବେଳେ ସେ ଯେତେବେଳେ ଶୋଇପଡ଼ି ଘୁଙ୍ଘୁଡ଼ି ମାରନ୍ତି, ସୁଯୋଗ ମିଳିଯାଏ । ଆଉ ମନେପଡ଼େ ବେନୁଆଁ ନାଚ ।

ଆମ ଗାଁମାନଙ୍କରେ ମାଙ୍କଡ଼ ନାଚକୁ କାହିଁକି ଯେ ବେନୁଆଁ ନାଚ କହନ୍ତି ଠିକ୍ ବୁଝିହୁଏନି । ବୋଧହୁଏ ସେ ମାଙ୍କଡ଼ନଚାଳିଙ୍କ ନିଜ ଭାଷା । ମାଙ୍କଡ଼କୁ ସେମାନେ ତାଙ୍କ ଛତିଶଗଡ଼ୀ ଭାଷାରେ ବେନୁଆଁ କହୁଥିବେ । 'ନାଚ୍ ବେନୁଆଁ ନାଚ୍' ମନେପଡ଼ିଲାକ୍ଷଣି ମନ ଆନନ୍ଦରେ ଭରିଯାଏ ।

ବେନୁଆଁ ନାନା ଢ଼ଙ୍ଗରେ ଅଣ୍ଟା ହଲାଇ ନାଚେ । ଫ୍ରକ୍ ଖଣ୍ଡିଏ ପିନ୍ଧି ବୋହୂ ସାଜି ଯେତେବେଳେ ସେ ପାଣି ଆଣେ, ଟିକି ମୁଣ୍ଡରେ ଛୋଟ ଆଲୁମୋନିୟମ୍‌ର ଗିନାକୁ ଦି'ହାତରେ ଜାବୁଡ଼ି ଧରିଥାଏ । ଲାଞ୍ଜ ତଳେ ଘୋଷାଡ଼ି ହୁଏ, ଠିକ୍ ପଣତକାନି ପରି । ନଚାଳି ନାଚ ମଝିରେ ଚିତ୍କାର କରେ - 'ବେନୁଆଁ, ତୋର ଶଶୁର ଆସିଛନ୍ତି...', ଟିକି ଗୋଲ ମୁଣ୍ଡକୁ ଭୂଇଁରେ ଥାପି ବେନୁଆଁ ଆମ ଭିତରର କାହା ପାଦତଳେ ମୁଣ୍ଡିଆ ମାରେ । କେବେ ଆଖି ବୁଜିଦେଇଥାଏ ତ କେବେ ଆଖି ଜୁଳୁଜୁଳୁ କରୁଥାଏ । ସେ ଯାହା ପାଦତଳେ ମୁଣ୍ଡିଆ ମାରେ ତାକୁ ଆମେ 'ବେନୁଆଁ ଶଶୁର, ବେନୁଆଁ ଶଶୁର' କହି ତାଳିମାରି ନାଚିଉଠୁ ।

ବେଳେ ବେଳେ ନଚାଳିର ଦିଓଟି ବେନୁଆଁ ରହୁଥିଲେ । ଗୋଟିଏ ଫ୍ରକ୍ ପିନ୍ଧି କନିଆ ବନେ, ଆଉ ଆରଟି ଟୋପି ପିନ୍ଧି ବର ସାଜେ । କନିଆ ମୁଣ୍ଡରେ ଛିଟକନା ଖଣ୍ଡିଏ ପକାଇ ନଚାଳି ଯେତେବେଳେ ବରକୁ କହେ - 'ଆରେ ବେନୁଆଁ, ଯା ଦେଖିଆସିବୁ ତୋର କନିଆଁ ଦେଖିବାକୁ କେମିତି', ସେତେବେଳେ ବର ଗମ୍ଭୀର ହୋଇ କନିଆଁ ପାଖକୁ ଯାଏ ଆଉ ଓଢ଼ଣା ଟେକି ତା' ମୁହଁ ଆଡ଼କୁ ଉଙ୍କିମାରେ । କନିଆଁ ଲାଜ ଲାଜ ମୁହଁକରି ଯେତେବେଳେ ମୁହଁ ବୁଲାଇଦିଏ, ଆମ ଭିତରେ ହସର ରୋଳ ଖେଳିଯାଏ । କେବେ କେବେ ବେନୁଆଁ ବରପିତା ହୁଏ, କାଖରେ ଛତା ଜାକି, ବାଡ଼ିଧରି ଠୁକୁରୁ ଠୁକୁରୁ କରି ବୋହୂ ଅନ୍ୱେଷଣରେ ବାହାରେ । ବେନୁଆଁ ଯେତେବେଳେ ସମୁଦ୍ର ଡ଼େଇଁ ଲଙ୍କାକୁ ଯାଏ, ନଚାଳିର ବାଡ଼ିଉଠାରେ କୁଦାମାରି

ସେମିତି ଲଙ୍କାରୁ ଫେରିଆସେ, ଖେଳ ଶେଷହେଲା ବୋଲି ଆମେ ସବୁ ଜାଣିନେଉ । ବେନୁଆଁ ଶେଷରେ ମା'ଙ୍କ ପାଖରେ ମୁଣ୍ଡିଆ ମାରେ, ଆଉ ଆମେ ଖୁସିରେ ଘର ଭିତରକୁ ଦଉଡ଼ିଯାଇ ଚଣା, ମୁଗ, ବିରି ଯାହା ମିଳିଲା ମୁଠାଏ ନେଇ ଆସି ତା' ଆଗରେ ବିଞ୍ଚିଦେଉ। କାଳେ କିଏ ସେହି ଅମୂଲ୍ୟ ସମ୍ପଦ ତା' ହାତରୁ ଛଡ଼ାଇନେଇଯିବ, ସେଇ ଭୟରେ ବେନୁଆଁ ଦି' ହାତରେ ଚଣା ଗୋଟାଇ ଟପାଟପ୍ ପାଟି ଭିତରେ ଭର୍ତ୍ତିକରେ, ଆଉ ଗାଲର ଥଳି ଭରପୂର କରି ସମସ୍ତଙ୍କୁ ମିଟିମିଟି କରି ଚାହେଁ ବେଶ୍ ହସିଲା ହସିଲା ମୁହଁରେ, ସତେ ଯେମିତି 'ହାଓ ଡୁ ୟୁ ଡୁ' କହିବାକୁ ଚାହୁଁଛି ।

ଗୋଟାଏ ଘରୁ ବେନୁଆଁ ଯେତେବେଳେ ଆଉ ଗୋଟାଏ ଘରକୁ ତା'ର ନାଚ ଦେଖେଇବାକୁ ଯାଏ, ଆମେ ଗାଁର ସବୁ ପିଲା ତା' ପଛରେ ଗୋଡ଼ାଇଯାଉ । ସେଇ ଖେଳ ଆଉ ଆମର ପୁଣି ସେଇ ଆନନ୍ଦ ।

ଏଇ ପିଲାଦିନର ସ୍ମୃତି ଯୋଗୁଁ ବୋଧହୁଏ ମାଙ୍କଡ଼ନାଚ ପାଇଁ ଆଜି ମଧ୍ୟ ମୋର ଦୁର୍ବଳତା ରହିଯାଇଛି । ସେଦିନ ଘର ବାହାରେ 'ଡାକ୍ ଡାକ୍ ଘିଡ଼ି ଡାକ୍ ଡାକ୍' ଶୁଣି ନିଜ ଅଜାଣତରେ ହିଁ ଘରୁ ବାହାରିଆସିଲି । ବୁଢ଼ା ତଳେ ବାଡ଼ି ପିଟିପିଟି ଗୋଟାଏ ସ୍ୱରରେ ସେଇ ଏକା ତାଳ ହିଁ ଧରିଥାଏ । ଡାକ୍ ଡାକ୍ ସଙ୍ଗରେ ତାଳ ମିଳାଇ ମାଙ୍କଡ଼ଟି ହଲି ହଲି ନାଚୁଥାଏ - ଛୋଟଛୁଆଙ୍କ ଥେଇ ଥେଇ ନାଚ ପରି । ଛଅଫୁଟିଆ ମସ୍ତବଡ଼ ସେ ବୁଢ଼ା ପାଖରେ ଟିକି ମାଙ୍କଡ଼ଟି କେମିତି ଅଖାଡୁଆ ଦିଶୁଥାଏ - ସଂପୂର୍ଣ୍ଣ ଖାପଛଡ଼ା । ମାଙ୍କଡ଼ଟି ବୋଧହୁଏ ନିହାତି ସାନ ଆଉ ଅନୁଭୂତିବିହୀନ - ଅଣ୍ଟାକୁ ଉପର ତଳ କରି ହଲାଇବା ଛଡ଼ା ଆଉକିଛି ଜାଣେନି । ମଝିରେ ମଝିରେ ଯେତେବେଳେ ନାଚ ବନ୍ଦକରି ହାଲିଆ ମୁହଁରେ ଚାରିଆଡ଼କୁ ଅନାଏ, ବୁଢ଼ା ଗଳାର ଶିଙ୍କୁଳିକୁ ଜୋର୍‌ରେ ଟାଣି ଗାଳିଦିଏ ଆଉ ବାଡ଼ି ଉଠାଏ । ବିଚରା ମାଙ୍କଡ଼ ସ୍ପ୍ରିଂରେ ଚାବି ସରିଆସିଥିବା ଗୋଟିଏ ଖେଳନା ପରି ଥମି ଥମି ଅଣ୍ଟାକୁ ଉପର ତଳ କରେ - ନିହାତ୍ ଅନିଚ୍ଛାରେ ମାଡ଼ ଡ଼ରରେ ।

ବଡ଼ ବୋରିଂ । ଘର ଭିତରକୁ ଚାଲିଆସିବା ଆଗରୁ କିନ୍ତୁ ମନେହେଲା ମୁଁ ବୁଢ଼ାକୁ କେଉଁଠି ଦେଖିଛି - ବେଶ୍ ଚିହ୍ନା ଚିହ୍ନା ମୁହଁ । ତା'ପରେ ବୁଢ଼ା ଯେତେଥର ଆସିଛି, ମୁଁ ବାହାରକୁ ଯାଇନି । ବରଂ ବୁଢ଼ାକୁ ସବୁଦିନ ପଖାଳ ଦେଇ ଘରକୁ ଆସିବାକୁ ଉତ୍ସାହିତ କରାଯାଉଛି ବୋଲି ବିରକ୍ତ ହୋଇଛି ।

ସେଦିନ ଟିକେ ଅନ୍ଧାରୁଆ ହୋଇଆସିଲାଣି । ମୁଁ କ'ଣ ଗୋଟିଏ ଗୁରୁତର ବିଷୟରେ ମନ ଦେଇଛି, ହଠାତ୍ 'ଡାକ୍ ଡାକ୍ ଘିଡ଼ି ଡାକ୍ ଡାକ୍' ସାଙ୍ଗକୁ ବାଡ଼ିର

ଆବାଜ୍ ଆସିଲା । ଅବିରାମ ସେଇ 'ଟାକ୍ ଟାକ୍' ଆଉ ବାଡ଼ିପିଟା ଶବ୍ଦ । ସନ୍ଧ୍ୟାରେ ମଧ୍ୟ ଏଥର ବିରକ୍ତ କଲାଣି ବୋଲି ବୁଢ଼ାକୁ ପାନେ ଦେବା ଇଚ୍ଛାରେ ମୋର ଚୌକି ଛାଡ଼ି ବାହାରିଛି, ଭିତର ବାରନ୍ଦା ପାଖରେ ଥମି ଠିଆହୋଇଗଲି । ବୁଢ଼ା ନୁହେଁ, ଏଗୁଡ଼ାକ ପାଲା ଲଗେଇଛନ୍ତି ।

ଟିକୁ - ମୋର ସାନପୁଅ ବାଡ଼ିଟିଏ ଧରି ଡ଼ାଇନିଂ ଟେବୁଲରେ ବାଡ଼େଇ ବାଡ଼େଇ ଟାକ୍ ଟାକୁ କରୁଛି ଆଉ ସାନ ଭଣଜା ଟୁନା ଟେବୁଲ ଉପରେ ଗୋଡ଼ ବଙ୍କେଇ ଠିଆହୋଇଛି ଓ ହାତ ଦି'ଟାକୁ ଦଉଡ଼ି ପରି ସିଧା ତଳକୁ ଝୁଲାଇଦେଇ ଥେଇ ଥେଇ ନାଚୁଛି - ଠିକ୍ ବୁଢ଼ାର ସେଇ ମାଙ୍କଡ଼ ପରି । ମୁଁ ଚୁପ୍‌ଚାପ୍ ଠିଆହେଲି । ମଝିରେ ମଝିରେ ବାଡ଼ିର ଚୋଡ଼ ଟିକିଏ ବଢ଼ିଗଲେ ଟୁନା ଟେବୁଲ୍ ଉପରେ ଆହୁରି ଜୋର୍‌ରେ ଡ଼ିଆଁ ମାରୁଥାଏ ।

ଟିକୁ ଆଦେଶ ଦେଲା - କାନ ଧର୍ । ଟୁନା ଦି' ହାତରେ ନିଜ ଦୁଇକାନ ଧରିଲା । ତା'ପରେ ପୁଣି ସେଇ ଟାକ୍ ଟାକ୍ । ଟୁନା କାନଧରି ଏଥର ଚାରିଆଡ଼ିକି ଘୁରି ଘୁରି ନାଚିବସିଲା । ତା' ଆଖି ଯେମିତି ମୋ ଉପରେ ପଡ଼ିଛି, ଟେବୁଲରୁ ସେ ଏକା ଡ଼ିଆଁକେ ତଳେ ହାଜର ହୋଇ ତୀରପରି ଘର ପଛଆଡ଼େ ଅଦୃଶ୍ୟ ହୋଇଗଲା । 'ରାସ୍କେଲ୍, ଏତିକିବେଳୁ ଲଙ୍କା ଡ଼େଇଁଲାଣି' କହି ଟୁନାକୁ ଧରି ଠିକ୍ କରିଦେବା ଉଦ୍ଦେଶ୍ୟରେ ଟିକୁ ଯେମିତି ବୁଲିପଡ଼ିଛି ତା' ଆଖି ମଧ୍ୟ ମୋ' ଉପରେ ପଡ଼ିଗଲା । ଗୋଟିଏ ମୁହୂର୍ତ୍ତର ଇତସ୍ତତଃତା - ଆଖି ପିଛୁଳାକେ ସେ ବି କେଉଁଠି ମିଳେଇଗଲା ।

ସେ ଦିନ ବୁଝିଲି ପିଲାଙ୍କ ପାଇଁ ମାଙ୍କଡ଼ନାଚ ହିଁ ମାଙ୍କଡ଼ନାଚ । ତାଙ୍କପାଇଁ ନାଚର ମାନ କିମ୍ବା ଗୀତର ତାନ ଅର୍ଥହୀନ । ମାଙ୍କଡ଼ ଦି'ଗୋଡ଼ରେ ଠିଆହୋଇ ଅଣ୍ଟା ହଲେଇଲେ ହିଁ ହେଲା । ସେଥିରେ ହିଁ ସେମାନଙ୍କର ପରମ ଆନନ୍ଦ । ବୋଧହୁଏ ମାଙ୍କଡ଼ତ୍ୱର ପାରସ୍ପରିକ ଆକର୍ଷଣ । ଏଥର ବୁଢ଼ା ଯେତେବେଳେ ଆସିଲା, ସ୍ତ୍ରୀ ଓ ପିଲାଙ୍କ ସଙ୍ଗରେ ମୁଁ ବି ବାରନ୍ଦାରେ ଯାଇ ବସିଲି ।

ସେଇ ପୁରୁଣା ନାଚ । ମାଙ୍କଡ଼ର ହାଡୁଆ ମୁହଁରେ ଦୁର୍ବଳତାର ଚିହ୍ନ ସ୍ପଷ୍ଟ । ଛୋଟ ହେଲେ ବି ବୁଢ଼ାଙ୍କ ମୁହଁପରି ଶ୍ଳଥପୂର୍ଣ୍ଣ ସେ ମୁହଁ । ନାଚିବା ପାଇଁ ଆଗ୍ରହର କୌଣସି ଚିହ୍ନ ତା' ପାଖରେ ନଥାଏ । ବେଳେବେଳେ ଗୋଡ଼ ବଙ୍କେଇ ସେମିତି ଠିଆହୋଇ ରହିଯାଏ ଆଉ ଅଣ୍ଟା ପାଖରେ କୁଣ୍ଡାଇହୋଇ ଏ ପାଖ ସେ ପାଖ ଅନାଇ ଆମକୁ ଚାହେଁ । ମୁହଁରେ କେମିତି ଗୋଟାଏ ବିକଳିଆ ଭାବ । କଅଁଳ ଉଦାସ

ଆଖିରୁ ମୋର କାହିଁକି ମନେହେଲା ସତେ ଯେମିତି ସେ କହିବାକୁ ଚାହୁଁଛି - 'ହେ ମଉସା, ହେ ମାଉସୀ - ସେଇଠି ବସି କି ତାମସା ଦେଖୁଛ ! ତମର କ'ଣ କିଛି ଦୟା ମାୟା ନାହିଁ ? ତମେ ମଣିଷମାନେ ପରା ନିଜକୁ ସୃଷ୍ଟିର ଶ୍ରେଷ୍ଠ ଜୀବ ବୋଲି କହି ନିଜର ଡ଼ିଣ୍ଡିମ ପିଟ ? ନିଜର ବାନା ନିଜେ ଉଡ଼ାଅ ? ଆମପରି ଲାଙ୍ଗୁଡ଼ଧାରୀ ତମର ପୂର୍ବପୁରୁଷଙ୍କୁ ନଚାଇ କି ଯଶ ଅର୍ଜୁଛ ? ହେ ବାଳପ୍ରେମୀ, ମାଙ୍କଡ଼ପ୍ରେମୀ ମାଉସୀ ! ମଉସାଙ୍କୁ ଯଦି କେହି ଜଣେ ବିରାଟକାୟ ଦାନବ ତୋଟିରେ ଦଉଡ଼ିବାନ୍ଧି ଦ୍ୱାରକୁ ଦ୍ୱାର ଭିଡ଼ିନେଇ ଭୋକ ଉପାସରେ ଥିଲାବେଳେ ବି ନାଚିବାକୁ ବାଧ କରୁଥାଆନ୍ତା ଏବଂ ତମର ଟିକୁ, ତମର ମିନିକୁ ଯଦି....' ମୁଁ ମୁହଁବୁଲାଇ ନେଇ ପାଟିକଲି "ଥାଉ ଥାଉ, ଯଥେଷ୍ଟ ହେଲା ବୁଢ଼ା, ନାଚ ବନ୍ଦକର ।" ମୋର ହାତ ହଲାଇବା ଦେଖି ବୁଢ଼ା ତାର ଘିଡ଼ି ଡ଼ାକ୍ ଡାକ୍' ବନ୍ଦକଲା । ମାଙ୍କଡ଼ ଆଡ଼କୁ ଆଉଥରେ ଯେତେବେଳେ ଅନାଇଲି, ଦେଖିଲି ପୁଣି ସେ ମୋ ଆଡ଼ିକି ଚାହିଁଛି । ଅତି କରୁଣ ସେ ଦୃଷ୍ଟି । ଏଥର ପୁଣି ମନେହେଲା, ସେ ଯେମିତି କହୁଛି - "ହେ ଶିକ୍ଷକ, ଅଧ୍ୟାପକ, ମାଷ୍ଟର, ଗୁରୁ ! ତମେ ପରା ମାଙ୍କଡ଼ମାନଙ୍କୁ ମଣିଷ କର ! ତମ ପିଲାଦିନ କଥା ଥରେ ମନେପକାଅ । ସେ ଦିନ ତମେ ମାଙ୍କଡ଼ ଥିଲାବେଳେ ତମର ଶିକ୍ଷକ କ'ଣ ତମକୁ ଏମିତି ଫ୍ରକ୍ ପିନ୍ଧାଇ, ତୋଟିରେ ଦଉଡ଼ିବାନ୍ଧି ବାଡ଼ି ପିଟି ପିଟି, ନଚାଇ ନଚାଇ ମଣିଷ କରିଥିଲେ ? ସେତିକିବେଳେ ପରା 'ଜୀବନଚିନ୍ତା' ପଢ଼ାଉ ପଢ଼ାଉ ମୃତ୍ୟୁ ସିନ୍ଧୁର କରାଳ ଲହରୀ ଆଡ଼ିକି ବିନା ଶବ୍ଦରେ ଜୀବନସ୍ରୋତ ଧାଇଁଛି, ଆଉ ସେଇ ସ୍ରୋତ ସାଙ୍ଗରେ ଜୀବନର ସବୁ ସୁଖରାଶି ଭାସିଯାଉଛି ବୋଲି ଦରଦଭରା ସ୍ୱରରେ ଶିକ୍ଷକ କହିଲାବେଳେ ତମେ ଖେଳ କଥାସବୁ ଭାବି ନାନା ରକମର ଟିପ୍ପଣୀ କାଟୁଥିଲ ? ଏବେ ହେଲେ ଟିକିଏ ଚିନ୍ତାର ଲୋଚନ ଫେଡ଼ ଆଉ ଆମ ଅବସ୍ଥା ନିରୀକ୍ଷଣ କର ! କହ, ଶୋକୋଚ୍ଛ୍ୱାସ ଢ଼ାଳିବାରେ ଯଥାର୍ଥତା ଅଛି ନା ନାହିଁ ? ବିନା ଦୋଷରେ ମାଡ଼ହେଲେ ପରା ତମ ଦେହରେ ନିଆଁ ଜଳୁଥିଲା ? ମା' କୋଳରୁ ଆମ୍ବଗଛକୁ ଆଉ ଆମ୍ବ ଗଛରୁ ପଣସ ଗଛକୁ ଖୁସିରେ ଡ଼େଇଁ ବୁଲୁଥିବା ବାଳ ମାଙ୍କଡ଼କୁ ତମର ଜଣେ ଜାତିଭାଇ ଧରିଆଣି ତମ ଆଗରେ ଯେଉଁସବୁ ଅତ୍ୟାଚାର କରିଚାଲିଛି ସେଇଟା କ'ଣ ନ୍ୟାୟ ? ତମର ମାପକାଠି କ'ଣ ତେବେ..."

ମୋ ମୁଣ୍ଡ ଝାଇଁମାରିଲା ଭଳି ଲାଗିଲା । ଅଜାଣତରେ ହିଁ ମୁଁ ମୋ' ଦୁଇକାନ ଢ଼ାଙ୍କିଦେଲି । ମାଙ୍କଡ଼କୁ ଆଉ ଚାହିଁପାରିଲିନି । ଟିକୁକୁ କହିଲି - "ଆରେ ଟିକୁ ଦଉଡ଼ିଗଲୁ - ଘରେ ଚଣା, ବିରି, ମୁଗ ଯାହାକିଛି ମୁଠିଏ ନେଇଆସିବୁ ଆଉ ମୋ' ପାଇଁ ଗିଲାସେ ପାଣି ଆଣିବୁ ।'

ମାଙ୍କଡ଼ଟି ହାତରୁ ଚଣାତକ ପ୍ରାୟ ଝାମ୍ପିନେଇ ପାଟି ଭିତରେ ଭର୍ତ୍ତିକରିବାକୁ ଲାଗିଲା । ଟିକୁ ବିରକ୍ତଭରା ଛିଙ୍କଡ଼ା ସ୍ୱରରେ ମନ୍ତବ୍ୟ ଦେଲା - 'ରାସ୍କେଲ୍ କେଡ଼େ ଅଭଦ୍ର - ଥେଙ୍କ ୟୁ ବି କହୁନି ।'

ମିନି ଟିପ୍ପଣୀ ଛାଡ଼ିଲା - 'କିରେ ଟିକୁ, ତୋର କ୍ଲାସ୍ ଫ୍ରେଣ୍ଡ୍ କିରେ'? ଆଉ ଟିକୁ ଚିତ୍କାରକଲା - 'ନାନୀ, ଚିଡ଼ାନା କହିଦେଉଛି ।'

ଦେଲା ଚାଉଳତକ ଝୁଲାମୁଣିରେ ଭର୍ତ୍ତିକରୁ କରୁ ବୁଢ଼ା ନେହୁରାହୋଇ କହିଲା, 'ପଖାଳ ଗଣ୍ଡିଏ ଦିଅ ମା', ଭୋକରେ ପେଟ ଜଳୁଛି । କାଲି ଜର ହୋଇଥିଲା ଯେ, କେଉଁଠିକି ଯାଇ ପାରିଲିନି । ଘରର ସମସ୍ତେ କାଲିଠୁ ଉପାସରେ ରହିଛୁ ।'

କିଛି ଭାତ ଆଉ ଡ଼ାଲି ଆଣିବା ଆଗରୁ ମୋ' ସ୍ତ୍ରୀ ପଚାରିଲେ - 'ବୁଢ଼ା, ତମର ଘର କେଉଁଠି ?'

ବୁଢ଼ା ଜବାବ୍ ଦେଲା, 'କୋଡ଼ିଏ ଟଙ୍କା ମା'! ସମସ୍ତଙ୍କ ଉଛୁଳା ହସ ମଝିରେ ବୁଢ଼ା କହିଚାଲିଲା, 'ବରଗଡ଼ ପାଖରେ ମୋର ପୁତୁରାଟିଏ ଅଛି ଯେ, ସେ କିଣିଦେଲା, ନଇଲେ ମୁଁ କୋଉଠୁ ଏତେ ଟଙ୍କା ପାଆନ୍ତି ? ଆଗରୁ ଗୋଟିଏ ଭଲ ମାଙ୍କଡ଼ ଥିଲା ଯେ, ସେ ବହୁତ ଶିଖିଥିଲା - କ'ଣ ହେଲା କେଜାଣି, ହଠାତ୍ ମରିଗଲା । ଏଇଟା ଅଶିକ୍ଷିତଟିଏ ।'

ଟିକୁ ମିନି ଏକା ସାଂଗରେ ରଡ଼ିଛାଡ଼ିଲେ - 'ତମର ଘର କେଉଁଠି ପଚାରୁଛନ୍ତି ।'

ବୁଢ଼ା ଅପ୍ରସ୍ତୁତ ହସ ଟିକିଏ ହସି କହିଲା, 'ଭଲକରି ଶୁଣିପାରେନି ମା' ମାଙ୍କଡ଼ର ଦାମ୍ ପଚାରିଲ ବୋଲି ଭାବୁଥିଲି । ମୋର ଘର ଆଉ କେଉଁଠି ସେଇ ହୀରାକୁଦ ବନ୍ଧ ତଳେ । ଅନ୍ୟ ସମସ୍ତଙ୍କ ସାଂଗରେ ମୁଁ ବି ଝୁପୁଡ଼ି କରି ରହିଛି ।'

ମୋ ସ୍ତ୍ରୀ ପୁଣି ବଡ଼ପାଟିରେ ପଚାରିଲେ ତମର ଗାଁ ? ବୁଢ଼ା ଏଥର ଠିକ୍ ଜବାବ୍ ଦେଲା - 'ଗାଁ ତ ବୁଡ଼ି ଅଞ୍ଚଳରେ ଥିଲା - ବୁଡ଼ିଗଲା ମା'। ଆମେ ଆସି ବନ୍ଧତଳେ ଝୁପୁଡ଼ି କରି ରହିଲୁ - ଏବେ ଆଉ କେଉଁଠିକୁ ଯିବୁ ।'

"କାହିଁକି ତମର ପୁଅ ?"

"ପୁଅ କାହିଁ ମା' ? ଗୋଟିଏ ଅଛି ଯେ, ପିଲାଦିନୁ ଅନ୍ଧ । ଆଉ ବୁଢ଼ୀ ଅନେକ ଦିନ ହେଲା ଖଟରେ ପଡ଼ିଛି । ଚାଉଳ କିଛି ମିଳିଲେ ମୁଁ ଯାଇ ଫୁଟାଇଦିଏ ।"

'ତମେ କ'ଣ ସବୁଦିନେ ଏମିତି ଭିକ ମାଗୁଛ ?'

ବୁଢ଼ା ମୁହଁରେ ବିରକ୍ତିର ଆଭାସ ଦେଖାଗଲା । ଟିକିଏ ଚଢ଼ା ଗଳାରେ କହିଲା – 'ଜୀବନ ପଛକେ ଯିବ, ଭିକ ମାଗିବି ମା ? ବଳ ବୟସ ଥିବାଯାଏ କାମ କରୁଥିଲି, ଏବେ ଆଉ କାମକୁ ପାରୁନି । ଏଇ ମାଙ୍କଡ଼ନାଚ ଦେଖାଇ ଯିଏ ଯାହା ଦିଏ ନିଏ । ଆଗରୁ ଯେଉଁ ମାଙ୍କଡ଼ ଥିଲା ସେଇଟା ମରିଗଲା ପରେ ଏଇ ମାଙ୍କଡ଼ ଆଣିବା ପର୍ଯ୍ୟନ୍ତ ଭୋକ ଉପାସରେ ରହିଲୁ ସିନା ମୁଁ କାହା ଦୁଆରକୁ ଭିକ ମାଗିବାକୁ ଯାଇନି ।'

'ଆଗ କେଉଁଠି କାମ କରୁଥିଲ ?'

ବୁଢ଼ାର ମୁହଁ ଏଥର ଉଜ୍ଜ୍ୱଳ ହୋଇଗଲା । କହିଲା, 'ହୀରାକୁଦ ଡ଼େମ୍‌ରେ ମା' ମୁଁ ଥିଲି ମେଟ୍ ଆଉ କୁଲି ସର୍ଦ୍ଦାର । ଏ ଯେଉଁ ମାଟିବନ୍ଧ ଦେଖୁଛ, ଆମେ ତାକୁ ବାନ୍ଧିଛୁ ।'

ଇଏ ମୋ ଆଡ଼ିକି ଚାହିଁଲେ । ମୁଁ ବୁଢ଼ାକୁ ଭଲକରି ଅନାଇଥାଏ । ପଚାରିଲେ – 'କା ପାଖରେ କାମ କରୁଥିଲ ?'

ବୁଢ଼ା ଉତ୍ତର ଦେଲା, 'ତମେ ଜାଣିବ ନି ମା' – ସେମାନେ କୋଉ କାଳରୁ ମରିହଜି ଗଲେଣି ।'

'କ'ଣ କହିଲ ? ମରିହଜି ଗଲେଣି ?'

'ହଁ ମା, କାହିଁ କେବର କଥା – ଆଜିଯାଏ କ'ଣ ଆଉ ଥିବେ ? ଭଲ ଭଲ ଲୋକଙ୍କୁ ତ ଯମ ବାଛି ବାଛି ନେଇଯାଏ । ଖାଲି ଆମପରି ଲୋକଙ୍କୁ ଏମିତି ଦୁଃଖକଷ୍ଟରେ ଘାଣ୍ଟିହେବାକୁ ଛାଡ଼ିଦିଏ ।' ସ୍ୱଗତୋକ୍ତି କଲାପରି କହିଲା – 'ସେ ସାହେବ ବଞ୍ଚିଥିଲେ କ'ଣ ଆମେ ଏମିତି ଭୋକ ଉପାସରେ ମରନ୍ତୁ ।'

'ତମେ ଯା' ପାଖରେ କାମ କରୁଥିଲ – ତାଙ୍କୁ ଦେଖିଲେ ଚିହ୍ନିପାରନ୍ତ ?'

"ଚିହ୍ନିପାରନ୍ତିନି ମା ? ମୁଁ ଯା' ପାଖରେ କାମ କରୁଥିଲି ସେ ଜଣେ ଇଂଜିନିୟର ହେଲେ କଣହେଲା ଠିକ୍ ଆମପରି ଥିଲେ, ଆମରି କଥା କହୁଥିଲେ, ଆମକୁ ଭାରି ଭଲ ପାଉଥିଲେ । ମୁଁ ତାଙ୍କ ସାଂଗରେ ହାତ ଧରାଧରି ହୋଇ ପାଣି ପହଁରିଛି ମା' । ସେ ଗଣ୍ଡ ଭିତରେ ମାଟିବନ୍ଧ ତିଆରି ହେଉଥାଏ ହଠାତ୍ ବଢ଼ି ଆସିଲା – ଆମେ ନଥିଲେ..."

ବୁଢ଼ା ଆଉ କଣ ସବୁ କହୁଥିଲା, ମୁଁ ଶୁଣିବା ଅବସ୍ଥାରେ ନଥିଲି । ମନ ମୋର ଚାଲିଯାଇଥିଲା ଚବିଶ ବର୍ଷ ତଳର ଦୂର ଅତୀତକୁ । ସେଦିନର ସ୍ମୃତି ସବୁ ଆଖି ଆଗକୁ ଚାଲିଆସିଥିଲା ଗୋଟିଏ ଚଳଚ୍ଚିତ୍ରର ଚିତ୍ରପଟ ପରି ।

କଂକ୍ରିଟ ବନ୍ଧ ଆରମ୍ଭ ହୋଇନଥାଏ । ନଈ ଗଣ୍ଡ ଭିତରୁ ସେଇ ବର୍ଷ ମାଟିବନ୍ଧ ତିଆରି ଆରମ୍ଭ ହେଲା । ଜୁନ୍ ଦୁଇ ତାରିଖରେ ଆସିଲା ବଢ଼ି। ବାମ ପାଖରେ ନଈସୁଅକୁ ଡ଼ାହାଣ ପାଖକୁ ବଦଳାଇ ଦେଇଥିବା କଫର୍ ଡ଼େମ୍ ଓ ମାଟିବୁହା ହେବା ପାଇଁ ନଈ ଭିତରେ ତିଆରି ହୋଇଥିବା ହଲ୍ ରୋଡ୍ କେତେଘଣ୍ଟା ଭିତରେ ହିଁ ଧୋଇହୋଇଗଲା - ଆଉ ତା' ସାଂଗରେ ଗଣ୍ଡରେ ତିଆରି ହେଉଥିବା ଅସ୍ଥାୟୀ ପୋଲ ।

ଏତେଶୀଘ୍ର ଏମିତି ଗୋଟାଏ ବଢ଼ି ଆସିବ ବୋଲି ଆମେ କେହି କଳ୍ପନା ମଧ୍ୟ କରିନଥିଲୁ। ଆମ ଓଡ଼ିଆ ପାଞ୍ଜି ଅନୁସାରେ ମିଥୁନ ସଂକ୍ରାନ୍ତି ପଡୁଥିଲା ଜୁନ୍ ୧୪ ତାରିଖରେ । କୋଚିନ୍ ଉପକୂଳରେ ମନ୍‌ସୁନ୍ ଦେଖା ମଧ୍ୟ ହୋଇନଥିଲା। ହାତରେ ଅନ୍ତତଃ ଆଉ ୭/୮ ଦିନ ରହିଛି ଭାବି ମାନସିକ ସାନ୍ତ୍ୱନା ନେଇ ଆମେ କାମରେ ଆଗେଇ ଚାଲିଥିଲୁ । ମାଟିବନ୍ଧର ସାମ୍ନା ପାଖ ବଢ଼ି ଉପର ଲେଭେଲ୍‌କୁ ଉଠିସାରିଥିଲା, କିନ୍ତୁ ପଛପାଖ ଥିଲା ବଡ଼ ବଢ଼ିର ବେଶ୍ ତଳ ଲେଭେଲ୍‌ରେ।

ପଥର କାମ ଆରମ୍ଭହୋଇ ନଥିବା ଫଳରେ ପଛପାଖର ମାଟି ପୁରାପୁରି ଖୋଲା ରହିଯାଇଥିଲା । ହୀରାକୁଦ ଟାପୁରେ ସୋଭେଲ୍ ଓ ଡ଼ମ୍ପର୍ ପ୍ରଭୃତି କେତେକ ଯନ୍ତ୍ରପାତି ରଖି ବର୍ଷା ମାସଯାକ ଧିରେ ଧିରେ ଏ ପଛପାଖର କାମ କରିବୁ ବୋଲି ଆମେ ମନସ୍ଥ କରିଥିଲୁ । ଅଧିକାଂଶ ଯନ୍ତ୍ରପାତି ଏବେ ସେ କୂଳରେ ରହିଗଲା । ଆମର ସବୁ ପ୍ରୋଗ୍ରାମ୍ ଏଇ ବଢ଼ି ଓଲଟପାଲଟ କରିଦେଲା ।

ରାତି ଅଧରେ ଖବର ଆସିଲା - ବଢ଼ି ପାଣି ବନ୍ଧତଳକୁ ଉଜାଣି ବହୁଛି, ଆଉ ପଛପଟର ମାଟି ଖାଇଯାଉଚି । ଛାତିରେ କେମିତି ପବନ ଅଟକି ଗଲାପରି ମନେହେଲା । ବର୍ଷାଋତୁଯାକ ତ ବଢ଼ି ପରେ ବଢ଼ି ଆସିବ । ବନ୍ଧର ପଛପଟ ଖୋଲା, ମାଟି ଅତଡ଼ା ଖସିଲେ ବନ୍ଧ ରହିବନି । ଆଉ ବନ୍ଧ ଯଦି ଭାସିଯାଏ !

ଚିଫ୍ ଇଂଜିନିୟର ସେଦିନ ବ୍ୟଙ୍ଗକରିବା ଢ଼ଙ୍ଗରେ ହସି ହସି ଚେତାବନୀ ଦେଇଥିଲେ - ବନ୍ଧ ଭାସିଗଲେ ତମକୁ ବି ନଈରେ ଭାସିଯିବାକୁ ପଡ଼ିବ । ଉତ୍ତର ଛଳରେ ମୁଁ ବି ଟିକିଏ ହସିଦେଇଥିଲି । ସେ ହସ ପଛରେ ଯେଉଁ ଦୃଢ଼ତା ଆତ୍ମପ୍ରକାଶ କରିଥିଲା ତାହାଥିଲା କାରିଗରବିଦ୍ୟାରେ ଧରମା - ବିଶୁ ବାଇମୁଣ୍ଡିଙ୍କ ଜଣେ ଦାୟାଦର ଉଦ୍‌ବେଗହୀନ ଆତ୍ମବିଶ୍ୱାସର ଆତ୍ମପ୍ରକାଶ ମାତ୍ର । ସତକୁ ସତ ବନ୍ଧ ଯଦି ଏବେ ଭାସିଯାଏ !

ରାତିରେ ନଈ ପାରିହୋଇ ହୀରାକୁଦ ଆଇଲେଣ୍ଡକୁ ଯିବାର ସମ୍ଭାବନା ନ ଥିଲା ।

ରାତିସାରା ନିଦ ହେଲାନି, ମାତ୍ର ଯେଉଁ କେତେ ମୁହୂର୍ତ୍ତ ଘୁମାଇ ପଡ଼ିଥିଲି ସେ ଟିକେ ସମୟର ଦୁଃସ୍ୱପ୍ନରେ ମଧ ଭାସିଯାଉଥିବା ଗୋଟାଏ ଗଛର ଗଣ୍ଡିରେ ଆଶ୍ରୟ ନେଇ ମହାନଦୀ ବଢ଼ିରେ ଭାସିଚାଲିଥିଲି ନରାଜ ଅଭିମୁଖରେ ।

ସିନ୍ଦୂରା ଫାଟିଲାବେଳକୁ ଡ଼ଙ୍ଗାରେ ନଈ ପାରିହୋଇ ମୁଁ ବନ୍ଧପାଖରେ ପହଞ୍ଚିସାରିଥିଲି । ଯାହା ଦେଖିଲି ବିଶ୍ୱାସ ବି କରିପାରିଲିନି । ପୂର୍ବକୁ ବୋହିଯାଉଥିବା ବଢ଼ିପାଣି ବନ୍ଧ ପାଖରେ ଦିଗ ବଦଳାଇ ପଶ୍ଚିମକୁ ବୋହିଚାଲିଛି, ଆଉ ବନ୍ଧ ପଛପଟେ ପିଟିହୋଇ ଭଅଁର ଖେଳୁଛି । ମନେହେଲା ବନ୍ଧକୁ ଆଉ ରକ୍ଷାକରି ହେବନି । ବନ୍ଧର ତଳପଟେ ପଥରର ମୋଟା କାନ୍ଥ ବାଡ଼ଦେଇ ଉଜାଣି ସୁଅକୁ ରୋକିବା ହିଁ ଏକମାତ୍ର ପ୍ରତିକାରର ଉପାୟ । ପଥରଖଣ୍ଡ ସବୁ ତ ଭାସିଯିବ । କାଠବଲ୍ଲିରେ ଲୁହାଛଡ଼ ଗୁନ୍ଥି ବଡ଼ ବଡ଼ ବାକ୍ସ କରି ସେସବୁ ପଥର ବୋଝେଇ ବାକ୍ସକୁ ଗୋଟିଏ ଧାଡ଼ିରେ ପାଣି ସୁଅରେ ବୁଡ଼ାଇଦେଇ ପାରିଲେ ସୁଅର ଗତିବେଗକୁ ରୋକିଦେଇ ହୁଅନ୍ତା । ଚିଫ୍ ଇଂଜିନିୟରଙ୍କୁ ଏ କଥା ଯେତେବେଳେ କହିଲି ସେ ଶେଷ ନିଷ୍ପତ୍ତି ନେବାର ସ୍ୱାଧୀନତା ମୋ ହାତରେ ହିଁ ଛାଡ଼ିଦେଲେ । ସନ୍ଧ୍ୟା ହେବାର ଯଥେଷ୍ଟ ପୂର୍ବରୁ ଏପରି କେତୋଟି କ୍ରେଟ୍ ବାକ୍ସ ତିଆରି ହୋଇଗଲା । ଯଥେଷ୍ଟ ପଥର ଜମାହେବା ସଂଗେ ସଂଗେ ଚାରିଟି ଡ଼ିଜେଲ ଡ୍ରମ ବନ୍ଧା ଭେଲା ମଧ ପ୍ରସ୍ତୁତ ହୋଇସାରିଥିଲା । କିନ୍ତୁ ବିଲେଇ ବେକରେ ମୂଷାମାନେ ଘଣ୍ଟି ବାନ୍ଧିଲା ପରି ସେଇ ନଈ ସୁଅରେ କିଏ କ୍ରେଟ୍ ଆଉ ପଥର ବୋଝେଇ ଭେଲାନେଇ ଯଥା ସ୍ଥାନରେ କ୍ରେଟ୍‌କୁ ବୁଡ଼ାଇଦେବ ? କେହି ବାହାରିଲେନି ।

ଅଗତ୍ୟା ମୁଁ ଯେତେବେଳେ ପାଣି ଭିତରକୁ ପଶିଗଲି, ଜଣେ ହୃଷ୍ଟପୁଷ୍ଟ ଛଅଫୁଟିଆ ମଜଦୁର ଅନ୍ୟମାନଙ୍କୁ ତିରସ୍କାର କରି ପାଣି ଭିତରକୁ ଡ଼େଇଁପଡ଼ିଲା । ତା'ପରେ ପହଁରି ପହଁରି କ୍ରେଟ୍ ଓ ପଥର ବୋଝେଇ ଭେଲାକୁ ଯଥାସ୍ଥାନକୁ ନେଇଯିବା ପାଇଁ ଲୋକର ଅଭାବ ହେଲାନି । ଭେଲାରେ ବନ୍ଧାହୋଇଥିବା ଦୁଇଟି ଲମ୍ବ ଦଉଡ଼ି ସାହାଯ୍ୟରେ କୂଳରୁ ଆକଟ କରି ଭେଲା ଯେପରି ଭାସିନଯାଏ ତ'ାର ଦାୟିତ୍ୱ ନେଇଥିବା ଲୋକଙ୍କ ସିଧାସଳଖ ନେତୃତ୍ୱ ନେବାପାଇଁ ମୁଁ ସେଇ ଛଅଫୁଟିଆ ମଜଦୁରକୁ ଆଦେଶ ଦେଇଥିଲି । ବିଶେଷ ବାଧାବିଘ୍ନ ବିନା ଗୋଟିକ ପରେ ଗୋଟିଏ କରି ଦିଓଟି କ୍ରେଟ୍ ଯଥାସ୍ଥାନରେ ଡୁବାଇ ଦେଲା ପରେ ତା'ର ଫଳାଫଳ ଦେଖି ଆମର ଉତ୍ସାହ ଦ୍ୱିଗୁଣିତ ହୋଇଗଲା । ତୃତୀୟ କ୍ରେଟ୍ ବେଳକୁ ହିଁ ଭେଲାର ଗୋଟିଏ ବନ୍ଧା ଦଉଡ଼ି ଛିଣ୍ଡିଗଲା । ଆସନ୍ନ ବିପଦର ସମ୍ମୁଖରେ ଆମେ ସମସ୍ତେ ଏକାସାଂଗରେ ଚିତ୍କାର କଲୁ – 'ସୋମବାରୁ !'

ଅଜାଣତରେ ଆଜି ମଧ୍ୟ ଭୟ ଓ ଉତ୍କଣ୍ଠାରେ ମୁଁ ଚିତ୍କାର କରିଉଠିଲି, 'ସୋମବାରୁ !'

ବୁଢ଼ା ଚମକିପଡ଼ିଲା । ତା' ପେଜୁଆ ଆଖି କ୍ଷଣକ ମଧ୍ୟରେ ଜଳିଉଠିଲା - ସତେ ଯେମିତି ଲିଭିଯାଇଥିବା ଦିଓଟି ମହମବତିକୁ କିଏ ହଠାତ୍ ଡ଼ିଆସିଲି ମାରି ଜଳାଇଦେଇଛି । ମନେହେଲା ପଲକବିହୀନ ତୀକ୍ଷ୍ଣ ଆଖି ନେଇ ବୁଢ଼ା ମୋ ମୁହଁରେ କିଛି ଗୋଟାଏ ଖୋଜୁଛି । ଆଖି ଦିଓଟି ଯେମିତି ଜଳିଉଠିଥିଲା, କିଛି ସମୟ ପରେ, ସେମିତି ସଳିତା ସରିଯାଇଥିବା ତରଳିଲା ମହମବତି ପରି ଆପେ ଆପେ ଲିଭିଗଲା ।

ଗୋଟିଏ କୌଣସି ଦୁଃସ୍ୱପ୍ନ ଭାଙ୍ଗିଲା ପରେ ମଣିଷ ଯେମିତି ତ୍ରସ୍ତହୋଇ ଉଠେ ବୁଢ଼ା ସେମିତି ସେଠାରୁ ଉଠିଲା । ପାଟି ମେଲା, ମୁଣ୍ଡ ଝୁଣି ସତେ ଯେମିତି ଆଖିର ଦୃଷ୍ଟି ସାହାଯ୍ୟରେ ଭୂଇଁରୁ କିଛି ଚିରି ବାହାର କରିବାକୁ ଚେଷ୍ଟା କରୁଥାଏ । ମନେହେଲା ବୁଢ଼ାର ଅଣ୍ଟା ଯେମିତି ଟିକିଏ ବଙ୍କେଇ ଯାଇଛି । ବୁଢ଼ା ଠାରୁ କି ଇଙ୍ଗିତ ପାଇଲା କେଜାଣି - ମାଙ୍କଡ଼ଟି ବୁଢ଼ାର କାନ୍ଧ ଉପରକୁ ଉଠିଯାଇ ଦି'ହାତରେ ତା' ମୁଣ୍ଡକୁ ଜାବୁଡ଼ି ଧରିଲା । ବୁଢ଼ା ଫେରିଯାଉଥିଲା ମନ୍ତ୍ରମୁଗ୍ଧ ପରି । ଟିକୁ ମିନିର 'ବୁଢ଼ା, ପଖାଳ !' ଡ଼ାକ ସେ ଆଉ ଶୁଣିନି । ମାଙ୍କଡ଼ ବୋଧହୁଏ ଶୁଣିପାରିଲା - ମିଟି ମିଟି କରି ସେ ଆମ ଆଡ଼କୁ ଚାହିଁଲା, ତା'ପରେ ମୁହଁ ବୁଲାଇନେଲା ।

ପିଲାମାନେ ଘର ଭିତରକୁ ଫେରିଯାଇ ସାରିଥିଲେ । ଛାତି ଭିତରେ ଗୋଟିଏ ଅଜ୍ଞାତ ବେଦନା ନେଇ ମୁଁ ସେଠାରେ ବସିରହିଲି । ବନ୍ଧ ଉଦ୍‌ଘାଟନ ବେଳର ନେହୁରୁଜୀଙ୍କ ବାଣୀ କାନରେ ଝଙ୍କାରି ଉଠୁଥିଲା । ସେ କହୁଥିଲେ - 'ଗରିବ ଜନତାର ଲହୁରେ - ଗରିବ ଜନତାର ଲୁହରେ ତିଆରି ସ୍ୱାଧୀନ ଭାରତର ଏଇ ପ୍ରଥମ ମନ୍ଦିର ମୁଁ ମୋର ଦେଶବାସୀ ସେହି ଅଗଣିତ ଗରିବ ଭାଇଭଉଣୀଙ୍କ ହାତରେ ଅର୍ପଣ କରୁଛି । ତାଙ୍କର କଲ୍ୟାଣ ପାଇଁ ଏ ପବିତ୍ର ମନ୍ଦିର ଆଜି ଉତ୍ସର୍ଗୀକୃତ ହେଲା ।'

ମୋ ମାନସପଟରେ ଦୃଶ୍ୟମାନ ଚଳଚିତ୍ରର ଏକ ଦିଗରେ ଯେତେବେଳେ ନରବାନର ସମ୍ମିଳିତ ଏକ ଶୀର୍ଣ୍ଣକାୟାର ଛାୟା ଅପସରି ଯାଉଥିଲା, ସେତିକିବେଳେ ଅନ୍ୟଦିଗରୁ ପରଦା ଉପରକୁ ଉଠିଆସିଥିଲା ଭୁବନେଶ୍ୱରରେ ମୁଣ୍ଡଟେକି ଉଠିଥିବା ଅଫିସର, ଇଂଜିନିୟର ଓ ଠିକାଦାରମାନଙ୍କ ଅଗଣିତ ବିରାଟ ବିରାଟ କୋଠାର ଚିତ୍ରାବଳୀ । ପୃଷ୍ଠଭୂମିରେ ଦିଶୁଥିଲା ବରଗଡ଼-ବରପାଲି ଜଳସେଚିତ ଅଞ୍ଚଳର ଧନ କୁବେରମାନଙ୍କ ଶସ୍ୟଶ୍ୟାମଳା ସବୁଜ ଧରଣୀ ।

ମୁଁ ବସିଥିଲି ଏକ 'ସ୍ନୋସେମ୍' ସ୍ନାତ ସରକାରୀ ସୌଧର ସାମ୍ନା ବାରନ୍ଦାରେ, ମାଙ୍କଡ଼ନଚାଳି ବୁଢ଼ାର କଳ୍ପନାର ଜଣେ ଦେବତା, ମାଟିର ହସ୍ତପଦ ନେଇ ।

# ମିଶ୍ରବାବୁଙ୍କ କୁକ୍‌କୁଟ ପାଳନ

ଆପଣ ତ ଭୂତ ଦେଖିଥିବେ ?

ମୁଁ ଆଲ୍ଲାଦୀନର ପ୍ରଦୀପର ଭୂତ, କିମ୍ବା ସେ କେଉଟ ଜାଲରେ ପଡ଼ିଥିବା କଳସୀର ଭୂତ, କି କୌଣସି ବ୍ରହ୍ମରାକ୍ଷସ ଅଥବା 'କହିଲାର ବୋଲ' ନ କରିବା ଫଳରେ କୁରୁ ରାୟେ ଯେଉଁ ଭୂତର ଅବସ୍ଥାରେ ପଡ଼ିଥିଲେ ସେଇ ବାବନାଭୂତ କଥା କହୁନି, କହୁଛି ଖାଲି ସାଦାଭୂତ କଥା - ଯେଉଁସବୁ ଭୂତ ଏକୁଟିଆ ଅନ୍ଧାରରେ ଗଲାବେଳେ କେଉଁଠି କେଉଁଠି ଢ଼ିଲା ଧଳା ପୋଷାକ ପିନ୍ଧି ହାବୁଡ଼ି ଯାଆନ୍ତି, ଗଛଡ଼ାଳରେ ବସି ଫଡ଼୍ ଫଡ଼୍ ହୁଅନ୍ତି, ହେଁ ହେଁ କରି ହସନ୍ତି, ପଛଆଡ଼ୁ ଝାମ୍ପିନେବାକୁ ଚେଷ୍ଟାକରନ୍ତି, ଆଉ ଘଟଣାକୁ ଏମିତି ହଠାତ୍ ଘଟାନ୍ତି ଯେ 'ବୋଉଲୋ' ବୋଲି ଡ଼ାକିବାକୁ ବି ତର ନଥାଏ - ଖାଲି 'ବୋ ...' ରେ ମୁଣ୍ଡ ଝାଇଁମାରିଯାଏ ।

କେମିତି ଦେଖିବେ - ସେଦିନ ସବୁ ତ ଗଲା । ସେତେବେଳେ ଖାଣ୍ଟି ଗୁଆଘିଅ ମିଳୁଥିଲା ଟଙ୍କାକୁ ସେରେ, ଚାଉଳ ଟଙ୍କାକୁ ଦଶସେର, ଆଉ ସୁନା କଥା ତ ଛାଡ଼, ମୁଣ୍ଡା ମୁଣ୍ଡା । ଜଙ୍ଗଲରେ ବାଘ ଯେମିତି ଥିଲେ, ଗାଁ ଗଣ୍ଡାରେ ଭୂତ ବି ଥିଲେ ସେମିତି । ସେଦିନ କ'ଣ ଆଉ ଫେରିବ ଯେ ଦେଖିବେ ?

ମୁଁ କିନ୍ତୁ ଦେଖିଛି । ଭୂତ ନହେଲେ ବି ସେମିତିଆ କିଛି - ଠିକ୍ ଭୂତର କାମ ପରି କାମ ।

କାହିଁକି କେଜାଣି ମିଶ୍ରବାବୁଙ୍କ କଥା ମନେପଡ଼ିଲେ ହିଁ ଭୂତ କଥା ମନେପଡ଼େ, ଯଦିଓ ସେ କେବେ ଗଛଡ଼ାଳରେ ବସି ଫଡ଼୍ ଫଡ଼୍ ହେବା କଥା ଶୁଣାଯାଇନି । ତାଙ୍କର ହେଁ ହେଁ ହସ ଆଉ ଚୁପ୍‌ଚାପ୍ ଆସି ପଛରୁ ଚମକେଇଦେବା କିମ୍ବା ତାସ୍‌ମୁଠା ଝାମ୍ପିନେବା ପ୍ରକୃତିରେ ବୋଧହୁଏ କିଛି ସାମଞ୍ଜସ୍ୟ ରହିଛି ।

ଦିନକର ଘଟଣା ।

କ୍ଲବ୍‌ରେ ତାସ୍‌ଖେଳ ବେଶ୍ ଜମିଯାଇଥିଲା । ଆମେ ଡ଼ାକିଥାଉଁ ସିକ୍ସ କ୍ଲବ୍ସ, ଆଉ ଖେଳ ହୋଇଯିବାର ବି ଯଥେଷ୍ଟ ସମ୍ଭାବନା ଥାଏ । ଦଶମୁଠା ହୋଇସାରିଥିଲା - ଶେଷ ରଙ୍ଗ ଖଣ୍ଡିକ ମୋ ହାତରେ । ଆଉ ବାକି ଦି' ଖଣ୍ଡ ନାଲିପାନ । ଖଣ୍ଡିଏ

ନାଲିପାନ ଏଥର ପାସେଇ ଦେଇ ଆରଥରକୁ କାଟିବି ବୋଲି ଭାବୁଛି, ହଠାତ୍ କ'ଣ ସବୁ ଘଟିଗଲା ।

ଠିକ୍ କ'ଣ ହେଲା ବୁଝିପାରିବା ପୂର୍ବରୁ ହିଁ 'ଯେ ମାରା-' ସାଙ୍ଗକୁ ଟେବୁଲ୍ ଉପରେ ପାପୁଲିର ଆବାଜ୍ ସମସ୍ତଙ୍କୁ ଅବାକ୍ କରିଦେଇଥିଲା । ମୁଁ ଚକିତହୋଇ ଆବିଷ୍କାର କଲି ଯେ, ମୋ ହାତର ରଙ୍ଗ ଚିଡ଼ିଆ ଦଶଟି ଟେବୁଲ୍ ଉପରେ ବାଡ଼ିଆ ହୋଇଯାଇଛି । ପରେ ପରେ ମିଶ୍ରବାବୁ ନାଲିପାନ ଗୋଲିଟି ବି ମୋ ହାତରୁ ଝାମ୍ପିନେଇ ଟେବୁଲରେ ବାଡ଼େଇଲେ । ବାକି ଦିଓଟିଯାକ ମୁଠା ବିପକ୍ଷଦଳ ନେଲେ, ଆଉ ଆମର ସିକ୍‌ସ କ୍ଲବ୍‌ସ ଖେଳଟି ଗୋଟିଏ ମୁଠାରେ ଡ଼ାଉନ୍ ହେଲା ।

ରଙ୍ଗଟି ସେତେବେଳେ ମାରିବାର ନଥିଲା । ମିଶ୍ରବାବୁ ଏମିତି ଅଯଥା ଅନ୍ୟର କାରବାରରେ ତାଙ୍କ ନାକ କାହିଁକି ଯେ ଗୁଞ୍ଜିବାକୁ ଭଲ ପାଆନ୍ତି ବୁଝିହୁଏନି । ଲୋକଟି ବଡ଼ ଅଦ୍ଭୁତ । ଯେତେ ରାଗିଲେ ବି ହେଁ ହେଁ କରି ମୁହଁ ନେଫେଡ଼ାଇଦେବେ । କୌଣସିଥିରେ ସ୍ଥିରତା ନାହିଁ କି ଗମ୍ଭୀରତା ନାହିଁ । କିଛି ଖେଳ ଜାଣନ୍ତିନି - କିନ୍ତୁ ସବୁଥିରେ ଓସ୍ତାଦି । କେତେବେଳେ ଚୁପ୍‌ଚାପ୍ ଆସି ମୋ ଚୌକି ପଛରେ ଠିଆହୋଇ ସବୁ କାରସାଦି କରିଛନ୍ତି । ସୁନ୍ଦର ଖେଳଟି ଗଲା ମାଟି ହୋଇଗଲା ।

ସେ ମୋତେ ଧୀରେ ଧୀରେ ଗୋଟିଏ ପାଖକୁ ଠେଲିଦେଇ ନିଜେ ତାସ ବାଣ୍ଟିବାକୁ ବସିଲେ । ଠିକ୍ ଯା' ହେବାର କଥା - ସମସ୍ତଙ୍କ ପାଇଁ ତେରଖଣ୍ଡ ଲେଖାଏଁ ବାଣ୍ଟିଲାବେଳକୁ ତାଙ୍କ ଭାଗରେ ବାର । କେମିତି ଯେ, ଏମିତି ଅସମ୍ଭବ କଥାକୁ ସମ୍ଭବ କରନ୍ତି! ସମସ୍ତେ ତାସ ଖେଳିବେ କ'ଣ - ପତ୍ର ଗଣିବସନ୍ତି, ଆଉ ହଜିଲା ତାସ୍ ଖୋଜାଚାଲେ । ସେ ଭିତରେ ଓସ୍ତାଦ୍ ମହାଶୟେ ତାଙ୍କର ନୀତିଦିନିଆ ମନ୍ତବ୍ୟ ଦିଅନ୍ତି - "ଏସବୁ ବିଦେଶୀୟ ବ୍ରିଜ୍ ଫ୍ରିଜ୍ ଖେଳିବା ଉଚିତ୍ ନୁହେଁ - ଆମ ଦେଶୀ ଟ୍ୱେଣ୍ଟିନାଇନ୍ ହିଁ ଭଲ ।" ଟ୍ୱେଣ୍ଟିନାଇନ୍' ଯେ କେମିତି ଦେଶୀ ଖେଳ ହେଲା ଭଗବାନଙ୍କୁ ହିଁ ଜଣା - ନାଆଁଟି ଅଣତିରିଶ ଭଲା ହୋଇଥାନ୍ତା ।

ଆଉ ଯୁକ୍ତି କରିବେ ଯେ, ମୁହଁରେ ବାଟୁଳି ବାଜିବନି । ଚେସ୍ କୁଆଡ଼େ ଭାରତୀୟ ଖେଳ । ଜାହାଙ୍ଗୀର କି କିଏ ଜଣେ ବାଦଶାହ ଅବଶ୍ୟ ଖେଳୁଥିଲେ, କିନ୍ତୁ ମିଶ୍ରବାବୁଙ୍କ ଜିଦ୍ ଯେ, ଶ୍ରୀକୃଷ୍ଣ ସତ୍ୟଭାମାଙ୍କ ସାଙ୍ଗରେ ଚେସ୍ ଖେଳୁଥିଲେ । କିହୋ ବାବୁ, ଶ୍ରୀକୃଷ୍ଣ କେବେ ଚେସ୍ ଖେଳିଲେ ? କୁରୁସଭା ତଳେ ଦ୍ରୌପଦୀଙ୍କୁ ବିବସନ କରିବାର ଅପଚେଷ୍ଟା ବେଳେ ତ ସେ ପଶା ଖେଳୁଥିଲେ । ମିଶ୍ରବାବୁଙ୍କର କିନ୍ତୁ ସେଇ

ଏକ କଥା - 'ରଖିଲି' 'ରଖିଲି' ବୋଲି ଯେତେବେଳେ ଶ୍ରୀକୃଷ୍ଣ ତାଙ୍କ ହାତ ଟେକିଦେଲେ, ସେତିକିବେଳେ କୁଆଡ଼େ ତାଙ୍କ ରାଜା ମାତ୍ ହୋଇଯିବା ଉପରେ ବସିଥିଲା, ଆଉ ସେଥିପାଇଁ ହିଁ ସତ୍ୟଭାମା କହିଲେ, 'ଏଥର କ'ଣ ଚଳାଇବେ ଚଳାନ୍ତୁ, ଆପଣଙ୍କ ରାଜା ପୂରାପୁରି ମୋ ସେନାଙ୍କ ଘେରରେ । କେମିତି ରଖିବେ ଦେଖିବା ।' ଏହି 'ରଖିବା' ଶବ୍ଦକୁ କେନ୍ଦ୍ରକରି ହିଁ ତାଙ୍କ ଯୁକ୍ତି ଆରମ୍ଭ ହୋଇଯାଏ । ସେ ପାପୁଲିରେ ହାତମୁଠା ମାରି ଜିଦ୍‌କରି କହନ୍ତି ଯେ, ପଶାଖେଳରେ 'ରଖିବା' ଶବ୍ଦର ପ୍ରୟୋଜନ ନାହିଁ । ତେଣୁ ଖେଳଟି ନିଶ୍ଚୟ ଚେସ୍ ଖେଳ ।

ଅସମ୍ଭବ ମଣିଷ ଇଏ ମିଶ୍ରବାବୁ!

ସେ ଯେତେବେଳେ 'ଏହେଁ... ଏହେଁ...' କରି ଗଳା ଖଙ୍କାରି କ୍ଲବ୍ ବାରନ୍ଦାକୁ ଉଠିଆସନ୍ତି ଆମମାନଙ୍କ ଭିତରେ ଏକ ରକମର ଆତଙ୍କ ଖେଳିଯାଏ । ଇଚ୍ଛାହୁଏ କୌଣସି କୋଠରି ଭିତରେ ପଶି ଭିତରୁ ଛିଟିକିଣି ଦେଇଦିଅନ୍ତୁ ଆଉ ମିଶ୍ରବାବୁ କବାଟରେ ଯେତେ ବାଡ଼େଇ କଚାଡ଼ି ହେଲେ ବି ଖୋଲନ୍ତୁନି ।

କିନ୍ତୁ ଯୋଉଦିନ ସେ କ୍ଲବ୍‌କୁ ଆସନ୍ତିନି, ମନେହୁଏ କିଛି ଗୋଟାଏ ଅଭାବ ରହିଗଲା । ରାତିରେ କ୍ଲବ୍‌ରୁ ଫେରିଲାବେଳକୁ କେମିତି ଗୋଟାଏ ଖାଲି ଖାଲି ଲାଗେ- ମନ ହାଲୁକା ଲାଗେନି ।

ମିଶ୍ରବାବୁ ଆମ୍‌ମାନଙ୍କ ମନର ଭାବ ଯେ ଜାଣୁନଥିଲେ ସେ କଥା ମଧ ନୁହେଁ । ବେଳେବେଳେ ଆମେ ଯେତେବେଳେ ତାସ୍ ଖେଳୁଥାଉଁ, ସେ ସିଧାସଳଖ ଖବରକାଗଜ ଆଉ ମେଗାଜିନ୍ ଥୁଆହୋଇଥିବା ଟେବୁଲ୍‌କୁ ଚାଲିଯାଆନ୍ତି । ସେତେବେଳେ ଆମେ ସମସ୍ତେ ଖାଲି ଯେ ଆଶ୍ୱସ୍ତିର ନିଃଶ୍ୱାସ ମାରୁ ସେତିକି ନୁହେଁ, ଆମ ଭାଗ୍ୟର ଜୋର୍ ସମ୍ବନ୍ଧରେ ମଧ ସିଧାସଳଖ ଟିପ୍ପଣୀ ଛାଡ଼ିଦେଉଁ - ସେ ଶୁଣିଲା ପରି । ଆମେ ଯେଉଁଦିନ ଟିକିଏ ବେଶୀ ହଲ୍ଲା କରୁ ମିଶ୍ରବାବୁ ନଜାଣିଲାପରି ଖବରକାଗଜ ଟେବୁଲ୍‌ରୁ ଉଠିଆସି କାହା ଚୌକି ପଛଆଡ଼େ ଠିଆହୋଇ ବିନା ମେଘରେ ବଜ୍ରପାତ ସୃଷ୍ଟି କରନ୍ତି । ଆଉ ଦିନେ ଦିନେ ସିଧାସଳଖ ଦିଆସିଲି ମାଗିବା ପାଇଁ ଆମ ଟେବୁଲ୍‌କୁ ଚାଲିଆସନ୍ତି ।

ମିଶ୍ରବାବୁଙ୍କ ଏ ଦିଆସିଲି ମଗା ଆଉ ଗୋଟାଏ ବିପଦ । ସେ ଯା'ପାଖରୁ ଦିଆସିଲି ମାଗନ୍ତି, ଗୋଟିଏ କାଠି ଜାଗାରେ ପାଞ୍ଚଟା କାଠି ତ ସାରନ୍ତି, ଶେଷରେ ଦିଆସିଲିଟିକୁ ନିଜ ପକେଟ୍‌ରେ ହିଁ ଭର୍ତ୍ତି କରିଦିଅନ୍ତି । ତାଙ୍କ କୋଟ୍ ପକେଟ୍‌ରେ ସବୁବେଳେ ଚାରି ଛ'ଟା ଦିଆସିଲି ଡ଼ବା ଥାଏ, ଆଉ ଚାଲିଲାବେଳେ କେମିତି ଗୋଟାଏ ଖଡ଼କ୍ ଖଡ଼କ୍ ଆବାଜ୍ କରେ ।

ମିଶ୍ରବାବୁ ଆଗେ କେବେ କାଭେଣ୍ଡର ସିଗାରେଟ୍ ପିଉଥିଲେ । ସିଗାରେଟ୍ ପିଆଯାଏ, କି ଖିଆଯାଏ, କି ଫୁଙ୍କାଯାଏ ସେ ସମ୍ବନ୍ଧରେ ମିଶ୍ରବାବୁଙ୍କ ଅଯାଚିତ ଲେକ୍‌ଚର ଆମମାନଙ୍କୁ ତାସ୍ ଖେଳ ବନ୍ଦକରି ଦୁର୍ଭାଗ୍ୟକ୍ରମେ ଥରେ ଶୁଣିବାକୁ ପଡ଼ିଥିଲା । ତାଙ୍କ ପିଆ ଢ଼ଙ୍ଗରୁ ମନେହୁଏ ଯେ, ପ୍ରକୃତରେ ସେ ବିଡ଼ିପିଇବା ଲୋକ - ନହେଲେ ସିଗାରେଟ୍‌ର ଅଧା ପାଟି ଭିତରେ ପୂରାଇ ସିଗାରେଟ୍‌କୁ ଏତେ ଓଦା ସରସର କରନ୍ତେ କିପରି ? ହଁ, ସେ ଆଗ କାଭେଣ୍ଡର ପିଉଥିଲେ । ଆମଭିତରେ ଆୟାର୍ ଥିଲା ପାଇପ୍ ବାଲା । ମିଶ୍ରବାବୁ ଆୟାର୍‌କୁ ସବୁବେଳେ ତେନ୍ତୁଳିପାଣି, ତେନ୍ତୁଳି ନହେଲେ କୟାଁ ବୋଲି ଡ଼ାକୁଥିଲେ, ଆଉ ଆୟାର୍ ଯାହା ବୋଲି ମିଶ୍ରବାବୁ ଡ଼ାକୁଥିଲା ସେ କଥା ଲେଖିହେବନି – ଖଣ୍ଡିତ କ୍ଷୁଦ୍ର ଉତ୍କଳର ବୀର ଯୁବକଙ୍କ ମନରେ ବିଶାଳ କ୍ରୋଧର ଉଦ୍ରେକ ହୋଇପାରେ, ଏହି ଭୟରେ । ଅଗରୱାଲ୍ ହିଁ କାଗଜରେ କେପଷ୍ଟନ୍ ଟବାକୋ ଭର୍ତ୍ତିକରି ସିଗାରେଟ୍ ବଳୁଥିଲା । ଏଇ ସିଗାରେଟ୍ ବଳିବା ଢ଼ଙ୍ଗ ଦେଖି ମିଶ୍ରବାବୁ କେମିତି ଅଗରୱାଲ୍‌ର ଭକ୍ତ ପାଲଟି ଯାଇଥିଲେ, ଆଉ ସେ ନିଜେ କାଗଜ ଓ ଟବାକୋ କିଣି ସିଗାରେଟ୍ ବଳିବାକୁ ଆରମ୍ଭ କରିଦେଇଥିଲେ । ତାଙ୍କ ବଳିଲା ସିଗାରେଟ୍ କିନ୍ତୁ କେବେ ସିଗାରେଟ୍ ପରି ଦିଶେନି । ପ୍ରାୟ ବିଡ଼ିର ରୂପ ନିଏ । କାଗଜକୁ କେମିତି ମୋଡ଼ନ୍ତି, କେଜାଣି, ସିଗାରେଟ୍‌ର ଗୋଟାଏ ପାଖ ସରୁ ଆଉ ଅନ୍ୟପାଖଟି ଘଣ୍ଟିର ମୁହଁପରି ଓସାରିଆ ହୋଇଯାଏ । ବେଳେବେଳେ ଦୁଇଆଡ଼ିକି ମୁନିଆ ହୋଇଯାଇ ମଝିଟା ଫୁଲିଉଠେ ଓ ମୃଦଙ୍ଗ ପରି ଦିଶେ । ସିଗାରେଟ୍ ବଳିଦେବା ପାଇଁ ଅନୁରୋଧ କରିବାକୁ ସେ ଆମ ଟେବୁଲ୍ ପାଖକୁ ଆସିବା ମଧ୍ୟ ଆଉ ଏକ ବିପଦ ଥିଲା ।

ମିଶ୍ରବାବୁ କୌଣସି ଗୋଟିଏ ଚାହାଳୀର ଅବଧାନ ପରି ସବୁବେଳେ ଖଣ୍ଡିଏ କୋଟ୍ ପିନ୍ଧିବାକୁ ଭଲପାଉଥିଲେ । ଅନେକ ସମୟରେ କାମିଜର ଗୋଟାଏ କାନ କୋଟ୍ ଉପରେ ତ ଆଉ ଗୋଟାଏ ସାଧାରଣତଃ କୋଟ୍‌ର କଲର୍ ଭିତରେ ରହିଯାଇଥାଏ । ମିଶ୍ରବାବୁ କୋଟ୍ ବୋତାମ ବି କେମିତି ଲଗାନ୍ତି କେଜାଣି, ବେଳେବେଳେ ତଳର ବୋତାମ ଉପରର ଛିଦ୍ରରେ ଲାଗିଯିବା ଫଳରେ କୋଟ୍‌ର ଦିଫାଳ ତଳ ଉପର ହୋଇଯାଏ । ସେ କିନ୍ତୁ ଏଥିରେ ବେପରବାଏ । କେହି ସେ ବିଷୟରେ କହିଲେ, କୋଟ୍‌ର ଯେଉଁପାଖ ଛୋଟ ହୋଇଥାଏ, ତାକୁ ଟାଣି ଟାଣି ସମାନ କରିବାକୁ ଚେଷ୍ଟା କରନ୍ତି ।

ଇଞ୍ଜିନିୟର ହିସାବରେ କିନ୍ତୁ ମିଶ୍ରବାବୁଙ୍କୁ ସମସ୍ତେ ଖାତିର୍ କରନ୍ତି । ଗୋଟିଏ ଜ୍ଞାନକୋଷ, ପଚାରିଲା କ୍ଷଣି ମାଳେ କହିଯିବେ । କେହି ଯଦି ଭୁଲ୍‌ରେ କ୍ଲବ୍‌ରେ କିଛି

ପଚାରିଦେଇଛି, ତାର ଆଉ ରକ୍ଷାନାହିଁ । ରାତି ୧୧ଟା କି ୧୨ ଟା ହୋଇଗଲେ ବି ମିଶ୍ରବାବୁଙ୍କର ଲେକ୍‌ଚର୍ ସରେନି । ଅବସ୍ଥା ଦେଖି ସମସ୍ତେ ଧିରେ ଧିରେ କ୍ଲବ୍‌ରୁ ଖସିଯାଆନ୍ତି, ଆଉ ପ୍ରଶ୍ନକର୍ତ୍ତାଙ୍କ ମୁଣ୍ଡରେ ଚଡ଼କ ପଡ଼େ । ସମସ୍ତେ କ୍ଲବ୍‌ରୁ ଗଲାବେଳେ ପ୍ରଶ୍ନକର୍ତ୍ତା ଭାଲୁ ଲାଙ୍ଗୁଳ କିପରି ଧରିଛନ୍ତି, ସେ କଥା ଆଲୋଚନା କରି କରି ରାସ୍ତାଉପରକୁ ଉଠନ୍ତି ।

ଆଉ ଦିନକର ଘଟଣା ।

ବର୍ଷାପାଗ ଯୋଗୁ ହୀରାକୁଦ ବନ୍ଧ କାମ ଧିମେଇ ଯାଇଥାଏ, ଆଉ ଆମେ ସେ ସୁଯୋଗ ନେଇ ଟିକିଏ ଆଗରୁ କ୍ଲବ୍‌ରେ ପହଞ୍ଚିଯାଇଥାଉଁ । ବ୍ରିଜ୍ ଖେଳରେ ସେଦିନ ଆୟାର ଆଉ ମୁଁ ଗୋଟିଏ ଆଡ଼ିକି, ଆଉ ଆମକୁ ମୁକାବିଲା କରୁଥାନ୍ତି ଅଗରୱାଲ୍ ଓ ମହାନ୍ତି । ଏମିତି ବର୍ଷାପାଗ ଦିନ ସବୁ ଯନ୍ତ୍ରପାତି ଚେକିଙ୍ଗ୍ ପାଇଁ କାରଖାନାକୁ ଯାଏବୋଲି ଆମେ ଯେଉଁଦିନ ଟିକିଏ ଫୁରସତ୍ ପାଉ ସେଇଦିନ ହିଁ ମହାନ୍ତି ମୁଣ୍ଡରେ ବୋଝ ଲଦି ହୋଇଯାଏ । ତଥାପି ଅଗରୱାଲ୍ ଆମ ଚେଲେଞ୍ଜ ଦେଇ ମହାନ୍ତିଙ୍କୁ କୌଣସିମତେ ୱାର୍କସପ୍‌ରୁ ଭିଡ଼ିଆଣିଥାଏ ।

କେତେ ବାଜି ପରେ ଖେଳ ବେଶ୍ ଜମିଆସିଲା ।

ଆୟାର ଡ଼ାକ ଆରମ୍ଭକଲା - ଟୁ ହାର୍ଟସ୍ । ଅଗରୱାଲ୍‌ର ପାସ୍ । ମୋ ହାତରେ ୧୧ ପଏଣ୍ଟ, ଡ଼ବଲ ଜମ୍ପ ଦେବି ନା ନାହିଁ ଭାବୁଛି, ହଠାତ୍ କୋଠରି ଭିତରେ ବୋମା ଫୁଟିଲାପରି ମନେହେଲା । କିଏ ଜଣେ ଚୌକିରୁ ଡ଼େଇଁପଡ଼ିଲା (ମୁଁ କିନ୍ତୁ ନୁହେଁ) । ଆଉ ସମସ୍ତେ ତାଟକା ହୋଇ ନିଜ ନିଜ ଜାଗାରେ ଲାଖି ରହିଗଲେ । ଆଜି ଯେତେବେଳେ ମୁଁ ସେ ପଛଦିନର କଥା ମନେପକାଉଛି, ମନେହେଉଛି ଯେ, ଶବ୍ଦଟି ବୋଧହୁଏ ବୋମା ଆବାଜ୍ ପରି ନଥିଲା । ପିଜୁଳି ଗଛରେ ବାଦୁଡ଼ି ଘଉଡ଼େଇବା ପାଇଁ ବନ୍ଧା ହୋଇଥିବା ଭଙ୍ଗାଟିଣର ଅଧରାତିଆ ଆବାଜ୍ ସଂଗେ ତାକୁ ତୁଳନା କଲେ ବୋଧହୁଏ ଭଲହେବ ।

ଯା'ହେଉ ସେତେବେଳେ ମୁଁ ଚମକି ଉଠିଥିଲି ।

ବିଦ୍ରୁପାତ୍ମକ ବିରାଟ ହେ- ହେ- ହେ ହସ ସାଙ୍ଗକୁ ଫମ୍ପା ତାଳିର ନିଖୁଣ ଯୋଗାଯୋଗ ସହ ମିଶ୍ରବାବୁ ଘରଭିତରକୁ ପଶିଆସିଥିଲେ ।

ମିଶ୍ରବାବୁ ଏମିତି ଫମ୍ପା ତାଳି କେମିତି ମାରନ୍ତି କେଜାଣି, ଠିକ୍ ବର୍ଷାଦିନିଆ ତାଳଫୋଟକା କି ବେଲୁନ୍, କି କାଗଜମୁଣି ଫୁଟିଲାପରି ସେଥିରୁ ଗୋଟିଏ ଅଦ୍ଭୁତ ଆବାଜ୍ ବାହାରେ ।

ଆମେ ସମସ୍ତେ ଆଶ୍ଚର୍ଯ୍ୟ ହୋଇ ତାଙ୍କଆଡ଼କୁ ଅନାଇଛୁଁ କି ନାହିଁ - ସେ 'ଦେଇଦେଲି' ବୋଲି ପାଟିକଲେ ।

ଖେଳରେ ଏପରି ଅଯଥା ବ୍ୟାଘାତ ଆସିଥିବା ଦେଖି ଆୟାର ବେଶ୍ ରାଗି ଯାଇଥିଲା । ସେ ଚିତ୍କାର କଲା - 'ଆରେ ପଖାଲ, କ୍ୟା 'ଦେଇଦେଲି' ବକ୍‌ତା ହୈ ?'

ବିରକ୍ତ ହେଲେ ଆୟାର ହିନ୍ଦୀ କହିବାକୁ ଚେଷ୍ଟାକରେ।

ମିଶ୍ରବାବୁ ଆଉଥରେ ହେଁ - ହେଁ ସାଙ୍ଗକୁ ଫମ୍ପା ତାଳି ଓ ମୁରୁକି ହସ ଦେଇ 'ଦେଇଦେଲି'ର ପୁନରାବୃତ୍ତି କଲେ ।

ଇଏ ପୁଣି ଆଉ ଗୋଟାଏ ବିପଦ । ସେ ସ୍କୁଲଦିନର ହାତୀ ଯେପରି ସଂପ୍ରସାରିତ ହୋଇ ରାଜାଙ୍କ ବୁଢ଼ାହାତୀ ହୁଏ ଆଉ ସେଠାରୁ ବଢ଼ି ବଢ଼ି ଶେଷରେ ରାଜାଙ୍କ ବୁଢ଼ା ହାତୀ ଧିରେ ଧିରେ ନଦୀକୁ ପାଣି ପିଇବା ପାଇଁ ଚାଲେ ମିଶ୍ରବାବୁଙ୍କ କଥା କହିବା ଢ଼ଙ୍ଗ ମଧ ସେପରି । ବାକ୍ୟ ସଂପ୍ରସାରଣ କରି ସାରିଲା ପରେ ହିଁ ଜଣାପଡ଼ିଲା ଯେ, ମିଶ୍ରବାବୁ ଇସ୍ତଫା ଦେଇସାରିଛନ୍ତି।

ଆମେ ସମସ୍ତେ ହାତର ତାସ୍ ମୁଠା ସବୁ ଟେବୁଲ୍ ଉପରେ ଥୋଇଦେଲୁ । ସେ ସିନ୍ଧି ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର ଯେ ମିଶ୍ରବାବୁଙ୍କ ଉପରେ ଭୟଙ୍କର ବିରକ୍ତ ସେ କଥା ଜଣାଥିଲା । ସେ ସବୁବେଳେ କହେ ଯେ ଏ ମିଶ୍ରା' ତା' ସାଙ୍ଗରେ ଓଡ଼ିଆରେ କଥାବାର୍ତ୍ତା କରୁଛି ଆଉ ସେ କିଛି ବୁଝିପାରୁନି ।

ଆମେ ସେ ଭଦ୍ରଲୋକଙ୍କୁ କେତେଥର ବୁଝାଇବାକୁ ଚେଷ୍ଟାକରି କହିଛୁଁ ଯେ, ମିଶ୍ରବାବୁ ତା' ସାଙ୍ଗରେ ଇଂରାଜୀରେ ହିଁ କଥାବାର୍ତ୍ତା କରନ୍ତି । 'ଲ' ଓ 'ଳ'ର ଭେଦ ପ୍ରତି ମିଶ୍ରବାବୁଙ୍କର ବିଶେଷ ଆନୁଗତ୍ୟ ଯୋଗୁଁ ତାଙ୍କ ଇଂରାଜୀ ବେଳେ ବେଳେ ଓଡ଼ିଆ ପରି ଶୁଭେ ।

ଭଦ୍ରଲୋକ କିନ୍ତୁ ତାହା ବିଶ୍ୱାସ କରିବାକୁ ନାରାଜ୍ । ସେଥିପାଇଁ ଯେ ମିଶ୍ରବାବୁଙ୍କୁ ଇସ୍ତଫା ଦେବାକୁ ପଡ଼ିବ ସେ ଆଶଙ୍କା ଆମର କଳ୍ପନାର ବାହାରେ ଥିଲା । ଟେକ୍‌ଚନ୍ଦାନୀ ମଧ ତାଙ୍କୁ ଜଣେ ଦକ୍ଷ ଆସିଷ୍ଟାଣ୍ଟ ଇଞ୍ଜିନିୟର୍ ବୋଲି ସ୍ୱୀକାର କରେ । ମିଶ୍ରବାବୁ ତାଙ୍କ ବାକ୍ୟ ଆହୁରି ସଂପ୍ରସାରଣ କଲେ । ଏଥର ଜଣାପଡ଼ିଲା ଯେ ସେ ବିରକ୍ତ ହୋଇ ଇସ୍ତଫା ଦେଇନାହାନ୍ତି - କେବଳ ଇସ୍ତଫା ଦେବା କଥା ଚିନ୍ତାକରୁଛନ୍ତି - ଏ ବେତନ ତାଙ୍କୁ ପୋଷେଇବନି ।

ଯେତେବେଳେ ଜଣାଗଲା ଯେ, ମିଶ୍ରବାବୁ ସତରେ ଇସ୍ତଫା ଦେଇନାହାନ୍ତି, ସେତେବେଳେ ଆମେସବୁ କ'ଣ କରିବୁ କିଛି ବୁଝିପାରିଲୁନି । ଖେଳ ବନ୍ଦ ହୋଇସାରିଥିଲା । ଦାନ୍ତ କାମୁଡ଼ି କପାଳରେ ଦି' ତିନିଥର ହାତ ବାଡ଼େଇ ଆୟାର ଚିତ୍କାର କଲା - 'ହଇରେ କୋଉଠିକାର ପାଗଳା ଭୂତ - ତତେ ଆଉ ଲୋକ ମିଳିଲେନି ଯେ, ଏଇଠିକି ଆସି ଆମକୁ ଧଇଲୁ ? ତୋ ଅଜା ପଣ-ଅଜାଙ୍କ କୋଟ୍ ଖଣ୍ଡିଏ ତ ପିନ୍ଧୁଛୁ, ଘରେ ଖାଲି ପଖାଳ ଖାଉ, ଆଉ ଜଳଖିଆ କହିଲେ କେବଳ ଚୂଡ଼ା ହିଁ ବୁଝୁ । ତତେ ମାସକୁ ଚାରିଶହ ଟଙ୍କା ଅଣ୍ଟୁନି ଯେ, ଇସ୍ତଫା ଦେବୁ ?'

'ଆରେ କୟାଁ' କହି ମିଶ୍ରବାବୁ ଆରମ୍ଭ କଲେ ତାଙ୍କ ବ୍ୟାଖ୍ୟାନ । ସେ ଯାହା କହୁଥିଲେ ତା'ର ସାରମର୍ମ ହେଲା ଯେ, ଚାକିରି ଅପେକ୍ଷା କୁକୁଡ଼ା ପୋଷିବାରେ ବେଶୀ ଭଲ । ଗୋଟିଏ ଜାତିଆ କୁକୁଡ଼ା ବର୍ଷକୁ କମ୍ ପକ୍ଷରେ ୨୫୦ଟି ଅଣ୍ଡା ଦିଏ । ୨୦ଟି ରଖିଲେ ବର୍ଷକୁ ୫୦୦୦ । ସେସବୁ ଅଣ୍ଡାକୁ ନ ବିକି କିମ୍ବା ଓମ୍ଲେଟ କରି ନଖାଇ ଛୁଆ କରାଇଲେ କମ୍‌ରେ ୨୦୦୦ କୁକୁଡ଼ାଛୁଆ ବାହାରିବେ । ସେଥିରୁ ଅନ୍ତତଃ ୧୦୦୦ ହେବେ ମାଈ । ପ୍ରଥମ ୬ ମାସରେ ଯେଉଁ ୫୦୦ ହୋଇଥିବେ ସେସବୁ ଅଣ୍ଡା ଦେବାକୁ ଆରମ୍ଭ କରିଦେବେ, ଆଉ ବର୍ଷ ଶେଷବେଳକୁ ସେମାନେ ଦେବେ...

ଆମେ କିନ୍ତୁ ସେସବୁ ହିସାବ ଶୁଣିବାକୁ ଆଉ ସେଠାରେ ନଥିଲୁ ।

ଆୟାର କ'ଣ ସବୁ ଯୁକ୍ତି କଲାବେଳେ ଆମେ ସମସ୍ତେ ଧୀରେ ଧୀରେ କ୍ଲବ୍‌ରୁ ବାହାରି ରାସ୍ତା ଉପରକୁ ଉଠିଆସିଥିଲୁ। ସେଠାରୁ ଯାହା ଶୁଣାଗଲା ସେଥିରୁ ମନେହେଲା ଯେ, ୩/୪ ବର୍ଷ ଭିତରେ ମିଶ୍ରବାବୁଙ୍କ କୁକୁଡ଼ା ଯେତେ ହେବେ ସେସବୁକୁ ରଖିବାପାଇଁ ଯାହା ଜମି ଦରକାର ପଡ଼ିବ ତା'ର ଆୟତନ ହୀରାକୁଦ ଜଳଭଣ୍ଡାରର ଆୟତନ ଠାରୁ ଅନେକ ବେଶୀ ।

ଭଲ ସନ୍ଧ୍ୟାଟିଏ ନଷ୍ଟ ହୋଇଗଲା ବୋଲି ଦୁଃଖରେ ମୁଁ ଯେତେବେଳେ ଆମ ଘର ଭିତରକୁ ପଶୁଥିଲି, ମିଶ୍ରବାବୁଙ୍କ 'ହେ - ହେ -' ହସର ଗୋଟାଏ ଲହର ସେପାଖ ଦେଇ ପବନରେ ଭାସିଗଲା ।

# ମିଶ୍ରବାବୁଙ୍କ ଆଲ୍‌ସେସିଆନ୍

କେହି କେହି କହନ୍ତି ଯେ, ସୃଷ୍ଟି ରଚନା କଲାବେଳେ ଛଅଦିନ ଛଅରାତି ନିରବିଚ୍ଛିନ୍ନ କଠୋର ପରିଶ୍ରମ କରି ଭଗବାନ ସାମାନ୍ୟ ହାଲିଆ ହୋଇପଡ଼ିଲେ, ଆଉ ସପ୍ତମ ଦିନଟିରେ ପୂର୍ଣ୍ଣ ବିଶ୍ରାମ ନେଲେ । ସେହି ବିଶ୍ରାମ ଦିନଟି ହିଁ ହେଲା ରବିବାର । ବିଜ୍ଞ ମଣିଷମାନେ ପରମ୍ପରା ରକ୍ଷା କରିବାକୁ ଯାଇ ସେ କାଳରୁ ପ୍ରତ୍ୟେକ ରବିବାରଟିକୁ ବିଶ୍ରାମର ଦିନ ବୋଲି ଘୋଷଣା କରିଯାଇଛନ୍ତି ।

ମହାଜନମାନେ ଯେଉଁ ପଥଦେଇ ଗତି କରନ୍ତି ସେହି ପଥ କୁଆଡ଼େ ପ୍ରକୃତ ପଥ ! ଆମ ମୁରବିଗଣ ତେଣୁ ନୀତିଦିନ ତାଙ୍କ ଭାଷଣମାନଙ୍କରେ ଭଗବାନଙ୍କ ଦର୍ଶିତ ପଥ ଅନୁସରଣ କରିବାକୁ ଉପଦେଶ ଦିଅନ୍ତି । ପିତୃସତ୍ୟ ପାଳି ବନବାସ ଯିବା, କିମ୍ବା ଗୋବର୍ଦ୍ଧନ ଗିରି ଟେକି ଧରିବା, ଅଥବା କୌଣସି ଅସୁରର ପେଟଚିରି ତାର ଅନ୍ତନାଡ଼ିକୁ ପଇତା କରିବା ଅତ୍ୟନ୍ତ କଷ୍ଟସାଧ । ଅନ୍ୟଦିଗରେ ଏଇ ରବିବାର ଛୁଟିଦିନ ସଂପୂର୍ଣ୍ଣ ବିଶ୍ରାମ ନେବା ଅପେକ୍ଷାକୃତ ସହଜ । ସେଥିପାଇଁ ହୀରାକୁଦ ବନ୍ଧ ନିର୍ମାଣର ଗଧ ଖଟେଣି ମଝିରେ ରବିବାରଟିଏ ଯେତେବେଳେ ଆସେ, ମୁଁ ସେ ଦିନ ଖଟ ସାଙ୍ଗରେ ମୋର ବ୍ୟକ୍ତିଗତ ସମ୍ପର୍କଟିକୁ ଦୃଢ଼ୀଭୂତ କରିବାକୁ ବିଶେଷ ପସନ୍ଦ କରେ । ଆଉ ଅନ୍ୟ ଦିନମାନଙ୍କରେ ଭୋର୍‌ରେ କାମକୁ ଗଲାବେଳେ, ଅଥବା କେବେ ଅଧରାତିରେ କାମରୁ ଫେରିଲା ସମୟରେ 'ତମେ ଖାଲି ଚାକିରି କରୁଛ ନା ଦୁନିଆରେ ଆଉ ମାନେ ବି ଚାକିରି କରିନ୍ତି' ଶୁଣିବା ବଦଳରେ ସକାଳର 'ଏଇ ହାଟଦିନ ବଜାର ସଉଦା ନ କରି ଯଦି ଶୋଇରହିଥିବ ...' ଟୀକା - ଟିପ୍ପଣୀ ଯେପରି କାନ ଭିତରକୁ ସହଜରେ ନପଶେ ସେଥିପାଇଁ କମ୍ବଳଟିକୁ ଭଲକରି ମୁଣ୍ଡ ଉପରକୁ ଭିଡ଼ିଆଣେ ଆଉ '... ବିନା ତରକାରିରେ ଭାତ ଖାଇବ, ମୋର ଦୋଷନାହିଁ କହିଦେଉଛି' ପ୍ରଭୃତି କେତେ ବାଟୁଳି ଯେତେବେଳେ କମ୍ବଳ ଭେଦକରି କର୍ଣ୍ଣ ଗହ୍ବରରେ ପ୍ରବେଶ କରେ, ବାଧହୋଇ ରବିବାର ମହାତ୍ମ୍ୟ ଓ ବଡ଼ ବଡ଼ ଲୋକଙ୍କ ଉପରୋକ୍ତ ନିର୍ଦ୍ଦେଶନାମା କମ୍ବଳ ଭିତରୁ ବଖାଣିବସେ ।

ଏ ପରି ଏକ ସୁମଧୁର ରବିବାରସୀୟ ସୁପ୍ରଭାତ ।

ଆମ ଘର ଫାଟକ ଖୋଲିବା ଶବ୍ଦରୁ ହିଁ ମୁଁ ଜାଣିସାରିଥିଲି ଆଜି ଏ ରବିବାର ଭୋରରୁ ବି କିଏ ଜଣେ ଆସିଲାଣି 'ବୋର୍' କରିବା ପାଇଁ । ସେ ଯେତେବେଳେ ଆମ ଶୋଇବା କୋଠରି ପାଖ ରାସ୍ତାଦେଇ ବାରନ୍ଦା ଆଡ଼କୁ ଚାଲିଲେ ତାଙ୍କ ଯୋତା ଆବାଜ ଓ ଗଳା ଖଙ୍କାରିବା 'ଏହେଁ'ରୁ ଭଦ୍ରଲୋକ ଜଣକ କିଏ ଜାଣିବାକୁ ଆଉ ବାକି ରହିଲାନି ।

ମିଶ୍ରବାବୁ ଝଡ଼ପରି ଘର ଭିତରକୁ ପଶିଆସିଥିଲେ । ପଚାରିଲେ – 'ହଇଲୋ ମା, ବାପା କ'ଣ କରୁଛନ୍ତି ଦେଖିଲୁ !'

ଧାରା ତା'ର ଟିକି ସ୍ୱରରେ, କହିଲା – 'ମଉଚା, ବାପା ଚୋଇଚନ୍ତି ।' ମିଶ୍ରବାବୁ କହିଲେ – 'ଗଲୁ ଦେଖିଆସିବୁ ଘୁଙ୍ଗୁଲି ମାରୁଚନ୍ତି ନା ନାଇଁ ।' ଧାରା ତାର ଛୋଟ ଛୋଟ ପାହୁଣ୍ଡ ପକାଇ ଟିକି ଜୋତା କଚାଡ଼ି କଚାଡ଼ି ମୋ ଖଟ ପାଖରେ ଆସି ପହଞ୍ଚିଲା । ତା'ପାଇଁ ସବୁ ସକାଳ ସମାନ – କେତେ ଭୋରରୁ ଉଠେ କେଜାଣି, ଉଠିଲାକ୍ଷଣି ଆଗ ତାର ଯୋତା ଖୋଜାଖୋଜି କରି ତା' ମା' ପାଖକୁ ନେଇଯାଏ ଆଉ ପିନ୍ଧିସାରିଲା ପରେ ଉପର ତଳ, ବାହାର ଭିତର ହୋଇ ଆରମ୍ଭ କରିଦିଏ ତାର ଅସରନ୍ତି ଯାତ୍ରା – ସତେ ଯେମିତି ବହୁତ ବ୍ୟସ୍ତ ।

ସେ ପାଖକୁ ଆସିଲାକ୍ଷଣି ମୁଁ ଜାଣିଶୁଣି ଜୋର୍‌ରେ ଘୁଙ୍ଗୁଡ଼ି ମାଇଲି । ସେ କିଛିକ୍ଷଣ ଠିଆହେଲା । ଫେରିଗଲା ପରେ ଶୁଣିଲି, ସେ କହୁଚି – 'ମଉଚା, ବାପା ଘୁଙ୍ଗୁଲି ମାଲୁଚନ୍ତି ।'

ମିଶ୍ରବାବୁ ଏଥର କହିଲେ – 'ଗଲୁ ଦେଖିବୁ ଆଖି ମିଟିମିଟି କରୁଚନ୍ତି ନା ନାହିଁ ।'

ଟିକି ଜୋତାରେ ଫଟ୍ ଫଟ୍ ଶବ୍ଦ ଶୁଣି ମୋ ଆଡ଼କୁ ଆସିଲା । ମୁଁ କମ୍ବଳ ଖଣ୍ଡିକ ଭଲକରି ଉପରକୁ ଭିଡ଼ିଆଣି ଆଖି ବୁଜିଦେଲି । ସେ କିନ୍ତୁ କମ୍ବଳଟି ମୁହଁ ଉପରୁ କାଢ଼ିଦେଲା । ତା'ର ନିଶ୍ୱାସ ଗନ୍ଧରୁ ଜାଣିଲି ଧାରା ମୋ ମୁହଁ ପାଖକୁ ଆସି ମୋତେ ଅନାଇଛି । ଆଖି ଟିକିଏ ମିଟିମିଟି ହୋଇଗଲା – ହସ କିନ୍ତୁ ଚାପି ରଖିଲି ।

କିଛିକ୍ଷଣ ପରେ ଶୁଣିଲି ସେ ଫେରିଯାଇ କହୁଚି – 'ମଉଚା, ବାପା ଆଖି ମିଟିମିଟି କଲୁଚନ୍ତି ।'

ମଉସା କହିଲେ – ଭଲ ଶୋଇଚନ୍ତି – 'ଗଲୁ କହିବୁ, ଜରୁରୀ କାମ ଅଛି । କ'ଣ କହିବୁ କହିଲୁ ?'

'ଉଁ...ଉଁ... କହିବି – ଜଲୁଲୀ କାମ ...।'

ମୁଁ ଜାଣିସାରିଥିଲି ଏ ମିଶ୍ରବାବୁ ଆଉ ଶୁଆଇଦେବେନି । ତାଙ୍କ ଉପରେ ହାକିମ ସାଙ୍ଗରେ ତ ମିଶ୍ରବାବୁଙ୍କର ପଡ଼େନି - କିଛି ଗୋଟାଏ ଘଟିଯାଇଛି ଭାବି ତରବରରେ ଦାନ୍ତ ଘଷିନେଇ ବସିବାଘରକୁ ଆସିଛି କି ନାହିଁ ମିଶ୍ରବାବୁ ନମସ୍କାର ସାଙ୍ଗରେ ଧଡ଼ାସ୍ କରି ପଚାରିଦେଲେ - 'କୁହନ୍ତୁ ତ, କୁକୁର ପୋଷିବା ଭଲ ନା ନୁହେଁ ?'

ସତେ ଯେମିତି ଘର ଭିତରକୁ ପଶୁ ପଶୁ ମୁଣ୍ଡ ଉପରେ କେଉଁ ପୁରୁଣା କାଳିଆ ଶିକା ଛିଡ଼ିପଡ଼ିଲା । ମୁଁ କିଛି ବୁଝିପାରିଲିନି । ମୋ ଜଳକା ଚାହାଣି ଠଉରାଇ ବୋଧହୁଏ ସେ କଥାଟିର ପୁନାରାବୃତ୍ତି କଲେ, ଆଉ ମୁଁ ବୁଝିଲି ସେ ସତରେ ପଚାରୁଛନ୍ତି କୁକୁର ପୋଷିବା ଭଲ କି ନୁହେଁ ।

ପ୍ରତ୍ୟେକ କଥାର ଗୋଟିଏ ସୀମା ଅଛି । ଏମିତି ଗୋଟାଏ ବାଜେ ପ୍ରଶ୍ନ ନେଇ ଏପରି ଏକ ସୁନ୍ଦର ସକାଳ ନଷ୍ଟକରିବା ଯେ କୌଣସି ଭଦ୍ରଲୋକ ପକ୍ଷରେ ଅନ୍ୟାୟ । ମୋ ମୁଣ୍ଡର ଉତ୍ତାପ କେତେ ଡ଼ିଗ୍ରୀ ଚଢ଼ିଗଲା । ଭଲକରି ପଦେ ଶୁଣାଇଦେବା ଉଦ୍ଦେଶ୍ୟରେ କହିଲି - 'ମିଶ୍ରବାବୁ, ଆପଣଙ୍କ ପରି ଜଣେ ହିଁ ଥରେ ଛଳନାକରି ଗଧିଆ ଆସିଲା ବୋଲି ଗାଁବାଲାଙ୍କୁ ଠକିଥିଲା । ସତକୁସତ ଯେତେବେଳେ ଗଧିଆ ଆସିଲା - ଗାଁବାଲାଏ କ'ଣ କଲେ ଜାଣନ୍ତି ତ ? ପ୍ରକୃତରେ ଯେତେବେଳେ ଜରୁରୀ କାମ ପଡ଼ିବ ଆପଣଙ୍କ କଥା କେହି ଶୁଣିବେନି କି ବିଶ୍ୱାସ ମଧ୍ୟ କରିବେନି ।'

ମିଶ୍ରବାବୁଙ୍କ ଓଠର କୋଣ ତଳକୁ ଟିକିଏ ଝୁଲି ପଡ଼ିଲା । ଶୁଖିଲା ମୁହଁରେ କହିଲେ - 'ଭାଇନା, ବିରକ୍ତ ହୁଅନ୍ତୁନି, ଆଜି ସକାଳର ବ୍ଲାଷ୍ଟିଂ ଶୁଣିଛନ୍ତି ତ ?'

ବନ୍ଧର ଫାଉଣ୍ଡେସନ୍ ଆଉ ପଥର ଖଦାନ ସୁବଠେଇଁ ପ୍ରତି ସକାଳରେ ବ୍ଲାଷ୍ଟିଂ ହୁଏ । ଏଇଟା ଗୋଟାଏ କୋଉ ନୂଆ କଥା । ମୁଁ କହିଲି - 'ହଁ' । ମିଶ୍ରବାବୁ ଗମ୍ଭୀର ହୋଇ କହିଲେ, 'ଆଜି ତ ରବିବାର ସବୁଠେଇଁ କାମ ବନ୍ଦ । ତେଣୁ ଆଜି ଯେଉଁ ଆବାଜ୍ ଶୁଣିଲେ ସେଇ ବ୍ଲାଷ୍ଟିଂ ଆମ ଘରେ ଚାଲିଥିଲା ।'

ମୋ ପାଟି ଟିକିଏ ଖନି ମାରିଗଲା । ମିଶ୍ରବାବୁଙ୍କ ଘରକୁ ତା' ହେଲେ କେହି ଜଣେ ଉଡ଼ାଇ ଦେବାକୁ ଚେଷ୍ଟାକରିଛି, ଆଉ ମୁଁ ଏଇଠି ବସି ଏମିତି ଥଟ୍ଟାକରି ଚାଲିଛି । ଉଦାସ ମନରେ ପଚାରିଲି - 'ଏ କୁକୁର ପୋଷିବାଟା ତେବେ -' ଚା ଆସିସାରିଥିଲା । ମିଶ୍ରବାବୁ ଚା' ଢ଼ୋକେ ପିଇଲେ । ଗଳା ଖଙ୍କାରି କହିଲେ - 'ମୋର ଅବଶ୍ୟ ଟିକିଏ ଭୁଲହୋଇଛି - ସେପରି ଭାବରେ କହିବା ନଥିଲା - କହୁ କହୁ କହିଦେଲି... ଘରେ ତ ଚାକରଟିଏ ରନ୍ଧାବଢ଼ା କରୁଛି - ଚାକରାଣୀଟିଏ ବାସନକୁସନ ମାଜୁଛି । ତମେ ଖାଲି ଖାଲି ବସିଛ । କାଶନ୍ତ ଭଲା ! ମୋ ମତରେ

ଖାଲି ବସିବା ଅପେକ୍ଷା କୁକୁର ପୋଷିବା ଭଲ । ସେତିକି କହିଛି କି ନାହିଁ ବ୍ଲାଷ୍ଟିଂ ଆରମ୍ଭ ହୋଇଗଲା । ଗୃହକର୍ତ୍ତ ଭିତରେ ସେ ଯାହା ଘୋଷଣା କଲେ, ତା'ର ସାରମର୍ମ ହେଲା ଯେ, ଆମଘରେ ସେ ରହିବେ ନ ହେଲେ କୁକୁର ରହିବ ।'

ମନେହେଲା - ମୁଁ ଏଯାଏ କୌଣସି ଗୋଟାଏ ସ୍ୱପ୍ନ ଦେଖୁଛି । ଆଖି ଭଲକରି ମଳିଲି । ଏ ଭଦ୍ରଲୋକଙ୍କୁ କ'ଣ କହିବି କିଛି ବୁଝିପାରିଲିନି । ସକାଳୁ ସକାଳୁ ମିଆଁ ବିବି ଝଗଡ଼ା କରିବେ - ଆଉ ଆମେ ପାଇବୁ ଦଣ୍ଡ ।

ପଚାରିଲି - 'ଦିହେଁ ରହିବା ପାଇଁ କ'ଣ ଘରେ ସ୍ଥାନର ଅଭାବ ?'

ବିଷାଦଭରା ସ୍ୱରରେ ମିଶ୍ରବାବୁ ଉତ୍ତରଦେଲେ - 'ତା କୁଆଡ଼େ ହୋଇ ପାରିବନି - ଯିଏ ହେଲେ ଜଣେ ରହିବ ।'

ତେବେ ତ ଜଟିଳତା କିଛିନାହିଁ । ସମାଧାନଟି ବି ବେଶ୍ ସହଜ ! କୁକୁର ପୋଷିବା ଭଲ, ତଥାପି ଏପରି ପରିସ୍ଥିତିରେ ମିଶ୍ରବାବୁ ଯେ କୁକୁର ପୋଷିପାରିବେନି ସେ କଥା ସ୍ପଷ୍ଟ । ମୁଁ ତାହାହିଁ ସୂଚାଇଦେଲି ।

ମିଶ୍ରବାବୁ ଗୋଟିଏ ବଡ଼ ନିଃଶ୍ୱାସ ମାରିଲେ - ବୋଧହୁଏ ଆଶ୍ୱସ୍ତିର ନିଃଶ୍ୱାସ । ବାକିତକ ଚା' ଗୋଟିଏ ଢୋକରେ ପିଇଦେଇ ହଠାତ୍ ଉଠିପଡ଼ିଲେ ।

ଭଦ୍ରାମି ରକ୍ଷାକରି ତାଙ୍କୁ ଆଉଟିକିଏ ବସିବା ପାଇଁ ଅନୁରୋଧ କରିବାକୁ ମୋର ବି ମନ ବଳିଲାନି ।

ସେ ଗଲାପରେ କ'ଣ କରିବି ଭାବି ଭାବି ବଗିଚାରେ ଘେରାଏ ବୁଲି ଆସିଲି । ମନରେ କିନ୍ତୁ ସ୍ଥିରତା ନଥାଏ । ମିଶ୍ରବାବୁଙ୍କ କଥା ହିଁ ବାରମ୍ବାର ମନକୁ ଆସୁଥାଏ । କେମିତି ଗୋଟାଏ ଅଖାଡୁଆ ମଣିଷ । ସମସ୍ତଙ୍କୁ ବିରକ୍ତ କରିବାରେ ହିଁ ସତେ ଯେମିତି ସେ ସିଦ୍ଧହସ୍ତ ! ତଥାପି ରାଗିହୁଏନି । କିଛି ଗୋଟାଏ ଆକର୍ଷି ଧରେ । ତାଙ୍କ ସରଳତା ପ୍ରତି ମମତା, ଭାଇନା ଡ଼ାକ ପାଇଁ ସ୍ନେହ, ସଂସାରିକ ଜ୍ଞାନର ଅଭାବ, ଦୟା କି ଆଉ କ'ଣ କେଜାଣି ? କଲେଜରେ ପଢ଼ିଲାବେଳେ ମୋ'ଠାରୁ ଦୁଇବର୍ଷ ତଳେ ପଢୁଥିଲେ । ସେଦିନରୁ ସେ ମୋ ମନରେ କିଛି ଗୋଟାଏ ସ୍ଥାନ ଦଖଲକରି ବସିଛନ୍ତି - ଠିକ୍ ସାନଭାଇର ନୁହେଁ କି କୌଣସି ଗୋଟିଏ ବନ୍ଧୁର ନୁହେଁ - ମିଶାମିଶି କିଛି ।

ହଠାତ୍ ଗେଟ୍ ଖୋଲିବା ଆବାଜ୍ ହେଲା । ଝରକା ଦେଇ ଦେଖିଲି ଘରକୁ ରୀତିମତ ଗୋଟାଏ ପ୍ରସେସନ୍ ଆସୁଛି । ଆଗରେ ମିଶ୍ରବାବୁ - ଠିକ୍ ତାଙ୍କ ପଛକୁ ତାଙ୍କ ଚାକର ଭୋଳା, ଆଉ ତା' ସାଙ୍ଗରେ ବେକରେ ଦଉଡ଼ି ବନ୍ଧା ଗୋଟାଏ

କୁକୁର । କୁକୁର ପଛକୁ ପ୍ରାୟ ଅଧ ଡ଼ଜନେ ହେବେ ଆମ ପାଖ ପଡ଼ୋଶୀଙ୍କ ପିଲାମାନେ ।

ମୁଁ ବାରନ୍ଦାକୁ ଆସିଲି । କୁକୁରଟିକୁ ବାରନ୍ଦାର ଖମ୍ବରେ ବାନ୍ଧିଦେବା ପାଇଁ ଭୋଳାକୁ ମିଶ୍ରବାବୁ ଆଦେଶ ଦେଲେ ।

କୁକୁରଟି କେମିତି ଗୋଟାଏ ନିର୍ବିକାର ଭାବ ନେଇ ହାଇ ମାରୁଥାଏ । ଢ଼େଙ୍ଗା ଢ଼େଙ୍ଗା ଗୋଡ଼ - ପିଠି ଆଉ ପେଟ ସମାନ୍ତରାଳ, ଚନ୍ଦ୍ରବିନ୍ଦୁ ପରି ଲାଞ୍ଜ, ଅଧା ଠିଆ ଆଉ ଅଧାଝୁଲା କାନ । ମାଟିଆ ଗେରୁଆ ରଙ୍ଗ । ମୁଁ ପାଟି ଫିଟାଇବା ପୂର୍ବରୁ ମିଶ୍ରବାବୁ କହିଲେ - କୁକୁରଟି ଖାଣ୍ଟି ଆଲସେସିଆନ୍ ଜାତୀୟ । ଝାରସୁଗୁଡ଼ାର କେଉଁ ଜଣେ ଏଙ୍ଗ୍ଲୋଇଣ୍ଡିଆନ୍ ରେଳକର୍ମଚାରୀଙ୍କ ଘରୁ ଡ଼ାକବଙ୍ଗଳାର ଚୌକିଦାର ଗୋଟାଏ ଛୁଆ ନେଇଆସିଥିଲା । ଆଉ ମେକାନିକ୍ ନାୟାର ଚୌକିଦାରକୁ କିଛି ପାରିତୋଷିକ ଦେଇ ଆଜି ଭୋରରୁ ମିଶ୍ରବାବୁଙ୍କ ପାଇଁ ନେଇଆସିଛି । ମିଶ୍ରବାବୁ ତ ତାଙ୍କ ଘରେ କୁକୁର ରଖିପାରିବେନି । ମୁଁ ବି କୁକୁର ପୋଷିବା ଭଲ ବୋଲି ଜାଣେ, ତେଣୁ ସେ ଏଇଠିକି ନେଇଆସିଲେ ।

ଘଟଣାପ୍ରବାହର କ୍ଷୀପ୍ର ଧାରାବାହିକତା ଯୋଗୁଁ ମୁଁ ଟିକିଏ ତାଟକା ହୋଇଯାଇଥିଲି । ଦେଖିଲି କୁକୁରଟି ଶୋଇଯାଇଛି ଆଉ ଧାରା ତା' ପାଖକୁ ଯାଇ 'ଭୋ, ଭୋ ଲେ...' କହି ପିଠି ଆଉଁସିବାକୁ ପାଖକୁ ହାତ ନେଉଛି, କିନ୍ତୁ ସାହସ କରିନପାରି ପୁଣି ହାତ ଫେରାଇଆଣୁଛି ।

ଆଲ୍‌ସେସିଆନ୍ କୁକୁରକୁ କ'ଣସବୁ ଖାଇବାକୁ ଦେବା ଉଚିତ୍ - ମିଶ୍ରବାବୁ ଗୋଟିଏ ତାଲିକା ଦେଉଥିଲେ । ଭୋର ଭୋର ତିନିଟା ବିସ୍କୁଟ ଜଳଖିଆ ଖାଇଲାବେଳେ କେତେଖଣ୍ଡ ପାଉଁରୁଟି ସାଂଗରେ ଗୋଟିଏ ଅଣ୍ଡା (ଦୁଇଟି ହେଲେ ଆହୁରି ଭଲ), ଆଉ ଅଧସେର ଦୁଧ - ବାସ୍ !

ସବୁଦିନ ଗାଧୋଇ ନଦେଲେ ଜାତିଆ କୁକୁରଙ୍କ ଲୋମ ଝଡ଼ିଯାଏ । ଲାଇଫ୍‌ବଏ ସାବୁନ୍ ଦେଇ ଗାଧୋଇଦେବା ଭଲ । ଦିନବେଳେ ଆମେ ସବୁ ଯେତେବେଳେ ଖାଉ, ତା'ଠୁ ଟିକିଏ ଡ଼େରିରେ କିଛି ଛିଞ୍ଚୁଡ଼ା ମାଂସ, ଚାଉଳ ଓ ହଳଦୀ ଗୋଳେଇ ଜାଉ କରି ପ୍ରାୟ କଂସାଏ ଦେଲେ ହେଲା । ରାତିରେ କିଛି ନାହିଁ - ଖାଇବାକୁ ଦେଲେ କୁକୁର ସବୁ ଶୋଇଯା'ନ୍ତି । ତେବେ ଛୋଟ ଅଛି ନା - ଦୁଧ କିଛି, ଆଉ ଗୋଟାଏ ଅଣ୍ଡା ଦେଲେ ଭଲ । ଶୋଇଲାବେଳେ ଖଣ୍ଡିଏ ଶୁଖାରୁଟି ପକାଇଦେଲେ ସେ ରେକେଟି ରେକେଟି ଖାଏ - ଦାନ୍ତ ମଜଭୁତ୍ ହୁଏ ।

ମୁଁ ବିରକ୍ତି ନ ଚପାଇ କହିଲି - 'ଫଳରସ - ଅଙ୍ଗୁର, ବେଦାନା ?' ମିଶ୍ରବାବୁ ଗମ୍ଭୀର ହୋଇ ମନାକଲେ । ଫେରି ଯାଉ ଯାଉ ଯାହା କହିଲେ, ତା'ର ସାରମର୍ମ ହେଲା ଯେ, ସପ୍ତାହକୁ ଥରେ ଭେଟନାରୀ ଡ଼ାକ୍ତରଖାନାକୁ ନେଇ ପରୀକ୍ଷା କରାଇଦେଇ ପାରିଲେ ଭଲ - ଏଗୁଡ଼ାଙ୍କର କୁଆଡ଼େ ପେଟରେ ଜିଆ ହୁଏ ।

ଏ ଭିତରେ ପିଲାମାନେ ଫୁଲକଢ ସବୁ ଛିଣ୍ଡାଇ ଫେରିଯାଇସାରିଥିଲେ । ଧାରା କୁକୁର ପାଖରେ ବସି ତା' ସାଙ୍ଗରେ କଣ ସବୁ ଗପସପ ହେଉଥିଲା । ଇଏ ପଚାରିଲେ - 'କ'ଣ ଏଇଟାକୁ ରଖିବ ?' ମୁଁ ଭାଲୁ ଲାଙ୍ଗୁଡ଼ କିପରି ଧରାଯାଏ ସେ କଥା ତାଙ୍କୁ ବୁଝାଇଦେଲି ।

ଦିନବେଳେ କୁକୁରଟି ଦୁନିଆ ଉପଭୋଗ କରୁଥିଲା ପରି ମନେହେଲା । କିନ୍ତୁ ରାତିରେ ଯେତେବେଳେ ସେ ଅନବରତ 'କେଁ - କେଁ' କରିବସିଲା ବାଧହୋଇ ଗୃହକର୍ତ୍ତ୍ରୀଙ୍କ ବିରୋଧସତ୍ତ୍ୱେ ତାକୁ ଘର ଭିତରକୁ ନେଇଆସିଲୁ । ସେ ରାତିରେ ସେ ଘରଯାକ 'ଏକ' କରିଥିଲା, ଆଉ ବିଶେଷକରି ପଟିଉପରେ 'ଦୁଇ' କରିଥିଲା ବୋଲି ସମସ୍ତେ ବିରକ୍ତ ହୋଇଥିଲୁ । ତଥାପି ରାତିରେ ସେ କେଁ କେଁ ରୁ ରକ୍ଷାପାଇବା ପାଇଁ ଅନ୍ୟ ରାତିରେ ମଧ୍ୟ ତାକୁ ଘର ଭିତରେ ହିଁ ଆଶ୍ରୟ ଦେବାକୁ ହେଲା ।

ସମୟ କାହାକୁ ଅପେକ୍ଷା କରେନି । କୁକୁରଟି ଅବା ସବୁଦିନେ ଛୁଆହୋଇ ରହନ୍ତା କିପରି - ଟିକିଏ ବଡ଼ ହୋଇଗଲା, ଆଉ ଘରର ଯାବତୀୟ ଆସବାବ ପ୍ରଭୃତିର କଠିନତା ପରୀକ୍ଷା କରିବସିଲା । ନୂଆ ସୋଫା ସେଟ୍‌ର ଗୋଡ଼, ଟେବୁଲ ଚୌକିର ଗୋଡ଼ ସବୁ ପରୀକ୍ଷାକଲା ପରେ ଯେଉଁଦିନ ସେ ଗୃହକର୍ତ୍ତ୍ରୀଙ୍କ ଚଟିର ଚୁଟି କାଟିଦେଲା - ସେ ଦିନ ମୁଁ ତା' ପାଇଁ ଚିନ୍ତିତ ହୋଇପଡ଼ିଥିଲି । ମଣିଷର ସେପରି ଅବସ୍ଥା ହୋଇଥିଲେ ମହାମୃତ୍ୟୁଞ୍ଜୟ ମନ୍ତ୍ର ଜପ କରିବା ପାଇଁ ପରାମର୍ଶ ଦିଆଯାଇଥାଆନ୍ତା । ଯା' ହେଉ, ସେ ଅବସ୍ଥା ମଧ୍ୟ ନିର୍ବିଘ୍ନରେ କଟିଗଲା ।

ଧାରା ଆଉ ତା' 'ଭୋ ଭୋ'ର ବନ୍ଧୁତ୍ୱ ଏ ଭିତରେ ବେଶ୍ ଗାଢ଼ ହୋଇ ଯାଇଥାଏ । କୁକୁରର ମୁଣ୍ଡଧରି ଧାରା ଯେପରି ଚୁପ୍ ଚୁପ୍ କେତେ ଗୁପ୍ତକଥା କହେ । କୁକୁର କ'ଣ ବୁଝେ କେଜାଣି ଲାଞ୍ଜ ହଲାଇ ସବୁ ଶୁଣେ, ଆଉ ବେଳେ ବେଳେ ତା' ମୁହଁକୁ ଚାଟିବାକୁ ଚେଷ୍ଟାକରେ । ମୁଢ଼ି, ବିସ୍କୁଟ୍, ଚକୋଲେଟ୍ ସବୁର ଭାଗ କୁକୁରକୁ ମିଳେ, ଆଉ ବେଳେବେଳେ ଧାରା ନିଜ ଟିକି ହାତରେ କୁକୁର ମୁହଁରେ ସେ ସବୁ ଭର୍ତ୍ତି କରିଦିଏ ।

କୁକୁରକୁ ନେଇ ଆମ ସଂସାର ଏମିତି କୌଣସି ମତେ ଚାଲିଥିଲା । ହଠାତ୍ ଦିନେ ରାତିରେ କୁକୁର ଯେତେବେଳେ ଭୁକିବାକୁ ଯାଇ ଭୋ ... ଓ ...ଓ...ଓ ...ଓ'

ଆରମ୍ଭ କଲା – ମୁଁ ତାଙ୍କ ଆଡ଼କୁ ଚାହିଁଲି, ଆଉ ସେ ମୋ ଆଡ଼କୁ ଚାହିଁଲେ । ତାଙ୍କର 'ଏ ତ ଖାଣ୍ଟି ଦେଶୀ –'କୁ ମୁଁ ଜବାବ ଦେଲି 'ଶତକଡ଼ା ଶହେ ... ।'

ମୁଁ ଜାଣିଥିଲି ଏକଥା ମିଶ୍ରବାବୁଙ୍କୁ କହି କିଛି ଲାଭନାହିଁ । ସେ ବରଂ ଦେଶୀ ସପକ୍ଷରେ ମହାତ୍ମା ଗାନ୍ଧୀଙ୍କ ବାଣୀ ସବୁ ଉଦ୍ଧାରକରି ବସିବେ ଓ ଯୁଧିଷ୍ଠିରଙ୍କ ସାଙ୍ଗରେ ଯେଉଁ କୁକୁର ସ୍ୱର୍ଗକୁ ଯାଇଥିଲା ସେ ମଧ୍ୟ ଖାଣ୍ଟି ଦେଶୀ ବୋଲି ଯୁକ୍ତି ବାଢ଼ିବେ । ଠିକ୍ କଲୁ ତା' ଆରଦିନ କୁକୁରକୁ ବାରପାହାଡ଼ ସେ ପାଖ କୌଣସି ଗାଁରେ ଛାଡ଼ିଦିଆଯିବ ।

ସେଇୟା ହିଁ ହେଲା । ଦିନ ଦି'ପହରରେ ବାଲାଜୀ ଫେରିଆସି କହିଲା ଯେ, କଣ୍ଟାପାଲିର ଗୋଟାଏ ଛୋଟ ହୋଟେଲ୍ ପାଖରେ କୁକୁରକୁ ଛାଡ଼ିଦେଇ ଆସିଛି । ହାଲୁକା ଲାଗିଲା – ସତେ ଯେମିତି ଗୋଟାଏ ପୁରୁଣା ମୁଣ୍ଡବଥା ଯାଇଛି । ଧାରା ସନ୍ଧ୍ୟାବେଳେ ତା'ର ଭୋ' ଭୋ' କୁ ଚାରିଆଡ଼େ ଖୋଜିବୁଲୁଥାଏ । ମୁଁ କିନ୍ତୁ ମନର ଦୁର୍ବଳତାକୁ ପ୍ରଶୟ ଦେବା ଠିକ୍ ନୁହେଁ ବୋଲି ଦୃଢ଼ ନିଶ୍ଚିତ ଥିଲି ।

ରାତିଟା ଟିକିଏ ଆଶ୍ୱସ୍ତିକର ଲାଗିଲା – ତେବେ କିଛିସମୟ ପାଇଁ ।

ସକାଳେ ଯେତେବେଳେ ମୁଁ କାମକୁ ଯିବାକୁ ବାହାରିଲି, ଦେଖିଲି ଧାରା କୁକୁର ସାଙ୍ଗରେ ବଗିଚାରେ ଖେଳୁଚି । ଆଶ୍ଚର୍ଯ୍ୟ ହେଲି । ଇଏ କହିଲେ – ରାତିଅଧରେ ହିଁ କୁକୁର ପାହାଡ଼ ଡ଼େଇଁ ଫେରିଆସିଛି ।

ନିମକହାରାମ ବାଲାଜୀ ଯେ ସେ ଗାଁରେ କୁକୁରକୁ ଭଲକରି ବାନ୍ଧିନଥିଲା, ସେଥିପାଇଁ ମନ ଭିତରେ ପୁଞ୍ଜୀଭୂତ ବିରକ୍ତି ନେଇ ଓ ମିଶ୍ରବାବୁ ଏମିତି ଗୋଟାଏ ଭାଲୁ ଲାଙ୍ଗୁଡ଼ ଧରାଇଦେଇଥିବାରୁ ତାଙ୍କୁ ଅପଦାର୍ଥ ବୋଲି ଗାଳିଦେଇ ମୁଁ ମୋ କାମକୁ ଚାଲିଗଲି ।

କାଛୁ କୁଣ୍ଡିଆ ରୋଗଗ୍ରସ୍ତ ମଣିଷ କର୍ମକୁ ଆଦରି ଦେହ ହାତ କୁଣ୍ଡେଇ କୁଣ୍ଡେଇ ପଡ଼ିରହିଲା ପରି କୁକୁର-ବ୍ୟାଧିଗ୍ରସ୍ତ ଆମେ କୁକୁରକୁ ଆଦରି ପଡ଼ିରହିଲୁ । ବିଶେଷ ପରିବର୍ତ୍ତନ ବିନା ସମୟ ଗଡ଼ିଚାଲିଲା । ହଠାତ୍ କିନ୍ତୁ ପରିବର୍ତ୍ତନ ଦେଖାଦେଲା ଗୋଟିଏ ବିରାଟ ରୂପ ନେଇ । ଗୋଟିଏ ଶୁଭ ରବିବାରର ଦି'ପହର ବେଳେ ଦେଖାଗଲା ଯେ, କୁକୁର ନାହିଁ । ଯେଉଁଠି ଥିଲେ ବି ଖାଇବା ପାଇଁ ତ ବଳେ ଆସିବ ! ସେତିକିରେ ହିଁ କଥାଟି ସରିଯାଇଥାଆନ୍ତା, କିନ୍ତୁ ବାଲାଜୀ ଡ଼ରି ଡ଼ରି ପ୍ରକାଶ କଲା ଯେ ମ୍ୟୁନିସିପାଲିଟିର ମେହେନ୍ତରମାନେ କୁକୁରଗାଡ଼ିରେ ତାକୁ ଆଜି ରାସ୍ତାରୁ ଧରି ନେଇଛନ୍ତି ବୋଲି ସେ ଶୁଣିଛି । ବିଚରା କୁକୁରର କୁକୁରଲୀଳା ଯେ ଏପରି

ଭାବରେ ସାଙ୍ଗହେବ, ଆମେ କଳ୍ପନା ମଧ୍ୟ କରିନଥିଲୁ । ଖବର ଶୁଣି 'ଇଏ' ମୁହଁ ଶୁଖାଇଦେଲେ । ମୁଁ ମଧ୍ୟ ମୁହଁ ଶୁଖାଇବାକୁ ଚେଷ୍ଟା ଯେ ନ କରିଛି ତା' ନୁହେଁ, କିନ୍ତୁ ଏମାନେ ଯେ କାହିଁକି ସବୁବେଳେ ଗୋଟାଏ ଛିଦ୍ର ବାହାର କରନ୍ତି କେଜାଣି - ଇଏ କହିଲେ ମୁଁ କୁଆଡ଼େ ଖୁସିର ଭାବ ଚାପି ରଖିପାରୁନଥିଲି ।

ସନ୍ଧ୍ୟା ଆଗତପ୍ରାୟ ।

ଘର ଭିତରେ ବସି ମୁଁ ଚା' ପିଉଛି । ମନେହେଲା କିଏ ଜଣେ କବାଟ ଠକ୍ ଠକ୍ କଲା । ବାହାରକୁ ଆସିଲି । କିଏ ଜଣେ ଅଚିହ୍ନା ଲୋକ ମୋ ହାତକୁ ଚିଠି ଖଣ୍ଡିଏ ପଢ଼ାଇଦେଲା । ମ୍ୟୁନିସିପାଲିଟି ଅଫିସର୍ ଲେଖିଛନ୍ତି -

'ମହାଶୟ,

ଆମ ମେହେନ୍ତରମାନେ ଭୁଲ୍‌ରେ ଆପଣଙ୍କ କୁକୁରକୁ ରାସ୍ତାର ବୁଲା କୁକୁର ବୋଲି ଭାବି ନେଇଆସିଥିଲେ । ଭାଗ୍ୟକ୍ରମେ ମିଶ୍ରବାବୁ କୁକୁରକୁ ଦେଖିପାରି ଆପଣଙ୍କ ଆଲ୍‌ସେସିଆନ୍ ବୋଲି ଆମର ଦୃଷ୍ଟି ଆକର୍ଷଣ କଲେ । ମିଶ୍ରବାବୁ ଯାହା କହନ୍ତୁ ପଛକେ କୁକୁର ବେକରେ ଶୀଘ୍ର ପଟି ପିନ୍ଧାଇବେ । ନହେଲେ ଭବିଷ୍ୟତରେ ଏପରି କେବେ ଘଟିଲେ ଦୁର୍ଘଟଣା ପାଇଁ ଆପଣ ମ୍ୟୁନିସିପାଲିଟିକୁ ଦାୟୀ କରିବେନାହିଁ ।'

ଚିଠି ପଢ଼ିସାରି ଆଖି ଯେତେବେଳେ ବୁଲାଇଆଣିଲି, ଦେଖିଲି କୁକୁରଟି ପାଖ ମନ୍ଦାର ଗଛରେ ବନ୍ଧାହୋଇଛି । ମୋତେ ଅନାଇ କୁକୁରଟି ସାମାନ୍ୟ ଲାଞ୍ଜ ହଲାଇଲା, କିନ୍ତୁ ବୋଧହୁଏ ମୋ ପାଖରୁ କୌଣସି ପ୍ରତିକ୍ରିୟା ଲକ୍ଷ୍ୟ ନକରି ଲାଞ୍ଜହଲା ବନ୍ଦକରି ହାଇମାରି ବସିଲା ।

ଠିକ୍ ଏତିକିବେଳେ ଧାରା ଘର ଭିତରୁ ତାର ଟିକି ଯୋତା ଫଟ୍ ଫଟ୍ କରି ବାହାରକୁ ଆସିଲା । କୁକୁରକୁ ଦେଖିଲାକ୍ଷଣି 'ଭୋ ଭୋ ଲେ...' କହି ସେ ଯେମିତି ତା' ପାଖକୁ ଦଉଡ଼ିଯିବାକୁ ଆରମ୍ଭ କରିଛି, କୁକୁର ଏକା ଝପଟାରେ ତା' ବେକର ଦଉଡ଼ି ଛିଣ୍ଡାଇ ଧାରା ପାଖରେ ପହଞ୍ଚିଗଲା, ଆଉ ତା' ଟିକି ଦେହରେ ଦି' ଗୋଡ଼ ଲଦି ମୁହଁ ଚାଟିବାକୁ ଚେଷ୍ଟାକଲା । ଧାରା ତଳେ ପଡ଼ିଗଲା କିନ୍ତୁ ସେମିତି ପଡ଼ିଥିବା ଅବସ୍ଥାରେ ବି କୁକୁରର ମୁଣ୍ଡକୁ ଧରିବାକୁ ଚେଷ୍ଟା କରୁଥାଏ, ଆଉ 'ଭୋ ଭୋ ଲେ...' ବୋଲି ଡ଼ାକୁଥାଏ ।

କୁକୁର ହଠାତ୍ ଧାରାକୁ ଛାଡ଼ି ତୀରବେଗରେ ବଗିଚା ଆଡ଼କୁ ଦଉଡ଼ିଗଲା । କିଛି ବାଟରୁ ପୁଣି ଧାରା ପାଖକୁ ଛୁଟିଆସି ତା' ଗୋଡ଼ ପାଖରେ ଶୋଇପଡ଼ିଲା । ଧାରା

ତା' ଫ୍ରକ୍ ପକେଟ୍‌ରୁ ବିସ୍କୁଟ୍‌ଟିଏ ବାହାର କଲାକ୍ଷଣି କୁକୁର ବିସ୍କୁଟ୍‌କୁ ପାଟିରେ ଝାମ୍ପି ନେଇ ବଗିଚା ଆଡ଼କୁ ଦଉଡ଼ିଗଲା, ଆଉ ସେମିତି ତୀରବେଗରେ ଲେଉଟିଆସି ଧାରାର ମୁହଁ ପାଖରେ ବିସ୍କୁଟଟି ଗୁଞ୍ଜି ଧରିଲା । ଧାରା ସଂଗେ ସଂଗେ ବିସ୍କୁଟ୍‌ର ବାହାର ଫାଳ ଖାଇନେଲା । କୁକୁର ପୁଣି ଖଣ୍ଡେ ବାଟ ଦଉଡ଼ିଗଲା, ଆଉ ତା' ପଛରେ ଦଉଡ଼ିଗଲା ଧାରା ।

କିଛି ଗୋଟାଏ ଶବ୍ଦ ଶୁଣି ମୁଁ ଅନାଇଲି । ଧାରାର ମା' ବାରନ୍ଦା ପାଖରେ କାନ୍ଥକୁ ଆଉଜି ଏ ଦୃଶ୍ୟ ଦେଖୁଛନ୍ତି ଆଉ ତାଙ୍କ ଆଖିରୁ ଲୁହଧାର ଗଡ଼ିଯାଉଛି । ମୁଁ ମୋର ଜକେଇଆସିଥିବା ଆଖି ଫେରାଇନେଲି ରାସ୍ତା ଆଡ଼କୁ ।

ହଠାତ୍ ନଜରପଡ଼ିଲା ମିଶ୍ରବାବୁଙ୍କ ଉପରେ। ସେ ଧୀର ମନ୍ଥର ଗତିରେ ଆମ ଘର ଆଡ଼କୁ ମୁହାଁଇଛନ୍ତି । ମିଶ୍ରବାବୁଙ୍କ ପାଇଁ ଭଲ ଚା' କପେ ତିଆରି କରିବା ପାଇଁ ଯା'ଙ୍କୁ ଯେତେବେଳେ କହିଲି ସେ ଆଖି ପୋଛୁ ପୋଛୁ ଅସ୍ପଷ୍ଟ ସ୍ୱରରେ କହିଲେ - 'ସ୍କୁଲ ପାଖରେ ଗୋଟିଏ ଝୁମ୍ପୁଡ଼ି ଦୋକାନରେ ଭଲ ବରା ପିଆଜି ମିଳୁଛି, ସେ ବାଲାଜିକୁ ପଠାଇ ମିଶ୍ରବାବୁଙ୍କ ପାଇଁ କିଛି ନେଇଆସିବ ।'

ଦେଖିଲି ମିଶ୍ରବାବୁ ବଗିଚାର ଲନ୍ ଭିତରକୁ ଧପାଲିଛନ୍ତି । କୁକୁର ସେତିକିବେଳେ ଠିକ୍ ଧାରା ପାଖକୁ ଆସି ପୁଣି ଦୂରକୁ ଛୁଟିଯାଉଥିଲା । ମିଶ୍ରବାବୁ ହସି ହସି ତାଳିମାରି ପାଟିକଲେ - 'ଧର ଧର ଲାଞ୍ଜକୁ ଧର ।' ମୁଁ ସେ ଆଡ଼ିକି ଚାହିଁଲି - ଧାରା, କୁକୁର ଆଉ ମିଶ୍ରବାବୁ ସମସ୍ତେ ଏକା ଦିଶୁଥିଲେ - ଠିକ୍ ଧାରା ପରି ସମସ୍ତେ ।

# ବୁଦ୍ଧଦେବବାବୁଙ୍କ ଦେଶପର୍ଯ୍ୟଟନ

ବୁର୍ଲାରୁ ବରଗଡ଼ ଗଲାବେଳେ ସିଧା ଚିପିଲିମାକୁ ନଯାଇ ବାଟ ଯେଉଁଠି ଡ଼ାହାଣ ଆଡ଼ିକି ବଙ୍କେଇଯାଇଛି, ସେଇ ଗୋଶାଳାର ମୁହାଁମୁହିଁ ହିଁ ଘଟଣାଟି ଘଟିଲା। ଡ୍ରାଇଭର ଯେତେବେଳେ କଷିକରି ବ୍ରେକ୍ ମାରିଦେଲା, ବୁଦ୍ଧଦେବବାବୁ ତାଙ୍କ ସିଟ୍‌ରୁ ଛିଟିକିପଡ଼ିଲେ, କିନ୍ତୁ ସେତେବେଳକୁ ସେ ଭଗବାନଙ୍କ ଅଦ୍ଭୁତ ସୃଷ୍ଟିର ବିଚିତ୍ର ଲୀଳା ସମ୍ବନ୍ଧରେ ଗଭୀର ଚିନ୍ତାକରି ମଧ ତହିଁର ରହସ୍ୟ ଭେଦକରିନପାରି ଫଁ ନିଶ୍ୱାସ ମାରିସାରିଥିଲେ ।

ବୁର୍ଲା ଛାଡ଼ିସାରିଲା ପରେ ସାତ ମାଇଲଯାକ ବାଟ ସେ ଗାଡ଼ି ପଛପଟର ବାଁ ପାଖ ଦରଜା ନିକଟରେ ବସି ଦରଜାର ଝରକା ଦେଇ ବାହାରକୁ ଅନାଇଥିଲେ, ଆଉ ମନକୁ ମନ ଆଲୋଚନା କରୁଥିଲେ ଯେ, ଯିଏ ଏଇ ଅଦ୍ଭୁତ ଇଭ୍‌ମାନଙ୍କୁ ସୃଷ୍ଟିକରିଛି ତାଙ୍କୁ ସେ କିପରି ଭାବରେ ଗାଳିଦେବେ ମାଇପି ଜାତି ଯେ ମାତୃରୂପିଣୀ ସେ କଥା ସେ କସ୍ମିନ୍‌କାଳେ ଅସ୍ୱୀକାର କରିନାହାନ୍ତି । ସେମାନେ ଯେ, ଶକ୍ତିରୂପିଣୀ ସେ ଜ୍ଞାନ ତାଙ୍କ ନିଜ ବ୍ୟକ୍ତିଗତ ଅଭିଜ୍ଞତାପ୍ରସୂତ । ସେମାନେ ନଥିଲେ ମଣିଷଜାତି ଯେ ନଥାନ୍ତା, ସେକଥା ସେ ଦୁଃଖର ସହିତ ମାନିନେବାକୁ ବାଧ ହୋଇଛନ୍ତି । ଆଉମଧ ସେ ଉପଲବ୍ଧ କରିଛନ୍ତି ଯେ, ରବିବାର ଦିନରେ କେବେ କେବେ ତାଙ୍କୁ ଯେଉଁ ବଢ଼ିଆ କଲିଜାସନ୍ତୁଳା କିମ୍ବା ଟଟକା ମାଛଭଜା, ଅଥବା ଭଲ ବେସର ମହୁର ଟିକିଏ ମିଳେ, ଏଇ ମାଇପି ଜାତି ନଥିଲେ ତାଙ୍କ ପକ୍ଷରେ ସେ ମହାର୍ଘ ସୌଖୀନତା ହୁଏତ ସମ୍ଭବପର ହୁଅନ୍ତାନାହିଁ। ତଥାପି ଏମାନେ କାହିଁକି ଯେ, ବେଳ ହେଉ ଅବେଳ ହେଉ ସାଂଗଟିଏ ଜୁଟିଗଲେ ପାନବଟୁଆ ଆଉ ଗୁଆକାତି ଧରି ବସିଯାଆନ୍ତି, ଆଉ ସେତେବେଳେ ସାରା ସଂସାରକୁ ଓ ସେ ସଙ୍ଗରେ ବୁଦ୍ଧଦେବ ବାବୁଙ୍କୁ ଆଉ ତାଙ୍କ ମିନି ଓ ଟୁନାକୁ ପୁରାପୁରି ମନରୁ ପୋଛି ଲିଭାଇଦିଅନ୍ତି, ସେ କଥା ଆଦୌ ସେ ବୁଝିପାରିନ୍ତିନି ।

ଏଇ କେତେ ଦିନ ତଳର କଥା। ମିନି ମା ଯେତେବେଳେ କହିଲେ, ତ୍ରିପାଠୀଙ୍କ ସ୍ତ୍ରୀ କାଶ୍ମୀର ବୁଲି ଆସିଲେଣି, ମହାନ୍ତିଙ୍କ ସ୍ତ୍ରୀ କନ୍ୟାକୁମାରୀ ଯାଇଛନ୍ତି, ଆଉ ସେ

ବୋହୂ ହୋଇଆସିଲା ଦିନୁ ପୋଇଲି ପରି ଏଇ ଘରେ ...' ବାକ୍ୟ ନ ସରୁଣୁ କଥା କେଉଁଆଡ଼କୁ ଗତିକରୁଛି ଠଉରାଇ ବୁଦ୍ଧଦେବବାବୁ ଘୋଷଣା କରିଦେଇଥିଲେ ଯେ, ଆସନ୍ତା ଶନିବାର ରବିବାର ସେ ନିଶ୍ଚୟ ମିନି ମା'ଙ୍କୁ ଧରି ଦେଶପର୍ଯ୍ୟଟନରେ ବାହାରିବେ । ଅର୍ଥ ଅଭାବରୁ ହେଉ ଅଥବା ଛୁଟି ଅଭାବରୁ ହେଉ, ଝାରସୁଗୁଡ଼ା ତଥା କାଶ୍ମୀର-କନ୍ୟାକୁମାରୀ ଆଡ଼ିକି ତ ସବୁବେଳେ ଯୋଗିନୀ, ସେ ଦିଗକୁ ତେଣୁ ଯାତ୍ରାଦି ଶୁଭକର୍ମ ନାସ୍ତି । ଅଗତ୍ୟା ଠିକ୍ ହେଲା ଯେ, ରଘୁବାବୁଙ୍କର ଅନେକ ଦିନର ଯେଉଁ ଠିଆ ନିମନ୍ତ୍ରଣ ରହିଛି, ତାର ସଦ୍‌ବ୍ୟବହାର କରାହେବ । ଶନିବାର ଦିନ ସମସ୍ତେ ଯିବେ ରେଢାମୁଣ୍ଡା । ରାମପୁର - ରଘୁବାବୁଙ୍କ ସବ୍‌ଡ଼ିଭିଜନ୍‌ର ହେଡ଼କ୍ୱାଟର୍ସ - ଆଉ ସେଇଠି ରବିବାର କଟାଇ ଆସିବେ ।

ନାଁଟି ବେଶ୍ ଆକର୍ଷଣୀୟ ଶୁଣାଯାଉଥିଲେ ମଧ୍ୟ ରାମପୁର ଯେ, ମହାନଦୀ କୂଳରେ ଏକ ବୁଦୁବୁଦିକିଆ ଜଙ୍ଗଲ ଭିତରେ ଅବସ୍ଥିତ ଗୋଟାଏ ଛୋଟ ଗାଁ , ସେ କଥା ବୁଦ୍ଧଦେବ ବାବୁ ଜାଣିଥିଲେ । ଚିପିଲିମା ଆଉ ସୋନପୁର ମଝିରେ ସେ ଗାଁ । ବରଗଡ଼-ବଲାଙ୍ଗୀର ରାଜପଥରୁ ସେଠାକୁ ଯିବାପାଇଁ କେନାଲ କୂଳରେ ବଳଦଗାଡ଼ି ଯିବା ଧରସା ହିଁ ଏକମାତ୍ର ବାଟ - ବନ୍ଧ ଯୋଜନାର କୃପାରୁ ଖାଲ ଢ଼ିପ ଟିକିଏ ମରାମତି ହୋଇଛି ଯାହା । ସେଥିପାଇଁ ସେ ରାସ୍ତାରେ ଜିପ୍ ସହଜରେ ଯାଉଥିଲେ ମଧ୍ୟ କାର୍ ଯିବାରେ ଯେ ଟିକିଏ ଅସୁବିଧା, ସେ କଥା ବୁଦ୍ଧଦେବବାବୁ ଭଲକରି ଜାଣିଥିଲେ । ବୁର୍ଲାରୁ ରାମପୁର ପ୍ରାୟ ୭୫ ମାଇଲ । ଆଗରୁ ଖବର ଦିଆହେଇପାରିନି । ଡ଼େରିରେ ପହଞ୍ଚିଲେ ଗାଁରେ ସୁବିଧା ଅସୁବିଧା କେତେ କଥା । ହୁଏତ ଆଉ ଗୋଟାଏ ଲଣ୍ଠନ ପାଇଁ କିରୋସିନି ନଥିବା - କିରୋସିନି ଥିଲେ ଲଣ୍ଠନରେ ବତି ନଥିବ । ଏଇଟା ତ କାଶ୍ମୀର କିମ୍ବା କନ୍ୟାକୁମାରୀ ହୋଇନି ଯେ, ଦଉଡ଼ିଯାଇ ପଇସା ପକାଇ ଲଣ୍ଠନ ବତି ନେଇ ଆସିବ! ତେଣୁ ସନ୍ଧ୍ୟାପୂର୍ବରୁ ରାମପୁରରେ ପହଞ୍ଚିବାକୁ ହେଲେ ଦିନ ତିନିଟା ବେଳେ ଘରୁ ବାହାରିପଡ଼ିବା ଯେ, ନିହାତି ଦରକାର ସେ କଥା ପ୍ରାଞ୍ଜଳଭାବରେ ବୁଝାଇଦେଇ ବୁଦ୍ଧଦେବ ବାବୁ ବାରମ୍ବାର ତାଗିଦ୍ କରିଦେଇଥିଲେ ଯେ ତାର ଯଥେଷ୍ଟ ପୂର୍ବରୁ ସମସ୍ତେ ପ୍ରସ୍ତୁତ ହୋଇଯାଇଥିବେ, କିନ୍ତୁ ହେଲା କ'ଣ!

ସତେ ଯେମିତି ଆଉ କୌଣସି ଦିନ ନଥିଲା - ଦୁଇଟା ପଚିଶ୍ ମିନିଟ୍‌ରେ ଭଦ୍ରମହିଳା ଆସି ପହଞ୍ଚିଗଲେ । ବୁଦ୍ଧଦେବ ବାବୁ ପ୍ରମାଦ ଗଣିଲେ । ରନ୍ଧାଘର ବାରଣ୍ଡାରେ ସପ ପଡ଼ିଲାବେଳକୁ ମିନିକୁ ଉଦ୍ଦେଶ୍ୟ କରି, ସେ ସମସ୍ତେ ଶୁଣିଲା ପରି ତାଙ୍କ ତିନିଟାବେଳର ପ୍ରୋଗ୍ରାମ ଦୋହରାଇ ଦେଲେ । କିନ୍ତୁ କିଛି ଫଳ ହେଲାନି ।

କାହାଘରେ କେତେ ସୋରିଷ ଫୁଟିଲା, ପୂଜା ବେଳେ କିଏ କେମିତି ଗହଣା ପିନ୍ଧିଲା, କାହାକୁ କିଏ କେମିତି ନୂଆ ଶାଢ଼ୀ କିଣିଦେଇଛି - କାହା ଘରେ କାହାର ଆଡ୍ଡା, କାହା ଝିଅ ବାହାଘର କେଉଁଠି ପଡ଼ିଛି କଥା ଭିତରେ ସମୟ ଗଡ଼ିଚାଲିଲା ।

ତିନ୍ ବାଜିବାକୁ ଆଉ ପାଞ୍ଚ ମିନିଟ୍ ବାକି - ବାସୁ ସାଇକେଲ ଧରି ବାହାରିଲା ବଜାରକୁ ସାଚିପାନ, ନମିଳିଲେ କପୁରି ପାନ ପଚିଶ ପତ୍ର କିଣି ଆଣିବାପାଇଁ । ଅବସ୍ଥା କେଉଁଆଡ଼ିକି ମୁହାଁଇଛି ବୁଝିପାରି ବୁଦ୍ଧଦେବବାବୁ ପାଟିକରି କହିଉଠିଥିଲେ- 'ବାବୁ ବାସୁଦେବ, କପୁରି ପାନ ବି ଯଦି ନମିଳେ ବଙ୍ଗଳା ପାନ ଆଣିବ ।' ସେ ବୁଝିଥିଲେ ଯେ, ଏ ଜାତିଟି ଯେମିତି - ବାସୁ ଯେତେବେଳେ ଏ ସୁଯୋଗରେ ତା'ର ବନ୍ଧୁମାନଙ୍କ ସଙ୍ଗରେ ଆଡ୍ଡା ମାରି ୩.୧୫ କି ୩.୨୫ ଆଡ଼ିକି ଫେରିଆସି କହିବ ଯେ, ସାଚି ପାନ କିମ୍ବା କପୁରି ପାନ ବଜାରରେ ମିଳୁନି, ତାକୁ ସେତିକିବେଳେ ଆଦେଶ ଦିଆହେବ - 'ବଙ୍ଗଳା ପାନ ହେଲେ ଆଣିବୁ ଯା ।'

ତିନିଟା ତିରିଶ ବେଳକୁ ବଙ୍ଗଳା ପାନପତ୍ରରେ ମୋଞ୍ଚାଏ ପାଣ୍ଡିଆ ସୁବୁଦ୍ଧି ଗୁଣ୍ଡି ଆଉ ଲକ୍ଷ୍ମୀ ଟେବ୍‌ଲେଟ୍, ଜାଫରାନି ପତ୍ତି ଜରଦା ଆଉ କଣସବୁ ଦେଇ ଭଦ୍ରମହିଳା ଯେତେବେଳେ ପାନ ଖାଇଲେ, ବୁଦ୍ଧଦେବବାବୁ ଆଶା କଲେ ଯେ, ଏଥର ଅନ୍ତତଃ ଶେଷଦୃଶ୍ୟର ଯବନିକା ପତନ ହେବ । ଭଦ୍ରମହିଳା ଉଠିଲେ ମଧ୍ୟ 'ତମର ପରା ରାମପୁର ଯିବାର ଅଛି, କହି କିଛିବାଟ ଆଗେଇ ଗଲେ, ତା'ପରେ ହଠାତ୍ ବୁଲିପଡ଼ି କହିଲେ - 'ତମେ ତ ଲିଲିଅପାକୁ ଚିହ୍ନିଛ । ତାର ନଣନ୍ଦେଇର ପିଉସୀ ପରା ତମ ଗାଁ ପାଖ ଗାଁରେ ପଡ଼ିଛି । ସେ ଯୌତୁକ କ'ଣ ସବୁ ନେଲାନି ବୋଲି ଯେଉଁ କାଣ୍ଡ...' ?

ଠିକ୍ ଚାରିଟାବେଳକୁ ବୁଦ୍ଧଦେବବାବୁ ସେହି ମହିଳାଙ୍କୁ ଶୁଣାଇବା ଉଦ୍ଦେଶ୍ୟରେ ମିନିକୁ କହିଲେ - 'ମିନି, ଅନେକ ଡେରି ହେଇଗଲାଣି । ଗଲୁ ତୋ ମା'ର ବେଗ୍‌ଫେଗ୍ କଣ ସବୁ ଅଛି ନେଇଆସିବୁ !' ଆଉ ଟୁନାକୁ ଅର୍ଡ଼ର ଦେଲେ - 'ଯା, ସବୁ ଜିନିଷ ଗାଡ଼ିରେ ଲୋଡ୍ କର୍ ।'

ଭଦ୍ରମହିଳା ବୋଧହୁଏ କଥାର ଗୁରୁତ୍ୱ ବୁଝିଲେ । କହିଲେ - 'ହଉ ଭଉଣୀ, ଯାଉଛି, ତମ ବାବୁ ବେଶ୍ ବ୍ୟସ୍ତ ହେଲେଣି । ରାମପୁରରୁ ଫେର - ଗପସପ ହେବା । ଆମ ବାବୁ କହୁଥିଲେ ରାମପୁରରେ କୁଆଡ଼େ ଭଲ ଚୂଡ଼ା ମିଳେ । ଖାଲି ତମ ପାଇଁ ଆଣିଲେ ଚଳିବନି - ମୋ ପାଇଁ ବି ଆଣିବ - ମୁଁ ପଇସା ଦେଇଦେବି ଯେ !'

ଚାରିଟା କୋଡ଼ିଏରେ ସମସ୍ତେ କାର୍‌ରେ ବସି ସାରିଲା ପରେ ଦେଖାଗଲା ମିନିମା'ଙ୍କ ଅଣ୍ଟାରେ ଚାବିପେନ୍ଥା ନାହିଁ । ହାତ ବେଗ୍ ଖୋଜାଖୋଜି ସରିଲା ପରେ ଆଉ ଯେତେସବୁ ବେଗ୍, ଝୁଡ଼ି, ଏଟେଚି, ଗାଡ଼ିର ଉପର ତଳ ସବୁ ଖୋଜାହେଲା, ଆଉ ଶେଷରେ ଠିକ୍ ହେଲା ଯେ, ଘର ଭିତରେ ଛାଡ଼ିଦେଇ ବୋଧହୁଏ ସେ ତାଲା ଚିପି ଦେଇଛନ୍ତି । ବାକ୍ସର ଚାବି ସେ ପେନ୍ଥାରେ । ତାଲା ନ ଭାଙ୍ଗିଲେ ଉପାୟ ନାହିଁ । ଗାଡ଼ିରୁ ଓହ୍ଲାଇ ସମସ୍ତେ ଚାଲିଲେ ଘରଆଡ଼କୁ । ବାଟରେ ହିଁ ଝୁମ୍‌ଝୁମ୍ ଆବାଜ୍ ଶୁଣି ଟୁନା ତା' ମା'ଙ୍କ ଅଣ୍ଟାର ବାଁ ପଟେ ଚାବି ପେନ୍ଥା ଆବିଷ୍କାର କଲା । ମିନି ମା' ତ ସବୁବେଳେ ଅଣ୍ଟାର ଡ଼ାହାଣ ପଟେ ଚାବି ପେନ୍ଥା ଖୋଷନ୍ତି, ତାଙ୍କ ବାଁ ପଟକୁ ପେନ୍ଥା ଗଲା କେମିତି ସେ ସମ୍ବନ୍ଧରେ କିଛି ଚର୍ଚ୍ଚା ହେଲାପରେ ନିଷ୍ପତ୍ତି ହେଲା ଯେ, ତରବର କଲେ ଏମିତି ହୁଏ । ସବୁକଥାରେ ଅନ୍ୟ ଉପରେ ଦୋଷ ଲଦିଦେବାର ତ ପୁଣି ଗୋଟିଏ ସୀମା ଅଛି ! ସାଧାରଣ ସମୟରେ ବୁଦ୍ଧଦେବ ବାବୁ ଏ ଅନ୍ୟାୟ ଦୋଷାରୋପର ତୀବ୍ର ପ୍ରତିବାଦ କରିଥାଆନ୍ତେ, କିନ୍ତୁ ତଦ୍ୱାରା ଘରୁ ବାହାରିବାରେ ଆହୁରି ଡ଼େରିହେବ ଜାଣି, ସେ ନିଜ ଦୋଷ ମାନିନେଲେ ।

ଆଉଥରେ ଗାଡ଼ିରେ ବସିଲା ପରେ ଯେତେବେଳେ ଗାଡ଼ି ଷ୍ଟାର୍ଟ ନେଲା, ସେତେବେଳକୁ ସମୟ ୪.୩୫ ।

ଗାଡ଼ିର ପଛପଟ ବାଁ ପାଖର ଝରକା ଦେଇ ବାହାରକୁ ଅନାଉଁଥିଲା ବେଳେ ବୁଦ୍ଧଦେବ ବାବୁ ଏକଥା ସବୁ ଭାବୁଥିଲେ, ଆଉ ମନକୁ ମନ ଭଗବାନଙ୍କ ଏ ବିଚିତ୍ର ସୃଷ୍ଟି ସମ୍ବନ୍ଧରେ ଚିନ୍ତା କରୁଥିଲେ । ସେହି ଅବସରରେ ହିଁ ସେ ସୃଷ୍ଟିର ରହସ୍ୟ ଭେଦକରି ନପାରି ପୂର୍ବୋକ୍ତ ଫଁ ନିଃଶ୍ୱାସ ମାରିଥିଲେ । ଠିକ୍ ସେତିକିବେଳେ ଡ୍ରାଇଭର୍ ହଠାତ୍ ଜୋର୍‌ରେ ବ୍ରେକ୍ କଷି ଦେଇଥିଲା, ଆଉ ସେ ଛିଟିକି ପଡ଼ିଲେ ।

ଭାଗ୍ୟକ୍ରମେ ବୁଦ୍ଧଦେବବାବୁ ଚଷମା ପିନ୍ଧିନଥିଲେ – ତେଣୁ ବିଶେଷକିଛି ଆଘାତ ଲାଗିଲାନି । ତାଙ୍କ କପାଳ ସାମନା ସିଟ୍‌ର ପଛପଟେ ପିଟିହୋଇଗଲା ।

ମିନିମା' କେତେବେଳେ ଘୁମେଇବାକୁ ଆରମ୍ଭ କରିଦେଇଥିଲେ । ଗାଡ଼ିରେ ବସିଲାକ୍ଷଣି ଦୁନିଆର ସବୁ ବୋଝ ବୋଧହୁଏ ତାଙ୍କ ମୁଣ୍ଡରୁ ଓହରିଯାଏ । ପାନଡ଼ବାରୁ ପାନ ଖଣ୍ଡିଏ ପାଟିରେ ପକେଇ ଦେଉ ନ ଦେଉଣୁ ସେ ଢୁଳେଇବା ଆରମ୍ଭ କରନ୍ତି, ଆଉ ମଝିରେ ମଝିରେ ଚମକିଉଠି କ'ଣହେଲା ବୋଲି ପଚାରିଦେଇ କିଛି ହୋଇନି ବୋଲି ଜାଣିଲେ ଆଶ୍ୱସ୍ତିର ଛୋଟ ହସଟିଏ ହସିଦେଇ ପୁଣି ଢୁଳେଇପଡ଼ନ୍ତି ।

ନିଦରୁ ଚମକି ଉଠି କିଛି ଗୋଟାଏ ବଡ଼ ଦୁର୍ଘଟଣା ଘଟିଗଲା ବୋଲି ସେ ଆତଙ୍କରେ ଚିତ୍କାର କରି ମିନି ଓ ଟୁନାକୁ ଦରାଣ୍ଡି ବସିଲେ । ମିନି ସାମ୍‌ନା ସିଟ୍‌ରେ

ବସି 'ଟାରଜାନ୍ ଅଫ୍ ଦି ଏପ୍ସ୍' ବହି ଗିଳିଯାଉଥିଲା । ତା' ମୁଣ୍ଡ ଗାଡ଼ିର ବାଁ ପଟ ଡ୍ରାଇଭରର ହେଣ୍ଡଲରେ ବାଡ଼େଇ ହୋଇ କପାଳରେ ଆବୁଟାଏ ଦେଖାଦେଲା । ଟୁନା ସାମ୍ନା କାଚ ପାଖରେ ଦୁଇହାତ ରଖି ବାହାରର ଦୃଶ୍ୟ ଦେଖୁ ଦେଖୁ ତା ନାନୀ ଶୁଣୁ ବା ନଶୁଣୁ ସେ ସବୁ ଦୃଶ୍ୟର ଗୋଟିଏ ଚଳନ୍ତି ଧାରାବିବରଣୀ ଦେଇଯାଉଥିଲା । ତା' ମୁଣ୍ଡ ସାମ୍ନା କାଚରେ ପିଟି ନହୋଇ ଅଳ୍ପକେ ରକ୍ଷାପାଇଗଲା ।

କୌଣସି ଗୋଟାଏ ବଡ଼ ଦୁର୍ଘଟଣାରୁ ସମସ୍ତେ ରକ୍ଷାପାଇଛନ୍ତି ଭାବି ସ୍ୱସ୍ତିର ନିଃଶ୍ୱାସ ନେଇ ବୁଦ୍ଧଦେବ ବାବୁ ଯେତେବେଳେ ଡ୍ରାଇଭର ପାଣ୍ଡେ ଆଡ଼କୁ ଅନାଇଲେ, ଦେଖିଲେ ସେ ଏକଲୟରେ ରାସ୍ତା ଉପରକୁ ଅନାଇଛି । ଆତଙ୍କଭରା ତାର ଚାହାଣୀରୁ ମନେହେଲା ସତେ ଯେମିତି ସେ ଗୋଟାଏ ଭୟଙ୍କର ଅଜଗର ସାପ, ମହାବଳ ବାଘ ଅଥବା ଆଲୁରୁବାଲୁରୁ ନୁଖୁରା ବାଳରେ ମୁହଁଢ଼ଙ୍କା କୌଣସି ଲଙ୍ଗଳା ଡ଼ାହାଣୀକୁ ମୁହାଁମୁହିଁ ହାବୁଡ଼ି ଯାଇଛି । ବିଚଳିତ ସେ ଦୃଷ୍ଟି । ଦୃଷ୍ଟିର ଦିଗ ଠଉରାଇ ବୁଦ୍ଧଦେବ ବାବୁ ସାମ୍ନା ରାସ୍ତାଆଡ଼କୁ ଅନାଇଲେ ।

ଆଗ ଦି' ଗୋଡ଼କୁ ଦେହଆଡ଼କୁ ଭିଡ଼ିଲେ ପଛଗୋଡ଼ ଉପରେ ଦେହର ସମଗ୍ର ଭାରଦେଇ ଲମ୍ଫ ଦେବାର ପୂର୍ବ ଅବସ୍ଥାରେ ବିଲେଇଟି ଗାଡ଼ି ଆଡ଼ିକି ଅନାଇଛି । ବିଲେଇର ରଙ୍ଗ କଳା । ବିସ୍ଫାରିତ ପାଟିରେ ଗୋଜିଆ ଧଳା ଦାନ୍ତ, ଜୁଳୁଜୁଳୁ ଆଖି, ଠିଆ ଲାଞ୍ଜ, ଖଚେଇ ହେବା ଢ଼ଙ୍ଗ । ରାସ୍ତାକଡ଼କୁ ଥରେ ଅନାଇଦେଇ ଗାଡ଼ି ଆଡ଼କୁ ପୁଣିଥରେ ଚାହିଁ ତାଚ୍ଛଲ୍ୟଭରା ମ୍ୟାଉଁ ଗୋଟାଏ ଛାଡ଼ିଦେଲା । ସେ ବେପରବାଏ ଢ଼ଙ୍ଗରୁ ମନେହେଲା ସତେ ଯେପରି ସେ ପାଣ୍ଡେକୁ ପଚାରିବାକୁ ଚହୁଁଛି – 'କି ଡ୍ରାଇଭର୍ ବାବୁ, କ'ଣ ସବୁ ହାଲଚାଲ ?'

ବିଲେଇ ରାସ୍ତା କାଟିଦେଇ ଚାଲିଗଲା ତା'ର ନିଜ ମାର୍ଗରେ ।

ପାଣ୍ଡେ ଗାଡ଼ି ପଛେଇନେଇ ରାସ୍ତାର ବାଁ ପାଖରେ ଠିଆ କରିଦେଲା। ବାଡ଼େଇ ହୋଇଥିବା ମୁଣ୍ଡ ପାଖ ଆଉଁଷୁ ଆଉଁଷୁ ଟୁନା କହିଲା – 'ନାନୀ ଦେଖିଲୁ କେଡ଼େ ବିପଦ । ଆଉ ଟିକିଏ ହୋଇଥିଲେ ଗାଡ଼ି ବିଲେଇ କାଟିଲା ରାସ୍ତା ଡେ଼ଇଁଯାଇଥାନ୍ତା । ଠିକ୍‌ବେଳେ ପାଣ୍ଡେ ବ୍ରେକ୍ କଷିଦେଲା ବୋଲି ସିନା ।'

ମିନି କହିଲା – 'ବିଲେଇ କାଟିଲା ଛତୁ! ବିଲେଇଟାଏ ରାସ୍ତାର ଏ ପାଖରୁ ସେ ପାଖ ଚାଲିଗଲା ବୋଲି ଏମିତି ଛାନିଆଁ ହୋଇ ବ୍ରେକ୍ ଦେବାଟା କ'ଣ ଭଲ ? ଗାଡ଼ି ଯଦି ଓଲଟି ଯାଇଥାନ୍ତା – ନାଇଁ ?'

ଟୁନା ତା’ କଥାରେ ଜୋର୍ ଦେଇ କହିଲା – ‘ନିଶ୍ଚୟ, ଗାଡ଼ି ଯଦି ବିଲେଇ କାଟିଲା ରାସ୍ତାକୁ ଡ଼େଇଁଯାଇଥାନ୍ତା ସିଓର୍ ଓଲଟି ପଡ଼ିଥାନ୍ତା । ସେ ତ ଡ଼େଇଁନି, ଓଲଟିବ କେମିତି ?’

ମିନି ଟିପ୍ପଣୀ ଦେଲା – ‘ହଁ, କାହିଁକି କହିବୁନି । ଭାଗ୍ୟକ୍ରମେ କାଚ ଭାଙ୍ଗିଲାନି, ନଇଲେ ଦେଖିଥାଆନ୍ତୁ । ଫାଲ୍‌ତୁ କଥାଗୁଡ଼ାକ । ଯାକୁ ଖାଲି ବିଲେଇ ବାଟ କାଟୁଛି – ବିରାଡ଼ି ବୋବାଉଛି । ସବୁ ଏଇ କନ୍‌ଭେଣ୍ଟ ସ୍କୁଲର ବାଜେ ଅନ୍ଧବିଶ୍ୱାସଗୁଡ଼ାକ ।’

କନ୍‌ଭେଣ୍ଟ ସ୍କୁଲର ନିନ୍ଦା ବୋଧହୁଏ ଟୁନାକୁ ବାଧିଲା । ସେ ଅଭିଯୋଗ କଲା ପରି ତା ମା’କୁ କହିଲା, ‘ମା’ ଦେଖିଲ, ନାନୀ କେମିତି କହୁଛି ? ଯିବା ବାଟକୁ ବିଲେଇ କାଟିଲେ ଅଶୁଭ ନୁହେଁ ?’

କିଛି ଦୁର୍ଘଟଣା ଘଟିନି ଜାଣି ମିନିମା’ ପୁଣି ଘୁମେଇବାକୁ ଆରମ୍ଭକରି ଦେଇଥିଲେ । ଭଲକରି ନଶୁଣି ଅଥବା ବୁଝି କହିଲେ ହଁ ।’

ବସ୍‌ଟିଏ ସେ ରାସ୍ତାଦେଇ ଗଲା, ବସ୍‌ର ସବୁ ଯାତ୍ରୀ ଏ ଗାଡ଼ି ଆଡ଼ିକି ଅନାଇଲେ, କିନ୍ତୁ ପାଣ୍ଡେ ପାଖରୁ ବସ୍ ଅଟକାଇବା ପାଇଁ କୌଣସି ଇସାରା ନ ପାଇ ସେ ସମସ୍ତେ ପଛକୁ ଲେଉଟି ଚାହିଁ ଚାହିଁ ଚାଲିଗଲେ । ବସ୍ ସାଂଗରେ ବିଲେଇର ରାସ୍ତାକଟା ଦୋଷ କଟିଯାଇଥିଲା । ପାଣ୍ଡେ ପୁଣି ଥରେ ଗାଡ଼ିରେ ଷ୍ଟାର୍ଟ ଦେଇ ବସ୍ ପଛେ ପଛେ ଛୁଟିଚାଲିଲା – ସତେ ଯେମିତି ବସ୍‌ରେ ଯାଉଥିବା କୌଣସି ଚୋରକୁ ଧରିବା ପାଇଁ ପୋଲିସ୍ ପିଛାଧରିଛି । ଗୁଡ଼ଭଗା ପାଖରେ ବସ୍ ଅଟକିଗଲା । ଗାଡ଼ି ତାକୁ କଟାଇନେଇ ଆଗକୁ ମାଡ଼ି ଚାଲିଲା – ଅତାବିରା, ବରଗଡ଼, ବରପାଲି । ରେଡାମୁଣ୍ଡା କେନାଲ କ୍ରସିଂ ପହଞ୍ଚିଲାବେଳକୁ ସନ୍ଧ୍ୟାର ଛାଇ ମାଡ଼ିଆସୁଥିଲା । ରାଜପଥ ଛାଡ଼ି କଚା ରାସ୍ତା ଧରିଲାବେଳକୁ ସନ୍ଧ୍ୟା ୬.୩୦ ।

କେତେବେଳେ ଏପାଖ, କେତେବେଳେ ସେପାଖ, ଏଇଠି ଟିକିଏ ଧକ୍‌କ୍ ଆଉ ସେଇଠି ଟିକିଟ ଘର୍‌ର, ଏପରି ସବୁ ହଲାଝୁଲା, ପଥର ବାଜିବା ଆବାଜ୍ ତଳେ ଘଷି ହେବା ଶବ୍ଦ ଭିତରେ ଗୋଟାଏ ଦି’ଟା ଠେକୁଆ, ଦୁଇ ଚାରୋଟି ବିଲୁଆ ହାବୁଡ଼ିବା ମଧ୍ୟ ଦେଇ ଗାଡ଼ି ଚାଲିଥିଲା ।

ପରବର୍ତ୍ତୀ ଦଶମାଇଲ ବାଟରେ ଆଉ ବିଶେଷ କିଛି ଘଟିନି । ହଠାତ୍ ଜଣାପଡ଼ିଲା ଯେ, ପଛପଟର ଗୋଟିଏ ଚକରେ ପବନ ନାହିଁ । ଷ୍ଟେପନୀ ଲାଗିଲା । ଆଉ କୌଣସି ଚକ ପଙ୍କଚର୍ ହେଲେ ଅବସ୍ଥା କଣ ହେବ ସେ ବିଷୟ ଟିକିଏ ସାମୟିକ ଭାବେ ଆଲୋଚନା ହୋଇ କୌଣସି ଆଶଙ୍କା ପ୍ରକାଶ ପାଇବା ପୂର୍ବରୁ ମିନି

ମା' ଯେତେବେଳେ ଫେରିଯିବା କଥା ଉଠାଇଲେ, ଫେରିଯିବାକୁ ମଧ୍ୟ ଆଉ ଉପାୟ ନାହିଁ ଜାଣି ବୁଦ୍ଧଦେବବାବୁ 'ପଛଘୁଞ୍ଚା ନାହିଁ ବୀରର ଜାତକେ...' ପଦକ ଗାଇଦେଲେ। ଗାଡ଼ି ପୁଣି ଆଗେଇ ଚାଲିଲା - ବଣ ବୁଦା, ନଈନାଳ ଆଉ ଧତଡ଼ ରାସ୍ତାକୁ ନମାନି । ଥରେ ମନେହେଲା ଗୋଟାଏ ନାଳ ପାରିହୋଇ ଉପରକୁ ଉଠିଲାବେଳକୁ ଚକ କାଦୁଅରେ ଫସିଯିବ - କିନ୍ତୁ ପାଣ୍ଡେ ତାର ଡ୍ରାଇଭିଂ କାରସାଦି ଦେଖାଇଦେଲା । ଦୁଇ ତିନିଟି ପଥର ଚକ ତଳେ କେଞ୍ଚିଦିଆହେଲା । ବାସ୍ ଗାଡ଼ି ଉପରକୁ ଉଠିଗଲା । ପରବର୍ତ୍ତୀ ଘଟଣାବିରଳ ଯାତ୍ରା ମଧ୍ୟରେ କେବଳ ଗୋଟାଏ ହେଟାବାଘ ଆଉ ତାର ଦୁଇ ଛୁଆ ଦର୍ଶନ - ଟୁନାର ଦୁଇ ଚାରିଥର 'ଆଉ କେତେବାଟ, ଭାରି ଭୋକ ଭେଲାଣି,' ସାଙ୍ଗକୁ 'ହେଇ ଆସିଗଲା' ଆଶ୍ୱସନା ପରେ ବୁଦ୍ଧଦେବବାବୁ ପହଞ୍ଚିଗଲେ ତାଙ୍କ ଅତି ଆକାଂକ୍ଷିତ୍ ସ୍ୱର୍ଗପୁରୀ ରାମପୁର । ସେତେବେଳକୁ ସମୟ ଠିକ୍ ରାତି ୮.୩୦ ।

ଗୁଡ଼ିଏ ଘର ଡେ଼ଇଁଗଲା ପରେ ନିଦ୍ରିତ ରାମପୁରର ଏକମାତ୍ର ଡ଼ିବିରି ଆଲୁଅ ତଳୁ କିଏ ଜଣେ କହିଲା - 'ଆଉ ଧାପେ ଗଲେ ସବ୍‌ଡ଼ିଭିଜନ୍ କଲୋନୀ ।'

ମିନି ଆଉ ଟୁନା ଭୋକରେ ଶୋଇଯାଇଥିଲେ । କୌଣସି ଚକ ପଙ୍କଚର୍ ହେଲେ ବାଟରେ ପଡ଼ିରହିବାର ଆଶଙ୍କା ଆଉ କାହିଁ ନାହିଁ ଜାଣି ବୁଦ୍ଧଦେବବାବୁ ଖୁସି ଓ ହାଲୁକା ମନରେ 'ରାମପୁର ପହଞ୍ଚିଗଲା' ବୋଲି ସେ ଦୁହିଁଙ୍କୁ ହଲାଇ ଦେଲେ । ମିନି ମା' ମଧ୍ୟ ପହଞ୍ଚିଗଲା, ଉଠରେ ବୋଲି କହୁ କହୁ ନିଜେ ଉଠି ପଡ଼ିଲେ । ଗାଡ଼ି ଆଗେଇଗଲା କଲୋନୀ ଉଦ୍ଦେଶ୍ୟରେ ।

ଏସିଷ୍ଟେଣ୍ଟ ଇଂଜିନିୟରଙ୍କ ଘର ଅନ୍ଧାର ଥିବା ଦେଖି ଏତେଶୀଘ୍ର ଲୋକଗୁଡ଼ାକ ଶୋଇଗଲେଣି ବୋଲି ବୁଦ୍ଧଦେବବାବୁ ଟିପ୍ପଣୀ କାଟୁ କାଟୁ ଗେଟ୍ ସାମ୍‌ନାରେ ଗାଡ଼ି ହର୍ଣ୍ଣ ଦେଲେ । ଗେଟ୍ ଖୋଲିବାକୁ କେହି ଆସୁନଥିବା ଦେଖି ପାଣ୍ଡେ ଗାଡ଼ିରୁ ଓହ୍ଲାଇ ନିଜେ ଗେଟ୍ ଖୋଲିବାକୁ ଯାଇ ଦେଖିଲା ଯେ, ଗେଟ୍‌ରେ ଗୋଟିଏ ମସ୍ତବଡ଼ ତାଲା ଝୁଲୁଛି ।

ଚପରାଶି, ଚପରାଶି, ବୋଲି କେତେଥର ଡ଼ାକହାକ ଦେଲାପରେ ଶେଷରେ ଜଣେ ଆଖି ମଳି ମଳି ଆସି ଶୁଣାଇଦେଲା ଯେ, ସାହେବ ନାହାନ୍ତି ।

ବୁଦ୍ଧଦେବବାବୁ ବିରକ୍ତିଭରା ସ୍ୱରରେ କହିଉଠିଲେ - 'ଆରେ, ସାହେବ ସିନା ନାହାନ୍ତି, ସାହେବାଣୀ ତ ଅଛନ୍ତି ! ଗେଟ୍ ଶୀଘ୍ର ଖୋଲୁନୁ କାହିଁକି ?'

ଆଗନ୍ତୁକ ଉତ୍ତର ଦେଲା - 'ସାହେବାଣୀ ନାହାନ୍ତି କି ଆଉ କେହି ବି ନାହାନ୍ତି ।' ବୁଦ୍ଧଦେବ ବାବୁ ନିଜ ଅଜାଣତରେ ଛେପ ଢ଼ୋକିଲେ ।

ଶନିବାର ରାତି ତ - ହୁଏତ ସିନେମା ଦେଖିବା ପାଇଁ ସମସ୍ତେ ବରଗଡ଼ କିମ୍ବା ବଲାଙ୍ଗୀର ଯାଇଛନ୍ତି, ସେଇ ଆଶା ମନରେ ରଖି ବୁଦ୍ଧଦେବବାବୁ ପୁଣି ପଚାରିଲେ - 'କେତେବେଳେ ଫେରିବେ ?'

ଉତ୍ତରରୁ କିନ୍ତୁ ଜଣାପଡ଼ିଲା ସାହେବାଣୀ ତାଙ୍କ ବାପଘରେ ବେଶ୍ କିଛିଦିନ ରହିବେ, ଆଉ ସାହେବ କାଲି ଆଡ଼ିକି ତାଙ୍କ ଶ୍ୱଶୁର ଘରୁ ଫେରି ଆସିପାରନ୍ତି ।

ଟୁନା ଅଳିକଲା - 'ମା, ଭୋକ ।'

ଅଗତ୍ୟା ଡ଼ାକବଙ୍ଗଳାରେ ହିଁ ରହିବାକୁ ହେବ । ବୁଦ୍ଧଦେବବାବୁ ଯେତେବେଳେ ଡ଼ାକବଙ୍ଗଳା ବା ଗେଷ୍ଟହାଉସ୍ କେଉଁଠି ବୋଲି ପଚାରିଲେ, ଚପରାଶି ଢ଼ବ ଢ଼ବ ଆଖିରେ ଅନାଇ ଓଲଟି ପଚାରିଲା, 'ଡ଼ାକବଙ୍ଗଳା, ଗେଷ୍ଟହାଉସ୍ କ'ଣ ? ସେମିତି କିଛି ତ ଏଠି ନାହିଁ ।'

ନିରୁପାୟ ହୋଇ ଚିନ୍ତା କଲାବେଳକୁ ବୁଦ୍ଧଦେବବାବୁଙ୍କର ମନେପଡ଼ିଲା ଯେ, ଷଡ଼ଙ୍ଗୀ ସୁପରଭାଇଜର୍ ଏଇ ରାମପୁର ସବ୍ ଡ଼ିଭିଜନ୍‌ରେ ଅଛି । ଷଡ଼ଙ୍ଗୀର କ୍ୱାର୍ଟସ୍ କେଉଁଠି ବୋଲି ଯେତେବେଳେ ପଚାରିଲେ, ଜାଣିପାରିଲେ ଯେ, ଷଡ଼ଙ୍ଗୀ ତାର ଆସନ୍ନପ୍ରସବା ସ୍ତ୍ରୀକୁ ନେଇ ବରଗଡ଼ ହସ୍‌ପିଟାଲକୁ ଯାଇଛି ।

'ହେ ଭଗବାନ ! ଏମାନଙ୍କୁ ଆଉ ଛୁଆ ଜନ୍ମ କରିବାକୁ ଅନ୍ୟ କୌଣସି ସମୟ ମିଳିଲାନି !' ବୋଲି କହି ବୁଦ୍ଧଦେବବାବୁ ହତାଶରେ ଗାଡ଼ିରେ ଯାଇ ବସିପଡ଼ିଲେ ।

'ମା' ଭୋକ'ର ପୁନରାବୃତ୍ତି ଶୁଣି ସେ ଗାଡ଼ି ଭିତରୁ ପଚାରିଲେ - 'ଏଇଠି ଚା ପକୋଡ଼ି ଦୋକାନ ଅଛି ନା ନାହିଁ ?'

ଚପରାଶି ଉତ୍ତରଦେଲା - 'ନାହିଁ ଆଜ୍ଞା, ଏଇଠି କିଣି ଖାଇବା ଲୋକ କେତେ ଯେ ?' 'ଗଲ କିଛି ଚୂଡ଼ା ଆଉ ଚିନି, ନହେଲେ ଗୁଡ଼ ନେଇଆସିବ'ର ଜବାବ ମିଳିଲା - 'ଆଜ୍ଞା, କାଲି ରବିବାର ହାଟପାଳି, ହାଟରେ ବେଶ୍ ମିଳିବ । ଏବେ କେଉଁଠୁ ମିଳିବ ?'

ତେବେ ଉପାୟ !

ଅନ୍ଧକାରର ଶୂନ୍ୟତା ମଧ୍ୟରେ ନୀରବତା ଭଙ୍ଗକରି କେଉଁଠି କୁକୁରଟିଏ ଭୁକିବାର ଶୁଣାଗଲା । ମିନି ମା' ହଠାତ୍ ଚପରାଶିକୁ ପଚାରିଲେ, 'ଜାନକୀ ଏଇଠି ଅଛି ପରା ?'

ଚପରାଶି ବିନମ୍ର ସ୍ୱରରେ କହିଲା - 'ଜାନକୀ କିଏ ମା ?'

'ଜାନକୀ ବିଭା ପୂର୍ବରୁ ତା' ମାଁ ଘରେ ମହାକୁଡ଼ ଥିଲା - ଏବେ କ'ଣ ହୋଇଛି କେଜାଣି ? ସମ୍ବଲପୁର ପଟ୍ଟନାୟକ ପଡ଼ାରେ ତା' ବାପଘର ।'

ଚପରାଶି ପାଖକୁ ଆସି ହାତଯୋଡ଼ି କହିଲା - 'ମା, ଜାନକୀକୁ ଆପଣ କେମିତି ଚିହ୍ନିଲେ ?'

ମିନି ମା' କହିଲେ- 'ଆମେ ପିଲାଦିନର ସାଙ୍ଗ ।'

ଚପରାଶି ନମସ୍କାର କରିଥିବା ଦୁଇ ପାପୁଲି ଘଷୁ ଘଷୁ ପାଟି ମେଲାଇ ଖୁସିରେ କହିଲା - 'ସେ ମୋ ସ୍ତ୍ରୀ ମା... ଯାଉଛି କହିଦେବି ।'

ପରବର୍ତ୍ତୀ ଘଟଣାକୁ ଅପେକ୍ଷା କଲାବେଳେ ବୁଦ୍ଧଦେବବାବୁ ପାଣ୍ଡେକୁ ପଚାରିଲେ, 'ଏବେ ଫେରିଯିବା ନିରାପଦ ହେବ ତ ?'

ପାଣ୍ଡେ କ୍ଷେପ୍‌ନୀ ନଥିବା ସ୍ପଷ୍ଟ କହି ବାକି ସବୁ କଥା ଗୁଣୁ ଗୁଣୁ କରି ଗିଳିଦେଲା ।

ତିନି ଛୁଆଙ୍କ ଦ୍ୱାରା ପରିବେଷ୍ଟିତା ହୋଇ ଓ ଗୋଟିଏ ଅଣ୍ଟା ଆଶ୍ରିତାକୁ ନେଇ ଜାନକୀ ପହଞ୍ଚିଗଲା ।

ଗାଡ଼ି ପାଖକୁ ଆସି ଜାନକୀ ଆଶ୍ଚର୍ଯ୍ୟାନ୍ୱିତ ମୁହଁରେ ଗାଡ଼ିକୁ ଚାହିଁଲା ବେଳକୁ ମିନି-ମା' ଗାଡ଼ିରୁ ଓହ୍ଲାଇଯାଇ 'ଏ ଜାନକୀ...' କହି ଉଲ୍ଲାସରେ ଚିତ୍କାର କଲେ ।

ଜାନକୀ ମୁଣ୍ଡିଆ ମାରିବ କି କୁଣ୍ଢାଇଧରିବ କିଛି ବୁଝିନପାରି ତା' ନିଜ ଛୁଆକୁ ଟିକିଏ ଜୋର୍‌ରେ ଚିପିଦେଇ କହିଲା - 'ରମା, ତମେ...! ବାବୁର ବାପା କହିଲାବେଳେ କେଉଁ ସାହେବାଣୀ ମୋତେ ଡ଼ାକୁଛି ବୋଲି ଡ଼ରିଯାଉଥିଲି ।'

ଜାନକୀର ଉଲ୍ଲାସ ଚାରିଆଡ଼ିକି ବିଞ୍ଚିହୋଇପଡୁଥିଲା । କହିଲା - 'ମୋ ଘରକୁ ଯିବନି ?'

'ତୋତେ ଲାଜ ମାଡୁନିଲୋ ତମେ ତମେ କରୁଛୁ ?' ର ଉତ୍ତର ମିଳିଲା - 'ତୁ ହେଲୁ ସାହେବାଣୀ ଆମେ ହେଲୁ ଚପରାଶି - କେମିତି ତୁ ତା' କରିବାକୁ ସାହସ କରିବି କହିଲୁ ?'

ଆଲ୍ଲା କେବେ କାହା ଘର ଛପର କେମିତି ଭାବରେ ଫାଡ଼ି କଣ ଦେଇଥିଲେ କେଜାଣି, ଆଉ ସେଥିରେ ଛପର୍‌ଫଡ଼ା ଘରର ସମସ୍ତେ କିପରି ଆଚରଣ ବିଧି ମାନିଥିଲେ ତା' ମଧ୍ୟ ଜଣାନାହିଁ - ବୁଦ୍ଧଦେବବାବୁ କିନ୍ତୁ ଭାବିଲେ, ସେ ଯେମିତି ଭଗବାନଙ୍କ ପାଖରୁ ଛପର୍‌ଫଡ଼ା ଦୟା ପାଇଛନ୍ତି ସେ ଟୁନା, ମିନି ଆଉ ପାଣ୍ଡେକୁ ନେଇ ରୀତିମତ ପ୍ରସେସନ୍‌ରେ ରମା-ଜାନକୀ ଓ ଜାନକୀଙ୍କ ଛୁଆପଲ ପଛରେ ଚାଲିଲେ ।

ଜାନକୀର ଛୋଟଘର ବାରଣ୍ଡାରେ ସପ ପଡ଼ିଲାବେଳକୁ ରାତି ୯ଟା ।

ବୁଦ୍ଧଦେବବାବୁ ଆଉ ଟୁନା ଖଣ୍ଡିଏ ଦଉଡ଼ିଆ ଖଟରେ ବସିଲେ । ମିନି ତା' ମା' ସାଙ୍ଗରେ ସପ ଉପରେ ବସିଲା । ପାଣ୍ଡେ ଆଉ ଚପରାଶି ବାହାରେ କେଉଁଠି ତାଙ୍କ ଗପ ଜମାଇଦେଲେ ।

ପାନବଟୁଆ ଓ ଗୁଆକାତି ତଥା ପାଖଆଖ ମହିଳାଙ୍କ ସମାଗମ ଭିତରେ କାହାର କେତେ ପୁଅଝିଅ ଆଉ ସେମାନେ ସବୁ କଣ କରୁଛନ୍ତି ଜମି ଉଠିଲା ।

ହଠାତ୍ ବୁଦ୍ଧଦେବବାବୁ ଶୁଣିପାରିଲା ଭଳି ପାଟିରେ ଜାନକୀ କହିଲା - 'ବାବୁ ତ ପଖାଳ ଆଉ ଶୁଖୁଆ ଖାଇବେନି... ତାଙ୍କ ପାଇଁ...'

ମିନି-ମା' କହିଲେ - 'ଓଡ଼ିଆ ସାହେବ ଲୋ, ପଖାଳ ଆଉ ଶୁଖୁଆ ବେଶ୍ ଚଳିବ ।'

ହାସ୍ୟରୋଳ ଭିତରେ ବୁଦ୍ଧଦେବବାବୁ ପ୍ରତିବାଦ କଲେ, କହିଲେ - 'ପଖାଳ ବେଶ୍ ବଢ଼ିଆ, କିନ୍ତୁ ଏ ଶୁଖୁଆର ଗନ୍ଧ ସେ ସହିପାରିବେନି । ବାଇଗଣ ପୋଡ଼ା କି ଆଳୁଭରତା ଟିକିଏ ହେଲେ ଚଳିବ... ।'

ଜାନକୀ ଯୋଗ କଲା - 'ବାଇଗଣ ପୋଡ଼ା ଆଉ ଆଳୁଭରତା ତ ହେବ, ତା' ସଙ୍ଗରେ କିଛି ବଡ଼ିଫୁଲା ଆଉ ପାପଡ଼ଭଜା ।'

ଗୁଆକଟାର ଶବ୍ଦ ସାଙ୍ଗକୁ ଭଦ୍ରମହିଳାମାନଙ୍କ କୋଳାହଳ ଭିତରେ ବୁଦ୍ଧଦେବବାବୁ ଚିନ୍ତାମଗ୍ନ ଥିଲେ । ସେ ଭାବୁଥିଲେ - ସତରେ କି ମହାନ୍ ଏ ଜାତି ! ପଖାଳ କହ, ଶୁଖୁଆ କହ... ପାନବଟୁଆ କହ, ଅଥବା ପରଘର ଆଲୋଚନା କହ, ସବୁଥିରେ ସାମ୍ୟବାଦ ନୀତି ଏମାନଙ୍କର । ଆଉ ଧର୍ମ ! ଭାବନାରେ ହିଁ ବୁଦ୍ଧଦେବବାବୁ ଚମକିଉଠିଲେ । ଆଲୋକ ଓ ଉତାପ ଦେବା ଯଦି ସୂର୍ଯ୍ୟଙ୍କ ଧର୍ମ, ତେବେ ସନ୍ତାନ ପ୍ରସବ କରିବା କଣ ଗୋଟାଏ ଧର୍ମ ! ପାକିସ୍ଥାନ ପରି ଏମାନେ ବି ଯଦି ଏକ ସ୍ୱାଧୀନ ଦେଶ ଦାବୀ କରିବସନ୍ତି ! ଆଶଙ୍କା ଭିତରେ ମଧ୍ୟ ସେ ମନେ ମନେ ସେହି ସ୍ୱାଧୀନ ଦେଶର ନାମକରଣ କରୁଥିଲେ - ଜନାନୀସ୍ଥାନ ! ମହିଳା ଲେଣ୍ଡ୍ !

ପିଢ଼ା ପଡ଼ିବା ଶବ୍ଦର କିଛିକ୍ଷଣ ପରେ ଡ଼ାକରା ଆସିଲା ଖାଇଯିବାକୁ । ପଖାଳ ସତରେ ବଢ଼ିଆ ବାସନା ଦେଉଥିଲା ।

# ବୁଦ୍ଧଦେବବାବୁଙ୍କ ଗୃହସଂସାର

ପୂଜା ଆସିଛି । ବର୍ଷକୁ କୁଆଡ଼େ ଥରେ - ସତେ ଯେମିତି ଆଉ ଆଉ ଦିନ ସବୁ ବର୍ଷକୁ ପାଞ୍ଚ ସାତଥର ଆସେ ।

ସହରମାନଙ୍କରେ ଭିଡ଼ ବେଶ୍ ଜମିଯାଇଛି । ଦୋକାନ ବଜାର ସବୁ ନୂଆ ନୂଆ ଫେଶନ୍‌ର ଜିନିଷମାନଙ୍କରେ ଭରପୂର । କେଉଁ କେଉଁ ଦୋକାନମାନଙ୍କର କାଚବାଡ଼ ଭିତରେ ନାନାରକମର ନୂଆ ପୋଷାକରେ ସଜ୍ଜିତ ହୋଇ ପ୍ଲାଷ୍ଟିକ୍‌ରେ ତିଆରି ଚକଚକିଆ ସୁନ୍ଦରୀ ନାରୀମୂର୍ତ୍ତିଗୁଡ଼ିକ ନାନା ଢ଼ଙ୍ଗ ଆଉ ନାନା ଭଙ୍ଗୀରେ ଠିଆ ହୋଇଛନ୍ତି । କେହି କେହି ପଣତକାନି ଉଡ଼ାଇ ନୂଆ ଡ଼ିଜାଇନ୍‌ର ଶାଢ଼ୀ ଆଞ୍ଚଳ ଦେଖାଉଛନ୍ତି ତ ଆଉ କେହି ନୂଆ କିସମ୍‌ର ମେକ୍‌ସି, ବେଲ୍ ବଟମ୍ ଅଥବା ଲାପା ଦେଖାଉଛନ୍ତି । କେଉଁଠି ଗହଣା ଓ ଅଳଙ୍କାର, କେଉଁଠି ରେଡ଼ିଓ ଆଉ ଗ୍ରାମଫୋନ୍ ରେକର୍ଡ଼ ପ୍ଲେଆର୍, କାମେରା, ଟେପ୍ ରେକଡ଼ର୍, କେଉଁଠି ଷ୍ଟେନ୍‌ଲେସ୍ ଷ୍ଟିଲ୍ ଓ ପିତଳ ବାସନ, ଆଉ କେଉଁଠି ଚୀନାମାଟିର କପ୍ ସସର ଠାରୁ ଆରମ୍ଭ କରି ଆଲୁମିନିୟମ୍ ଡ଼େକ୍‌ଚି, କଡ଼େଇ, ପ୍ଲାଷ୍ଟିକ୍‌ର ମଗ୍, ବାଲ୍ଟି ଯାଏ ଦୁନିଆଯାକର ଖୁଚୁରା ମାଲ । ସବୁ ଝାଡ଼ି ପୋଛି ଏମିତି ସଜାହୋଇଛି ଯେ ଦର୍ଶକର ଆଖି ଆପଣାଛାଏଁ ସେ ଆଡ଼ିକି ଚାଲିଯାଉଛି । ଚାରିଆଡ଼ ଚକ୍‌ଚକ୍ ଝଲମଲ୍ । ବେଶ୍ ରସିକ ବହି ଦୋକାନୀଟି ବହି ଆଉ ମେଗାଜିନ୍ ସବୁ ଏମିତି ସଜାଇ ରଖିଛି ଯେ, ସେ ବାଟରେ ଯିବା ବାଟୋଇ ମେଗାଜିନ୍ ଖଣ୍ଡିଏ କିଣିବାକୁ ମନ ବଳାଇବ । କେଉଁ କେଉଁଠି ଜିନିଷମାନଙ୍କର ଦାମ୍ ଆଗ ଶତକଡ଼ା ୧୫, ୨୦ ଭାଗ ବଢ଼ାଇ ଜିନିଷମାନଙ୍କ ଉପରେ ଛାପ ମାରିଦେଲା ପରେ ଦୋକାନ ସାମ୍ନାରେ ନାଲି କନା ଉପରେ ସୁନେଲି ଜରିର ବଡ଼ ବଡ଼ ଅକ୍ଷର ଘୋଷଣା କରୁଛି ପୂଜା ରିବେଟ୍, ପୂଜା କନସେସନ୍ ଅଥବା ପୂଜା ଡ଼ିସ୍‌କାଉଣ୍ଟ ଶତକଡ଼ା ଦଶ । ରଙ୍ଗ ବେରଙ୍ଗର ଆଲୋକମାଳା ଭିତରେ ଛିଣ୍ଡା ଶାଢ଼ୀ, ଫଟା ଚପଲ୍, ମୂଷା ଆଉ ଉଇଖିଆ ଶାଲ ଓ ସ୍ୱେଟର୍ ପୂଜା ରିବେଟ୍ ଶତକଡ଼ା ପଚିଶି । ସବୁଠେଇଁ ଭିଡ଼ ।

ଚାରିଚକିଆଙ୍କୁ ମାସକର ବେତନ ଆଗତୁରା ମିଳିଯାଇଛି । ଶ୍ରମିକମାନଙ୍କୁ ମିଳିଛି ପୂଜାବୋନସ୍ । ସ୍କୁଲ, କଲେଜ, ଅଫିସ୍, କଚେରୀ ସବୁ ବନ୍ଦ । ଋଣ କରି ଘିଅ

ପିଇବା ମନ ନେଇ ସମସ୍ତେ ପୂଜାବଜାରମାନଙ୍କରେ ଠୁଳ ହୋଇଛନ୍ତି । ଭଉଣୀ କିଣୁଛି ଭାଇ ପାଇଁ ସାର୍ଟ ପେଣ୍ଟ, ଭାଇ କିଣୁଛି ଭଉଣୀ ପାଇଁ ଶାଢ଼ୀ, ଦିହେଁ ମିଶି ମା' ପାଇଁ କିଣୁଛନ୍ତି ସୋନପୁରୀ ମଠା । ମା' କିଣୁଛନ୍ତି ନାତି ନାତୁଣୀଙ୍କ ପାଇଁ ଜୋତା, ମୋଜା, ଫ୍ରକ୍ ଆଉ ଖେଳନା । ବାପା ଖୋଜି ବୁଲୁଛନ୍ତି ଡ଼ାଲଡ଼ା ଘିଅ, ଚିନି, ମଇଦା, ଆଳୁ, ମସଲା ଆଉ ଭଲ ରୋହି, ଭାକୁର ମାଛ ।

ବୁର୍ଲାରେ ବୁଦ୍ଧଦେବବାବୁଙ୍କ ଘର ବି ଭରପୂର । ପାଟିତୁଣ୍ଡରେ ଘରର ଛାତ ଯଦି ଉଠୁନି ଅଥବା ପଡୁନି, ସେଥିପାଇଁ ଘର ତିଆରି କରିଥିବା ଇଞ୍ଜିନିୟରଙ୍କର ହିଁ ବାହାଦୂରୀ ।

ଦିନବେଳ - ଗୋଟାଏ ପାଖାପାଖି । ତଳେ ପତ୍ର ପକାଇ ସମସ୍ତେ ଧାଡ଼ି ହୋଇ ବସିଯାଇଛନ୍ତି । କିଏ କହୁଛି ମାଛ ତରକାରି ବଢ଼ିଆ ହୋଇଛି ତ କିଏ କହୁଛି ଟିକିଏ ରାଗ ହୋଇଗଲା । କିଏ ପାଣି ପାଇଁ ଚିତ୍କାର କରୁଛି ତ କିଏ ବିରକ୍ତିଭରା ସ୍ୱରରେ ଟିପ୍ପଣୀ କାଟୁଛି - ନଡ଼ିଆ ଖଟା କ'ଣ ଆମେ ଉଠିଗଲା ପରେ ଆସିବ ? ହାତ ପାପୁଲି ଚାଟୁ ଚାଟୁ ବୁଲୁ ହଠାତ୍ କହିଲା - 'ନାନୀ, ବବି ଆସିଛି ।' ସମସ୍ତେ ଝାମ୍ପି ପଡ଼ିଲେ । ଟୁନା କହିଲା - 'ସତରେ !' ଜୋଇଁ ନେତ୍ରାନନ୍ଦ କହିଲେ - 'ହେ, ମିଛ କଥା - ଏଇଠିକି ବବି ଆସୁଛି !' ବୁଲୁ ଜବାବ୍ ଦେଲା - 'ବେଟ୍ ।' ସବା ସାନପୁଅ ଟୁକୁ ସାହସ ସଞ୍ଚୟକରି କହିଲା 'ମା' ମୁଁ ବି ଯିବି ।' ଭଣଜା ଭାଣିଜୀ କୁନୁ ଓ ବିନ୍ଦି ତାଙ୍କ ମା'କୁ ଜିଗର କଲେ ଯେ, ସେମାନେ ବି ସିନେମା ଦେଖିବାକୁ ଯିବେ । ଭଉଣୀ ମୀରା ମିଛ ରାଗ ଦେଖାଇ ଧମକ ଦେଲା - 'ନାଇଁ ପାଠଶାଠ କିଛିନାହିଁ - ଖାଲି ସିନେମା ।' ଭଉଣୀଜୋଇଁ ଦୀନବନ୍ଧୁ ମାଛକଣ୍ଟା ବାଛୁ ବାଛୁ ଘୋଷଣା କଲେ ଯେ, ସମସ୍ତଙ୍କ ସିନେମା ଖର୍ଚ୍ଚ ତାଙ୍କର । ଖାଇବା ଭିତରେ ପିଉସୀଙ୍କ ଥ୍ରୀ ଚିଏର୍ସ ଆଉ ହିପ୍ ହିପ୍ ହୁର୍ରେ ହୋଇଗଲା । ମିନି ମା' ସମସ୍ତଙ୍କ ଖାଇବା ତଦାରଖ କରୁଥିଲେ । 'ଆଉ ଗୋଟାଏ ମୁଣ୍ଡ ବଳିଛି, ଖାଇବୁ ?' ପଚାରିଲାବେଳେ ମିନି କହିଲା - 'ମା, ତମେ ବି ଆଜି ଚାଲ ନା ଗୋ ସିନେମା ଦେଖି ଆସିବ ।' ମିନି-ମା' କହିଲେ 'ବାପାଙ୍କୁ ପଚାର ।'

ଏଥର ପଡ଼ିଲା ବୁଦ୍ଧଦେବବାବୁଙ୍କ ପାଳି । ଧାଡ଼ିର ପ୍ରଥମ ଆସନରେ ବସି ଟଟକା ମାଛ ଭଜା ସାଂଗକୁ ଏସବୁ କୋଳାହଳ ସେ ବେଶ୍ ଉପଭୋଗ କରୁଥିଲେ । ସେ ଜାଣିଥିଲେ ଯେ ଏ ପଙ୍ଗପାଳଦଳ ତାଙ୍କୁ ସିନେମା ଦେଖି ଯିବା ପାଇଁ ଅନୁରୋଧ କରିବେନି । ତାଙ୍କ ଉପସ୍ଥିତିରେ କୁଆଡ଼େ ଏଗୁଡ଼ାକ ମନମୁତାବକ ହୋହଲ୍ଲା କରିପାରନ୍ତିନି - ଆଉ ମା'ଙ୍କ କଥା କୁଆଡ଼େ ଅଲଗା । କି ଏକପାଖିଆ ବିଚାର ଏଇ

ନିମକହାରାମମାନଙ୍କର । ସେ ଅନୁମାନ କରିପାରୁଥିଲେ ଯେ, ଯଦି ଏତିକିବେଳେ ମିନି-ମା'ଙ୍କୁ ସିନେମା ଯିବାପାଇଁ ମନା କରିଦିଅନ୍ତି, ପରିସ୍ଥିତି ଗୋଳମାଳିଆ ହେବ । ସିନେମାରେ ପ୍ଲଟ୍ ଘନେଇ ଆସିଲାବେଳକୁ ରିଲ୍ ଛିଣ୍ଡିଗଲେ ଦର୍ଶକମଣ୍ଡଳୀର ଯେଉଁ ପ୍ରତିକ୍ରିୟା ହୁଏ ଏଇ ଦଳର ପ୍ରତିକ୍ରିୟା ମଧ୍ୟ ସେପରି କିଛି ଢ଼ଙ୍ଗ ନେଇପାରେ । ତା'ଠାରୁ ଆହୁରି ଭଲକରି ସେ ବୁଝିପାରୁଥିଲେ ମିନି-ମା'ଙ୍କ ସମ୍ଭାବ୍ୟ ପ୍ରତିକ୍ରିୟା । ନାଗସାପର ଲାଞ୍ଜରେ ଗୋଡ଼ ପଡ଼ିଗଲେ ସେ ଯେମିତି ଫଣା ଟେକି ଫଁ କରି ଗର୍ଜିଉଠେ, ଆଉ ପଛକୁ ଲେଉଟି ଚୋଟେ ପକାଇଦିଏ, ସେମିତି ଚୋଟେ ପକାଇ ନ ପାରିଲେ ମଧ୍ୟ ମିନି-ମା' ଯେ, ଫଣା ଟେକି ଫଁ ଫଁ କରି ଗର୍ଜିଉଠିବେ ସେ ସମ୍ବନ୍ଧରେ ନିଃସନ୍ଦେହ ଥିଲେ । ତେବେ ଚୋଟ ଭୟ ଥିଲେ ମଧ୍ୟ ପେଡ଼ି ଭିତରେ ମୁହଁ ମାଡ଼ି ପଡ଼ିଥିବା ନାଗସାପ ଅପେକ୍ଷା ସେ ତ ସବୁଦିନ ଏମିତି ଫଣାଟେକି ନାଗ ଦେଖିବାକୁ ବେଶୀ ପସନ୍ଦ କରିଆସିଛନ୍ତି । ଆଉ ପିଲାଦିନେ ଜାଣିଶୁଣି ବିରୁଡ଼ି ବସାକୁ ଟେକା ପକାଇ ମୁହଁ ଢ଼ାଙ୍କିଛନ୍ତି । ତେଣୁ ଆଜି ମଧ୍ୟ ଏ ପୂଜାଦିନିଆ ମନ ଉଚାଟରେ କିଛି ଗୋଟିଏ ଫଣାଟେକି ତାମସା ଦେଖିବା ଆଶାରେ କହିଲେ - 'ତୋ ମା' ଯଦି ସିନେମା ଦେଖିବାକୁ ଯିବେ, ତୋର ଏ ନକ୍ସେଲାଇଟ୍ ଛୁଆ ଦି'ଟାଙ୍କୁ କିଏ ଜଗିବ ?'

ଫଳ କିନ୍ତୁ ବିଶେଷ କିଛି ଗରମାଗରମ ହେଲାନି । ଲବଙ୍ଗଲତା ବାଣ୍ଟୁ ବାଣ୍ଟୁ ମିନି-ମା ମୁଣ୍ଡ ଟେକି ବୁଦ୍ଧଦେବବାବୁଙ୍କ ଆଡ଼କୁ ଚାହିଁଲେ ସତ, କିନ୍ତୁ ନରମେଇ କହିଲେ - 'ସେମାନଙ୍କୁ ତମେ ଟିକିଏ ଜଗିଲେ କଣ ଜାତି ମାରା ହୋଇଯିବ ? ନହେଲେ ସନ୍ଧ୍ୟାରେ କ'ଣଟା କରିପକାଇବ ଶୁଣେ ? ଛୁଟି ତ ହୋଇଛି । ମୁଁ ଜାଣିଥିଲି ତୁମେ କିଛି ନା କିଛି ବାହାନା କରି ମନାକରିଦେବ ।' ବାସ୍, ସେତିକିରେ ହିଁ ପ୍ରତିକ୍ରିୟା ସରିଗଲା, ଆଉ ସେ ପୁଣି ମିଠା ବାଣ୍ଟି ବସିଲେ । 'ଜୀବନ ଯାକ ତ ଘରେ ଏମିତି ସଡ଼ି ସଡ଼ି...' ପ୍ରଭୃତି ବାକ୍ୟ ସବୁ ଅନୁଚାରିତ ହୋଇରହିଗଲା - ବୋଧହୁଏ ଜୋଇଁ, ଭଉଣୀଜୋଇଁଙ୍କ ଉପସ୍ଥିତି ଯୋଗୁଁ । ବୁଦ୍ଧଦେବବାବୁ ତାଙ୍କ ବଇଁଶୀ ଉଠାଇ ଆଣି ଟିକିଏ ପଦ୍ମତୋଳା ବୋଲିବାକୁ ଇଚ୍ଛା କରୁଥିଲେ, କିନ୍ତୁ ମିନି କହିଲା, ବାପା, ପ୍ଲିଜ୍ ପୁଟୁନ୍‌କୁ ସାଂଗରେ ନେଲେ ତ ସେ କାହାକୁ ସିନେମା ଦେଖାଇଦେବନି, ସିନେମା ହଲ୍‌ରେ (ହିରୋଇନ୍) ସଂଗେ ପାଟିକରି ଗୀତ ବୋଲିବା ଆରମ୍ଭ କରିବ । ଆଉ ପିଲୁ କଥା ତ ଛାଡ଼ । ପାଇଖାନା ଅବଶ୍ୟ କରିବନି, କିନ୍ତୁ ସିନେମା ହଲ୍‌ରେ ଯଦି ପରିସ୍ରା କରିଦିଏ କି ହଟହଟା କଥା ! ତା' ସାଂଗକୁ ଯୋଡ଼ିଦେଲା, 'ସେ ଦିହେଁ ତ ତମକୁ ଏତେ ଭଲପାଆନ୍ତି କେଡ଼େ ଖୁସିରେ ତମ ପାଖରେ ଗଧିଆ ଗପ ଶୁଣିବା ପାଇଁ ରହିଯିବେ ।'

କି ଅନ୍ୟାୟ ଅନୁରୋଧ ! ଏମାନେ ଯିବେ ସିନେମା ଦେଖିବାକୁ ଆଉ ସେ ଘରେ ବସିରହି ଛୁଆ ଜଗିବେ, କିନ୍ତୁ ସେ ନିଜେ ତ ପୂଜା ପାଇଁ ସମସ୍ତଙ୍କୁ ନିମନ୍ତ୍ରଣ କରି ଏସବୁ ଉପଦ୍ରବ ବରଣ କରିଆଣିଛନ୍ତି - କାହାକୁ ବା ଦୋଷ ଦେବେ - କେମିତି ବା ସିନେମା ଯିବାପାଇଁ ମନା କରିବେ ? ବୃଦ୍ଧଦେବବାବୁ ଅଗତ୍ୟା ରାଜିହେଲେ ।

ସୁବିମଳ ସନ୍ଧ୍ୟା । ସମସ୍ତେ ସିନେମା ଦେଖିବା ପାଇଁ ଚାଲିଗଲେଣି । ପୁଟୁନ୍ ଆଉ ପିଲୁ ଶୋଇଛନ୍ତି - ଏ ଯାଏ ଉଠିନାହାନ୍ତି । ଘର ସାମ୍‌ନାର ଛୋଟ ଲନ୍‌ଟିରେ ଖଣ୍ଡିଏ ବେତ ଚୌକିରେ ବସି ବୃଦ୍ଧଦେବବାବୁ ପ୍ରକୃତିର ସୌନ୍ଦର୍ଯ୍ୟ ଉପଭୋଗ କରୁଥିଲେ । ପାଟି ମେଲାକରି ସତେ ଯେମିତି ସେ ଦୃଶ୍ୟକୁ ସେ ଗୋଟାପଣେ ଗିଳିପକାଉଥିଲେ ।

ସୃଷ୍ଟିକର୍ତ୍ତାଙ୍କ ସୃଷ୍ଟି ସତରେ ଅତି ଚମତ୍କାର ଦିଶୁଥିଲା । ସବୁଜ ଶାଳବଣଭରା ବାରପାହାଡ଼ର ସାମନାପଟଟି ନଇଁ ଆସୁଥିବା ସନ୍ଧ୍ୟାର ଛାଇରେ ଧିରେ ଧିରେ ଘୋଡ଼ାଇହୋଇ ଆସୁଥିଲା । ଆଲୁଅ ଆଉ ଅନ୍ଧାରର ଅପୂର୍ବ ମିଳନ । ମନେ ହେଉଥିଲା ଅନ୍ଧାର ସତେ ଯେମିତି ଆଲୁଅକୁ ଛୁଇଁବାକୁ ଚେଷ୍ଟା କରୁଛି । ଆଲୁଅ ଅପସରି ଯାଉଛି - ଧରୁ ଧରୁ ଖସି ପଳାଉଛି । ଆଉ ପଛରେ ଗୋଡ଼ାଇଛି ଅନ୍ଧାର ତାର ବିରାଟ ଛାଇ ନେଇ, ବିଶାଳ ତନୁ ଲମ୍ବାଇ ସୈରିନ୍ଧ୍ରୀଙ୍କ ପଛରେ କୀଚକ ଗୋଡ଼ାଇଲା ପରି ।

ପାହାଡ଼ ଶିଖରର ବକ୍ରରେଖା ଉପରେ ଗୋଟିଏ ଦିଗରେ ଝଲସୁଥିଲା ଖଣ୍ଡେ ଧଳା ବଉଦ ଭିତରେ ଘନନୀଳ ଆକାଶ - ଅନ୍ୟ ଦିଗରେ ଝଟକୁଥିଲା ଛିଟିକି ପଡ଼ିଥିବା ତରଳସୁନାରେ ଚିତ୍ରିତ ଗୋଟିଏ ବିରାଟ ଈଗଲ୍ ପକ୍ଷୀ ଅଣ୍ଡ ମୁଣ୍ଡ ଆଉ ତା'ର ବିଶାଳ ଡ଼େଣା ସହ । ପାହାଡ଼ର ଯେଉଁ ଅଂଶଟି ଚନ୍ଦା ମହେହେଉଥିଲା ସତେ ଯେମିତି ତା' ପଛରେ ହିଁ ଲୁଚିରହିଛି ଗୋଟାଏ ସୁନାତରଳା ଫର୍ଣ୍ଣେସ୍ । ଉପରକୁ ତା'ର ଲେଲିହାନ ଜିହ୍ୱା ଲମ୍ବାଇ ଆକାଶକୁ ଚାଟିବାକୁ ଚେଷ୍ଟାକରୁଛି । ଚିତ୍ରଟିକୁ ସଂପୂର୍ଣ୍ଣ କାବ୍ୟରୂପ ଦେଇ କେତୋଟି ବଗ ପୂର୍ବଦିଗରୁ ପଶ୍ଚିମ ଦିଗକୁ ଉଡ଼ିଯାଉଥିଲେ ।

ରୂପର ଏହି ପସରା ଭିତରେ ବାରପାହାଡ଼ର ଚନ୍ଦା ଅଂଶଟି ଅତ୍ୟନ୍ତ ରୁକ୍ଷ ଓ କଦାକାର ଦେଖାଯାଉଥିଲା । କାହିଁକି କେଜାଣି ବୃଦ୍ଧଦେବବାବୁ ଏ ଚିତ୍ରଟିକୁ କୌଣସି ସୁନ୍ଦରୀ ନାରୀର ଗୋଲାପୀ ଗଣ୍ଡରେ ଅକସ୍ମାତ୍ ଦେଖା ଦେଇଥିବା ଏକ ଯାଦୁ ସଂଗରେ ତୁଳନା କଲେ, ଭାବିଲେ, ବାରପାହାଡ଼କୁ ଯାଦୁ ହୋଇଛି । ଟିକିଏ ହସିଲେ, ଆଉ ପରେ ପରେ ଗମ୍ଭୀର ହୋଇଗଲେ । ସୃଷ୍ଟିକର୍ତ୍ତାଙ୍କ ଏପରି ଅଦ୍ଭୁତ କ୍ରିୟାକଳାପ ସବୁ

ହିଁ ବୁଦ୍ଧଦେବବାବୁଙ୍କୁ ବେଳେ ବେଳେ ବିଚଳିତ କରିପକାଏ । ସେ ଭାବନ୍ତି ସୃଷ୍ଟିକର୍ତ୍ତା ସତରେ ବଡ଼ ଖାମଖିଆଲି । ସୌନ୍ଦର୍ଯ୍ୟ ଯଦି ଦେଲେ ସେ ଭିତରେ ଯାଦୁ ପୁରାଇଲେ କାହିଁକି ? ସୁନ୍ଦର ସୃଷ୍ଟି ଯଦି କଲେ ସେ ଭିତରେ ଦୁଃଖ ଭର୍ତ୍ତି କଲେ କାହିଁକି ? ସେଥିପାଇଁ ଯେଉଁମାନେ ଏଇ ସୃଷ୍ଟିକର୍ତ୍ତାଙ୍କୁ ବିରକ୍ତହୋଇ ଗାଳିଦିଅନ୍ତି, ବୁଦ୍ଧଦେବବାବୁ ବେଳେ ବେଳେ ସେଇ ଦଳକୁ ସମର୍ଥନ କରନ୍ତି । କହନ୍ତି - ଚକାଡ଼ୋଳା ଏଡ଼େବଡ଼ ବଡ଼ ଆଖି ରଖିଛି ସିନା କିଛି ଦେଖୁନି । ଦୁନିଆ ଏ ଆଡ଼ିକି ଭାସିଗଲାଣି କାଳିଆ ତାର ବଇଁଶୀ ବଜାଉଛି । କହନ୍ତି ହେଉ, ବଇଁଶୀ ବଜାଅ - କିଏ ମନାକରୁଛି, କିନ୍ତୁ ଏଆଡ଼ିକି ବି ଟିକିଏ ନଜର ପକାଅ - ନଇଲେ ସୃଷ୍ଟି କରୁଥିଲ କାହିଁକି ? ବର୍ଷା ହେଉଛି ତ ହେଉଛି - ଗାଁଗଣ୍ଡା ଏଣେ ଭାସିଗଲାଣି, କାହାରି ନଜର ନାହିଁ । ଆଉ ଛାଡ଼ିଗଲା ତ ଛାଡ଼ିଗଲା ସବୁ ଜଳିପୋଡ଼ି ଛାରଖାର । ଏଇଟା ଗୋଟାଏ କି ଶାସନ ? ଅନ୍ୟ ସବୁଠେଇଁ ବି ସେଇ ଏକା କଥା । ଯିଏ ଧନୀ ହୋଇଛି ତ ସେ ଆହୁରି ବେଶୀ ଧନୀ ହୋଇ ଚାଲିଛି, ଫୁଲିଉଠୁଛି ଟିଙ୍କ ପରି ଗୋଲ୍‌ଗାଲ୍ ହୋଇଯାଉଛି । ଲକ୍ଷପତି ହେଉଛି କରୋଡ଼ପତି । ଆଉ ଯିଏ ଗରିବ ନୀଳଚକ୍ରବାନା ଦେଖି ଦେଖି ମୃଦଙ୍ଗ ବାଡ଼ାଉଥାଉ ରାତି ଆଉଦିନ, ପେଟ ପାଇଁ ମୁଠାଏ ଦାନା ନାହିଁ କି ଅଣ୍ଟା ପାଇଁ ଖଣ୍ଡିଏ କନା ନାହିଁ । ପୁଅଝିଅଙ୍କୁ ନକ୍ର ଦରିଆ ମଝିଆ ଟାଣିନେଇ ଅଧାଗିଳିଲେ ଯାଇ ଚକ୍ର ଆସିବ ସେମାନଙ୍କୁ ରଖିବା ପାଇଁ । ଆଉ ତା' ଅବଳାର ମୁଣ୍ଡବାଳ ଟାଣି କେଉଁ ପାଷଣ୍ଡ ବିଚ୍ ରାସ୍ତାରେ ଘୋଷାରି ନେଇ ତାର ଧନକୁବେର ବନ୍ଧୁଙ୍କ ସାମ୍ନାରେ ବିବସନା କରିବାକୁ ବସିଲେ ଯାଇ ଏକାସାଂଗରେ ଶତବସ୍ତ୍ର ମିଳିବ। ନାଇଁ ଯାହା କହିବ କହ - ଏ କଥା ମାନିବାକୁ ହବ ଯେ, ସୃଷ୍ଟିକର୍ତ୍ତାଙ୍କ ଶାସନ ଟିକିଏ ହୁଗୁଳା ।

ବୁଦ୍ଧଦେବବାବୁ ପୁଣି ଭାବିଲେ । ମନକୁ ମନ କହିଲେ - ଅବଶ୍ୟ ଏଥିରେ କାଳିଆର ବା କି ଦୋଷ ? ଯାହାକୁ ଯେଉଁ ଭାର ଦେବ, ସେ କାମ ସେ ଭଲକରି କଲେ ସିନା ! ଏତେବଡ଼ ସୃଷ୍ଟିଟିଏ ରଚନା କରିଦେଲେ ବୋଲି ସବୁକଥା କ'ଣ ସେ ନିଜେ ତଦାରକ କରିବେ ? ତା'ହେଲେ ଏଇ ଦେବାଦେବୀ ଗୁଡ଼ିକ ରହିଛନ୍ତି କାହିଁକି ? ତହିଁରେ ପୁଣି ଲୋକଙ୍କ ଶୃଙ୍ଖଳାଜ୍ଞାନ ଏତେକମ୍ ଯେ, କେହି ଥି ପ୍ରପର୍‌ଚେନାଲ୍ ଦେଇ ଯିବେନି - ସିଧାସଳଖ କାଳିଆ ପାଖରେ । କାହାର ପେଟ ଦରଜ ତ କାହାର ପୁଅ ଝିଅ ନାହିଁ । କିଏ କହୁଛି, 'କାଳିଆ, ମୋ ସ୍ତ୍ରୀ ଭାରି କଳିହୁଡ଼ୀ, ତାକୁ ଟିକିଏ ଦେଖ, କାଳିଆ ଟିକେ ସଦ୍‌ବୁଦ୍ଧି ଦେତ ! କିଏ କହିଲାଣି, ଅଧଡ଼ଜନ କଦଳୀ ଆଉ ଦି'ଟା ନଡ଼ିଆ ଦେବି କାଳିଆ, ଆଉ ଦୁଧ, ଦହି, ସର ଯେତେ ଖାଇବୁ ଖା, ମୋତେ କୌଣସି ମତେ ଗୋଟେ ମନ୍ତ୍ରୀ କରିଦେ ।' କାଳିଆ କା' କଥା ବୁଝିବେ ? ତା'ପରେ

ଏଇ ଷ୍ଟାଟିଷ୍ଟିକ୍ସ ସବୁ ଖାଇଲା । ସେ ଭଦ୍ରଲୋକମାନେ ରିପୋର୍ଟ ଦେଇଦେଉଥିବେ - ହାରାହାରି ବର୍ଷା ୫୦ ଇଞ୍ଚ । ଏ ଆଡ଼ିକି କେଉଁଠି ୯୦ ଇଞ୍ଚ ବର୍ଷା ହୋଇ ଗାଁ ଗଣ୍ଡା ଭାସିଗଲାଣି ତ ଆଉ କେଉଁଠି ୧୦ ଇଞ୍ଚ ବର୍ଷା - ସବୁ ଜଳିପୋଡ଼ି ପାଉଁଶ । ହାରାହାରି ୫୦ ଇଞ୍ଚ ବାହାରିପଡ଼ିଲେ ହେଲା । ତହିଁରେ ପୁଣି ଖବର ଦେବାବାଲା ହେଲେ ନାରଦ । ବୀଣା ବଜାଇ ଘରେ ପଶିଗଲେ ଯିଏ ଗୋଡ଼ ଟିକିଏ ଘଷିଦେଇପାରିଲା ତା'ରି ଆଡ଼କୁ ଢ଼ଳିପଡ଼ିବେ - ସେ ଦେବତା ହେଉ ବା ରାକ୍ଷସ ହେଉ । ୫୦ ବର୍ଷ ପରେ ଚାକିରି ରିଭ୍ୟୁ କରିବା ପାଇଁ ଏଇଠି ଯେଉଁ ନିୟମ କାଲିଆ ବି ସେପରି କରନ୍ତେ କି! ଏଇ ଇନ୍ଦ୍ରବିନ୍ଦ୍ରଙ୍କ କାମ ରିଭ୍ୟୁ କରି କମ୍ପଲସରି ରିଟାୟାରମେଣ୍ଟ କରାଇଦିଅନ୍ତେ ।

କିଛି ଗୋଟାଏ ଡ଼ାକ ଶୁଣି ବୁଦ୍ଧଦେବବାବୁ ଚମକିପଡ଼ିଲେ । ତାଙ୍କର ମନେହେଲା କେହି ଜଣେ ଭାଇନା ବୋଲି ଡ଼ାକୁଛି । ଠିକ୍ ମିଶ୍ରବାବୁଙ୍କ ସ୍ୱର । କେବଳ ସେ ହିଁ ବୁଦ୍ଧଦେବବାବୁଙ୍କୁ ଏମିତି ଭାଇନା ବୋଲି ଡ଼ାକୁଥିଲେ । କାହିଁ କେତେବର୍ଷ ହୋଇଗଲାଣି, ତାଙ୍କ ସଂଗରେ ଆଉ ବୁଦ୍ଧଦେବବାବୁଙ୍କର ଦେଖାସାକ୍ଷାତ୍ ହୋଇନି । ହୀରାକୁଦ ବନ୍ଧ ତିଆରିବେଳେ ଏଇ ବୁର୍ଲା ସହରରେ ମିଶ୍ରବାବୁଙ୍କ ସଂଗରେ ତାଙ୍କର ଅନେକ ଥର ଦେଖାହୁଏ । ତାଙ୍କର ସାଂଗସାଥୀଙ୍କୁ ନେଇ କେନାଲ କଲୋନୀରୁ ସେ ମଝିରେ ମଝିରେ ବନ୍ଧ ଦେଖିବାକୁ ଆସନ୍ତି, ଆଉ ପ୍ରାୟ ବୁଦ୍ଧଦେବବାବୁଙ୍କ ଘରେ ହିଁ ରହନ୍ତି । ବନ୍ଧ ତିଆରି ସରିଲା ପରେ କିଏ କୁଆଡ଼େ ଗଲେ - ମିଶ୍ରବାବୁ ଗଲେ ଗୋଟିଏ ଦିଗରେ, ଆଉ ବୁଦ୍ଧଦେବବାବୁ ଗଲେ ଅନ୍ୟ ଏକ ଦିଗରେ । ତା'ପରେ ଦିହିଁଙ୍କ ଭିତରେ ଦେଖା ଦର୍ଶନ ନାହିଁ ।

ଅନ୍ଧାର ହେଲାଣି - କିନ୍ତୁ ରାସ୍ତାର ଆଲୁଅ ଏ ପର୍ଯ୍ୟନ୍ତ ଜଳିନି ।

ବୁଦ୍ଧଦେବବାବୁ ଦେଖିଲେ କେହିଜଣେ ଭଦ୍ରଲୋକ ପାଖେଇ ଆସୁଛନ୍ତି । ଚାଲିର ଢ଼ଙ୍ଗରୁ ମନେହେଲା ସତେ ଯେପରି ମିଶ୍ରବାବୁ । ସେଇ ଧଳା ଢ଼ିଲା ପେଣ୍ଟ ପାଇଜାମା ପରି, ମାଟିଆ କୋଟ୍, ଆଉ ହଲାଝୁଲା ଚାଲି । ଆଗନ୍ତୁକ ଭଦ୍ରଲୋକ ମିଶ୍ରବାବୁଙ୍କ ପରି ଗଳା ଖଙ୍କାରି ହସିଲେ ମଧ । ମନେହେଲା ସେହି ସମାନ ହେଁ ହେଁ ହସ । ଭଦ୍ରଲୋକଙ୍କୁ ଭଦ୍ରତା ଖାତିରିରେ ବୁଢ଼ା ନ କହି ପ୍ରୌଢ଼ କୁହାଯିବ । ଛାଇ ଅନ୍ଧାରରେ ମଧ ମୁଣ୍ଡର କିଛି ଧଳାବାଳ ବାରି ହୋଇଯାଉଛି । ପାଟି ଟିକିଏ ପଶିଲା ପଶିଲା, ଗାଲ ଆଉ ପାଟିକି ଅଲଗା କରିଦେଇଥିବା ବକ୍ରରେଖା ଦିଓଟି ବେଶ୍ ଗାଢ଼ । ମୁହଁର ଚେହେରା ମିଶ୍ରବାବୁଙ୍କ ଚେହେରା ସାଂଗରେ ଏମିତି ମିଳିଯାଉଛି ଯେ, ତାଙ୍କୁ ଦେଖି ଯିଏ ବି ମିଶ୍ରବାବୁ ବୋଲି ଭୁଲ୍ କରିବସିବ ।

ଭଦ୍ରଲୋକ ବେଶ୍ ପାଖେଇଆସି ଆଉଥରେ ଡ଼ାକିଲେ – 'ଭାଇନା !'

ସେଇ ପରିଚିତ ହସ ହସ ମୁହଁ । ବୁଦ୍ଧଦେବବାବୁ ଆଶ୍ଚର୍ଯ୍ୟଭରା ଆଖିରେ ଭଦ୍ରଲୋକଙ୍କୁ ଅନାଇଲେ । 'ଆରେ ସତରେ ମିଶ୍ରବାବୁ', କହି ଚୌକିରୁ ଉଠି ଦୌଡ଼ିଯାଇ ତାଙ୍କୁ କୁଣ୍ଢାଇଧରିଲେ ।

ଅନେକ ବର୍ଷ ପରେ ପୂଜା ଦିନଟିରେ ଦୁଇ ପୁରୁଣା ବନ୍ଧୁଙ୍କର ଏପରି ଅପ୍ରତ୍ୟାଶିତ ମିଳନ । ଗପସପ ମଝିରେ ବାଧା ଦେବାପାଇଁ ମଧ୍ୟ କେହିନାହାନ୍ତି । ସୁଖ ଦୁଃଖ ସାଂଗରେ ସଂସାର ଯାକର କଥାବାର୍ତ୍ତା ଆରମ୍ଭ ହୋଇଗଲା । ଧୀରେ ଧୀରେ ଦୁହେଁ ହୀରାକୁଦ ବନ୍ଧ ତିଆରି ଦିନର ସୁଖମୟ ସ୍ମୃତି ସବୁ ଓଖାରି ବସିଲେ । ଆଜି ହୀରାକୁଦ ଓ ବୁର୍ଲା ସହରର କି ପରିବର୍ତ୍ତନ! ହୀରାକୁଦରେ ପ୍ରଥମ ଦୁର୍ଗାପୂଜା କଥା ଦୁହିଁଙ୍କର ମନେପଡ଼ିଗଲା ।

ପ୍ରାୟ ସତେଇଶ ଅଠେଇଶ ବର୍ଷ ତଳର କଥା । ସେତେବେଳେ ହୀରାକୁଦରେ ପଞ୍ଜାବୀ, ବଙ୍ଗାଳୀ ଆଉ ତେଲୁଗୁ ଭର୍ତ୍ତି । ହୀରାକୁଦ ବନ୍ଧ ପାଇଁ ଛୋଟବଡ଼ ପ୍ରାୟ ସବୁ ନିଯୁକ୍ତି ଦିଲ୍ଲୀରେ ହିଁ ହୋଇଯାଇଥାଏ, ଆଉ ସମସ୍ତେ ଦିଲ୍ଲୀରୁ ହିଁ ନିଯୁକ୍ତିପତ୍ର ଧରି ହୀରାକୁଦରେ ପହଞ୍ଚୁଯାନ୍ତି । ବାହାରିଆ ଢ଼ଙ୍ଗଢ଼ାଙ୍ଗର ଆଉ କଥାବାର୍ତ୍ତାରେ ଅତି ନିପୁଣ ଜଣାପଡୁଥିଲେ ହେଁ ଇଂଜିନିୟରଂ ବିଦ୍ୟାରେ ଅଧିକାଂଶ ଶୂନ୍ । ସେମାନଙ୍କ ଭିତରୁ ଅନେକଙ୍କର କୌଣସି ଡ଼ିଗ୍ରୀ ଡ଼ିପ୍ଲୋମା ନ ଥାଏ । ସମସ୍ତଙ୍କର ପ୍ରାୟ ଏକାରକମର ଜବାବ – ଡ଼ିଗ୍ରୀ ଡ଼ିପ୍ଲୋମା ପାକିସ୍ଥାନରେ ରହିଗଲା, ଅଥବା ପଳାଇଆସିଲା ବେଳେ କେଉଁଠି ହଜିଗଲା । ସେସବୁ ତନଖି ଦେଖିବା ପାଇଁ ମଧ୍ୟ ଦରକାର ପଡୁନଥାଏ – ରିଫ୍ୟୁଜି ନାଁରେ ଦିଲ୍ଲୀ ଓ କଲିକତା ଅଞ୍ଚଳରେ ଯିଏ ଯାହାକୁ ଧରି ଫାଇଦା ଉଠାଇ ନେଇପାରିଲା । ଓଡ଼ିଶା ଭୂଇଁରେ ଓଡ଼ିଆଙ୍କୁ ନିଯୁକ୍ତି ମିଳୁନି ବୋଲି ପ୍ରତିବାଦ କରିବା ପାଇଁ କେହି ନାହାନ୍ତି । ହୀରାକୁଦ ବନ୍ଧ ବିରୋଧୀ ଆନ୍ଦୋଳନ ବିଫଳ ହୋଇଗଲା ପରେ ସମ୍ବଲପୁର ଲୋକଙ୍କ ମନୋବଳ ଭାଙ୍ଗିଯାଇଥାଏ। ସମ୍ବଲପୁର ଅଞ୍ଚଳର ଭଲ ଚାଷଜମି ବୁଡାଇଦେଇ ଉପକୂଳ ଅଞ୍ଚଳ ପ୍ରତି ଏକରକମର ବିଦ୍ୱେଷ ଭାବ ଦେଖାଦେଇଥାଏ ଏବଂ ବନ୍ଧ ତିଆରିରେ ଅସହଯୋଗ କରିବା ମନୋବୃତ୍ତି ନେଇ ସେମାନେ ସାଧାରଣ ଭାବରେ ହୀରାକୁଦ ବନ୍ଧରେ କାମ କରୁଥିବା ଓଡ଼ିଆମାନଙ୍କୁ ହୀନ ଦୃଷ୍ଟିରେ ଦେଖୁଥାଆନ୍ତି । ଓଡ଼ିଶାରୁ ଡ଼େପୁଟେସନରେ ଆସିଥିବା ସିନିୟର ଇଂଜିନିୟରମାନେ ତଥାକଥିତ ଓଡ଼ିଆ, କିନ୍ତୁ ସତରେ ବଙ୍ଗାଳୀ ଅଥବା ତେଲୁଗୁ । ସେମାନେ ଓଡ଼ିଆଙ୍କ ପାଇଁ ଲଢ଼ିବେ କ'ଣ, ଓଲଟା ବଙ୍ଗଳା ଆଉ ତେଲୁଗୁଙ୍କୁ ଭର୍ତ୍ତିକରିବା ଉଦ୍ଦେଶ୍ୟରେ ଓଡ଼ିଶାରେ ଭଲଲୋକ ନାହାନ୍ତି ବୋଲି ଉପରିସ୍ଥ ପଞ୍ଜାବୀ

ଓ ସିନ୍ଧୀ ଇଂଜିନିୟରମାନଙ୍କ ସଂଗରେ ଯୋଡ଼ିହୋଇଯାଇ ସୁନ୍ଦରଗଡ଼ର ଆଦିବାସୀ, ରେଙ୍ଗୁନରୁ ପଳାଇଆସିଥିବା, ଗଞ୍ଜାମୀଆ ମକୁରିଆ ଏବଂ ସମ୍ବଲପୁରର ଗାଉଁଲି ହରିଜନ ଶ୍ରେଣୀର ରେଜାଙ୍କୁ ଓଡ଼ିଆ ଜାତିର ପ୍ରତିନିଧି ବୋଲି ସୂଚାଇଦେବାରେ ଚେଷ୍ଟିତ ଥିଲେ । ଆଙ୍ଗୁଠିଗଣା ଓଡ଼ିଆ ଇଂଜିନିୟରଙ୍କ ଭିତରେ ଥିଲେ ଏଇ ବୁଦ୍ଧଦେବବାବୁ, ମିଶ୍ରବାବୁ ଆଉ ଅଧିକା ଦୁଇ ଚାରିଜଣ ସବୁ ସେମାନଙ୍କ ଉପରେ ହିଁ ଲଦିଦିଆଯାଇଥିଲା - କୌଣସି ଭଲ ମନୋଭାବ ନେଇ ନୁହେଁ, କାମ ଆଗେଇ ନପାରିଲେ ଓଡ଼ିଆମାନେ ଅପାରଗ ବୋଲି ପ୍ରମାଣ କରିବା ଉଦ୍ଦେଶ୍ୟରେ - ଆଉ ତାଙ୍କପରି ବନ୍ଧବିଷୟକ ଉଚ୍ଚ ଶିକ୍ଷାପ୍ରାପ୍ତ ବିଶେଷଜ୍ଞ ଅଣଓଡ଼ିଆଙ୍କ ଭିତରେ ବେଶୀ ନଥିବାଯୋଗୁଁ ।

ଗଡ଼ଜାତ ମିଶ୍ରଣ ପୂର୍ବରୁ ଛଅଟି ଜିଲ୍ଲାକୁ ନେଇ ଗଠିତ ଓଡ଼ିଶା ଏତେ ଛୋଟ ଥିଲା ଯେ, ତା'ର ଅସ୍ତିତ୍ୱ ମଧ୍ୟ ଭାରତର ଅନେକେ ଜାଣିପାରୁନଥିଲେ । ତହିଁରେ ପୁଣି ଓଡ଼ିଆ ନେତାଙ୍କ ସର୍ବଭାରତୀୟ ପ୍ରୀତି । ଦୁଇ ବନ୍ଧୁ ସେ ଦିନର ଗୋଟିଏ ଘଟଣା ମନେପକାଉଥିଲେ । ଇଂଜିନିୟରିଂ ଜ୍ଞାନ ବିବର୍ଜିତ କେତେକ ଅପଦାର୍ଥ ଅଣଓଡ଼ିଆ ଏସିଷ୍ଟାଣ୍ଟ ଇଂଜିନିୟର ହୋଇଥିବାବେଳେ, ଇଂଜିନିୟରିଂ କଲେଜମାନଙ୍କରେ ସର୍ବୋଚ୍ଚ ସ୍ଥାନ ଅଧିକାର କରିଥିବା କେତେଜଣ ଓଡ଼ିଆ ଡ଼ିଗ୍ରୀଧାରୀ କେମିତି ଓଭରସିଅର ହୋଇ ସଡୁଛନ୍ତି, ସେକଥା ବୁଝାଇବା ପାଇଁ ସେମାନେ ଥରେ ଜଣେ ଓଡ଼ିଆ ତୁଙ୍ଗନେତାଙ୍କ ପାଖକୁ ଗଲେ । ନେତା ଜଣକ ଏ ବିଷୟ ଚିଫ୍ ଇଂଜିନିୟରଙ୍କ ସଂଗରେ ଆଲୋଚନା କରିବେ ବୋଲି କହିଲେ, କିନ୍ତୁ ଅବସ୍ଥା ଓଲଟା ଢ଼ଙ୍ଗ ଧରିନେଲା । ନେତା ମହାଶୟ ସମ୍ବଲପୁରରେ ଆଠ ଶହ ଟଙ୍କାରେ ଗୋଟିଏ ମଟରକାର ନାମଧେୟ ଭଙ୍ଗାରୁଜା ଗାଡ଼ି କିଣିଥାଆନ୍ତି । ଅନ୍ୟାନ୍ୟ କଥାବାର୍ତ୍ତା ମଧ୍ୟରେ ସେହି କାର୍‌ଟିକୁ ହୀରାକୁଦ କାରାଖାନାରେ ମରାମତି କରି ହେବ ନା ନାହିଁ ସେ କଥା ପଞ୍ଜାବୀ ଚିଫ୍ ଇଂଜିନିୟରଙ୍କୁ ପଚାରିଦେଲେ । ଚିଫ୍ ଇଂଜିନିୟର ଏଇ ଓଡ଼ିଆ ନେତାଙ୍କୁ ଖୁସି କରିବାକୁ ଯାଇ କହିଲେ - ଯେଉଁମାନେ ଏତେ ବଡ଼ ବନ୍ଧ ବାନ୍ଧିବାକୁ ଯାଉଛନ୍ତି ତାଙ୍କ ପକ୍ଷରେ ଏଇଟା କି ଛାର କଥା । କେତେ ଖର୍ଚ୍ଚହେବ ବୋଲି ପଚାରିବାରେ ସେ କହିଲେ ଯେ, ତାଙ୍କ ଓସ୍ତାଦ୍ ମେକାନିକ୍‌ମାନେ ଖୁବ୍ କମ୍ ଖର୍ଚ୍ଚରେ ସବୁ ଭଙ୍ଗା ଜିନିଷକୁ ପ୍ରାୟ ନୂଆ କରିଦିଅନ୍ତି । ସେମାନଙ୍କ କର୍ମ କୁଶଳତା ଯୋଗୁଁ ହିଁ ଅନ୍ୟ କେଉଁଠି ଯେଉଁ ବନ୍ଧ ୧୦୦ କୋଟି ଟଙ୍କାରୁ କମ୍ ଖର୍ଚ୍ଚରେ ହୁଅନ୍ତାନି, ସେ ତାକୁ ଚାଳିଶ କୋଟିରେ ସାରିଦେବାକୁ ନିଷ୍ପତ୍ତି ନେଇଛନ୍ତି । ଏ କଥାରେ ମୁଗ୍ଧ ହୋଇଯାଇ ଓଡ଼ିଆ ନିଯୁକ୍ତି କଥା କହିବାପାଇଁ ନେତା ମହାଶୟ ପୁରାପୁରି ଭୁଲିଗଲେ - ଫେରିଆସି

କହିଲେ, ମାସେ ପରେ ତ ସେ ଆଉଥରେ ଆସିବେ, ସେତେବେଳେ ଦେଖିବେ । ମାସେ ପରେ ସେ ଯେତେବେଳେ ଆସିଲେ, ଚିଫ୍ ଇଂଜିନିୟର ଇଂଜିନ୍ ସହ ସବୁ ନୂଆ ପାର୍ଟ ଖଞ୍ଜିଦେଇ 'ଜଙ୍କ୍'ଟିକୁ ପ୍ରାୟ ନୂଆ କରିଦେଇଥାଆନ୍ତି । ଖର୍ଚ୍ଚ ମାତ୍ର ପାଞ୍ଚଶହ ଟଙ୍କା । ନେତା ମହାଶୟ ପଞ୍ଜାବୀ ଇଂଜିନିୟରମାନଙ୍କ ନାହିଁ ନଥିବା ଇଂଜିନିୟରିଂ କୌଶଳ ଓ କାର୍ଯ୍ୟଦକ୍ଷତାରେ ବିମୁଗ୍ଧ ହୋଇ ସେ ସମ୍ବନ୍ଧରେ ଗୋଟିଏ ପ୍ରେସ୍ ବିବୃତ୍ତି ଦେଲେ ଏବଂ ଓଡ଼ିଆଙ୍କ କର୍ମଯୋଗାଣ ପାଇଁ ପାଟିତୁଣ୍ଡ କରୁଥିବା ଲୋକଙ୍କ କ୍ଷୁଦ୍ର ଆଞ୍ଚଳିକ ମନୋଭାବ ଯୋଗୁଁ ସେମାନଙ୍କୁ ତିରସ୍କାର କରି ଚିଫ୍ ଇଂଜିନିୟର ଧାର ଦେଇଥିବା ଡ୍ରାଇଭର ସଂଗରେ ମରାମତି ହୋଇଥିବା ନିଜ ଗାଡ଼ିରେ ସ୍ୱସ୍ଥାନକୁ ଫେରିଯାଇଥିଲେ ।

ସେପରି ପରିସ୍ଥିତିରେ ହୀରାକୁଦ ଓ ବୂର୍ଲାରେ ଓଡ଼ିଆଙ୍କ ମର୍ଯ୍ୟାଦା ଓ ସମ୍ମାନ ରକ୍ଷାର ଭାର ଏଇ ବୁଦ୍ଧଦେବବାବୁ ଓ ମିଶ୍ରବାବୁମାନଙ୍କ ଉପରେ ପଡ଼ିଥିଲା । ଓଡ଼ିଆଙ୍କୁ ଏକଜୁଟ୍ କରିବା ମନ ନେଇ ସେଦିନ ସେମାନେ ହୀରାକୁଦ ଠାରେ ପ୍ରଥମ ଦୁର୍ଗାପୂଜାର ଆୟୋଜନ କରିଥିଲେ, ଆଉ ପ୍ରଥମକରି ଓଡ଼ିଆ ନାଟକଟିଏ ମଞ୍ଚସ୍ଥ କରିବାକୁ ମନସ୍ଥ କଲେ। ନାଟକଟିକୁ ସଫଳ ରୂପ ଦେବାପାଇଁ ସେମାନଙ୍କ ଭିତରେ କେହି ନାମଜାଦା ଅଭିନେତା ନଥିଲେ । ଅଭିନେତ୍ରୀ କଥା ତ ଛାଡ଼ । ସାଧାରଣ ମଜୁରିଆ ଶ୍ରେଣୀର ଲୋକେ ଉପଭୋଗ କରିପାରିବେ ବୋଲି 'ମାତୃପୂଜା' ନାଟକ ବଛାହେଲା ଆଉ ନାଟକଟିକୁ ପଞ୍ଜାବୀ ଏବଂ ଅନ୍ୟାନ୍ୟ ଅଣଓଡ଼ିଆଙ୍କ ଭିତରେ ଆକର୍ଷଣୀୟ କରିବା ଉଦ୍ଦେଶ୍ୟରେ ଗୁଡ଼ିଏ ଶାସ୍ତ୍ରୀୟ ଏବଂ ଲୋକପ୍ରିୟ ନାଚ ଖୁନ୍ଦି ଦିଆହେଲା । ହୀରାକୁଦ ସହର ପ୍ରାନ୍ତରେ ଥିବା ଗୋଟିଏ ଛୋଟ ପାହାଡ଼ ଉପରେ ତିଆରି ହେଲା ପୂଜା ମଣ୍ଡପ । ପାହାଡ଼ର ପାଦଦେଶକୁ କାଟି ବେଞ୍ଚମାନ ତିଆରି କରି ଖୋଲା ଆକାଶ ତଳେ ଗ୍ୟାଲେରୀ କରିଦିଆଗଲା ଆଉ ତା ସାମ୍ନାରେ ତିଆରି ହେଲା ଅର୍ଦ୍ଧସ୍ଥାୟୀ ନାଟକ ମଞ୍ଚ। ଏହି ଇଂଜିନିୟରମାନେ ଥିଲେ ବନ୍ଧର ଜୀବନ - ସେମାନଙ୍କର ସଚ୍ଚୋଟପଣିଆ ଜଣାଶୁଣା ଥିଲା । ସବୁ ଠିକାଦାରମାନେ ଖୁସିରେ ବିନା ପଇସାରେ ଏସବୁ କାମ କରିଦେଲେ ।

ଅଣଓଡ଼ିଆଙ୍କ ତାଚ୍ଛଲ୍ୟ ହିଁ ଓଡ଼ିଆମାନଙ୍କୁ ଏକଜୁଟ୍ କରିଦେଲା । ବୁଦ୍ଧଦେବବାବୁଙ୍କ ପ୍ରରୋଚନାରେ ସୁରେଶ ପୂଜାରୀ ଏବଂ ସମ୍ବଲପୁରର ଅନ୍ୟ କେତେକ ଖ୍ୟାତନାମା କଳାକାର ନୃତ୍ୟ ପରିବେଷଣ କରିବା ପାଇଁ ଶେଷରେ ରାଜିହେଲେ । ଓଡ଼ିଆ ଇଂଜିନିୟରମାନେ ଘରକୁ ଘର ବୁଲି ନିମନ୍ତ୍ରଣପତ୍ର ବାଣ୍ଟିଲେ, ଆଉ ଶେଷରେ ଚିଫ୍ ଇଂଜିନିୟର ସବୁ ସୁପରିଣ୍ଟେଣ୍ଡିଂ ଓ ଏକ୍‌ଜିକ୍ୟୁଟିଭ୍ ଇଂଜିନିୟରଙ୍କ

ସ୍ୱାମୀମାନଙ୍କୁ ବିଶେଷ ଅନୁରୋଧ କରି ନାଟକ ଦେଖିବା ପାଇଁ ନେଇଆସିଲେ । ନାଟକ ଦିନରେ ଏକ ନାହିଁ ନଥିବା ଭିଡ଼ ଦେଖାଦେଇଥିଲା । ପାଖ ଆଖ ଅଞ୍ଚଳର ଗାଁମାନଙ୍କରୁ ଝିଅ ବୋହୂମାନେ ଉଠିଆସିଥିଲେ । ପ୍ରଥମ ଦୃଶ୍ୟ ଥିଲା ସୁରେଶ ପୂଜାରୀଙ୍କ ତାଣ୍ଡବ ନୃତ୍ୟ । ସିଲୋଟ୍‌ରେ ସତୀଙ୍କର ମୃତ ଦେହକୁ ଖଣ୍ଡ ଖଣ୍ଡ କରି ଫିଙ୍ଗିବା ଦୃଶ୍ୟ ଦେଖାଇଦେଲା ପରେ ମଞ୍ଚ ଭିତରୁ ଦୁଇ ପାଖରୁ ଫିଙ୍ଗା ହେଉଥିବା ଝରିବାଣର ଲକ୍ଷ ଲକ୍ଷ ସ୍ଫୁଲିଙ୍ଗ ଭିତରେ ପୂଜାରୀ ତାଙ୍କର ଅପରୂପ ନୃତ୍ୟ ପରିବେଷଣ କଲେ । ତାଙ୍କର କମନୀୟ ରୂପ, ତରଙ୍ଗାୟିତ ହସ୍ତଚାଳନା, ଲୀଳାୟିତ ଶରୀରଭଙ୍ଗୀ ଏବଂ ଗୋଟିଏ ପାଦର ଅଙ୍ଗୁଳିଗୁଡ଼ିକ ଉପରେ ସମଗ୍ର ଶରୀରର ଭାର ନ୍ୟସ୍ତକରି ସେ ଯେଉଁ ଅପୂର୍ବ ନୃତ୍ୟ ପରିବେଷଣ କଲେ ତାହା ସମସ୍ତଙ୍କୁ ମୁଗ୍ଧ ଚକିତ କରିଦେଇଥିଲା । ଅଣଓଡ଼ିଆମାନେ ପୂଜାରୀଙ୍କୁ ଉଦୟଶଙ୍କର ସଂଗରେ ତୁଳନା କରିଥିଲେ । ହୀରାକୁଦରେ କାମ କରୁଥିବା ଓଡ଼ିଆଙ୍କ ଛାତି ସେଦିନ ଗର୍ବରେ ଫୁଲିଉଠିଥିଲା । ଏପରି ଅନେକ ଅନେକ ଘଟଣା ଦୁଇ ବନ୍ଧୁ ମନେପକାଉଥିଲେ ।

ପୁଅଝିଅଙ୍କ କଥା ପଡ଼ିଲାବେଳେ ବୁଦ୍ଧଦେବବାବୁ ଜାଣିପାରିଥିଲେ ଯେ, ମିଶ୍ରବାବୁଙ୍କ ବଡ଼ଝିଅ ଗୌରୀ ପ୍ରାୟ ମାସେ ହେବ ତା'ର ଲେକ୍‌ଚରର୍ ସ୍ୱାମୀଙ୍କ ସହ ବଦଳିହୋଇ ସମ୍ବଲପୁରକୁ ଆସିଛି, ଆଉ ଝିଅ ଜୋଇଁଙ୍କ ନିମନ୍ତ୍ରଣ ରକ୍ଷାକରି ମିଶ୍ରବାବୁ ଆସିଛନ୍ତି ସମ୍ବଲପୁରକୁ ।

ମିଶ୍ରବାବୁଙ୍କର ତ ଗୋଟିଏ ମାତ୍ର ପୁଅ, ଆଉ ସିଏ ବି ଡ଼ାକ୍ତର । ଦୁଇଟିଯାକ ଝିଅ ବିବାହିତା । ତାଙ୍କ ପରିବାର ସତରେ ଏକ ଜଞ୍ଜାଳହୀନ ସୁଖୀ ପରିବାର ବୋଲି ବୁଦ୍ଧଦେବବାବୁଙ୍କ ମନ୍ତବ୍ୟ ଶୁଣି ମିଶ୍ରବାବୁ ତାଙ୍କ ମନଖୋଲା ସ୍ପେସିଏଲ୍ ହସଟିଏ ହସିଖୁସିରେ ତାଳିମାରି କହିଲେ – "ଭାଇନା, ହରିହରଙ୍କ ଭେଟ କଥା ଶୁଣିଛନ୍ତି ନା ?"

ସେଇ ଗପୁଡ଼ି ମିଶ୍ରବାବୁ – ଏତେ ବର୍ଷ ପରେ ମଧ୍ୟ ବିଶେଷ କିଛି ବଦଳି ନାହାନ୍ତି । ଗପ କହିବାରେ ଓସ୍ତାଦ୍, ଆରମ୍ଭ କଲେ ସହଜରେ ତା'ର ଶେଷ ହୁଏନି – ଖିଅରୁ ଖିଅ ବାହାରୁଥାଏ । ହରିହରଙ୍କ ଭେଟ କଥା ଆଗରୁ ଶୁଣିଛନ୍ତି ନା ନାହିଁ ତହିଁର ଜବାବ୍ ବୁଦ୍ଧଦେବବାବୁ ଦେବା ପୂର୍ବରୁ ହିଁ ସେ ଆରମ୍ଭ କରିଦେଇଥିଲେ – 'ଏଆଡୁ ଯାଉଥିଲେ ହରି ସେଆଡୁ ଆସୁଥିଲେ ହର, ଦିହିଁଙ୍କ ଦେଖାସାକ୍ଷାତ୍ ହୋଇଗଲା । ନମସ୍କାର ଦିଆନିଆ ଆଉ କୁଶଳାଦି ପ୍ରଶ୍ନ ପରେ ହରି ସସମ୍ମାନେ ହରଙ୍କୁ କହିଲେ – 'ଭୋଳାନାଥ, ପାର୍ବତୀଙ୍କ ପରି ସର୍ବଗୁଣସମ୍ପନ୍ନା ପତ୍ନୀ, କାର୍ତ୍ତିକେୟଙ୍କ ପରି ସୁନ୍ଦର ଓ ଧନୁର୍ଦ୍ଧର ତଥା ଗଣେଷଙ୍କ ପରି ଜ୍ଞାନୀ ଓ ବୁଦ୍ଧିମାନ୍ ଦୁଇପୁତ୍ର ନେଇ ଆପଣ ସତରେ

ସଦାନନ୍ଦ । ମହାଦେବ ହସିଲେ । କହିଲେ - ନଟକୁଟିଆ, ସବୁ ନଟକୁଟର ମୂଳ ତ ଆପଣ, ନଜାଣିଲା ପରି କଥା ସବୁ କହୁଛନ୍ତି । ସୃଷ୍ଟି କଲାବେଳକୁ ସେ ଭିତରେ ସଂସାରଜାକର ଜଞ୍ଜାଳ ଭର୍ତ୍ତିକରିଦେଇ ନିଜେ ତ ସେ ଭିତରେ ଛନ୍ଦିହୋଇଗଲେ ଆଉ କାହାକୁ ବି ମୁକ୍ତି ଦେଲେନି । ଜନ୍ମର ଆନନ୍ଦ ଭିତରେ ପ୍ରସବ ବେଦନା ପୂରାଇଦେଲେ । ଜନ୍ମ ସଂଗରେ ଯୋଡ଼ିଦେଲେ ମୃତ୍ୟୁ । ସୁଖ ସଂଗରେ ଦେଲେ ଦୁଃଖ । କୁହନ୍ତୁ ତ, ଆପଣଙ୍କ ସୃଷ୍ଟିରେ ଏପରି କିଏ ଅଛି ଯେ, ଦୁଃଖ ଓ ଜଞ୍ଜାଳରହିତ ? ମୁଁ ମଧ୍ୟ ସେଥିରୁ ଛାଡ଼ପାଇନି । ଆପଣ କ'ଣ ମୋ ଗୃହ ଜଞ୍ଜାଳ କଥା ଜାଣିନାହାନ୍ତି ? ଷଣ୍ଢ ପିଠିରେ ବସି ସହଜରେ ଯା' ଆସ କରିପାରିବି ବୋଲି ମୁଁ ତ ସେଥିରୁ ଗୋଟାଏ ରଖିଛି, ସେ କଥା ଜାଣି ମଧ୍ୟ ପାର୍ବତୀ ରଖିଛନ୍ତି ଗୋଟାଏ ସିଂହ । କହନ୍ତୁ ତ - ସେ ସିଂହ ଦେଖି ମୋ ଷଣ୍ଢ କେମିତି ରହିବ ? ଆଉ ଆପଣ ଜାଣନ୍ତି ସର୍ପ ମୋର ଭୂଷଣ - କାର୍ତ୍ତିକେୟ କ'ଣ ସେ କଥା ଜାଣୁନି ? ତଥାପି ସେ ରଖିଛି ଗୋଟାଏ ମୟୁର । ସେ ମୟୁରକୁ ଦେଖି ମୋ ସାପଗୁଡ଼ାକ ଡ଼ରରେ ଯେଉଁ କଲବଲ ହୁଅନ୍ତି - କେମିତି ବୁଝାଇବି ? ସାନପୁଅ ଗଣେଶ ବି ତା' ମୂଷା ମୋ ସାପମାନଙ୍କୁ ଦେଖି ଡ଼ରୁଛି ବୋଲି ମୋ ଉପରେ ଖପ୍ପା । କ'ଣ ତା' ବୋଲି ମୁଁ ମୋ ସାପମାନଙ୍କୁ ବାହାର କରିଦେବି ? ସେଥିପାଇଁ କହୁଛି ହଉ, ତମେମାନେ ସବୁ କୈଳାସରେ ରହ - ମୁଁ ଯାଉଛି ମୋର ଶ୍ମଶାନକୁ ।'

ମିଶ୍ରବାବୁ ଏଥର ହରିହରଙ୍କ କାହାଣୀ ବନ୍ଦକରି ନିଜ କଥା କହି ବସିଲେ । କହିଲେ - 'ଜାଣିଲ ଭାଇନା, ମୋ ଅବସ୍ଥା ବି ଊଣା ଅଧିକେ ସେମିତି । ନାହିଁନଥିବା ଜଞ୍ଜାଳ । ପୂଜାବେଳକୁ ବୋହୂ ତ ତା' ବାପଘରକୁ ଯିବା କଥା । ପୁଅ କହିଲା ସେ ବି ଶଶୁରଘର ନିମନ୍ତ୍ରଣ ରକ୍ଷାକରି ବୋହୂ ସାଙ୍ଗରେ ଯିବ । ଏଣେ ଗୌରୀର ମା' ଲଗେଇଛନ୍ତି ଯେ, ଝିଅ ଆଉ ନାତି ନାତୁଣୀମାନେ ପୂଜା ବେଳକୁ ଆମ ଘରକୁ ଆସିବେ । ଆଚ୍ଛା, ସେମାନେ ତ ଆସିବେ, ତାଙ୍କ ସାଙ୍ଗରେ ଜ୍ୱାଇଁମାନେ ଯଦି ଆସନ୍ତି ସେମାନଙ୍କ ଦେଖାରେଖା କିଏ କରିବ କହନ୍ତୁ ତ ? ସେ କିନ୍ତୁ ସେ କଥା ଶୁଣିବେନି । ମୁଁ ତେଣୁ ଚୁପ୍‌ଚାପ୍ ଗୌରୀକୁ ଚିଠି ଲେଖିଦେଲି । ଲେଖିଲି - 'ମା, ତୁ ତୋର ବୁଢ଼ାପୁଅକୁ ପୂଜାବେଳେ ନିମନ୍ତ୍ରଣ କରିବୁ ନା ନାହିଁ ?' କିଛିଦିନ ପରେ ହିଁ ଜ୍ୱାଇଁଙ୍କ ପାଖରୁ ନିମନ୍ତ୍ରଣ ପହଞ୍ଚିଗଲା । ସେ ଅନୁରୋଧ କରିଥିଲେ ଯେ, ଏଥର ପୂଜାବେଳକୁ ଆମେ ସମସ୍ତେ ତାଙ୍କ ଘରେ ପୂଜା ମାନିବୁ । ମୁଁ ସାଦରେ ନିମନ୍ତ୍ରଣ ରକ୍ଷାକଲି କହି ମିଶ୍ରବାବୁ ତାଳିମାରି ଆଉ ଗୋଟାଏ ହୋ ହୋ ହସ ହସିଦେଲେ ।

ବୁଦ୍ଧଦେବବାବୁ ସବୁବେଳେ ଭାବୁଥିଲେ ଯେ, ମିଶ୍ରବାବୁଙ୍କ ସାଂସାରିକ ବୁଦ୍ଧି ଅତି କମ୍ । କିନ୍ତୁ ଏ ଭିତରେ ସେ ଏତେ ପୋଖତ ହୋଇଯାଇଥିବା ଦେଖି ଆଶ୍ଚର୍ଯ୍ୟ ହେଲେ । ପଚାରିଲେ - 'ତେବେ ଗୌରୀର ମା' କାହିଁକି ଆସିଲେନି ?' ମିଶ୍ରବାବୁ ଆଉଥରେ ହସି ହସି ଉତ୍ତର ଦେଲେ - 'ସେମାନେ ସମସ୍ତେ ସିନେମା ଦେଖିବାକୁ ଯାଇଛନ୍ତି - ବବି ନା କ'ଣ ! ମୋତେ ଆଛା ଭାଲୁ ଧରାଉଥିଲେ - ନାତି ନାତୁଣୀଙ୍କୁ ଜଗିବା ଭାର ଦେଉଥିଲେ । ମୁଁ କିନ୍ତୁ ନାତି ନାତୁଣୀଙ୍କୁ ତାଙ୍କ ବାପା ମା, ମଉସା, ମାଉସୀ, ଆଈ ସମସ୍ତେ ସିନେମା ଦେଖିବାକୁ ଯାଉଥିବା କଥା ଶୁଣାଇଦେଇ କହିଦେଲି ଯେ, ବବି ଗୋଟିଏ ବଢ଼ିଆ ସିନେମା । ତା'ପରେ ସେମାନେ ବି ସିନେମା ଯିବାପାଇଁ ଅଡ଼ିବସିଲେ । ମୁଁ ସେମାନଙ୍କ ବିକଳ ସହିନପାରି ସେମାନଙ୍କ ସପକ୍ଷରେ ଯୁକ୍ତି ବାଢ଼ି ସଫଳ ହେଲି । ମୁଁ ତା ଜାଣିଛି, ଆପଣ ଏଇଠି ଅଛନ୍ତି - ସେମାନେ ସିନେମା ଯିବାପାଇଁ ବାହାରିଲା କ୍ଷଣି ମୁଁ ଏ ଆଡ଼ିକି ଚାଲିଆସିଲି ।"

କଥା ଶୁଣି ମିଶ୍ରବାବୁଙ୍କ ସାଂସାରିକ ଜ୍ଞାନ ପ୍ରତି ବୁଦ୍ଧଦେବ ବାବୁଙ୍କ ଧାରଣା ଆହୁରି ବେଶୀ ବଢ଼ିଯାଇଥିଲା ।

ଠିକ୍ ଏତିକିବେଳେ ବାସୁ ବାରନ୍ଦାରେ ଦେଖାଦେଇ ଖବର ଦେଲା ପୁଟୁନ୍ ନିଦରୁ ଉଠି ମା' ମା' ବୋଲି କାନ୍ଦିବାକୁ ଆରମ୍ଭ କରିଦେଇଛି ଓ ପିଲୁ ବିଛଣାରେ ଗୁଡ଼ାଏ ପାଇଖାନା କରିଦେଇ ଦେହସାରା ପୁରାପୁରି ଲଟପଟ ହୋଇଗଲେଣି ।

ମିଶ୍ରବାବୁ କୁରୁଳିଉଠିଲେ । କହିଲେ - 'ଭାଇନା, ଯାଆନ୍ତୁ ଯାଆନ୍ତୁ ।'

ବୁଦ୍ଧଦେବବାବୁ ଚିତ୍କାର କଲେ- 'ଏମାନେ ସିନେମା ଦେଖିବାକୁ ଯିବେ, ଆଉ ପୂଜା ଦିନଟାରେ ମୁଁ ପାଇଖାନା ସଫାକରି ବସିବି - ଅସମ୍ଭବ ।'

ମିଶ୍ରବାବୁ ହସି ହସି ଟିପ୍ପଣୀ କାଟୁଥିଲେ - 'ସଂସାର ଭିତରେ ଘର କରିଥିଲେ ପଥର ପଡ଼ିଲେ ସହି । ନାତିର ଚନ୍ଦନ ସଫା କରିବା ତ ଆନନ୍ଦର କଥା !'

# ଏ' କୋଳି ନିଅ

ପହିଲି ପୌଷର ଏକ ଶୀତୁଆ ସକାଳ । ବୁଧ, ଗୁରୁ ଓ ଶୁକ୍ର ତିନିଦିନ ଛୁଟି। ଶନିବାର ଦିନକ କେଜୁଏଲ୍ ଲିଭ୍ ନେଇଗଲେ ରବିବାର ମିଶି ପାଞ୍ଚଦିନ ମିଳିଯାଉଛି । ପିଇବା ପାଣି ଦୟାରୁ ପେଟ ଫମ୍ପେଇବା ଅଥବା ପେଟ ଘୁଡୁଘୁଡୁ କରିବା ବ୍ୟାଧି ତ କେମ୍ପସ୍‌ରେ କିଛି ନୂଆକଥା ନୁହେଁ - ତେଣୁ ଶନିବାର ଦିନଟିରେ ଅନେକଙ୍କ ପେଟ ମୋଡ଼ିହୋଇ ଯଥା ସମୟରେ ଦୁଇ ଚାରିଥର ତରଳ ପାଇଖାନା ବା ପୋଖରୀପାଣି ହୋଇଗଲାଣି, ଆଉ ସେ ସମସ୍ତେ ଶାରୀରିକ ଅସୁସ୍ଥତା ଯୋଗୁ କାର୍ଯ୍ୟକ୍ଷମତା ହରାଇ କେଜୁଏଲ୍ ଲିଭ୍ ଦରଖାସ୍ତ ପଠାଇଦେଇସାରିଛନ୍ତି । ଜଣଜଣକର ଦୁଇଚାରି ମିଶି ଗାଏମୋଟ (୦)ର ବିଶାଳତାରେ କେମ୍ପସ୍‌ରେ ବନ୍ୟାର ସମ୍ଭାବନା ଥିଲେ ମଧ୍ୟ, ଏପରି ପୋଖରୀ ପାଣି ଯାଞ୍ଚ କରିବାପାଇଁ କୌଣସି ବିଧିବଦ୍ଧ ବ୍ୟବସ୍ଥା ନଥିବାରୁ ଛୁଟି ଦରଖାସ୍ତ ସବୁ ମଞ୍ଜୁର ମଧ୍ୟ ହୋଇଯାଇଛି । ହଷ୍ଟେଲ୍‌ର ଛାତ୍ରଛାତ୍ରୀମାନେ ତାଙ୍କ ଦୂରଦର୍ଶିତାର ଫଳସ୍ୱରୂପ ପୂର୍ବ ରବିବାରଠାରୁ ନିଜ ନିଜ ଘରକୁ ଚାଲିଗଲେଣି । କେମ୍ପସ୍ କଲୋନୀର ବାଟ ଘାଟ ତେଣୁ ଫାଙ୍କା ।

ସକାଳର ଖରା ପୋଇଁବାକୁ ଟିକିଏ ଇଚ୍ଛା ହେଉଥିଲେ ମଧ୍ୟ ହୁଲହୁଲିଆ ପବନରେ ଆମ ଘର ସାମ୍‌ନାରେ ଝାଉଁଗଛ ସବୁ ଯେମିତି ଭାବରେ ଚାମର ବିଞ୍ଚି ଛୁଞ୍ଚିମୁନିଆ ପତ୍ରଗହଳିରୁ ପାଲା ରାଗିଣୀ ଧରିଥିଲେ ତାହା ଲକ୍ଷ୍ୟକରି, ଥଣ୍ଡା ପବନର ଚେଙ୍କ ଭୟରେ ମୁଁ ଆଉ ବାହାରକୁ ଯିବାକୁ ସାହସ କରିପାରିଲିନି। ମଫଲର ଗୋଟାଏ ଭଅଁର ଗୁଡ଼ାଇ ଆଣିଲି, ଆଉ ଶାଲ୍ ଖଣ୍ଡିଏ ଘୋଡ଼ାଇ ହୋଇ ଓଡ଼ିଆ ମେଗାଜିନ୍‌ଟିଏ ଧରି ବାରଣ୍ଡାରେ ପଡ଼ିଥିବା ବେତ ଚୌକିରେ ଆଉଜି ହୋଇ ବସିପଡ଼ିଲି ।

ଛୁଟିଦିନ ସକାଳର ଭଲ ଜଳଖିଆ ସାଂଗକୁ ମଫଲର ଆଉ ଶାଲ୍‌ର ଉଷୁମ ତଥା ଢାକିଜୁକି ହୋଇ ବସିଥିବା ଆରାମ ଯୋଗୁଁ ହେଉ ଅଥବା ଆଧୁନିକ ଓଡ଼ିଆ କବିତାର ବିମୋହିନୀ ଶକ୍ତି ଯୋଗୁ ହେଉ, ମୁଁ ମୋର ଅଜାଣତରେ କେତେବେଳେ ଘୁମେଇ ପଡ଼ିଥିଲି ସେ କଥା ମୋର ଖିଆଲ ନାହିଁ । ଗୋଟାଏ ଛାତିଥରା ଡ଼ାକ ଶୁଣି ଚମକି

ଉଠିଲି । ଛାତି ଭିତରେ ଦମକାଏ ପବନ ଅଟକିଗଲା ପରି ମନେହେଲା । ଯେଉଁ ଡ଼ାକ ଶୁଣିଲି ସେ ଡ଼ାକ ସଂଗରେ ଜଡ଼ିରହିଥିଲା ଗୋଟାଏ ଅଜଣା ଭୟ - ପିଲାଦିନର ।

ପିଲାଦିନେ ଅଧରାତିରେ ଏମିତି ଡ଼ାକ ଶୁଣି ମୁଁ କେତେଥର ନିଦରୁ ଉଠି ଡ଼ରରେ ବୁଢ଼ୀମା'ଙ୍କ ପେଟରେ ଲପେଟିଯାଇ ପଣତ ଘୋଡ଼େଇ ହୋଇଛି । ଏବେ ବି ସେ ଅନୁଭୂତି ମନେପଡ଼େ ।

ଅନ୍ଧାର ରାତି । ଝିଙ୍କାରି ସ୍ୱରରେ ନିଶା ଗର୍ଜୁଥାଏ । ଗାଁର ଚାରିଆଡ଼େ ଶୁନ୍‌ଶାନ୍ । ମଝିମଝିରେ ପାଖରେ ଥିବା କେଉଁ ଗଛଡ଼ାଳରୁ ପେଚାଟିଏ ଡ଼ାକେ 'ଉଲଲକ୍' । ଦୂର ଗଛରୁ ଆଉ ଗୋଟାଏ ଉତ୍ତର ଦିଏ 'ଯିବୁ ଥିବୁ' । ଟିକିଏ ଛାଡ଼ି ଅନ୍ଧାର ରାତିରେ ଭୟର ତରଙ୍ଗ ଖେଳାଇ ପେଚା ପୁଣି ଡ଼ାକେ 'ଉଲଲକ୍' । ଧାନକିଆରୀର ମଞ୍ଚା ଉପରେ ନିଘୋଡ଼ ନିଦରେ ଶୋଇ ଧାନ ଜଗୁଆଳୀ ଚାଷୀ କ'ଣ ଶୁଣେ କେଜାଣି, ନିଦ ବାଉଳାରେ ରଡ଼ିଛାଡ଼େ- 'ଏ... ହେ...', ଆଉ ଅନ୍ୟଦିଗରୁ ଭାସିଆସେ ଏକ ଛାତିଥରା 'ଫେଁଏ...ଓ ...ଓ ...ଫେଁଏ ...ଓ ...ଓ ?'

ପବନରେ ଭାସିଆସିଲା ବେଳେ ମନେହୁଏ ସେ ଡ଼ାକ ଯେମିତି ଧିରେ ଧିରେ ପାଖେଇ ଆସୁଛି । ଗାଁରେ ସମସ୍ତେ କହନ୍ତି ବାଘ ଯେତେବେଳେ ଅଧରାତିରେ ତା' ଜଙ୍ଗଲ ଛାଡ଼ି ଗାଁ ଆଡ଼ିକି ମୁହାଁଏ ଛେଳି କୁକୁର ଆଉ ବେଳେ ବେଳେ କେଉଁ ମା' କୋଳର ଛୁଆକୁ କୋଳରୁ ଟାଣିନେବା ପାଇଁ ସେତେବେଳେ ଭେରେଣ୍ଡା ବାଘ ପଛରେ ଟିକିଏ ଦୂରରେ ରହି ଏଇ 'ଫେଁଏ ... ଓ ... ଓ' ଡ଼ାକି ସମସ୍ତଙ୍କୁ ସତର୍କ କରିଦିଏ ।

ବୁଢ଼ୀମା' ଅନେକ ଥର କହିଛନ୍ତି ଯେ, ପିଲାମାନେ ଟିକିଏ ବଡ଼ ହୋଇଗଲେ ହେଟା ବାଘ କି ଚିତାବାଘ ସେମାନଙ୍କୁ ଆଉ ଟାଣି ନେଇପାରେନି । ତଥାପି ଭେରେଣ୍ଡାର ସେ 'ଫେଁ...ଏ...' ରଡ଼ି ବାଘର ଉପସ୍ଥିତ ସୂଚାଇ ଛାତି ଥରାଇଦିଏ । ନିଦ ଆପଣାଛାଏଁ ଭାଙ୍ଗିଯାଏ । ପାଖ ବାରଣ୍ଡାରେ ଶୋଇଥିବା ହଳିଆ ବୁଢ଼ାର ନାକ ମଝିରେ ମଝିରେ 'ଘରର୍‌ଫୁଟ୍' କରି ସାମାନ୍ୟ ଆଶ୍ୱାସନା ଦିଏ ସତ, ତଥାପି ଡ଼ରରେ ଦାନ୍ତ ଠକ୍ ଠକ୍ କରେ ।

ସାଧବ ଘରର ସାତବୋହୂଙ୍କ କାହାଣୀ କହୁ କହୁ ବୁଢ଼ୀମା' ଶୋଇପଡ଼ନ୍ତି । ଅଧୁରା କାହାଣୀ ପୁରା କରିବାକୁ ଅଳିକରୁ କରୁ ମୁଁ ବି କେତେବେଳେ ଶୋଇପଡ଼େ । ଆଉ ସେଇ 'ଫେଁ...ଏ' ରଡ଼ି ଶୁଣି ନିଦରେ ଚମକି ଉଠି ଡ଼ରରେ ବୁଢ଼ୀମାଙ୍କ

ପେଟରେ ଲପେଟି ଯାଏ । ବୁଢ଼ୀମା କେଉଁ କାଳରୁ ଗଲେଣି । ମୁଁ ନିଜେ ଏବେ ଜେଜେବାପାର ସ୍ଥାନ ନେଇସାରିଛି । ତଥାପି ଆଜି ସେଇ 'ଫେଁ... ଏ... ଓ ...ଓ' ପରି ଶୁଭୁଥାଏ ।

ଗେଟ୍ ଖୋଲିଦିଅ ବୁଢ଼ୀର କୋଳିବିକା ଡ଼ାକ ହିଁ ପବନରେ ଭାସିଆସି ଭେରେଣ୍ଡାର ଫେଁ ...ଏ...ଓ...ଓ ପରି ଶୁଭୁଥାଏ ।

ଆମଘର ସାମ୍ନାରେ କଲୋନୀର ଯେଉଁ ରାସ୍ତା ବାରପାହାଡ଼ ଆଡ଼କୁ କିଛି ଦୂର ଯାଇ ଟ୍ରାନ୍ସମିଶନ୍ ଲାଇନ୍ ଡ଼େଇଁଗଲା ପରେ ବାଁ ଆଡ଼ିକି ବଙ୍କେଇ ଯାଇଛି, ବୁଢ଼ୀ ତା'ର ମୁଣ୍ଡର ପସରା ନେଇ ଠିକ୍ ସେଇଠି ଦେଖାଯାଉଥିଲା । 'ଏ କୋଳି ନିଅ' ଡ଼ାକ ଦେଇ ଦେଇ ସେ ଆମ ଘର ଆଡ଼ିକି ମୁହାଁଇଥାଏ ।

ସାମନା ଦାନ୍ତ କେତୋଟି ନଥିବା ଫଳରେ ବୋଧହୁଏ ବୁଢ଼ୀର ପାକୁଆ ପାଟିରେ 'ଏ କୋଳି ନିଅ' ଡ଼ାକ ଦୂରରୁ 'ଗେଟ୍ 'ଖୋଲିଦିଅ' ପରି ଶୁଭେ । ବର୍ଷସାରା ପ୍ରାୟ ନିତିଦିନ କିଛି ନା କିଛି ମୁଣ୍ଡବୋଝ ନେଇ ସେ ଏମିତି ଚିତ୍କାର କରି କରି କଲୋନୀ ରାସ୍ତାରେ ଦେଖାଦିଏ । କେନ୍ଦୁ, ଡ଼ିମିରି ପ୍ରଭୃତି ବଣୁଆ ଫଳମୂଳ ସାଂଗକୁ କେବେ କେବେ ଆମ୍ବ, ପିଜୁଳି ମଧ୍ୟ ସେ ବିକ୍ରି କରିବାକୁ ଆଣେ, କିନ୍ତୁ ତା'ର ନାନାରକମର କୋଳିରେ ହିଁ ସାନ ସାନ ଛୁଆମାନଙ୍କର ଆଗ୍ରହ ବେଶୀ । ସେ ସମସ୍ତେ ବୁଢ଼ୀକୁ ବେଶ୍ ଭଲପାଆନ୍ତି ଆଉ 'ଗେଟ୍ ଖୋଲି ଦିଅ ବୁଢ଼ୀ' ବୋଲି ଗେଲ କରି ଡ଼ାକନ୍ତି । ଛୁଆଙ୍କ ମେଳରେ ବୁଢ଼ୀର ପାକୁଆ ପାଟିର ହସ ଦେଖି ମନେହୁଏ ଯେ, ସେ ବି ତା'ର ସେଇ ନୂଆ ନାଁଟିକୁ ପସନ୍ଦ କରେ, କିନ୍ତୁ ଅନେକ ଦୁଷ୍ଟଛୁଆ ବେଳେ ବେଳେ ତାକୁ ଘେରିଯାଇ ଯେତେବେଳେ ତାଳିମାରି 'ଗେଟ୍ ଖୋଲିଦିଅ – ଗେଟ୍ ଖୋଲିଦିଅ' ବୋଲି ନାଚନ୍ତି, ସେ ବିରକ୍ତ ହୁଏ ଆଉ ଦୁର୍ବୋଧ ଭାଷାରେ କଣସବୁ ବକେ । ବୁଢ଼ୀ ଯେତେ ବିରକ୍ତ ହୁଏ ଛୁଆଙ୍କ ସଂଖ୍ୟା ସେତିକି ବଢ଼େ । ଗାଳିଦେଇ ବୁଢ଼ୀକୁ ନ ଚିଢ଼େଇବାକୁ କହନ୍ତି । କିନ୍ତୁ ମନେହୁଏ ସେମାନେ ବି ଛୁଆଙ୍କର ଏଇ ତାମସାକୁ ଭିତରେ ଭିତରେ ବେଶ୍ ଉପଭୋଗ କରନ୍ତି । ମୁଁ ବି ଯେ ଦୂରରୁ ତାହା ଉପଭୋଗ ନ କରେ ତା' ନୁହେଁ – ବଡ଼ହେଲା ପରେ ମଧ୍ୟ ଛୋଟଦିନର ଚଗଲା ମନୋବୃତ୍ତି ବେଳେ ବେଳେ ମନ ଭିତରେ ଉଙ୍କିମାରେ । 'ରାଧେକୃଷ୍ଣ' ବୁଢ଼ା କଥା ମନେପଡ଼େ ।

ପିଲାଦିନର କଥା । କିଏ ପ୍ରଥମେ ଆବିଷ୍କାର କଲା କେଜାଣି, ପାଗଳ ପରି ଦିଶୁଥିବା ଜଣେ ବୁଢ଼ା ପାଖରେ ରାଧେକୃଷ୍ଣ କହିଲେ ସେ ରାଗିଯାଏ । ତେଣୁ ବୁଢ଼ା

ଯେତେବେଳେ ସହରର କୌଣସି ରାସ୍ତା ଦେଇଯାଏ, ଛୋଟପିଲାମାନେ ବୁଢ଼ାକୁ ଚିଡ଼େଇବା ଉଦ୍ଦେଶ୍ୟରେ 'ରାଧେକୃଷ୍ଣ' ବୋଲି ଚିତ୍କାର କରନ୍ତି । ବୁଢ଼ା ରାଗିଯାଇ ହାତ ପାଖରେ ଯାହା ପାଏ ପିଲାଙ୍କ ଆଡ଼କୁ ଫୋପାଡ଼େ । ପିଲାମାନେ ସେଥିରେ ଉତ୍ତେଜିତ ହୋଇ ଆଉରି ବେଶି 'ରାଧେକୃଷ୍ଣ-ରାଧେକୃଷ୍ଣ' କହି ତାଳିମାରି ପାଗଳ ପଛରେ ଗୋଡ଼ାନ୍ତି । ପାଗଳ ବୁଢ଼ା ବେଳେ ବେଳେ ବାଡ଼ିଟିଏ ଧରି ସମସ୍ତଙ୍କୁ ମାରିବାକୁ ଗୋଡ଼ାଇନିଏ । କ୍ଷଣକପାଇଁ ପିଲାମାନେ ଛତ୍ରଭଙ୍ଗ ଦିଅନ୍ତି । କିନ୍ତୁ କିଛିକ୍ଷଣ ପରେ ପୁଣି ଏକଜୁଟ୍ ହୋଇ ତା' ପଛରେ ଗୋଡ଼ାଇ ସେମିତି 'ରାଧେକୃଷ୍ଣ' କହି ନାଚିବାକୁ ଆରମ୍ଭ କରନ୍ତି । ସହରର ଯେଉଁ ବାଟରେ ବୁଢ଼ା ଯାଏ ସବୁଠାରେ ସେଇ ଏକା ଦୃଶ୍ୟ । ବଡ଼ମାନେ ମଧ୍ୟ ବେଳେ ବେଳେ ଏ କାରବାରରେ ଯୋଗଦିଅନ୍ତି । ବଜାର ମଝିରେ ପାଗଳା ବୁଢ଼ା ଗଲାବେଳେ ସମସ୍ତେ ତା'ର ପାଗଳାମି ଦେଖିବା ଉଦ୍ଦେଶ୍ୟରେ 'ରାଧେକୃଷ୍ଣ ରାଧେକୃଷ୍ଣ' ରଡ଼ି ଛାଡ଼ନ୍ତି । ବୁଢ଼ା ରାଗରେ ତାଣ୍ଡବ ନୃତ୍ୟ କରେ - ମୁଠା ମୁଠା ଧୂଳି ଗୋଟାଇ ସମସ୍ତଙ୍କ ଆଡ଼କୁ ଫିଙ୍ଗେ ।

ଦିନେ ଗୋଟିଏ ଅଦ୍ଭୁତ ଘଟଣା ଘଟିଲା । ପିଲାଙ୍କ 'ରାଧେକୃଷ୍ଣ' ଡ଼ାକ ଶୁଣି ପାଗଳା ବୁଢ଼ା ରାସ୍ତାରେ ଯାଉଛି ଜାଣି ମୁଁ ଯେତେବେଳେ ଘରୁ ବାହାରି ଆସିଲି, ଦେଖିଲି ପାଗଳ ବୁଢ଼ା ରାଗିବ କ'ଣ ନିଜେ 'ରାଧେକୃଷ୍ଣ' ଗାଇ ଗାଇ ରାସ୍ତାରେ ଚାଲିଛି । ଆମେ ସବୁ ତା' ପଛରେ ରାଧେକୃଷ୍ଣ କହି କହି ଗୋଡ଼ାଇଥାଉ- ଏଇ ଆଶାରେ ଯେ, ବୁଢ଼ା ଆମକୁ ମାରିବାକୁ ଧାଇଁବ, ଆଉ ଆମେ ସେଥିରେ ଲୁଚକାଳି ଖେଳିବୁ । ବୁଢ଼ା କିନ୍ତୁ ଅନ୍ୟଦିନ ପରି ଆମକୁ ନ ଗୋଡ଼ାଇ 'ରାଧେକୃଷ୍ଣ' ଗାଇ ଗାଇ ଆମ ସମସ୍ତଙ୍କୁ ବଜାରକୁ ନେଇଗଲା । କେଉଁଠୁ ପଇସା ପାଇଲା କେଜାଣି, ଗୁଡ଼ିଏ ଲଡୁ କିଣି 'ବୋଲ ରାଧେକୃଷ୍ଣ' କହି ସମସ୍ତଙ୍କୁ ବାଣ୍ଟିବସିଲା । ସମସ୍ତେ ଏ ଦୃଶ୍ୟ ଦେଖି ତାଟକା ହୋଇଗଲେ । 'ରାଧେକୃଷ୍ଣ' ଗାଇଲା ବେଳେ ବୁଢ଼ାର ଛଳ ଛଳ ଆଖି ଦେଖି ସେଦିନର ବଜାରର ପିଲା, ବୁଢ଼ା ସମସ୍ତଙ୍କ ଆଖି ଛଳଛଳ ହୋଇଯାଇଥିଲା । ବୁଢ଼ା ବିଭୋର ହୋଇ ଧୂଳିରେ ଗଡ଼ି 'ରାଧେକୃଷ୍ଣ - ରାଧେକୃଷ୍ଣ' ଗାଉଥାଏ । ଖବର ପାଇ ଆମର କେତେଜଣ ଶିକ୍ଷକ ମଧ୍ୟ ସେଦିନ ସ୍କୁଲରୁ ଚାଲିଆସି ଏଇ ନାମକୀର୍ତ୍ତନରେ ଯୋଗ ଦେଇଥିଲେ । ଆଉ ଅନେକ ଭାବବିହ୍ୱଳ ହୋଇ ବୁଢ଼ା ସଂଗରେ ଧୂଳିରେ ଲୋଟିଯାଇଥିଲେ । ତା' ପରଦିନଠାରୁ ପାଗଳ ବୁଢ଼ାକୁ ଆମେ କେହି ଆଉ ସହରର ରାସ୍ତାରେ ଦେଖିବାକୁ ପାଇଲୁନି ।

'ଗେଟ୍ ଖୋଲି ଦିଅ'- ବୁଢ଼ୀକୁ ସାନ ସାନ ପିଲାମାନେ ଚିଡ଼େଇଲା ବେଳେ ସେଇ ଘଟଣା ହିଁ ମୋର ବାରମ୍ବାର ମନେପଡ଼େ ।

କୋଳିକିଣିବା ପାଇଁ ରାସ୍ତା ପାଖରେ କୌଣସି ଛୁଆ ସେଦିନ ଦେଖାଦେଲେନି । ବୁଢ଼ୀ ତା'ର ଲମ୍ବା ଲମ୍ବା ପାହୁଣ୍ଡ ପକାଇ ଆଗେଇ ଆସୁଥାଏ ଆମ ଘର ଆଡ଼କୁ ।

ଘର ସାମ୍ନାରେ ବୁଢ଼ୀର ଗତି ଟିକିଏ ଧିମେଇ ଗଲା । ସେ ନିଜେ ଗେଟ୍ ଖୋଲୁ ଖୋଲୁ ତା'ର 'ଏ କୋଳି ନିଅ' କୁହାଟ ଗୋଟିଏ ଛାଡ଼ିଦେଲା । ମନେହେଲା ସେ ରଡ଼ିରେ ଝାଉଁଗଛ ଗୁଡ଼ିକ ଆଉ ଟିକିଏ ବେଶୀ ଦୋହଲିଗଲେ ।

କଣ୍ଟେଇକୋଳି ମନ୍ଦ ନୁହେଁ କିନ୍ତୁ ବୁଢ଼ୀ ବୋଧହୁଏ କଷା ବରକୋଳି ଗୁଡ଼ିଏ ଆଣୁଥିବ । ଘରେ ତ ଛୋଟଛୁଆ କେହି ନାହାନ୍ତି - ମୁଁ ମନେ ମନେ ଠିକ୍ କରିନେଇଥିଲି, ବୁଢ଼ୀ ଘରକୁ ଆସିଲେ ତାକୁ ଟିକିଏ ଚିଡ଼େଇଦେବି ଯେ, ସେ ଆପଣା ଛାଏଁ ରାଗିକରି ଚାଲିଯିବ ।

ବୁଢ଼ୀର ଦେହରେ ବୟସର ଛାପ ସ୍ପଷ୍ଟ । ତଥାପି ଦେହଟି ସିଧାସଳଖ ଆଉ ମାଂସପେଶୀକୁ କଳା ଚମ ଏବେ ବି ବେଶ୍ ଭଲକରି ଭିଡ଼ି ଧରିରଖିଛି । ଆଣ୍ଠୁଯାଏ ଓସାର ଖଣ୍ଡିଏ ହାତବୁଣା ଶାଢ଼ୀ - ତହିଁର ଫାଳକରେ ଦେହର ଉପର ଭାଗ ଅର୍ଦ୍ଧ ଆବୃତ୍ତ । ଅଧା ଦାନ୍ତ ନଥିବା ମୁହଁରେ ତରଳ ହସଟିଏ ଫୁଟାଇଦେଇ ବୁଢ଼ୀ ବାରଣ୍ଡା ଉପରକୁ ଉଠିଆସିଲା, ଆଉ ମୁଁ କିଛି କହିବା ପୂର୍ବରୁ ତା' କୋଳିପସରା ଓହ୍ଲାଇ ନେଇ କାନ୍ଥକୁ ଆଉଜି ଗୋଡ଼ ଦି'ଟା ତଳ ପାହାଚକୁ ଝୁଲାଇ ବସିପଡ଼ିଲା ।

ମୁଁ କିଛି ପଚାରିବା ଆଗରୁ ବୁଢ଼ୀ ଆରମ୍ଭ କରିଦେଲା - 'ବଢ଼ିଆ ମିଠା ବରକୋଳି ।'

ମୁଁ ଅଗତ୍ୟା ପଚାରିଲି, 'ଦାମ୍ କେତେ ?'

ବୁଢ଼ୀ ତା'ର ନାନାରକମର ଦଉଡ଼ିବନ୍ଧା ତରାଜୁ ଆଉ ଢ଼ଙ୍ଗ ବେଢ଼ଙ୍ଗ ପଥର ଖଣ୍ଡର ଓଜନ ବଟକରା ସବୁ ବାହାର କରୁ କରୁ ଟିପପ୍ପଣୀ ଦେଲା - "ଦାମ୍ ପଚାରୁଛି- କେଜି ଦୁଇଟଙ୍କା ।"

ମୁଁ କହିଲି - 'କେଜି ପଚାଶ ପଇସା' । ଭାବିଥିଲି ସେ ରାଗିଯାଇ କହିବ- 'ଯା, ମହାନଦୀ ବଡ଼ ଧାରରେ ଆଗ ମୁହଁଧୋଇ ଆସିବୁ ।'

ବୁଢ଼ୀ କିନ୍ତୁ ଫିକ୍ କରି ହସିଦେଲା । ମୁଣ୍ଡ ବଙ୍କେଇ କହିଲା - 'କେଜି ଦୁଇଟଙ୍କା - ଖାଇଲୁ, ଦେଖିବୁ କେତେ ମିଠା ।' ଗୋଟାଏ ଛୋଟ ଟାଙ୍ଗୁଡ଼ିରେ ଦି' ମୁଠା ବରକୋଳି ପକାଇଦେଇ ସେ ମୋ ଆଡ଼ିକି ଟାଙ୍ଗୁଡ଼ିଟିଏ ବେପରବାଏ ଭାବରେ ଠେଲିଦେଲା ।

ମୁଁ ଦୋହରାଇ କହିଲି - 'କେଜି ପଚାଶ ପଇସା ।'

ବୁଢ଼ୀ ଏଥର ମୋ ପଛଆଡ଼କୁ ଅନାଇ ଠୋ ଠୋ କରି ହସିଉଠି କହିଲା - 'ନେ ଖା - ମୁଁ କ'ଣ ତୋତେ ପଇସା ମାଗୁଛି । ଦେବାବାଲା ତ ତୋ' ପଛରେ ଠିଆହୋଇଛି ।'

ମିନି-ମା' ସତକୁ ସତ ପଛପାଖରେ ଠିଆହୋଇଥିଲେ । ବୁଢ଼ୀ ଏଥର ହସରେ କୁରୁଳି ଉଠି କହିଲା - 'ଜାଣୁ, ତୁ ନଥିଲାବେଳେ ବୋହୂ ମୋତେ କେତେ ଖାଇବାକୁ ଦିଏ ।' ପୁଣି ମିନି ମା'କୁ ଅନାଇ ତାଳିମାରି କହିଲା - 'ବୋହୂ' ତୋ କଥା କେମିତି ପଦାରେ ପକାଇଦେଲି ।'

କି ସୁନ୍ଦର ସେ ମନଖୋଲା ହସ। ମୁଁ କ'ଣ କରିବି କିଛି ବୁଝିପାରିଲିନି । କହିଲି, 'ବରକୋଳି ମୋତେ ଭଲଲାଗେନି ।'

ପାଖଘରୁ କିଏ ଜଣେ ଡ଼ାକିଲା - 'ଏ ଗେଟ୍ ଖୋଲି ଦିଅ ବୁଢ଼ୀ ?'

ବୁଢ଼ୀ ଉତ୍ତର ଦେଲା - 'ଏ କୋଳି ନିଅ ।'

ବୁଢ଼ୀ ପସରା ସଜାଡ଼ି ଠିଆହେଲାବେଳକୁ ଦେଖିଲା ପସରା ଭିତରେ ଖଣ୍ଡିଏ ଦନ୍ଥରା କାଠଫାଳିଆ, ଠିକ୍ ରୁଲବାଡ଼ି ପରି ନହେଲେ ମଧ୍ୟ ସାଧାରଣ ଭାବରେ ଖଣ୍ଡିଏ ହାତବାଡ଼ି ପରି । କୌତୁକ କଲାପରି ପଚାରିଲି - "ବୁଢ଼ୀ, କାହାକୁ ମାରିବୁ ନା କ'ଣ ?"

ବୁଢ଼ୀ ଟିକିଏ ଆଶ୍ଚର୍ଯ୍ୟ ହୋଇ ଅନାଇଲା । ପରେ ହଠାତ୍ ସେଇ ମନଖୋଲା ଠୋ ଠୋ ହସ ହସି କହିଲା - "କେମିତି ଜାଣିଲୁ ?"

ମୁଁ ନିଜେ ଏଥର ଆଶ୍ଚର୍ଯ୍ୟ ହେଲି । ପଚାରିଲି, "କାହାକୁ ?"

'ଏଇଠି କହିବିନି - ମୋ ଘରକୁ ଆସିଲେ ଜାଣିବୁ' - କହି ବୁଢ଼ୀ 'ଏ କୋଳି ନିଅ' ଡ଼ାକି ଡ଼ାକି ଚାଲିଗଲା ।

ଶୀତଦିନ ସୂର୍ଯ୍ୟୋଦୟ ପୂର୍ବରୁ ଘେରାଏ ବୁଲିଆସିଲେ ତ ବେଶ୍ ଫୁର୍ତ୍ତି ଲାଗେ - ତା'ପରେ ଦିନ ସକାଳେ ମୁଁ ସିଧାସଳଖ କଣ୍ଡାପାଲି ଗାଁକୁ ଚାଲିଲି । ବାଟ ପ୍ରାୟ ମାଇଲିଏ । ଗାଁ ଭିତରକୁ ପଶି ଯେତେବେଳେ କୋଳିବିକାଳି ବୁଢ଼ୀର ଘରକଥା ପଚାରିଲି, କେତେଜଣ ମୁହଁ ଚୂହାଁଚୂହିଁ ହେଲେ । ମନେହେଲା - ମୁଁ ସେ ଘରକୁ ଯିବା ବୋଧହୁଏ କିଛି ଗୋଟାଏ ଅପସନ୍ଦ କଥା । ଜଣେ ଶେଷରେ ଗାଁ ମୁଣ୍ଡ ଆଡ଼କୁ ହାତ ବଢ଼ାଇ ବୁଝାଇଦେଲା ଯେ, ଗାଁକୁ ଟିକିଏ ଛାଡ଼ି ଯେଉଁ ଗୋଟାଏ ଛୋଟ ପାଳଦିଆ ଘର - ବୁଢ଼ୀ ସେଇଠି ରହେ । କହିଲାବେଳେ ଅନ୍ୟମାନଙ୍କୁ ଶୁଣାଇ ମନ୍ତବ୍ୟ ଦେଲା ଯେ - ଛୋଟପିଲାମାନେ ଗଲେ ସିନା ଡ଼ର, ବଡ଼ମଣିଷ ଗଲେ କ୍ଷତି କ'ଣ!

ବୁଢ଼ୀ ତା'ଘର ଦାଣ୍ଡ ଖରକୁ ଥିଲା । ମୋତେ ଦେଖିଲାକ୍ଷଣି ଖୁସିରେ ଦଉଡ଼ିଆସିଲା । ପୁଣି ଘର ଭିତରକୁ ଦଉଡ଼ିଯାଇ ଛୋଟ ସରୁ ଦଉଡ଼ିଆ ଖଟଟିଏ ବୋହିଆଣି ବସିବାକୁ କହି ନିଜେ ଘର ପିଣ୍ଡାରେ ବସିପଡ଼ିଲା । କହିଲା – 'ବାପା, ସତରେ ଆସିଲୁ । କହିଦେଇଥିଲି ସିନା, ମୋର ଏଇ କୁଡ଼ିଆକୁ ତୁ ସତକୁ ସତ ଆସିବୁ ବୋଲି ମୁଁ ଭାବିନଥିଲି ।'

ସେ କାହାକୁ ମାରିବାକୁ ବସିଛି ସେ କଥା ମୁଁ ସିଧାସଳଖ ପଚାରିଦେଲି । ବୁଢ଼ୀ କହିଲା, 'କହିବି ରହ – ଟିକିଏ ଥୟ ଧର ।'

ବୁଢ଼ୀ ପୁଣି ଘର ଭିତରକୁ ପଶିଗଲା । ଏଥର ଗୋଟିଏ ଚାଙ୍ଗୁଡ଼ିରେ ପାଏ ଖଣ୍ଡେ ମୁଢ଼ି ଆଉ ଗୋଟିକରେ କିଛି କଣ୍ଟେଇକୋଳି, କିଛି ବରକୋଳି ଆଉ ଦିଓଟି ଦରପାକଲା ପିଜୁଳି ଆଣି ମୋ ପାଖରେ ଖଟ ଉପରେ ଥୋଇଦେଇ କହିଲା – 'ତୁ ଆଗ ଖା' ମୁଁ ପରେ କହିବି ।'

ମୁଁ କିନ୍ତୁ ଜିଦ୍‌ଧରିଲି ଯେ, ସେ ନକହିଲେ ମୁଁ ଖାଇବିନି ।

ବୁଢ଼ୀ ପିଣ୍ଡାରେ ବସିପଡ଼ିଲା । ମୁହଁରେ ଆଉ ସେ ପୂର୍ବର ହସ ନଥିଲା । କହିଲା – 'ହଉ, ଖାଇ ଖାଇ ଶୁଣ ।'

ମୁଁ ଗୋଟାଏ ଯନ୍ତ୍ରପରି ମୁଠିଏ ମୁଢ଼ି ପାଟିରେ ଭର୍ତ୍ତି କଲି । ବୁଢ଼ୀ ଆରମ୍ଭ କଲା ତା'ର କାହାଣୀ ।

ଆମ ଗାଁ ସୋନପୁର ପାଖରେ । ଧନୀ ନହେଲେ ମଧ୍ୟ ଆମର ଅଭାବ ନଥିଲା । ଦୁଇ ହଳର ଜମି । ବେଶ୍ ଖୁସିରେ ଚଳିଯାଉ । ଶାଶୁ ଶ୍ୱଶୁର ମରିଯାଇଥିଲେ । ଆମେ ସ୍ୱାମୀ ସ୍ତ୍ରୀ ଆଉ ଗୋଟିଏ ବୋଲି ପୁଅ ସୁନାଧର – ପ୍ରାୟ କୋଡ଼ିଏ ବର୍ଷର । ସେଇ ବର୍ଷ ପୁଅକୁ ବାହାକରାଇ ବୋହୂ ଆଣିବି ବୋଲି ଠିକ୍ କରିଥିଲି । କିନ୍ତୁ ଜମିସବୁ ଫାଟିଗଲା ସିନା, ଆଷାଢ଼ ଶ୍ରାବଣରେ ବର୍ଷା ହେଲାନି । ଦଶହରା ବେଳକୁ କାହାଘରେ ମୁଠିଏ ଖାଇବାକୁ ବି ନଥିଲା । ବାସନକୁସନ ବିକାବିକି କରି ବାଉଁଶ ଗଜା, ଶାଗପତ୍ର ଖାଇ କୌଣସିମତେ ଚଳିଯାଉଥିଲୁ । ଦିନେ ପୁଅ କହିଲା – ହୀରାକୁଦ ଠାରେ ନଦୀବନ୍ଧା ହେଉଛି – ଅନେକ ଲୋକ ମଜୁରୀ ଲାଗିଛନ୍ତି, ଆଉ ଯିଏ ଗଲେ ବି ଦିନ ମଜୁରି ମିଳିଯାଉଛି । ସେ ଯିବ । ଜିଦ୍‌ଧରି ବସିଲା । ଦୂର ଜାଗାରେ କିଏ ତାକୁ ମୁଠିଏ ରାନ୍ଧିକରି ଦେବ ଭାବି ମୁଁ ଜିଦ୍ କଲି ଯେ, ତେବେ ମୁଁ ବି ତା' ସଂଗରେ ଯିବି । ସୁନାଧରର ବାପା କହିଲା – ସେ ବି ଯିବ । ବଳଦ ଦି'ହଳ ଆଗରୁ ବିକ୍ରି ହୋଇସାରିଥିଲା । ଗାଁରେ ଜଣେ ବନ୍ଧୁବାନ୍ଧବ ହେବେ ତାଙ୍କୁ ଘର ଟିକିଏ ଦେଖିବାକୁ

କହି ଆମେ ତିନିହେଁ ଚାଲିଆସିଲୁ । ମୁହଁ ଅନ୍ଧାର ବେଳକୁ ଯେତେବେଳେ ଗୋଶାଳା ପାଖରେ ପହଁଞ୍ଚିଲୁ, ଜଣେ ପଞ୍ଜାବୀ ଆମକୁ କେମିତି ଜାଣିଲା କେଜାଣି, ଆଗତୁରା ପାଞ୍ଚଟଙ୍କା ଦେଇ ଗୋଟିଏ ଟ୍ରକ୍‌ରେ ବନ୍ଧ ପାଖକୁ ପଠାଇଦେଲା । ଆମକୁ ଆଉ କାମ ଖୋଜିବାକୁ ପଡ଼ିଲାନି । ତା' ଆରଦିନ ଆମେ ତିନିଜଣଯାକ କାମରେ ଲାଗିଗଲୁ । ଜଣକୁ ଦିନକୁ ଦୁଇଟଙ୍କା - ଭଲ କାମ କଲେ ଜଣକୁ ତିନିଟଙ୍କା, ଚାରିଟଙ୍କା ବି ମିଳିବ । ଆମେ ଖୁସିରେ ଭୋକ ଶୋଷ ବି ଭୁଲିଗଲୁ ।

କି ବିରାଟ ସେ କାମରେ ବାପା ! ଚାରିଆଡ଼େ ଲୋକ ଗହଳି । ଆମ ବରଗଡ଼ ହାଟ ବି କିଛି ନୁହେଁ । କେଡ଼େ କେଡ଼େ ରାକ୍ଷସମାନଙ୍କ ପରି ନାନା ରକମର ଗାଡ଼ି ସବୁ । କିଏ ମାଟି ଖୋଳୁଛି - କିଏ ଗେଟି ବୋହୁଛି । କେଉଁଠି ଏଡ଼େ ଏଡ଼େ ପଥରମାନ ଗହମ ପେଷା ହେଲାପରି ପେଷି ହୋଇଯାଉଛି । କେଉଁଠି ଗେଟି ସିମେଣ୍ଟ ବାଲି ନିଜେ ନିଜେ ମିଶି ଯାଉଛି । ଟିକିଏ ହୁସିଆର ନହେଲେ କିଏ କେଉଁଠି ଚାପିହୋଇ ମରିଯିବ । ରାତି ଆଉ ଦିନ ସମାନ ।

ସେଇ ବାରପାହାଡ଼କୁ ଲାଗି ଯେଉଁ ପଥର ବନ୍ଧ ଉଠିଛି, ସୁନାଧର ତା' ଉପରେ ଗୋଟାଏ ମିସ୍ତ୍ରୀ ପାଖରେ ପଥର ଯୋଡ଼େଇ କାମରେ ହେଲପର୍ ହେଲା । ତା' ବାପା ବାରୁଦରେ ପଥର ଫୁଟାଉଥିବା ନଦୀର ଖାଦାନରେ ବଡ଼ ବଡ଼ ପଥରଖଣ୍ଡ ସବୁ ହାତୁଡ଼ି ଓ ଶାବଳରେ ଭାଙ୍ଗି ମୁଣ୍ଡରେ ବୋହିହେଲା ଭଳି ସାଇଜ୍ କରୁଥିଲେ । ଆଉ ମୁଁ ଅନ୍ୟ ସ୍ତ୍ରୀଲୋକମାନଙ୍କ ସାଙ୍ଗରେ ଖାଦାନରେ ସେସବୁ ପଥର ମୁଣ୍ଡରେ ବୋହି ବନ୍ଧ ଉପରକୁ ଯୋଡ଼େଇ ପାଇଁ ନେଉଥିଲି ।

ଗାଁରେ ଥିଲାବେଳେ ସୁନାଧର ଆଉ ତା' ବାପା ଭଲକରି ପଖାଳ କଂସେ ବି ଖାଇବାକୁ ନପାଇ ଦୁର୍ବଳ ହୋଇପଡ଼ିଥିଲେ । ତେଣୁ ସେମାନେ ପ୍ରଥମେ ପ୍ରଥମେ ଅନ୍ୟମାନଙ୍କ ସାଂଗରେ ଯୋଡ଼୍ ଦେଇ ନପାରି ହତାଶ ହେଉଥିଲେ । ଆମ ମାଇପି ଲୋକଙ୍କ ଜୀବନ ଭାରି ଟାଣରେ ବାପା ! ମୋତେ ସେଥିପାଇଁ ବେଶୀ କଷ୍ଟ ହୁଏନି । ସୁନାଧର ଆଉ ତା' ବାପା ଏଥର ଭଲକରି ମୁଠେ ଖାଇ ପାରୁଛନ୍ତି ବୋଲି ଖୁସିରେ ମୋ ମନ ଆକାଶରେ ପହଁରି ବୁଲୁଥାଏ । ନଦୀ ଚଟାଣରୁ ବନ୍ଧ ଉପରକୁ ଯିବାକୁ ସେ ଯେଉଁ ସିଡ଼ୀ ! ତଳୁ ଉପରକୁ ଦେଖିଲେ ଭଲକରି ଆଖି ପାଏନି । ଶହେ ହାତ କି ତା' ଠାରୁ ବେଶୀ ଉଚ । ଉପରକୁ ଉପରକୁ ହୋଇ ଚାରି କି ପାଞ୍ଚ ଥାକ ଯାଏ ଯେ, ବଡ଼ ବଡ଼ ଧାଙ୍ଗଡ଼ିମାନେ ବି ପଥର ବୋଝ ମୁଣ୍ଡରେ ଧରି ଏକାଥରକେ ଉଠିଯାଇପାରନ୍ତିନି । ପ୍ରତ୍ୟେକ ଥାକରେ ଠିଆହୋଇଥିବା ଅନ୍ୟଲୋକଙ୍କୁ ବୋଝ ବଦଳାଇ ଦିଅନ୍ତି । ମୁଁ କିନ୍ତୁ ଏକା ଧାପକେ ଉଠିଯାଏ ।

ସଞ୍ଜବେଳକୁ ପୁଙ୍ଗାବାଜିଲେ ଆମ ସମସ୍ତଙ୍କର ଛୁଟି । ରାତିରେ ଥରେ ରାନ୍ଧିଦେଲେ ରାତିର ଖିଆ ଆଉ ସକାଳର ବାସିପଖାଳ ହୋଇଯାଏ । ଦିନବେଳେ ମୁଢ଼ି କିଛି ଚୋବାଇଦେଉ । ଦି'ଟଙ୍କା ଖର୍ଚ୍ଚରେ ଆମର ଦିନେ ଚଳିଯାଏ - ଆଉ ହାତରେ ଦିନକୁ ଟଙ୍କା ଚାରିଟା ବଳେ । ଝୁମ୍ପୁଡ଼ି ପାଖରେ ଚାଉଳ, ଡ଼ାଲି, ଲୁଣ, ତେଲ ସବୁ ଜିନିଷର ଦୋକାନ - ମୁଢ଼ିମୁଆଁ, ଉଖୁଡ଼ା, ବରା, ଚିନାବାଦାମ, ଯାହା ଖୋଜିବ ସବୁ ପାଖରେ ମିଳେ । ଆମ ପାଖରେ ଆମ ସୋନପୁରର ଅନେକ ଲୋକ ଥା'ନ୍ତି । ସୁନ୍ଦରଗଡ଼ର ସୁନ୍ଦର ସୁନ୍ଦର ଆଦିବାସୀ ଝିଅମାନେ ଥାଆନ୍ତି ଯେ, ସୁନାଧର ଗେଲେଇ ବୋଲି ଗୋଟିଏ ଝିଅ ସାଂଗରେ ମିଶେ - ଆଉ ଆମ ସୋନପୁର ଘରକଥା ଥରେ ବି ମନେପକାଏନି । କେଡ଼େ ସୁନ୍ଦର ଭାବରେ ଦିନସବୁ କଟିଯାଉଥିଲା । ରାତିରେ ଧାଙ୍ଗଡ଼ା ଧାଙ୍ଗଡ଼ା ପୁଅ ଆଉ ଝିଅମାନେ ଦଳକୁ ଦଳ ଅଣ୍ଟା ଧରାଧରି ହୋଇ ନାଚନ୍ତି । ନିଦରେ ଆଖିବୁଜି ହୋଇଯିବା ପର୍ଯ୍ୟନ୍ତ ଆମେ ସେସବୁ ଦେଖୁ ।

ସେଦିନ ସୁନାଧର ରାତି ଏଗାରଟା ବେଳକୁ ଆସିଲା । ମୁହଁରୁ ମଦର ଗନ୍ଧ ବାହାରୁଥାଏ । ସେ ରାତିରେ ସୁନାଧରର ଗାଲରେ ମୁଁ ବହୁତ ଜୋର୍‌ରେ ଚାପୁଡ଼ାଏ ଦେଲି - ସେ ପଡ଼ିଗଲା । 'ପୁଅକୁ ଏତେ ଜୋର୍‌ରେ ମାରୁଛୁ' ବୋଲି ତା' ବାପା ମତେ କେତେ ଗାଳିଦେଲେ । ଚାରୋଟି ପୁଅ ଝିଅ ଗଲାପରେ ଏଇ ପୁଅ । ତା' ବାପାର ସେ ଆଖିର ପିତୁଳା ।

ତା' ଆରଦିନ ସକାଳେ ଆମେ ଯେତେବେଳେ କାମ କରିବାକୁ ଗଲୁ ଶୁଣିଲୁ ଠିକାଦାର ଆମ ସୋନପୁର ଦଳ ଆଉ ସୁନ୍ଦରଗଡ଼ ଦଳ ଭିତରେ ଜିଦିବାଜି କରାଉଛି - ଯେଉଁ ଦଳ ବେଶୀ ପଥର ବନ୍ଧ ଉପରକୁ ନେଇପାରିବ ସେଇ ଦଳ ହାଣ୍ଡିଆ ଖାଇବା ପାଇଁ କୋଡ଼ିଏ ଟଙ୍କା ପାଇବ । ସୁନାଧରର ବାପା ମଧ୍ୟ ସେଦିନ ଆଉ ଜଣକ ସାଂଗରେ ଲୁହା ଚେନ୍‌ରେ ଭାରକରି ପଥର ବୋହିବାକୁ ଆରମ୍ଭ କରିଦେଲେ । ଆମେ ସବୁ ପଥର ବୋଝ ସହ ଧାଇଁ ଧାଇଁ ସେଇ ବିରାଟ ବାଉଁଶ ଶିଡ଼ି ଚଢ଼ିଯାଇଥିଲୁ ଆଉ ବନ୍ଧ ଉପରେ ପଥର କଚାଡ଼ିଦେଇ ପୁଣି ଧାଇଁ ଧାଇଁ ତଳକୁ ଓହ୍ଲାଇ ଆସୁଥିଲୁ ।

ଖାଇବା ଛୁଟି ପାଇଁ ପୁଙ୍ଗା ବାଜିବା ଟାଇମ୍ ପାଖେଇ ଆସୁଥାଏ । ମୁଁ ପଥର ମୁଣ୍ଡେଇ ଶିଡ଼ି ପାଖରେ ପହଞ୍ଚିଛି ସେଇ ବିରାଟ ଆକାଶଛୁଆଁ ଶିଡ଼ିଟା ଭାଙ୍ଗି ଏକାସଂଗେ ଭୁଷୁଡ଼ି ପଡ଼ିଲା । କାହିଁ କେତେ ଉଚ୍ଚର ସେ ଶିଡ଼ି - କେତେ ଲୋକ ତା' ଉପରେ ଥିଲେ । ବଡ଼ ବଡ଼ ପଥରଖଣ୍ଡ ସହ ସମସ୍ତେ କଚାଡ଼ି ହୋଇ ନଈ ଚଟାଣରେ ପଡ଼ିଲେ । ଅନେକଙ୍କ ଉପରେ ସେଇ ପଥରମାନ କଚାଡ଼ିହେଲା । ସେ ଯେଉଁ

ଛାତିଫଟା ଦୃଶ୍ୟ ତୋତେ କେମିତି କହିବିରେ ବାପା ! ମୁଁ ଡ଼ାହାଣୀ ସୋନପୁରରୁ ତାଙ୍କୁ ଏଇଠିକି କଢ଼ାଇ ଆଣିଥିଲି । ଚାରିଆଡ଼ର କାନ୍ଦବୋବାଳି ଭିତରେ ତାଙ୍କର ମଲା ଦେହକୁ ଧରି କାନ୍ଦୁଥାଏ । ଗେଲେଇ କେତେବେଳେ ଆସି ପାଖରେ ଠିଆହେଲା, ସୁନାଧର ବାପାର ଦେହକୁ ମୋ କୋଳରୁ ଜବରଦସ୍ତି ତଳେ ଥୋଇଦେଇ କହିଲା - "ତୋ ସୁନାଧାରକୁ ଚୋଟ ଲାଗିଛି ।"

ମୋ ସୁନାଧର ତ ବନ୍ଧ ଉପରେ ଥିଲା - ତାକୁ କେମିତି ଚୋଟ ଲାଗିବ ! ଖବର ଶୁଣି ମୋ ଜୀବନ ସତେ ଯେପରି ଉଡ଼ିଗଲା । ପାଗଳ ପରି ଗେଲେଇ ସାଂଗରେ ଦଉଡ଼ିଲି । ସୁନାଧର ପଡ଼ିଥାଏ - ଅଚେତ ହୋଇ । ତା'ର ନାକ ଓ କାନରୁ ରକ୍ତର ଧାରା ଛୁଟୁଥାଏ ।

ତା'ପରେ ମୁଁ ଆଉକିଛି ଜାଣିନି । କେତେଦିନ ପରେ ତୋ ପରି ଜଣେ ମୋତେ ଡ଼ାକ୍ତରଖାନାରେ କହିଲା - "ମାଉସୀ, ଗାଁକୁ ଯିବୁ ଟ୍ରକ୍‌ରେ - ତୋ ପୁଅକୁ ଆଉ କ'ଣ ପାଇବୁ ?"

ମୋତେ ଏମାନେ ଜବରଦସ୍ତି ଗାଁକୁ ପଠାଇଦେବେ ବୋଲି ସେଇ ରାତିରେ ହିଁ ଜଙ୍ଗଲରେ ଯାଇ ଲୁଚିଗଲି । କୋଉ ମୁହଁରେ ଗାଁକୁ ଯାଇଥାନ୍ତି କହିଲୁ ? ତା'ପରେ ଅନେକ ଦିନ ଜଙ୍ଗଲରେ ଲୁଚିଲି । କାଳେ ସୁନାଧର ବଞ୍ଚିଥିବ ଆଉ ଏମାନେ କେଉଁଠି ଲୁଚାଇଥିବେ ବୋଲି ଅନେକ ଖୋଜିଲି । ମୋ ସୁନାଧର କଣ୍ଟେଇକୋଳି ଆଉ ବରକୋଳି ଖୁବ୍ ଭଲପାଏ । ସେଇ ଦିନଠୁ ଏଇ କୋଳିସବୁ ତୋଳୁଚିରେ ବାପା- ତାକୁ ଆଉ ପାଇଲିନି ।

ଗୋଦରା ଆଣ୍ଠୁକୁଡ଼ା ଯଅଁରା ଏକ ସଂଗରେ ମୋ ସୁନାଧରକୁ ଆଉ ତା' ବାପାକୁ ନେଇଗଲା । ସେଦିନ ଠୁ ସେଇ ଗୋଦରାକୁ ଖୋଜି ବୁଲୁଛି ଏଇ ବାଡ଼ି ଧରି ।

ବାଡ଼ି ଦେଖିବୁ ? ହେଃ ହେଃ, ଏଇ ଦେଖ୍ କେମିତି ଗୋଜିଆ ହୋଇଛି । ଗୋଦରାକୁ ଦେଖିଲେ ଏମିତି ଗୋଡ଼ରେ କେଞ୍ଚିଦେବି - ଛେଚିଦେବି । ତାକୁ ଭେଟିବି ବୋଲି କେତେ ଯେ, ଖୋଜିଛି, କେତେ ମଶାଣି ବୁଲିଛି, ଏ ଯାଏ ପାଇନି । ଲୋକେ କହନ୍ତି - ମୁଁ କୁଆଡ଼େ ଗୁଣିଆ - ମଶାଣିରେ ହାଡ଼ ଚୋବାଏ । ଏ ଗାଁର ଛୁଆମାନେ ସେଥିପାଇଁ ମୋ ପାଖକୁ କୋଳି ଖାଇବା ପାଇଁ ଆସନ୍ତିନି । ହିଃ... ହିଃ...

ସେଦିନ ମଇଁଷି ଉପରେ କିଏ ଜଣେ ବସିଥିଲା ଯେ, ସେଇ ଯଅଁରା ବୋଲି ଗୋଡ଼େଇଲି । ମଇଁଷି ପିଠିରୁ ଡ଼େଇଁ ସେ ଛାଟିପିଟି ହୋଇ ପଳାଇଗଲା - ଆମ ଏଇଗାଁର କାଳିଆ ମୁଣ୍ଡା ।

ଏବେ ଜାଣିଲୁ, ମୁଁ କାହିଁକି ସେ ବାଡ଼ି ଖଣ୍ଡିକ ସବୁବେଳେ ପାଖରେ ରଖିଛି ! ହଠାତ୍ ଯଦି ହାବୁଡ଼ିଯିବ, ଦେଖିବୁ ଯମର ମୁଣ୍ଡ ଯଦି ନ ଫଟାଇଛି ! ତୋ ଘରେ କାହିଁକି ଏ କଥା କହିଲିନି ଜାଣିଛୁ ? ବୋହୂଥିଲା ! ବୋହୂ ଆଗରେ ଏ ଗାଡ଼ଶୁଆ ଯମ କଥା କହିବି ?"

ବୁଢ଼ୀ ଏତେବେଳେ ଯାଏ ମୋ ମୁହଁକୁ ଅନାଇ ନଥିଲା । ମୋ ଆଖିରେ ବୋଧହୁଏ ଲୁହ ଦେଖି କହିଲି – "ବାପା କାନ୍ଦୁଛୁ ? ମୋ ଛାତି ଏବେ ପଥର ହୋଇଗଲାଣି । ଦୁର୍ବଳ ହେଲେ ଆଉ ସେ ଯମର ଗୋଡ଼ ଭାଙ୍ଗିପାରିବି ?"

ମୋ ନିଜ ଅଜାଣତରେ ଟାଙ୍ଗୁଡ଼ିରୁ ମୁଢ଼ିତକ କେତେବେଳେ ଖାଇ ସାରିଥିଲି । ବୁଢ଼ୀ ବ୍ୟସ୍ତହୋଇ ଆଉକିଛି ଆଣିବାକୁ ବାହାରୁଥିଲା – ମୁଁ ଗଳାସଫା କରି କହିଲି – "ନାଇଁ ମାଉସୀ, ଆର ଥରକୁ ତୋର ବୋହୂକୁ ନେଇକରି ଆସିବି ଯେ, ଖାଇବି ।"

ବୁଢ଼ୀ ଅତିଖୁସିରେ ଛାତିରେ ଦୁଇହାତ ପିଟି ତା'ର ଉଜ୍ଜ୍ୱଳି ଉଠିବା ମୁହଁରେ ହସର ଢେଉ ଖେଳାଇ କହିଲା – "ସତେ ବାପା ବୋହୂକୁ ଆଣିବୁ ।"

ମୁଁ ଘରକୁ ଫେରିଆସିଲି । ବାରନ୍ଦାକୁ ଉଠୁଛି – ଦୂରରୁ ଶୁଭିଲା 'ଏ କୋଳି ନିଅ ।' ଅତି ସ୍ପଷ୍ଟ ସେ ଡ଼ାକ ।

ଏଥର ସେ ଡ଼ାକରେ ଫେଁ...ଏ....ଓ....ଓ ର ଭୟନଥିଲା, କିମ୍ବା 'ଗେଟ୍ ଖୋଲିଦିଅ'ର ବ୍ୟଙ୍ଗ ଟାପରା ନଥିଲା । ଡ଼ାକରେ ଫୁଟି ଉଠୁଥିଲା – ସାରା ସଂସାରର ସମସ୍ତ ପୁଅଝିଅଙ୍କୁ କୋଳି ଖୁଆଇ ସନ୍ତୁଷ୍ଟ କରିବା ପାଇଁ ଚିର ଉତ୍କଣ୍ଠିତା ଜଣେ ପୁତ୍ରହୀନା ମା'ର ଅତୃପ୍ତ ବାସନା ।

# ରୋମନ୍ଥନ

ଜୟଦେବ ବାବୁ ବାରନ୍ଦାରେ ପଡ଼ିଥିବା ବେତଚୌକିଟିରେ ବସି ରାସ୍ତା ଆଡ଼କୁ ଅନାଇଥିଲେ । ରାସ୍ତାରେ ଲୋକ ଗହଳି ଜମି ନଥିଲା । ମନେହେଉଥିଲା ସତେ ଯେମିତି ରାସ୍ତାଟି ନିଦରୁ ଉଠି ଏବେବି ଢୁଳାଉଛି ।

ଛୋଟ ଛୁଆ ଦିଓଟି କେଉଁ ଗୋଟାଏ ସ୍କୁଲର ୟୁନିଫର୍ମ ପିନ୍ଧି ଆଲୁମିନିୟମ୍ ବାକ୍ସଧରି ଧିରେ ଧିରେ ଚାଲୁଥିଲେ । ବଡ଼ଝିଅ ଆଉ ସାନପୁଅ ବୋଧହୁଏ ଦୁଇ ଭାଇଭଉଣୀ । ଭଉଣୀ ତା'ର ଫ୍ରକ୍ ପକେଟ୍‌ରୁ କ'ଣ ଗୋଟାଏ ବାହାରକରି ପାଟିରେ ଛଡ଼ାଇ ଖାଇଲାବେଳକୁ ପୁଅଟି ପାଖକୁ ଯାଇ ଅନାଉଥିଲା - ବୋଧହୁଏ ଚିନାବାଦାମ ନିଜଭାଗ ଆଗ ଖାଇଦେଇ ନାନୀର ଅଂଶରୁ ଭାଗ ମାରିବାର ଫନ୍ଦି ନିଶ୍ଚୟ ।

ସ୍କୁଟରଟିଏ । ମହିଳା ଜଣକ ପଣତକାନି ଉଡ଼ାଇ ପଛସିଟ୍‌ରେ ବସିଥିଲେ ଆଉ ଥରକୁ ଥର ପଣତ ସଜାଡୁଥିଲେ । ସ୍କୁଟର ଚଳାଉଥିବା ନିଶୁଆ ଭଦ୍ରଲୋକଟି ବୋଧହୁଏ ତାଙ୍କର ସ୍ୱାମୀ ।

ବେଗ୍ ଧରି ହଲି ହଲି ଯାଉଥିବା ଲୋକଟି ନିଶ୍ଚୟ ଜଣେ ପଚରାଣି । ଅନ୍ୟ ଦିଗରୁ ଆସୁଥିବା କେହିଜଣେ ସାଙ୍ଗକୁ ଭେଟି ମୁହଁକୁ ମୁହଁ ଲଗାଇ ଗପ ଆରମ୍ଭ କରିଦେଇଛି - ବିପରୀତ ଦିଗରୁ ଭେଟାଭେଟି ହୋଇ ନିଶ ଘଷାଘଷି ହେଉଥିବା ଦିଓଟି ପିମ୍ପୁଡ଼ିଙ୍କ ପରି । ଜଣକର ବିଡ଼ି ନିଆଁରୁ ଆଉଜଣେ ବୋଧହୁଏ ନିଜ ବିଡ଼ିରେ ନିଆଁ ଲଗାଇନେଲା ।

ବସ୍‌ଟିଏ ବଡିଖୁଣ୍ଟ ପାଖରେ ଅଟକିଗଲା ଆଉ ଛିଡ଼ା ହୋଇଥିବା ଲୋକମାନଙ୍କୁ ଗୋଟା ଗୋଟା ଗିଳିଦେଇ ପୁଣି କୁଆଡ଼େ ଚାଲିଗଲା ପଛପାଖରୁ ହାତ ହଲାଇ ହଲାଇ ଦଉଡୁଥିବା ଭଦ୍ରଲୋକଙ୍କୁ ଅପେକ୍ଷା ନକରି । ସାଇକେଲ ରିକ୍ସା ପାଳବିଡ଼ା ଲଦା ବଳଦଗାଡ଼ି...

ସମସ୍ତେ ନିଜ କାମରେ ଲାଗିଯାଇଛନ୍ତି, କେବଳ ବସି ରହିଛନ୍ତି ଜୟଦେବ ବାବୁ । ବସିରହିବା ହିଁ ସତେ ଯେମିତି ତାଙ୍କର କାମ । ଅସ୍ୱସ୍ତିର ଗୋଟିଏ ଲମ୍ବା ନିଶ୍ୱାସ ନେଇ ଜୟଦେବ ବାବୁ ଭାବନାରେ ବୁଡ଼ି ରହିଲେ । ହିଁ ତାଙ୍କପାଇଁ ଏବେ

ଆଉ ସମୟର ମୂଲ୍ୟ ନାହିଁ - ସମୟ ତାଙ୍କପାଇଁ ଗତିହୀନ, ସ୍ଥିର ଠିକ୍ ସେଇ ରାସ୍ତାର ବତିଖୁଣ୍ଟ ପରି । ବସ୍‌ରେ ଯେଉଁମାନେ ଛୁଟି ଚାଲିଛନ୍ତି ସେମାନଙ୍କ ଆଖିରେ ସେ ବତିଖୁଣ୍ଟଟି ଅବଶ୍ୟ ବେଶ୍ ଗତିଶୀଳ, କିନ୍ତୁ ଯେଉଁମାନେ ତାଙ୍କପରି ଏମିତି ବସିରହି ସେ ଖୁଣ୍ଟକୁ ଅନାଇଛନ୍ତି, ସମୟ ଠିକ୍ ସେପରି । ଯେଉଁମାନେ ନିଜ ନିଜ କାମରେ ଧାଇଁଛନ୍ତି, ସମୟ ବି ସେମାନଙ୍କ ସଙ୍ଗରେ ଧାଇଁଛି - ହୁଏତ ବିପରୀତ ଦିଗରେ । ଆଉ ଯେଉଁମାନଙ୍କର କାମଧନ୍ଦା ନାହିଁ, ସମୟ ସେମାନଙ୍କ ପାଇଁ ଶିକାରକୁ ଛପି ରହିଥିବା ଠିକ୍ ଗୋଟାଏ ଅଜଗର ପରି ସ୍ଥିର । ବେଳ କାଳ ଉଣ୍ଡି ଧରି ନେଇ ଗିଳିପକାଇବ ଯାହା ।

ପାଖରୁ ଆସୁଥିବା କିଛି ଗୋଟାଏ ଶବ୍ଦ ଜୟଦେବ ବାବୁଙ୍କ ଭାବନାର ଖିଅ ଛିଣ୍ଡାଇଦେଲା । ସେ ଚାରିଆଡ଼ିକି ଚାହିଁଲେ । ଅନତିଦୂରରେ ଶୋଇ ରହିଥିବା ଗାଈଟି ବୋଧହୁଏ ଘର ପଛପାଖରୁ ଆସୁଥିବା ହମ୍ବା ଡ଼ାକର ଉତ୍ତର ଦେଇଛି ।

ଗାଈଟି ବେଶ୍ ନିଶ୍ଚିନ୍ତରେ ଶୋଇଥିଲା ଆଉ ପାକୁଳି ମାରୁଥିଲା । ନିମୀଳିତ ଆଖିଦିଓଟି ବେଳେ ବେଳେ ସାମାନ୍ୟ ଖୋଲିଯାଉଥିଲା। ମଝିରେ ମଝିରେ କାନ ହଲାଇ ନିଜ ମୁହଁକୁ ନିଜେ ବିଞ୍ଚୁଥିଲା ଆଉ ମୁଣ୍ଡ ହଲାଉଥିଲା - ସତେ ଯେମିତି କାହାର ଏକାନ୍ତ ଅନୁରୋଧ ରକ୍ଷାକରି ନପାରି ସେ ନାସ୍ତିବାଣୀ ଶୁଣାଉଛି ।

ଜୟଦେବ ବାବୁଙ୍କ ଭାବନା ଏଥର ଗାଈ ଆଡ଼ିକି ମୁହାଁଇଲା । ତାଙ୍କର ମନେହେଲା ଗାଈ ଯେମିତି ମନକୁ ମନ ହସୁଛି । ହୁଏତ କଳ୍ପନା କରୁଛି ଯେ, କିଛି ଲୁଣ ଓ ଗୁଡ଼ ମିଶା ପେଜ ତୋରାଣି, ସିଝାବୁଟ ଡ଼ାଲି, ଚିନାବାଦାମ ପିଡ଼ିଆ ଆଉ ଚାରି ଚାରି ଇଞ୍ଚ ଲମ୍ବରେ କଟାଯାଇଥିବା କଅଁଳିଆ ଦୂବଘାସର ଗୋଟାଏ ଭରପୁର ଡ୍ରମ ତା ଆଡ଼କୁ ଠେଲା ହୋଇଆସୁଛି ।

ଘରପଛ ପାଖରୁ ପୁଣି ସେଇ ହମ୍ବା ଡ଼ାକ ।

ଗାଈ କେମିତି ଗୋଟାଏ ଗଳା ଖଙ୍କାରିବା ଶବ୍ଦ ପରି ଅଧା ଅପନ୍ତରିଆ 'ଏହେଁ' କଲା । ମନେହେଲା ସତେ ଯେମିତି ଉତ୍ତରରେ କହୁଛି - 'ଭଲ ହୋଇଛି ! ତୁ ସେଇଠି ବନ୍ଧାହୋଇ ପଡ଼ିଥା । ଖୋଲିଦେଲେ ତ ଦୁଷ୍ଟାମି କରି ବଗିଚା ସାରା ଡ଼େଇଁ ବୁଲିବୁ !'

ଗାଈ ମୁହଁରେ ପ୍ରସନ୍ନତାର ଛାପ ସ୍ପଷ୍ଟ ।

ଜୟଦେବ ବାବୁ ଏ ଗାଈର ଜୀବନ ସଂଗରେ ତାଙ୍କର ନିଜ ଜୀବନ ତୁଳନା କଲେ । ସତରେ କି ସୁନ୍ଦର ଚିନ୍ତାଶୂନ୍ୟ ସଂଘର୍ଷବିହୀନ ଜୀବନ ଏମାନଙ୍କର ! କିଛି

କାମ ନାହିଁ କି ଧନ୍ଦା ନାହିଁ - ଆରାମରେ ଏମିତି ଶୋଇ ଶୋଇ ସମୟ କଟାଇ ଦିଅନ୍ତି, ଆଉ ଆଖି ବୁଜି ପାକୁଳି ମାରୁଥାଆନ୍ତି । ଦୁଧ କିଛି ଦିଅନ୍ତି ସତ, ତେବେ ସେଥିପାଇଁ ତ କିଛି କମ୍ ଖାଇବାକୁ ମିଳେନି । ନିଜ ବାଛୁରୀକୁ ପିଆଇସାରିଲା ପରେ ସେ ବଳକା ଦୁଧଗୁଡ଼ାକ ନିଜ ପହ୍ନାରେ ସଞ୍ଚିରଖି କ'ଣ ବା କରନ୍ତେ ! ଆଉ ଜୟଦେବ ବାବୁ ତାଙ୍କ ଭାଗ୍ୟରେ ଏମିତି ଆରାମ କାହିଁ? ସାରା ଜୀବନ ଏକ ନିରବିଚ୍ଛିନ୍ନ ଘଣାପେଲାରେ ହିଁ କଟିଗଲା ।

ସେ ହଠାତ୍ ମନେକଲେ ଗାଈ ସାଙ୍ଗରେ ନିଜର ତୁଳନା ବୋଧହୁଏ ଠିକ୍ ହେଉନି । ଟିକିଏ ଅପ୍ରତିଭ ହେଲେ ମଧ୍ୟ । ତେବେ କ'ଣ ବଳଦ ସଂଗରେ ସେ ନିଜର ତୁଳନା କରିବେ? ତାଙ୍କର ମନେପଡ଼ିଲା ପିଲାଦିନେ ସ୍କୁଲରେ ଗଣିତ ଶିକ୍ଷକ ତାଙ୍କୁ କେମିତି ବେଳେ ବେଳେ ବଳଦ ବୋଲି ଆକ୍ଷେପ କରୁଥିଲେ, ଆଉ ସେ କୁଣ୍ଡା ଖାଆନ୍ତି ନା ଭାତ ଖାଆନ୍ତି ସେ ସମ୍ବନ୍ଧରେ ସନ୍ଦେହ ପ୍ରକାଶ କରୁଥିଲେ ।

ଜୟଦେବ ବାବୁ ଯେତେ ଭାବିଲେ ସେତିକି ତାଙ୍କର ମନେହେଲା ଯେ, ବଳଦର ଜୀବନ ସଂଗେ ତାଙ୍କ ଜୀବନର ଯଥେଷ୍ଟ ସାମଞ୍ଜସ୍ୟ ରହିଛି । ବିଚରା ବଳଦ ସକାଳୁ ସନ୍ଧ୍ୟାଯାଏ ଖଟେ, କିନ୍ତୁ ତା ଦୁଃଖ ଗୁହାରି କିଏ ଶୁଣେ? ଖୁସିହେଲା ତ ମାଲିକ କେବେ ତା ଦେହରେ ଟିକିଏ ହାତ ବୁଲାଇ ଆଣେ ଅଥବା ତା ମୁହଁପାଖରେ ପାଳ ବିଡ଼ାଏ ପକାଇଦିଏ । ନହେଲେ ଏଠୁ ସେଠୁ ନିଜେ ଯୋଗାଡ଼ କରି କିଛି ଖୁଣ୍ଟିଖାଇବା କଥା, ପଘା ଛିଣ୍ଡାଇ ରାତିରେ କାହା ବାଡ଼ିବଗିଚାରୁ ଜଗୁଆଳି ଉଠିବା ପୂର୍ବରୁ ଦି'ପୁଳା ମାରିଦେବା କଥା - ଠିକ୍ ତାଙ୍କ ପରି । ସକାଳୁ ସଞ୍ଜଯାଏ ତାଙ୍କ ଖାଟେଣି କ'ଣ ସରକାର କେବେ ବୁଝିଲା? ଦେହରେ ହାତ ମାରିବା କଥା ତ ଛାଡ଼ - ସାବାସୀ ପଦେ ବି ନାହିଁ । ମାସ ଶେଷକୁ ଯେଉଁ ବେତନ ଟିକକ ମିଳୁଥିଲା ତାହା ସେଇ ପାଳବିଡ଼ାକ ଠାରୁ କେଉଁ ଗୁଣେ ଅଧିକ? ସେ ଯଦି ନିଜେ ଏଠୁ ସେଠୁ କିଛି ଖୁଣ୍ଟି ଖାଇନଥାନ୍ତେ, ପଘା ଛିଣ୍ଡାଇ କାହା ବାଡ଼ିବଗିଚାରୁ.....

ତାଙ୍କର ଏ ମନର କଥା କାଳେ କିଏ ଶୁଣିନେଇଥିବ ସେ ଆଶଙ୍କାରେ ସନ୍ତ୍ରସ୍ତ ହୋଇ ଜୟଦେବ ବାବୁ ଚାରିଆଡ଼ିକି ମୁହଁ ବୁଲାଇଆଣିଲେ ।

ହଁ - ବଳଦର ଜୀବନ ପରି ହିଁ ତାଙ୍କର ଜୀବନ ।

ଆଉ ବଳଦ ଯେତେବେଳେ ବୁଢ଼ା ହୋଇଯାଏ । ଚାଷୀ ତଥାପି ତା' ଉପରେ ଯୁଆଳି ଲାଦେ - ଲଙ୍ଗଳ ଫାନ୍ଦେ । ଚାଲିନପାରିଲେ ବାଡ଼ାଏ, ଲାଞ୍ଜ ମୋଡ଼େ, ଦେହରେ କେଞ୍ଚେ, ଆଉ ଯାବତୀୟ ନିର୍ଯାତନା ସବୁ ଦେଇସାରିଲା ପରେ ମଧ୍ୟ ବୁଢ଼ା ବଳଦ ଯେତେବେଳେ ଚାଲିପାରେନି ତାକୁ ବାଧ ହୋଇ ଯୁଆଳି ବନ୍ଧନରୁ ମୁକ୍ତିଦିଏ ।

ଏଇଠି ତୁଳନାଟି କେମିତି ଗୋଳମାଳିଆ ହୋଇଗଲା। ଜୟଦେବ ବାବୁ ତ ଏବେ ମଧ୍ୟ ଯୁଆଳି ବୋହିବାକୁ ପ୍ରସ୍ତୁତ - ପ୍ରସ୍ତୁତ କାହିଁକି, ଲାଳାୟିତ। ଉତ୍କଣ୍ଠିତ ବୋଲି ମଧ୍ୟ କୁହାଯାଇପାରେ । ଯୁଆଳି ଲଦିଲେ କେଉଁ ଯୁବକ ତାଙ୍କ ସଙ୍ଗରେ କାନ୍ଧ ମିଳାଇ ଚାଲିପାରିବ ? ତଥାପି ଅଠାବନ ବର୍ଷ ହୋଇଗଲା ବୋଲି ବାସ୍ - ରିଟାୟାର୍ଡ଼ !

ମନ ଭିତରେ କିଏ ସତେ ଯେମିତି ଚିତ୍କାର କରିଉଠିଲା - ଅନ୍ୟାୟ - ଘୋର ଅନ୍ୟାୟ !

ଜୟଦେବ ବାବୁ ଉତ୍ତେଜିତ ହୋଇପଡ଼ିଲେ । ଗାଁ ଗୋଡ଼ ଆଣ୍ଠୁ ଉପରେ ଡ଼ାହାଣ ଗୋଡ଼ ଲଦି ସେ ଯେଉଁ ମୃଦୁ ପଦ ସଂଚାଳନ କରୁଥିଲେ - ତାହା ବନ୍ଦ ହୋଇଗଲା । ତାଙ୍କର ପ୍ରବଳ ଇଚ୍ଛାହେଲା ସେ ରାସ୍ତା ଉପରକୁ ଦଉଡ଼ିଯାଇ ସମସ୍ତଙ୍କ ସାମନାରେ ଏ ଅନ୍ୟାୟର ପ୍ରତିବାଦ କରିବେ । ସମସ୍ତଙ୍କୁ ଗୋଟି ଗୋଟି କରି ପଚାରିବେ - ଚର୍ଚ୍ଚିଲ ଯେତେବେଳେ ପ୍ରବଳ ପ୍ରତାପୀ ହିଟଲର୍ ଓ ମୁସୋଲିନୀ ବିରୁଦ୍ଧରେ ଲଢୁଥିଲେ ତାଙ୍କର ବୟସ କେତେ ଥିଲା ? ପ୍ରଶ୍ନ କରିବେ, ଆର୍ଜେଣ୍ଟିନାକୁ ପେରନ୍ ଯେତେବେଳେ ପୁନର୍ବାର ଶାସକ ହୋଇ ଫେରିଆସିଥିଲେ ସେତେବେଳେ ତାଙ୍କର ବୟସ କେତେ ? ପଚାରି ବୁଝିବେ ମାର୍ଶାଲ୍ ଟିଟୋଙ୍କ ବୟସ । ଡ଼ରିବେ କାହିଁକି ? ପୁଣି ସେ ପଚାରିବେ - ଚାଓଙ୍କ ମୃତ୍ୟୁ ବେଳକୁ ଚୀନର ଶାସନ କ୍ଷମତା ନିଜ ହାତମୁଠାରେ ହିଁ ରହିଛି ବୋଲି ପ୍ରମାଣିତ କରିଥିବା ମାଓଙ୍କ ବୟସ - 'ଫାରାକ୍‌କାକୁ ଭାଙ୍ଗି ଦେବି' ବୋଲି ଧମକାଉଥିବା ବଙ୍ଗଳାଦେଶୀ ମୌଲାନା ଭସାନୀଙ୍କ ବୟସ ।

ସେ ଉଠିବାକୁ ଚେଷ୍ଟାକଲେ । ହାତବାଡ଼ି ଦରାଣ୍ଡିଲେ । ବାତଗ୍ରସ୍ତ ରୋଗୀ ଚଲାବୁଲା କରିବାକୁ ସବୁବେଳେ ଚେଷ୍ଟାକରିବା ଉଚିତ୍ ବୋଲି ଜାଣି ଠିଆହେଲା ପରେ ମଧ୍ୟ ଚୌକିରେ ଆଉଥରେ ବସିପଡ଼ିଲେ ।

ତାଙ୍କର ଭାବନା ଏଥର ଭିନ୍ନ ମୋଡ଼ ନେଲା ।

ସତରେ ସେ ବୁଢ଼ା ହୋଇଯାଇଛନ୍ତି ।

ତେବେ ସେ କାହିଁକି ଚାକିରିର ଅବ୍ୟାହିତକୁ ମୁକ୍ତିବୋଲି ଗ୍ରହଣ କରିନେଇ ପାରୁନାହାନ୍ତି - ଦଣ୍ଡ ବୋଲି ଭାବୁଛନ୍ତି ।

ଯୁଆଳିରୁ ମୁକ୍ତି କଣ ତେବେ ବୁଢ଼ା ବଳଦକୁ ଦଣ୍ଡ ? ଚିନ୍ତା ସବୁ କେମିତି ଗୋଳମାଳିଆ ହୋଇଯାଉଥିବା ପରି ମନେହେଲା । ଆହା - ସତରେ ସେ ବିଚରା ! ମୁକ୍ତି ମିଳିଲେ ସେ ଯିବ କେଉଁଠିକି ?

ତା'ର ଅଛି ଘର ନା ଦ୍ୱାର - ବାଡ଼ି ନା ବଗିଚା, ବାଣିଜ୍ୟ ବ୍ୟବସାୟ, କମ୍ପାନୀ ଶେୟାର, ଘରଭଡ଼ା, ପେନ୍‌ସନ୍ ନା ଚୋରାମାଲ୍ ଟଙ୍କା ପଇସା ଦିଆନିଆ କାରବାର । ନା ଅଛି ପୁଅ ବୋହୂ, ଝିଅ ଜ୍ୱାଇଁ, ନାତୀ ନାତୁଣୀ ସାଙ୍ଗସାଥୀ । କେହି ଖାଇବାକୁ ଦେବେନି, ଅନ୍ୟର ଖାଦ୍ୟ ଭିତରେ ଥୋମଣି ଭର୍ତ୍ତିକଲେ ସେ କେବଳ ଠେଲାପେଲା ଓ କେଞ୍ଚାଖାଇବ ଯାହା । ତଥାପି କଣ ବୁଢ଼ା ବଳଦ ଶୋଚନା କରେ ! ତାଙ୍କ ଭିତରେ ସତେ ଯେପରି କିଏ ଜଣେ ପ୍ରଶ୍ନ କଲା - 'ତମେ ତା'ହେଲେ କାହିଁକି ଏମିତି ବ୍ୟସ୍ତ ହେଉଛ ?'

ସତେ ତ ! ଏମିତି ଅଯଥା ବ୍ୟସ୍ତ ନ ହେବାକଥା - ବିରକ୍ତ ନହେବା କଥା, ଦୁଃଖ ବି ନ କରିବା କଥା - ସେଇ ବୁଢ଼ାବଳଦ ପରି ।

କିନ୍ତୁ ଦୁଃଖ ନ କରିବେ କେମିତି ? ନ ରାଗିବେ କେମିତି ? ବୁଢ଼ା ବଳଦର ତ ସଂସାର ବୋଲି କିଛିନଥିଲା - କାହାପାଇଁ ସେ କିଛି କରିନି କି କାହାକୁ କିଛି ଦେଇନି । କର୍ମ ଆଦରି ପଡ଼ିରହିବନି ତ ଆଉ କଣ କରିବ ? ସେ କିନ୍ତୁ ଏ ଗୁଡ଼ାକଙ୍କ ପାଇଁ କ'ଣ ନ କରିଛନ୍ତି ?

ସେଇ ଅଭିମନ୍ୟୁ - ଲଫଙ୍ଗା ହୋଇ ବୁଲୁଥିଲା । ତାହାର ବିଦ୍ୟା ବୁଦ୍ଧି ଯାହା, କେହି ତାକୁ ମେଟ୍‌ୱାର୍କ ସରକାର କି ପିଅନ୍ ଚାକିରିଟିଏ ବି ଦେଇନଥାନ୍ତେ । କିଏ ତାକୁ ସର୍ଦ୍ଦାର ମିଲ୍ଖା ସିଂହର ଟ୍ରକ୍‌ରେ ହେଲପର୍ କରିଦେଇଥିଲା ? ସେ ଡ୍ରାଇଭିଂ ଶିଖିଗଲା ପରେ ଆଉ ପାନା, ରେଞ୍ଚ, ପେଚକସ୍ ଟିକିଏ ଧରି ଜାଣିଲା ପରେ କିଏ ତାକୁ ପୁରୁଣା ଟ୍ରକ୍‌ଟିଏ କିଣିବା ପାଇଁ ଟଙ୍କା ଦେଇଥିଲା ? ଆଜି ସେ ଗୋଟିଏ ବଡ଼ ଠିକାଦାର ହୋଇଗଲା ବୋଲି ତାକୁ ଆଉ ଚନ୍ଦ୍ର ସୂର୍ଯ୍ୟ ଦେଖାଯାଉନାହାନ୍ତି କି ସେ ଆଉ ସ୍ୱର୍ଗ ମର୍ତ୍ତ୍ୟ ବାରିପାରୁନି ।

କିଏ ତାକୁ ଲାଇସେନ୍ସ କରାଇଦେଇ ଠିକାଦାର କଲା ? ସେ ରାସ୍ତେଇ ପାଇଁ କି ରିସ୍କ୍ ସବୁ ସେ ନ ନେଇଛନ୍ତି ! ଏତେ ଯେଉଁ ଲାଭ ମାରି ଗୋଟାପରେ ଗୋଟା ଟ୍ରକ୍ କିଣିଗଲା - ବିରାଟ କୋଠା ତୋଳିଲେ - ଆଉ ରାଉରକେଲା, ତାଳଚେର, ପାରାଦ୍ୱୀପରେ କେଉଁଠି ହୋଟେଲ୍ କଲା ତ କେଉଁଠି ମଦ ଦୋକାନ ହେଲା - କାହା ଭରସାରେ ? କାହା ସାହାଯ୍ୟରେ ? ରିଟାୟାର୍ କଲେ ବୋଲି ସେ ତା'ର ଭାଗ୍ୟନିୟନ୍ତା ଚିଫ୍ ଇଂଜିନିୟରଙ୍କୁ ଏମିତି ବେଖାତିର୍ କରିବ । ରାଗରେ ଜୟଦେବ ବାବୁଙ୍କ ବାତଗ୍ରସ୍ତ ଗୋଡ଼ର ଶିରାଗୁଡ଼ିକ ଟାଣି ହୋଇଗଲା । କଷ୍ଟରେ ସେ ଛଟପଟ ହେଲେ, ତଥାପି ସେ ଠିକାଦାର ଅଭିମନ୍ୟୁକୁ ଭୁଲି ପାରିଲେନି । ସେ ଦିନର ଅପମାନ ସେ କେମିତି ବା ଭୁଲିବେ ?

ଯେଉଁଦିନ ରିଟାୟାର୍ କଲେ ତା ପରଦିନର ଘଟଣା ସେ ଦିନ ବି ସେମିତି ସେ ଏଇ ବେତଚୌକିରେ ବସିଥିଲେ - ଯଦିଓ ସରକାରୀ ଘର ବାରନ୍ଦାରେ । ଦୂରରୁ କାର ହର୍ଣ୍ଣ ଶୁଣି ହିଁ ସେ ବୁଝିପାରିଥିଲେ ଯେ, ଅଭିମନ୍ୟୁ ତାଙ୍କ ଘରଆଡ଼କୁ ଆସୁଛି - ନିଶ୍ଚୟ ଆଶ୍ୱାସନା ଦେବାପାଇଁ, ଏମିତି ବଳ ବୟସ ଥାଉ ଥାଉ ଅବସର ହେବା ବିରୁଦ୍ଧରେ ପ୍ରତିବାଦ କରିବା ପାଇଁ, ତାଙ୍କ ଘରର ଭଲ ମନ୍ଦ ବୁଝିବା ପାଇଁ, ଆଉ ହୁଏତ ତା କମ୍ପାନୀର ଉପଦେଷ୍ଟା ହେବା ନିମନ୍ତେ ଅନୁରୋଧ କରିବା ଉଦ୍ଦେଶ୍ୟ ନେଇ । ଆଉ ୨/୩ଟି ଏମିତି ବେତ ଚୌକି ବାରନ୍ଦାରେ କାହିଁକି ଦେଇନି ବୋଲି ବିରକ୍ତ ହୋଇ ସେ ଚପ୍ରାଶିକୁ ଡ଼ାକ ଛାଡ଼ିଲେ । ମିନିର ମା' ନିଜେ ଚେୟାରଟିଏ ବୋହିଆଣି ଦେଇ ଦେଲେ ଯେ, ରିଟାୟାର୍ କଲାପରେ ପରେ ଚପରାଶି ସବୁ ଯାଇଛନ୍ତି । ଯା ବୋଲି କଣ ମିନିର ମା' ନିଜେ ଚୌକି ବୋହିବେ! ସେ ଚିତ୍କାର କରିଉଠିଲେ । କହିଲେ ଚାକିରିରୁ ସିନା ସେ ଅବସର ନେଇଛନ୍ତି, ତାଙ୍କର କଣ କିଛି ଅଭାବ ଅଛି ? ଅଭିମନ୍ୟୁ ପରି ଲକ୍ଷପତି ଠିକାଦାରମାନେ ଯା'ର ସାମାନ୍ୟ ସଂକେତ ପାଇଲାକ୍ଷଣି ହାତଯୋଡ଼ି ସାମନାରେ ଠିଆହୋଇଯିବେ, ତାକୁ ଚପରାଶି ଅଭାବ! ଠିକ୍ ସେତିକିବେଳେ ହିଁ ସେ ଚୋର ଘରଆଡ଼କୁ ଅନାଇ ଅନାଇ ହର୍ଣ୍ଣ ଦେଇ ଦେଇ ଚାଲିଗଲା । ତା'ପରେ ସେ ଆଜି ପର୍ଯ୍ୟନ୍ତ ଭୁଲ୍‌ରେ ମଧ ତାଙ୍କ ଘରେ ପାଦ ଦେଇନି ।

ଆଉ ସେ ନିମକ୍‌ହାରାମ୍ ଗୋବର୍ଦ୍ଧନ । ଜୟଦେବ ବାବୁ ରିଟାୟାର୍ କଲେ ବୋଲି ଯେଉଁ ପ୍ରମୋସନ୍ ସବୁ ହେଲା ସେଥିରେ ହିଁ ଗୋବର୍ଦ୍ଧନ ହେଲା ସୁପରିଣ୍ଟେଣ୍ଡିଂ ଇଂଜିନିୟର । ଦିନେ ହେଲେ କୃତଜ୍ଞତା ଜଣାଇବା ପାଇଁ ଆସିଛି ! ଭାଗେ ସିମେଣ୍ଟରେ ଦୁଇଭାଗ ବାଲି ଆଉ ଚାରିଭାଗ ଗୋଡ଼ି ମିଶାଇବା ବଦଳରେ ଠିକାଦାର ତିନିଭାଗ ବାଲି ଆଉ ଛଅଭାଗ ଗୋଡ଼ି ଦେଇ କଂକ୍ରିଟ୍ ଢ଼ାଳିଲା ବେଳେ ଏଇ ଗୋବର୍ଦ୍ଧନ କାମ କଦାରଖ କରୁନଥିଲା । ସଡ଼କର ଦୁଇ ଇଞ୍ଚରୋଡ଼୍ ମେଟାଲକୁ ଚାରିଇଞ୍ଚ କରି ମାପି ଧରାପଡ଼ିନଥିଲା ? ଆମ୍ବକାଠକୁ ଶାଗୁଆନ୍ କାଠ ବୋଲି ଦେଖାଇ ରଙ୍ଗ ବୋଳିଦେଇ ସେ ଗୋବର୍ଦ୍ଧନ ଚେକ୍ ମେଜରମେଣ୍ଟ୍ କରିନଥିଲା ? ଏଇ ଜୟଦେବ ନ ଥିଲେ ବେଟା ଛେଲେ କେବେଠୁ ଗୋବରା କି ଗୋବର୍ଦ୍ଧନିଆ ହୋଇସାରନ୍ତାଣି - ତାର ପୁଣି ଦିମାକ୍ । ସୁପରିଣ୍ଟେଣ୍ଡିଂ ଇଂଜିନିୟର ହେଲା ବୋଲି କଣ ତା ଆଖିରେ ମୋତିଆବିନ୍ଦୁ ପଡ଼ିଗଲା ? ରିଟାୟାର୍ଡ଼ ଚିଫ୍ ଇଂଜିନିୟରଙ୍କୁ ଚିହ୍ନି ବି ....

"ଆଉ କେତେବେଳେ ଗାଧୋଇବ ?"

ପ୍ରଶ୍ନ ଶୁଣି ଜୟଦେବ ବାବୁ ଚମକିପଡ଼ିଲେ । ମିନି-ମା' କେତେବେଳେ ଘର ଭିତରୁ ବାରନ୍ଦାକୁ ଆସି ସାରିଥିଲେ, ଆଉ କହୁଥିଲେ, "ସେଇଠି ବସି ବସି କଣସବୁ ଏମିତି ଭାବୁଛ ? ଗାଧୋଇବା ବେଳର କିଛି ଠିକଣା ନଥାଏ ବୋଲି ତ ତମ ଦେହ ଖରାପ ହୁଏ । ଜଳଖିଆ ନଖାଇ ଖାଲିପେଟରେ ଚା ଖାଇଲେ ପେଟ ଗରମ ହୁଏ, ଆଉ ତହିଁରୁ ବାତ ପ୍ରକୋପ..."

ଜୟଦେବ ବାବୁ ଅସହିଷ୍ଣୁ ହୋଇ କଥାରେ ବାଧାଦେଇ କହିଲେ - "ଆସିଲେ ବଡ଼ ଡ଼ାକ୍ତର ଏମ୍‌ଡ଼ି, ଏମ୍‌ଆରସିଓଜି । କହିଲେ କଣ ନା, ଚା ଖାଇଲେ ପେଟ ଗରମ ଆଉ ତହିଁରୁ ବାତର ପ୍ରକୋପ । ମୋ ଦେହ ଭଲ ନରହିଲେ କାହାର କଣ ଭାସିଯିବ ଯେ ! ତମ ଶିକ୍ଷପତି ପୁଅ ତ ସବୁ ପଇସା ନେଲା, ଦିନେ କେବେ ପଚାରି ବୁଝିଛି ବାପା କେମିତି ଅଛନ୍ତି ?'

ଏପରି ବିନା ମେଘରେ ବଜ୍ରପାତ ପାଇଁ ମିନି-ମା' ପ୍ରସ୍ତୁତ ନଥିଲେ । ସେ କିଛିକ୍ଷଣ ପାଇଁ ହତବାକ୍ ହୋଇଯାଇ କହିଲେ, 'ତମେ ଆଜିକାଲି ଏମିତି ସବୁବେଳେ ରାଗୁଛ କାହିଁକି ? ମୁଁ ତ ତମକୁ କିଛି କହିନି ! ଏବର ଯୁଗ ତ ଦେଖୁଛ - କେଉଁ ପିଲା ବାପା ମା' ପାଇଁ କ'ଣ କଲାଣି ? ସବୁ ସହିବାକୁ ପଡ଼ିବ - ଅଧୈର୍ଯ୍ୟ ହେବାର କ'ଣ ଅଛି ? ମୁଁ ତ ଘର ଚଳାଇନେଉଛି - ତମକୁ ତ କା' ପାଖରେ ହାତ ପତାଇବାକୁ ପଡୁନି ।'

ଜୟଦେବ ବାବୁ ଥତମତ ହୋଇଗଲେ । କଣ କରିବେ କିଛି ବୁଝିପାରିଲେନି । ମିନି ମା'ଙ୍କ ଏଇ ଅବିଚଳିତ ମନୋଭାବ ତାଙ୍କୁ ବିଚଳିତ କରିଦେଲା ।

ଜୟଦେବ ବାବୁ ନିଜ ଭୁଲ୍ ବୋଧହୁଏ ବୁଝିପାରିଲେ । ବିନା କାରଣରେ ମିନି-ମା'ଙ୍କୁ ଆଘାତ ଦେଇଥିବାରୁ ଅନୁତାପରେ ସ୍ୱଗତୋକ୍ତି କଲାପରି କହିଲେ - 'ଜୀବନ ସାରା ତ ଭୁଲକଲି - ଆଜି କେଉଁ ନୂଆ କଥା ? କାହାପାଇଁ ଏମିତି ଧନ ସଞ୍ଚୟ କରୁଥିଲି... ବୁଢ଼ା ବେଳକୁ କଣ ସେଇ ବୁଢ଼ା ବଳଦ ପରି ଯା' ତା' ଡ଼ଙ୍ଗାରେ ଜବରଦସ୍ତି ଥୋମଣି ଭର୍ତ୍ତି କରିବାକୁ ଯାଇ ଠେଲାପେଲା ଖାଇବି ।'

ଜୟଦେବ ବାବୁ ଫଁ ଫଁ ହେଉଥିଲେ । ମନକୁ ମନ କହୁଥିଲେ - ଭଲ ହେଲା, ସେ ଉଚିତ୍ ଶିକ୍ଷା ପାଇଛନ୍ତି । କାହାପାଇଁ ସେ ଏମିତି ଦଉଡ଼ ଧାପଡ଼ କରି, ଚୋରିହାରି କରି, ଖୋସାମତ କରି, ମନ୍ତ୍ରୀଙ୍କ ପଛରେ ଗୋଡ଼ାଇ, ସେକ୍ରେଟାରୀଙ୍କ ପୁଅକୁ କାଖଉଥିଲେ, ଆଉ ଧନ ସଞ୍ଚୟ କରୁଥିଲେ ? ବେଶ୍ ହୋଇଛି ।

ମିନି-ମା' କଅଁଳ ଗଳାରେ କହିଲେ - 'ମୋ ରାଣ, ଚାଲ - ଗାଧୋଇ ପଡ଼ି କିଛି ଜଳଖିଆ ଖାଇନେବ । ତମପାଇଁ ଆଜି ତମର ସବୁଠାରୁ ପ୍ରିୟ ଦୋଶା ଆଉ ନଡ଼ିଆ ଚଟଣି କରିଦେଇଛି ।'

ଜୟଦେବ ବାବୁ ମିନି-ମା' ମୁହଁକୁ ଚାହିଁଲେ । କେଜାଣି କାହିଁକି ହଠାତ୍ ତାଙ୍କ ମା'ଙ୍କୁ ମନେପଡ଼ିଲା । ପିଲାଦିନେ ଅଝଟ ହୋଇ ନ ଗାଧୋଇଲେ, ରୁଷିଲେ ଅଭିମାନ କରି ନଖାଇଲେ, ତାଙ୍କ ମା' ବି ଏମିତି ଗେଲକରି କଥା କହୁଥିଲେ - ଭଲ ଭଲ ଜିନିଷ ଖାଇବାକୁ ଯାଚୁଥିଲେ, ମନ ଭୁଲାଇବାକୁ ଚେଷ୍ଟା କରୁଥିଲେ ।

ମିନି-ମା' ହାତ ଧରି ଜୟଦେବ ବାବୁ ଠିଆହେଲେ । ଘର ଭିତରକୁ ଯିବା ପୂର୍ବରୁ ଗାଈଆଡ଼ିକି ଆଉଥରେ ତାଙ୍କର ନଜର ପଡ଼ିଗଲା । ଗାଈ ମୁହଁରେ ସେଇ ପ୍ରସନ୍ନତାର ଛାପ । ତାଙ୍କର ମନେହେଲା ଏପରି ପ୍ରଶାନ୍ତି ସେ ଆଉ କେଉଁଠି ଦେଖିଛନ୍ତି । ମିନି-ମା'ଙ୍କ ମୁହଁରେ। ନିଜ ମା'ଙ୍କ ମୁହଁରେ ।

# କହିଲେ କୁଳକୁ ଲାଜ

ଆପଣ ପାଣିରେ ବୁଡ଼ି ମରିବା ପୂର୍ବରୁ କେବେ ଉବୁଟୁବୁ ହୋଇଛନ୍ତି ? ତଳେ ଠିଆହେବାକୁ ଚେଷ୍ଟାକରି ଦେଖିଛନ୍ତି ଯେ, ତଳକୁ ଗୋଡ଼ ପାଉନି, କିଛି ଗୋଟାଏ ଜାବୁଡ଼ି ଧରିବାକୁ ଯାଇ ଖାଲି ପାଣିକୁ ମୁଠା ମୁଠା ଧରିଛନ୍ତି । 'ତ୍ରାହି ମାଂ ମଧୁସୂଦନ' କହିବା ବଦଳରେ 'ଉଆଉ ଉଆଉ' କରି ହାତ ଯୋଡ଼ି ଛିଞ୍ଚାଡ଼ି ତୁହାକୁ ତୁହା ପାଣି ଢୋକିଛନ୍ତି - ପାଣି ଭିତରେ ବୁଡ଼ିଛନ୍ତି, ପୁଣି ଉପରକୁ ଉଠିଛନ୍ତି, ଆଉ ପୁଣି ବୁଡ଼ିଛନ୍ତି । ଧୀରେ ଧୀରେ ଅନ୍ଧାର ଘୋଟି ଆସିଛି ନା ? ଆଉ ତା'ପରେ କଣ ସବୁ ଘଟିଲା ଆପଣ ଆଉ ଜାଣିନାହାନ୍ତ । ଟିକିଏ ହାଲୁକା ଲାଗିଲା ପରେ ଆଖି ଖୋଲି ଅନାଇଲା ବେଳକୁ ଆପଣ ବାହାରେ ଚିତ୍‌ହୋଇ ଶୋଇଛନ୍ତି । ଚାରିଆଡ଼ିକି ଲୋକଗହଳି । ଆଉ ଆପଣଙ୍କ ବିରୋଧ ସତ୍ତ୍ୱେ କେଉଁ ଜଣେ ଭଦ୍ରଲୋକ ଆପଣଙ୍କ ଗୋଡ଼ ଦି'ଟାକୁ ପାଦ ପାଖରେ ଧରି ଆପଣଙ୍କ ଛାତି ପାଖକୁ ଭିଡ଼ିଆଣି ପେଟ ଉପରେ ଆଣ୍ଠୁକୁ ଚାପିଧରୁଛି । କିଏ ଜଣେ ପାଟିକରୁଛି - 'ବାହାରିଯାଉ ବାହାରିଯାଉ ଆଉ ଥୋଡ଼େ ପାଣି ବାନ୍ତିକରି ଦିଅନ୍ତୁ ।' ଆପଣ କହିବାକୁ ଚାହିଁଛନ୍ତି - 'ଥାଉ ଥାଉ ଭଲ ଲାଗିଲାଣି ।' କିନ୍ତୁ କାହିଁକି କେଜାଣି, କେହି ଶୁଣୁନାହାନ୍ତି, ଜୋର୍ ଜବରଦସ୍ତି ଏସବୁ କରିଯାଉଛନ୍ତି ।

ଓଃ ଆପଣଙ୍କର ଏପରି କିଛି ଅନୁଭୂତି ନାହିଁ ? ଅବଶ୍ୟ ମୋର ମଧ ନାହିଁ ଖାଲି ଅନ୍ୟଠୁ ଶୁଣି କହିବା କଥା । ଆଚ୍ଛା - ତା'ହେଲେ ଆଉ ଗୋଟିଏ ଦେଖନ୍ତୁ ।

ଆପଣଙ୍କର ତ ଭୀଷଣ ସର୍ଦ୍ଦି କାଶ ହୋଇଥିବ ? ଛାତିରେ କଫ ଜମାଟ ବାନ୍ଧିଯାଇଥିବ - ତୋଟି ଘଡ଼ଘଡ଼ ଶୁଭୁଥିବ - ନିଶ୍ୱାସ ନେଲାବେଳକୁ ପୁରୀ ରଥଯାତ୍ରା ବେଳେ କଟକ ଷ୍ଟେସନରେ କୌଣସି ତୃତୀୟଶ୍ରେଣୀ ଡ଼ବା ଭିତରକୁ ଠେଲି ପଶିଲା ପରି ଲାଗିଥିବ ? ତା'ପରେ ମନେପକାନ୍ତୁ - ଯେତେବେଳେ ଛାତିରେ ଭିକ୍ସ ଘଷିଦିଆ ହେଲା ବା ଭିକ୍ସ ନ ହୋଇ ଅମୃତାଞ୍ଜନ ଅଥବା ଶୁଣ୍ଠିଗୁଣ୍ଡ ମିଶା ପୁରୁଣା ଗରମ ଗୁଆଘିଅ - ବେଶ୍ ହାଲୁକା ଲାଗିଲା ନା ?

ସେହିପରି ଏକ ଅନୁଭୂତିର ଏ କାହାଣୀ - ଛାତି ଭିତରେ କଣ ସବୁ ଜମାଟ ବାନ୍ଧିଗଲେ ତାକୁ କିପରି ହାଲୁକା କରାଯାଇପାରେ ସେ କଥା । କିଛିଦିନ ହେବ

ମୋର ମନେହେଲା, ଦୁଃଖସବୁ ସତେ ଯେମିତି ମୋ ଛାତିରେ ଜମାଟ ବାନ୍ଧିଯାଉଛନ୍ତି, ଆଉ ପେଟ୍ରୋଲ ଲାଇନ୍‌ରେ ମଇଳା ଜମିଗଲେ ଗାଡ଼ି ଯେମିତି ଧଡ଼କ୍ ଧଡ଼କ୍ କରି କେମିତି ଗୋଟାଏ ଠେଲିହେଲା ପରି ଚାଲେ, ଆଉ ବନ୍ଦ ହୋଇଯାଏ - ପୁଣି ଷ୍ଟାର୍ଟ କରି ଏକ୍‌ସିଲେଟରକୁ ପମ୍ପ କରିଦେଲେ ପୁଣି ଧଡ଼କ୍ ଧଡ଼କ୍ କରେ - ଷ୍ଟାର୍ଟ ହୁଏ, ପୁଣି ବନ୍ଦ ହୋଇଯାଏ, ମୋର ଅବସ୍ଥା ବି ଧୀରେ ଧୀରେ ସେମିତି ହେବାକୁ ଯାଉଛି ।

ମୋର ଷ୍ଟାର୍ଟ ବି କାଳେ ପୁରାପୁରି ବନ୍ଦ ହୋଇଯିବ, ସେ ଭୟରେ ଯଥା ସମୟରେ ମୁଁ ପୁତ୍ର କଳତ୍ରଙ୍କ ଦ୍ୱାରା ରୋଗ ନିରାକରଣ ବିଶାରଦଙ୍କ ପାଖକୁ ନୀତ ହେଲି ।

ଡ଼ାକ୍ତର ପଚାରିଲେ - 'କେତେଦିନ ହେବ ଏମିତି ହେଉଛି ?'

ମୁଁ କହିଲି - 'ହେବ - ବେଶ୍ କିଛିଦିନ ।'

: "ତିନି ଚାରି ମାସ ?"

ମୁଁ - ହେବ ।

: "ଛ' ଆଠ ମାସ ?"

: "ହୋଇପାରେ ।"

: "ଏମିତି ହେଲାବେଳେ ଝାଳ ବାହାରେ ?"

: "ଝାଳ କଥା କହୁଛନ୍ତି ? ନିଗିଡ଼ିଯାଏ ।"

: "ଚାରିଆଡ଼ ଅନ୍ଧାର ଦିଶେ ?"

: "ଦିଶେ ।"

: "ଭୋକ ନାହିଁ ?"

: "ନାହିଁ ! ବେଳେବେଳେ ଛାତି ଭିତରେ ଚକି ପେଷିଲାପରି ଲାଗେ, ଚକି ନ ପେଷିଲେ ମଧ୍ୟ ବିରି କିମ୍ବା ମସଲା ବାଟିଲାପରି ମନେହୁଏ ।"

ଡ଼ାକ୍ତର ଚିନ୍ତିତ ହେଲାପରି ମୁହଁ କଲେ । କହିଲେ - 'ଇସିଜି ନେବାକୁ ପଡ଼ିବ ।'

ଇସିଜି ପାଇଁ ସ୍ଥାନ ନିରୂପିତ ହେଲା ଏବଂ ନିରୁପିତ ସ୍ଥାନରେ ଯଥା ଦେୟ ମଧ ନିରୁପିତ ହେଲା । ନେଣ ଦେଣ ସରିଲା ପରେ ରିପୋର୍ଟ ଦେଖି ଡ଼ାକ୍ତର କହିଲେ - 'ହାର୍ଟରେ କିଛି ଗୋଳମାଳ ନାହିଁ ।' ପରାମର୍ଶ ଦେଲେ - 'ତଥାପି ଚର୍ବିକୁ, କ୍ଲୋରୋଷ୍ଟେରଲ୍‌କୁ ଟିକିଏ ଜଗିବା କଥା । ବେଶୀ ତେଲ ଖାଇବେନି । ଭଜା ଅଣ୍ଡା ନଖାଇଲେ ଭଲ ।'

: "ମାଛ ମାଂସ ?"

: "ହଁ ସେ ସବୁ ବି ଟିକିଏ କମ୍ ତେବେ କେରାଣ୍ଡି ଖାଇପାରନ୍ତି ।"

: "ଦୁଧ - ଦହି - ସର ?"

: "ନା କମ୍ କରିଦେବେ - ଲୁଣ ବି କମ୍ ।" ତା'ପରେ ଦର୍ଶନ ଟିକିଏ ଯୋଡ଼ିଦେଇ କହିଲେ - "ମଣିଷ ବଞ୍ଚିବା ପାଇଁ ଖାଏ ସିନା - ସେ କଣ ଖାଇବା ପାଇଁ ବଞ୍ଚେ ?"

ଭାବିଲି, ମୋ ଦେହର ଗୋଳେଇ ଦେଖି ବୋଧହୁଏ କହୁଛନ୍ତି । କହିଲି 'ହଁ' ।

ସେ ଆହୁରି କଣ ସବୁ ଖାଇବା କଥା କହିଲେ - ମୁଁ କହିଲି "ହେଉ ।"

ଶେଷ ପରାମର୍ଶ ଦେଲେ ସଂପୂର୍ଣ୍ଣ ବିଶ୍ରାମ ନେବେ । କହିଲି - "ଆଚ୍ଛା ।"

ଯଥା ସମୟରେ ଦ୍ୱିତୀୟ ସ୍ପେଶିଏଲିଷ୍ଟ ଡ଼ାକ୍ତରଙ୍କ ହାବୁଡ଼ରେ ପଡ଼ିଲି । ସେ ତାଙ୍କ କାନରେ ରବର ନଳୀ ଗୁଞ୍ଜି ମୋର ଛାତି ଆଉ ପିଠିରେ କୁତୁ କୁତୁ କଲେ - ଏହେଁ ଏହେଁ କରାଇ କଣସବୁ ଶୁଣିଲେ । ଆଣ୍ଠୁଗଣ୍ଠି ଠୁକିଲେ । ଆଖିପତା ଓଲଟାଇଲେ । ଜିଭ ଲମ୍ବାଇ ଏ- ଏ- ଏ- ଏ କରିବାକୁ କହିଲେ । ହାତରେ ରବର ବେଲ୍ଟ ଭିଡ଼ି ରକ୍ତଚାପ ମାପିଲେ, ଆଉ ରକ୍ତ ପରୀକ୍ଷା ପାଇଁ ନିର୍ଦ୍ଦେଶ ଦେଲେ ।

ତାହାହେଲା ଏବଂ ଯଥାରୀତି ଟଙ୍କା ପଇସା ମଧ୍ୟ ଗଣାଗଣି ହେଲା । ଡ଼ାକ୍ତର ଏଥର କହିଲେ 'ବ୍ଲଡ଼୍ ପ୍ରେସର୍ ନହିଁ- ବ୍ଲଡ଼୍ପ୍ରେସର ନର୍ମାଲ ।' ପରାମର୍ଶ ଦେଲେ - 'ତଥାପି ବୟସ ହେଲାଣି ତ ! ମିଠା ଯେତେ ନ ଖାଇବେ ସେତେ ଭଲ । ସିଗାରେଟ୍ ତ ବୋଧହୁଏ ଖାଆନ୍ତିନି । ପାନ, ଗୁଣ୍ଡି, ମସଲା ଏଭଏଡ୍ କରିବେ । ଚା' କେତେ କପ୍ ଖାଆନ୍ତି କି ? ... ଓଃ ଏତେ ବେଶୀ ? କମ୍ କରିଦେବେ - କପେ ଦି'କପ - ବାସ୍ ! ନିୟମିତ ଖାଦ୍ୟ ନିୟମିତ ବିଶ୍ରାମ ନିୟମିତ ଜୀବନଯାପନ କିଛି ଚିନ୍ତାନାହିଁ । ଆମେ ସବୁ ଅଛୁ ।' ମୁଁ କହିଲି - 'ହେଉ ।'

କିଛିଦିନ ଗଲା । ଗୃହିଣୀ କ'ଣ କହିଲେ କେଜାଣି ପୁଅ ଏଥର ମୋତେ ନେଲା ଆଉ ଜଣେ ଡ଼ାକ୍ତରଙ୍କ ପାଖକୁ । ନିଜ ଥୋଡ଼ି ନିଜେ ଧରି ତାକୁ ହଲାଇ ଚଷମା ଭିତର ଦେଇ ଡ଼ାକ୍ତର ସ୍ୱଗତୋକ୍ତି କଲେ - 'ଲିଭର୍‌ରେ ଗୋଳମାଳ ନାହିଁ ତ ?'

ପଞ୍ଜରା ହାଡ଼ ତଳେ ଆଙ୍ଗୁଠିରେ କଣ ମାପିଲେ । ପଚାରିଲେ 'ପାଇଖାନା କେମିତି ହେଉଛି ? ରଙ୍ଗ ... ଦିନକୁ କେତେଥର ଯାଆନ୍ତି ?'

ମୁଁ କହିଲି "ଆଜ୍ଞା ସେ କଥା କହନ୍ତୁନି । ପାଇଖାନା ମାଡ଼ିଲାପରି ଲାଗେ କିନ୍ତୁ ଗଲେ ...."

"ହଁ ସେ କଥା କହନ୍ତୁ । ଏଇ ଡ଼ିସେଣ୍ଟ୍ରି। ଭାରତବର୍ଷରେ ଶତକଡ଼ା ନବେ ଲୋକଙ୍କ ଏଇ ଡ଼ିସେଣ୍ଟ୍ରି । ନିରୀହ ଜଣାପଡ଼େ - କିନ୍ତୁ ଲିଭର୍‌କୁ ଧରିଦିଏ ବେଳେ ବେଳେ ମସ୍ତିଷ୍କଆଡ଼କୁ ମଧ୍ୟ କ୍ଷେପିଯାଏ । ମଳ ପରୀକ୍ଷା କରାଇ ରିପୋର୍ଟ ଆଣନ୍ତୁ ।"

କ୍ଲିନିକ୍ - ରିଲାଇବଲ୍ - ଭଲ । ଚାର୍ଜ ମଧ୍ୟ ରିଜନେବଲ୍ ଚାର୍ଜ ଦିଆ ରିଲାଇବଲ୍ ରିପୋର୍ଟ ପେଶ କଲା ପରେ ତାକୁ ଦେଖି ଡ଼ାକ୍ତରବାବୁ କହିଲେ - "ଅଛି ... ସାମାନ୍ୟ ଅଛି । ଗୋଟିଏ କୋର୍ସ ମେଟ୍ରନ୍ ଖାଇନିଅନ୍ତୁ । ଫୁଟିଲା ପାଣି ଥଣ୍ଡାକରି ପିଇବେ । ମନେରଖନ୍ତୁ - ତେଲ ଘିଅ ଆପଣଙ୍କ ପାଇଁ ବିଷ ।"

ମୁଁ ରୀତିମତ ଔଷଧ ସେବନ କଲି ଏବଂ ତେଲ ଘିଅକୁ ବିଷ ମଧ୍ୟ କଲି । ଏପରି କିଛିଦିନ ଗଲା । ଏଥର ଶୁଣିବାକୁ ପାଇଲି ଗୃହିଣୀ ପୁଅକୁ କହୁଛନ୍ତି - 'ହଇରେ ବାପା କେମିତି ଶୁଖିଲା ଦିଶୁଛନ୍ତି - ଟିକିଏ ଦେଖୁନୁ - କେତେବେଳେ ବି ମନରେ ତାଙ୍କ ହରଷ ନାହିଁ । ଆଉ କେଉଁ ଡ଼ାକ୍ତର ପାଖକୁ ...'

ପ୍ରମାଦ ଗଣିଲି । କମ୍ ପରିମାଣରେ ହେଲେ ମଧ୍ୟ ଏବେ ଯେଉଁ ଲୁଣିଆ କି ମିଠା ଟିକିଏ, ଶାଗ ଖରଡ଼ା କିମ୍ବା କେରାଣ୍ଡି ସିଝା କିଛି, ଅଥବା ବନ୍ଧୁମାନେ ଘରକୁ ବୁଲିବାକୁ ଆସିଲେ କପେ ଅଧେ ଚା' ମିଳୁଥିଲା, ସେ ସବୁ ଉପରେ ମଧ୍ୟ ଆସନ୍ନ ବିପଦ ଦେଖାଦେଉଥିବା ଦେଖି ମୁଁ ଭଦ୍ରମହିଳାଙ୍କୁ ଯେତେ କହିଲି ଯେ, ମୋର କିଛି ହୋଇନି - ସେ ଶୁଣିବାକୁ ପ୍ରସ୍ତୁତ ନଥିଲେ । ବରଂ କିଛି ବୁଝାଇବାକୁ ଗଲେ ବେଶୀ କଥା ନକହି ବିଶ୍ରାମ ନେବାକୁ ଡ଼ାକ୍ତରମାନେ କହିଥିବା କଥା ସୂଚାଇ ଦେଉଥିଲେ । ମୁଁ କିନ୍ତୁ ଜାଣିଛି ମୋର ଠିକ୍ କ'ଣ ହୋଇଛି । ଗୃହ ଛିଦ୍ର ବାହାରେ ନ ପକାଇବା କଥା । ଏଣେ ସେ ସବୁ ନ କହିଲେ ପୁଣି ଡ଼ାକ୍ତରଙ୍କ ପାଖକୁ ନିଆହେବା ଭୟ । ଅଗତ୍ୟା କଣ କରିବି - ନ କହିବା କଥା କହିବାକୁ ପଡୁଛି । ଏଥର ଆପଣ ଶୁଣନ୍ତୁ - ସେ ବି ଶୁଣନ୍ତୁ - ପୁଅ ବି ଶୁଣୁ - ସମସ୍ତେ ଶୁଣନ୍ତୁ ।

ଏକଦା ମୁଁ ସଂଗୀତ ବିଦ୍ୟା ହାସଲ୍ କରିବାରେ ଆଗ୍ରହୀ ଥିଲି । ମୁଁ ଯାହାଙ୍କୁ ବିବାହ କରିବାକୁ ଯାଇଥିଲି, ସେ ଚମତ୍କାର ଗୀତ ବୋଲନ୍ତି, ସେ କଥା ମୁଁ ଜାଣିଥିଲି । ତାଙ୍କର ଅନ୍ୟ ଭଉଣୀମାନେ ମଧ୍ୟ କଣ୍ଠସଂଗୀତ ନିପୁଣା ସେ କଥା ମଧ୍ୟ ଜଣାଥିଲା । ବିବାହ ପୂର୍ବରୁ ନହେଲେ ମଧ୍ୟ ବିବାହ ପରେ ଯେ, ଏମାନେ ମୋତେ ଗୀତ ଗାଇବା ପାଇଁ ବାଧ୍ୟକରିବେ ସେ ସମ୍ଭାବନା ମୁଁ ଉପଲବ୍ଧି କରିଥିଲି । ତୋଟି ବସିଯାଇଛି ବୋଲି କେତେଥର ଖସିଯାଇପାରିବି ? ତେଣୁ ଠିକ୍ କଲି ଗୀତ ବୋଲିବା ଟିକିଏ ଶିଖିନେବି ।

ଗୀତ ମାଷ୍ଟ୍ରେ ହାରମୋନିୟମଟିଏ ମୋତେ ଧରାଇଦେଇ ତାଙ୍କର ସାଧ୍ୟ ସାଧନ କଲେ, କିନ୍ତୁ ଯେତେବେଳେ ଦେଖିଲେ ଯେ, 'ସା' ପରେ ରେ-ଗା-ମା ଛାଡ଼ି କେବଳ ପା ହେଉଛି, ଆଉ ତାପରେ ଧା ଡ଼େଇଁଯାଇ ସ୍ୱର ସିଧାସଳଖ 'ନି'କୁ ଉଠିଯାଉଛି - ସେ ହତାଶ ହେଲେ । ଅଭ୍ୟାସ ତଥା ସାଧନା ବଳରେ ମଣିଷ ଅସାଧ୍ୟ ସାଧନ କରିପାରେ କହି, ସବୁଦିନ ସକାଳେ ଘଣ୍ଟାଏ ଦି'ଘଣ୍ଟା ପାଇଁ, ସନ୍ଧ୍ୟାରେ କିଛି ସମୟ ଏବଂ ଛୁଟିଦିନ ମାନଙ୍କରେ ଦି'ପହରେ ମଧ୍ୟ କଣ୍ଠ ମାର୍ଜନା କରିବାକୁ ପରାମର୍ଶ ଦେଲେ, ଆଉ ଗଳାକୁ ନ ଚିପି ମୁକ୍ତଗଳାରେ ଚିତ୍କାର କଲାପରି ସ୍ୱରଟିକୁ ଖୋଲା ଛାଡ଼ିଦେବାକୁ କହିଲେ । ମୁଁ ତାହାହିଁ କଲି । ମୋର ତ ନୂଆ ଚାକିରି ଜୀବନ, ସରକାରୀ ଘର ମିଳିନି - ବିବାହ କେବଳ ପ୍ରସ୍ତାବ ଅବସ୍ଥାରେ । ଭଡ଼ାଘରେ ଏକଲା ମଣିଷ - କହିବା ବାହୁଲ୍ୟ ଯେ, ଯଥାସମୟରେ ପଡ଼ୋଶୀମାନଙ୍କ ଚାପରେ ଘରର ମାଲିକ ମୋତେ ଅନ୍ୟ ଭଡ଼ାଘର ଦେଖିବାକୁ ବାଧ୍ୟକଲେ । ଅବସ୍ଥାଚକ୍ରରେ ସଂଗୀତ ଶିକ୍ଷକଙ୍କ ଆଗ୍ରହ ମଧ୍ୟ କମିଗଲା । ନୂଆ ମୁଁ ଭଡ଼ାଘରେ ମଧ୍ୟ ମୋ ସାଧନା ଚାଲୁ ରଖିଲି - କିନ୍ତୁ ଝରକା କବାଟ ବନ୍ଦକରି ।

କବାଟ କିଳିବା ସତ୍ତ୍ୱେ ଯେଉଁ ବନ୍ଧୁମାନେ ଗୀତ ଶୁଣିପାରିଛନ୍ତି, ସେମାନେ ଆଶ୍ଚର୍ଯ୍ୟ ହୋଇ ବେଳେ ବେଳେ କହନ୍ତି ଯେ, ମୁଁ ଯେଉଁ ଗୀତ ଗାଇଲେ ମଧ୍ୟ ତାହା 'ଚଲଚଲ୍‌ରେ ନୌଜବାନ୍' ପରି ଶୁଭେ । ମୁଁ ତହିଁରେ କଣ ବା କହିବି ? କିନ୍ତୁ ଯେଉଁଦିନ ଜଣେ ବନ୍ଧୁ ଟିପ୍ପଣୀ ଦେଲେ ଯେ, ମୁଁ ଗୀତ ଗାଇଲେ ବାହୁନି ବାହୁନି କାନ୍ଦିଲା ପରି ଶୁଭେ, ମୋତେ ବାଧିଥିଲା । ଏମାନଙ୍କୁ ମୋର ଗୀତ ଶୁଣିବାକୁ କିଏ କହିଥିଲା ଯେ ! ସତେ ଯେମିତି ଏ ଗୁଡ଼ାକ ଗୋଟିଏ ଗୋଟିଏ ତାନ୍‌ସେନ୍ ?

ଏ ଭିତରେ ଅନେକ ବର୍ଷ କଟିଯାଇଛି । ପୃଥିବୀରାଣୀ ଚକାଚକା ଭଉଁରୀ ଖେଳୁ ଖେଳୁ ୩୦/୩୫ ଥର ସୂର୍ଯ୍ୟଙ୍କ ଚାରିଆଡ଼େ ଘୂରି ମଧ୍ୟ ଆସିଲେଣି । ମୁଁ ମୋର ସଂଗୀତ ଶିକ୍ଷା କଥା ପୁରାପୁରି ପାସୋରି ଯାଇଛି । କିନ୍ତୁ ଆଜି ବି ମନ ଟିକିଏ ହାଲୁକା ଥିଲେ ଗୁଣୁଗୁଣୁ ଗୀତ ଗାଏ, ଆଉ ବେଳେ ବେଳେ ପାଟିକରି ଗାଇଲାବେଳେ ମୋ ଅଜାଣତରେ କବାଟ ସବୁକୁ ଆଉଜିଦିଏ ।

ସେ ଦିନର ଘଟଣା । କ'ଣଟିଏ ଲେଖୁଥିଲି । ମନ ପ୍ରଫୁଲ୍ଲ ଥିଲା । ଲେଖାବନ୍ଦ କରିଦେଇ ଖବରକାଗଜ ଧରି କେତେବେଳେ ଯେ ମୁଁ ମୋର ଗୀତ ମେଲିଦେଇଛି, ମୁଁ ବି ଜାଣେନି - କିନ୍ତୁ ଦିଆଡ଼ର କବାଟ ମଧ୍ୟ ଆଉଜିଦେଇଛି ।

ମୋ ନିଜ ଗୀତର ଲାଳିତ୍ୟରେ ନିଜେ ମୁଗ୍ଧହୋଇ ମୁଁ ଘର ଚଟାଣରେ ମୋ ଗୋଡ଼ରେ ତାଳ ଦେଉଥିଲି ଆଉ ଟେବୁଲ୍‌କୁ ତବଲାକରି ହାତ ବାଡ଼ଉଥିଲି । କାନ୍ଧ

ପାଖରେ କିଛି ଗୋଟାଏ ସ୍ପର୍ଶ ପାଇ ମୁଁ ଚମକିପଡ଼ିଲି । ଗୃହେ ସୁଗୃହିଣୀ ସୁପତିବ୍ରତା । ଭଦ୍ରମହିଳା ମୋ ପଛପଟେ କେତେବେଳୁ ଆସି ଠିଆହେଲାଣି ମୋର ଖିଆଲ୍ ନାହିଁ । କହିଲେ - 'କି ବଢ଼ିଆ ଗାଉଛ !' ଯୋଡ଼ିଦେଲେ 'ରେଡ଼ିଓରେ କେଉଁ ଗୋଟାଏ ଜଣାଶୁଣା ଗୀତ ଆସୁଛି - ଅକ୍ଷୟ ମହାନ୍ତି, ପ୍ରଫୁଲ୍ଲ କର କିମ୍ବା ସିକନ୍ଦର ଆଲାମଙ୍କର ଭାବି ଭଲ୍ୟୁମ ଟିକିଏ ବଢ଼ାଇଦେବି ବୋଲି ଯେତେବେଳେ ରନ୍ଧାଘରୁ ଏଠିକି ଆସିଲି - ଦେଖିଲି ରେଡ଼ିଓ ସେମିତି ଅଫ୍ ହୋଇ ଥୁଆହୋଇଛି ଆଉ ତୁମେ ଗାଉଛ ।'

ମୁଁ କ'ଣ କରିବ ଭାବିପାରିଲିନି । ମନେହେଲା ପୁଷ କି ମାଘ ମାସର ଶୀତ ଥୁରୁଥୁରିଆ ସକାଳେ ମୁଁ ନିଆ ଉହ୍ନେଇ ପାଖରେ ଠିଆହୋଇଛି । ମୁହଁରେ କେବଳ ଗୋଟିଏ ସ୍ମିତ ହାସ୍ୟରେଖା ଖେଳାଇଦେଲି ।

ଦିନଯାକ ମୋର ମନର ଉଚ୍ଚାଟ ଲାଗିରହିଥାଏ । ଚାରିଟାବେଳେ ସ୍ତ୍ରୀ ଯେତେବେଳେ କହିଲେ ତାଙ୍କ ଆଖପାଖରେ କେତେ ସାଂଗ ସିନେମା ଯାଉଛନ୍ତି - ଭଲ ଓଡ଼ିଆ ସିନେମା ସେ ବି ଯାଆନ୍ତେ ମୁଁ କହିଲି - 'ପଚାରୁଛ କ'ଣ ? ମୁଁ ଘର ଜଗିବା କଥା ତ ? ସିଓର !' ତା'ପରେ ଯୋଗକଲି - 'ତମର ପରା ଭଲ ଶାଢ଼ୀ ନାହିଁ - ସେଦିନ ଅଭିଯୋଗ କରୁଥିଲ - ଦୁଇଶହ ଅଢ଼େଇ ଶହ ଭିତରେ ଯେଉଁ ନୂଆ ଡ଼ିଜାଇନ୍ ସୋନପୁରୀ ମଠା - ଓ୍ୱାଫ୍‌ଦା ମିଳୁଛି, ସେଥିରୁ ଖଣ୍ଡିଏ କିଣିନିଅ - ଏମିତି କେତେ କେତେବେଳେ ବାହାରକୁ ଯିବାକୁ ପଡ଼ିଲେ ସୁବିଧା ।' ସେ ଆଶ୍ଚର୍ଯ୍ୟ ହୋଇ ମୋ ଆଡ଼ିକି ଅନାଇଲେ । କହିଲେ - 'ପଇସାର ଏବେ କେଡ଼େ ଅଭାବ ।' ମୁଁ ଉତ୍ତର ଦେଲି - 'ପଇସାର ଅଭାବ ତ ସବୁଦିନେ ଥିବ ତା' ବୋଲି ଭଲ ଶାଢ଼ୀ ଖଣ୍ଡିଏ ପିନ୍ଧାହେବନି କିମ୍ବା ଭଲ ମାଛ ମାଂସ ଟିକିଏ ଖିଆ ହେବନି ?' ମନେହେଲା ତାଙ୍କର ପାଟି ନ ହସୁଥିଲେ ମଧ୍ୟ ଆଖି ହସୁଥିଲା ।

ତା' ପରେ ପରେ ଆଞ୍ଚଳିକ ଜଳବାୟୁର ଅନେକ ପରିବର୍ତ୍ତନ ଘଟିଛି । ମଳୟପବନ ବହିଛି - ପାଖରେ ଆମ୍ବଗଛ ନଥିଲେ ମଧ୍ୟ ଘର ପାଖ ସଜନା ଗଛରେ ବସି କୋଇଲିମାନେ କୁହୁ ତାନ ଛାଡ଼ିଛନ୍ତି - ରାତି ରାତି ଧରି ଆମଘର ସାମନା ତାଳଗଛ ମୁଣ୍ଡ ଉପରେ ଚନ୍ଦ୍ର ଦେବତା ତାଙ୍କ ତାରକା ଗହଣରେ ଦେଖାଦେଇ ତଳକୁ ଚାହିଁ ମୁରୁକି ହସିଛନ୍ତି - ସନ୍ଧ୍ୟାବେଳେ ବନହଂସ ଓ ବନହଂସୀ ଯୋଡ଼ି ଯୋଡ଼ି ହୋଇ କାକଳୀ ରାବ ଦେଇ ଠିକ୍ ଆମଘର ଛାତ ଉପରେ ରକ୍ତରାଗରଞ୍ଜିତ ପଶ୍ଚିମ ଚକ୍ରବାଳ ଆଡ଼କୁ ଉଡ଼ିଯାଇଛନ୍ତି, ଆଉ ଘର ସାମନାରେ ଛୋଟ ଲନ୍‌ଟିର ଚନ୍ଦା ଅଂଶରେ ନୂଆ ଦୁବ ଘାସ କଅଁଳି ଉଠିଛି ।

ଅନ୍ୟମାନେ ତାଙ୍କପାଇଁ 'ରାମ ନାମ ସତ୍ୟ ହେ' ଗାଇବା ପୂର୍ବରୁ ନିଜେ ରାମନାମ ଗାଉଥିବା ଯେଉଁ କେତେ ବୁଢ଼ା ମୋ ସଂଗରେ ଘନିଷ୍ଠ ଭାବରେ ସାଂଗ ହେବାପାଇଁ ମନ ବଳାଉଥିଲେ, ସେମାନେ ଏବେ ଦୂରେଇ ଯାଉଥିବା ଲକ୍ଷ୍ୟ କରିଛି । ଖଳପ୍ରକୃତିର କେହି କେହି ମନ୍ତବ୍ୟ ଦେଲେଣି ଯେ, ମୋର ଏବେ ଯେଉଁ କେତୋଟି ବାଳ ଧଳା ହୋଇସାରିଥିଲା ସେଗୁଡ଼ିକ ଉପୁଡ଼ିଗଲା ପରେ ସେଥିରୁ ନୂଆ କଳା ବାଳ ବାହାରୁଛି । ଆଖି ଚାରିଆଡ଼ର ଗହୀରିଆ କଳାଦାଗ ଧିରେ ଧିରେ ଭରି ଆସୁଛି, ଆଉ ହସିବ ନା ରାଗିବ । ମୁଁ କୁଆଡ଼େ ରୀତିମତ ଗାଲରେ ରୁଜ୍ ଲଗାଉଛି । ହିଂସୁକ ଗୁଡ଼ାକ ।

ସେଦିନ କଲେଜର କେଉଁ ଗୋଟାଏ ହଷ୍ଟେଲ ଛାତ୍ରମାନେ ମୋତେ ତାଙ୍କ ବାର୍ଷିକ ଉତ୍ସବରେ ମୁଖ୍ୟ ଅତିଥି କରି ଡ଼ାକିଥିଲେ । ମୁଁ ମୁଖ୍ୟ ଅତିଥିଙ୍କ ଭାଷଣରେ 'ଜୀବନରେ ସଂଗୀତର ସ୍ଥାନ' ସମ୍ବନ୍ଧରେ କିଛି କହିଥିଲି । ଆଉ ପିଲାଙ୍କ ମଧ୍ୟରେ ସଂଗୀତ ଜ୍ଞାନର ଅଭାବ ନାହିଁ ଛାତ୍ର ବିଶୃଙ୍ଖଳାର ପ୍ରଧାନ କାରଣ ବୋଲି ଦର୍ଶାଇଥିଲି । କହିଥିଲି, ଆଇନ୍‌ଷ୍ଟାଇନ୍ ବେହେଲା ବଜାଉଥିଲେ । ତା'ପରେ ଆଉ କଣସବୁ ଉଦାହରଣ ଦେବି ହଠାତ୍ ଖିଆଲ ନହେବାରୁ ନିଜେ ଗୋଟାଏ ଗୀତ ଆରମ୍ଭ କରିଦେଲି - ପ୍ରମାଣ କରିଦେବା ପାଇଁ ଯେ, ଆମେ ଆଜି ବଡ଼ ହୋଇଛୁ - କେବଳ ଏଇ ଗୀତ ଗାଇପାରିବା ଶକ୍ତିବଳରେ ।

ମୁଁ କିନ୍ତୁ ସେଦିନ ଗୋଟିଏ କଥା ଲକ୍ଷ୍ୟ କରିଥିଲି, ମୁଁ ଯେତେବେଳେ କିଛି ଗୋଟାଏ ହସିବା କଥା କହୁଥିଲି, ମୋ ଛଡ଼ା ଆଉ କେହି ହସୁନଥିଲେ, ଆଉ ମୁଁ ଯେତେବେଳେ ଗୀତ ଗାଇଲି, ସମସ୍ତେ ହସିବାର କ'ଣ ଥିଲା । ମୁଁ ବେଶ୍ ଗମ୍ଭୀର ରାଗଟିଏ ଧରିଥିଲି । ଅବଶ୍ୟ ମୁଁ ଆଗରୁ ପରଶିଥିବା ହାସ୍ୟରସ ଏତିକିବେଳେ ବୁଦ୍ଧୁଗୁଡ଼ାକ ବୁଝି ହସିଥିବେ - ତଥାପି...

ସମୟ ଅତି ସୁନ୍ଦର ଭାବରେ କଟି ଚାଲିଥାଏ । ଦିନ ଯାଏ, ରାତି ଆସେ, ଆଉ ରାତି ଚାଲିଯାଏ, ଦିନ ଆସେ - ଗିଅର୍ ବଦଳାଇବା ଶବ୍ଦ ସୁଦ୍ଧା ନାହିଁ ! କି ସରଳ କି ଚିକ୍କଣ ସମୟର ସେ ଗତି ଆଉ ଦିନ ରାତିର ପରିବର୍ତ୍ତନ !

ତା'ପରେ ଆସିଲା ସେଦିନ ।

ସନ୍ଧ୍ୟା ଆସିଯାଇଛି । ବାଟ ଘାଟ ସୁଆଲୋକିତ । ଝିଅ ସବୁ ଝିଲିମିଲି ପୋଷାକରେ କଳରବ କରି ଚାଲିଛନ୍ତି । ପୁଅମାନେ ଦଳ ଦଳ ହୋଇ ଏଇଠି ସେଇଠି ରାସ୍ତା ମଝିରେ ସାଇକେଲ୍ ଠିଆକରି ଗପ ଜମେଇଦେଇଛନ୍ତି । ମୁଁ ମଠା

ପଞ୍ଜାବୀ ପିନ୍ଧି, ପାଟିରେ ପାନଖିଲ ଜାକି ଓ୍ୱାକିଂ ଷ୍ଟିକ୍ ହଲାଇ ହଲାଇ ସାନ୍ଧ୍ୟ ଭ୍ରମଣରେ ବାହାରିଛି । ହଠାତ୍ ଲାଇଟ୍ ଲିଭିଗଲା । ସବୁଆଡ଼ ଅନ୍ଧାର ।

ମୁଁ ଯେଉଁଠି ଥିଲି ସେଇଠି ଠିଆହୋଇଗଲି । ଟିକିଏ ଦୂରରେ ଦଳେ କଲେଜ ଛାତ୍ର । ହଠାତ୍ ଅନ୍ଧାର ହୋଇଗଲାରୁ କେହି ଜଣେ ଜୋର୍‌ରେ ହୁଇସିଲ୍ ମାଇଲା । କିଏ ଜଣେ ଇଲେକ୍ଟ୍ରିକ୍ ଡ଼ିପାର୍ଟମେଣ୍ଟକୁ ନିଜ ଅଜ୍ଞାତ ସ୍ତ୍ରୀର ଛୋଟ ଭାଇ ବୋଲି ସମ୍ବୋଧନ କଲା । ଅନ୍ୟମାନେ କ୍ଷଣକର ନୀରବତା ପରେ ତାଙ୍କ ପୁରୁଣା ଗପ ଚାଲୁକରିଦେଲେ ।

ସେମାନଙ୍କ ପ୍ରତ୍ୟେକ କଥାବାର୍ତ୍ତା ମୋତେ ସ୍ପଷ୍ଟ ଶୁଭୁଥିଲା ।

ଜଣେ କହିଲା - 'ହେଲା ଯେ, ତୋତେ କଣ ଆଉ ଲୋକ ମିଳିଲେନି ସେଇ ବୁଦ୍ଧୁରାମକୁ ଆଣିଲୁ ? ଏବେ ତୋ ବିରୁଦ୍ଧରେ ସମସ୍ତେ ଅନାସ୍ଥା ପ୍ରସ୍ତାବ ଆଣୁଛନ୍ତି । ଲୋକଟା ସେଦିନ ଯାହା କଲା ! ସ୍ୱର ଜ୍ଞାନ କଣ ଜଣାନାହିଁ, ଗୀତ ବୋଲୁଛି, ତହିଁରେ ପୁଣି ସାହସ ଦେଖ - ଅନ୍ୟମାନଙ୍କୁ ସଂଗୀତ ଜ୍ଞାନର ମାହାତ୍ମ୍ୟ ବୁଝାଇବ ।

ଅନ୍ୟକେହି କେହି କଥାରେ ପାଳି ଧରୁଥିଲେ । ହଠାତ୍ ସେ ଭିତରୁ କିଏ ଜଣେ ଗୀତ ବୋଲିବାକୁ ଆରମ୍ଭ କରିଦେଲା - ଠିକ୍ ବାହୁନି କାନ୍ଦିଲାପରି । ଅନ୍ୟମାନେ ହସରେ ଫାଟିପଡ଼ିଲେ । ମୁଁ ଚିହ୍ନିଲି - ମୋର ସେଇ ଗୀତ ।

ଅନ୍ଧାରରେ ମଧ୍ୟ ଘରକୁ ଫେରିଆସିବାପାଇଁ ବ୍ୟଗ୍ରହୋଇ ବୁଲିପଡ଼ିଲି, କିନ୍ତୁ ହଠାତ୍ ସେତିକିବେଳେ ଆତ୍ମପକ୍ଷ ସମର୍ଥନସୂଚକ ବିକଳିଆ ସ୍ୱର ଶୁଣାଗଲା - ଜଣେ ଉତ୍ତର ଦେଉଥିଲା - ମୁଁ କଣ କରିବି ? ସଞ୍ଜୀବ ରେଡ଼ିଙ୍କୁ ତ ଡ଼ାକିଲି - ସେ କିଛି ଜବାବ ଦେଲେନି । ପରେ ଶୁଣିଲି ବ୍ରେଜ୍‌ନେଭ, କାର୍ଟର୍, ଇରାନର ଶାହ, ଆଉ କିଏ କିଏ ଦିଲ୍ଲୀ ଆସୁଥିବାରୁ ସେ ଏବେ ଆମ ହଷ୍ଟେଲର ବାର୍ଷିକ ଉତ୍ସବକୁ ଆସିପାରିବେନି ।

(ମୁଁ ଘରକୁ ନ ଫେରି ସେଇଠି ଠିଆହୋଇଗଲି । ଭାବିଲି ଏପରି ପରିସ୍ଥିତିରେ ସେ ବିଚରା ଆଉ କଣ କରିପାରିଥାନ୍ତା । ପ୍ରେସିଡ଼େଣ୍ଟ ନ ଆସିବାରୁ ମୋତେ ଡ଼ାକିଲା ।)

ସେ କହୁଥିଲା - 'ତା'ପରେ ଡ଼ାକିଲି ଜତିଙ୍କି । ସେ ଲେଖିଦେଲେ ଯେ, ଅତି ଜରୁରୀ କାମରେ ବ୍ୟସ୍ତଥିବାରୁ ସେ ଆସିପାରିବେନି । ମୋରାରଜୀ ଭାଇଙ୍କୁ ଡ଼ାକିଥାଆନ୍ତି, କିନ୍ତୁ ସେ ଯଦି ହଷ୍ଟେଲରେ ନିଶାନିବାରଣ କଥା କହିବସିବେ, ଆମର କେହି କେହି ବୋର୍ ହୋଇଯାଇପାରନ୍ତି - ତେଣୁ ଡ଼ାକିଲିନି । ରାଉତରାୟଙ୍କୁ

ଡ଼ାକିଲି । ତାଙ୍କ ପାଖରୁ କି ଜବାବ ଆସିଲାନି। ନିଜେ ଭୁବନେଶ୍ୱର ଦଉଡ଼ିଲି । ତାଙ୍କ ପି.ଏ. କହିଲା - 'ମୁଖ୍ୟମନ୍ତ୍ରୀଙ୍କର ଆଉ କାମ ନାହିଁ ଯେ, ତମ ହଷ୍ଟେଲ ଫଙ୍କସନ୍‌କୁ ଯିବେ! ସାହସ ଦେଖ - କେଉଁ ବୁଢ଼ାହଢ଼ାଙ୍କୁ ଡ଼ାକୁନ? ମୁଁ ରାଗିଯାଇ ବେଶ୍ ଶୁଣେଇଦେଲି । କହିଲି - 'ଏଥର ଆସିବ ଆମ ସହରକୁ - ଭଲକରି ପାନେ ନ ଦେଇଛୁ! ଇଲେକସନ୍ ବେଳକୁ ଖୋସାମତ କରୁଥିବ ।' ତା'ପରେ ଜଣେ ଦି'ଜଣ ମନ୍ତ୍ରୀଙ୍କୁ ଭେଟିଲି । ସମସ୍ତେ କାର୍ଯ୍ୟବ୍ୟସ୍ତ ଥିବା କଥା କହି ଆମ ହଷ୍ଟେଲକୁ ଆସିବାକୁ ମନାକରିଦେଲେ । ଏଣେ ଟାଇମ୍ ଚାଲିଯାଉଛି - ଟେଷ୍ଟ ପରୀକ୍ଷା ପାଖେଇଗଲେ ଭଲେଣ୍ଟିୟର୍ କେହି ବାହାରିବେନି । ଫେରିବା ବାଟରେ କୁଳପତିଙ୍କୁ ଭେଟିଲି । ସେ ଅତି ଭଦ୍ରଭାବରେ ତାଙ୍କ ଅକ୍ଷମତା ପ୍ରକାଶ କଲେ । ଆଉ କଣ କରନ୍ତି କହ?

(ମୁଁ ଭାବିଲି - ହେଲା, କୁଳପତି ଯେତେବେଳେ ଆସି ନପାରିଲେ ବିଚରା ମୋତେ ନ ଡ଼ାକି ଆଉ କାହାକୁ ଡ଼ାକନ୍ତା?)

ସେ କହିଚାଲିଥାଏ - ମଁ ଫେରିଆସି ସିଧା କଲେକ୍ଟର ବଙ୍ଗଳାକୁ ଗଲି । ତାଙ୍କ ପି.ଏ ମୋତେ କଲେକ୍ଟରଙ୍କ ଟୁର୍ ପ୍ରୋଗ୍ରାମ୍ ଦେଖାଇଦେଲା । ଏଣେ ହଷ୍ଟେଲ ସୁପରିଣ୍ଟେଣ୍ଡେଣ୍ଟ ଶୁଣାଇଦେଲେଣି ଯେ, ଏ ମାସ ଶେଷ ପୂର୍ବରୁ ସବୁ ବାର୍ଷିକ ଉତ୍ସବ ଶେଷ ନହେଲେ ପ୍ରିନ୍‌ସିପାଲ ଆଉ କେଉଁ ଫଙ୍କ୍‌ସନ୍ ପାଇଁ ଅନୁମତି ଦେବେନି । ମ୍ୟୁନିସିପାଲିଟି ଚେୟାରମ୍ୟାନ୍ ପାଖକୁ ଦଉଡ଼ିଲି । ସେ ଭଦ୍ରଲୋକ ଭୁବନେଶ୍ୱର ଯାଇଛନ୍ତି । ତାଙ୍କ ସ୍ତ୍ରୀ କହିଲେ ଯେ, ସେ କେବେଫେରିବେ ଜଣାନାହିଁ । ପୂର୍ବତନ ମ୍ୟୁନିସିପାଲିଟି ଚେୟାରମ୍ୟାନ୍... ସେ ଗାଁକୁ ଚଣା ଅମଳ କରିବାପାଇଁ ଯାଇଛନ୍ତି । କଣ କରିବି କହ? କିଏ ଜଣେ କହିଲା ଯେ, ଏଇ ଜୟରାମବାବୁ କି ବୁଦ୍ଧୁରାମବାବୁ ବେଶ୍ କହିପାରନ୍ତି, ଲେଖାଲେଖି ମଧ୍ୟ କରନ୍ତି । ଡ଼ାକିଦେଲି - କିନ୍ତୁ ମୁଁ କଣ ତାଙ୍କୁ...'

ସେ ଆଉ କଣ କହୁଥିଲା । ମୁଁ ଶୁଣିନି । ଛାତି ଭିତରେ ହଠାତ୍ ଗୋଟାଏ ଆବୁ ବାହାରିପଡ଼ିଲା ପରି ମନେହେଲା । ଚାରିଆଡ଼ ଅନ୍ଧାର ତଥାପି ବାଡ଼ି ଠୁକୁ ଠୁକୁ କରି ଘରକୁ ଫେରିଆସିବାକୁ ଚେଷ୍ଟାକଲି, କିନ୍ତୁ ମନେହେଲା ଛାତି ଭିତରେ ଗୁଡ଼ାଏ ଫୋଟକା ଗୋଟାଏ ପରେ ଗୋଟାଏ ବାହାରିବାକୁ ଆରମ୍ଭ କରୁଛନ୍ତି । ଗୋଟାଏ ହାତରେ ଛାତି ଚାପିଧରି କୌଣସି ମତେ ପାଦେ ଦି'ପାଦ ଆଗକୁ ଆସିଛି - ମନେହେଲା... ମନେହେଲା ସେଇ ଯେ ପେଟ୍ରୋଲ୍ ଲାଇନ୍‌ରେ ମଇଳା ଜମିଗଲେ ଗାଡ଼ି ଧଡ଼କ୍ ଧଡ଼କ୍ ହୁଏ...

କେତେବେଳେ ଆଲୁଅ ଆସିଲା ମୁଁ ଆଉ ଜାଣିନି । ଯନ୍ତ୍ରବତ୍ ମୁଁ ଘରକୁ ଫେରିଆସିଲି, କିନ୍ତୁ ଭାବୁଥାଏ ... 'ତେବେ ଏ ଅକ୍ଷୟ ମହାନ୍ତି... ପ୍ରଫୁଲ୍ଲ କର...

ସିକନ୍ଦର ଆଲାମ୍‌ଙ୍କ ସଂଗରେ ତୁଳନା କଣ ଶାଢ଼ୀ କିଣିବା ପାଇଁ ଗୋଟାଏ ବାହାନା ?' କାହାକୁ ଅବା ପଚାରିବି ? ଯାହାଙ୍କ ପରାମର୍ଶ ନେବା କଥା ସେ ନିଜେ ତ ଏଥିରେ ଜଡ଼ିତ ।

ତା'ପରେ ହିଁ ମୁଁ ଡ଼ାକ୍ତରମାନଙ୍କ ପାଖକୁ ଥରକୁଥର ନିଆହୋଇଥିଲି ଏବଂ ଦୟାର୍ଦ୍ର ଡ଼ାକ୍ତରମାନଙ୍କ ପରାମର୍ଶ ଯୋଗୁ ଦୁଧ, ଦହି, ସର, ମାଛ, ମାଂସ, ଖଟା, ମିଠା ପ୍ରଭୃତିରୁ ବଞ୍ଚିତହୋଇ ଧୀରେ ଧୀରେ ଶୀର୍ଣ୍ଣ ହେବାକୁ ଲାଗିଲି । କେବଳ ଶାଗଖରଡ଼ା ଏବଂ କେରାଣ୍ଡିରେ ସୀମିତ ଖାଦ୍ୟ ନେଇ କ୍ରମଶଃ ମୋ ରୂପ ବାସି ବାଇଗଣ ପରି ହେଲା ଏବଂ ତାହା ଦେଖି ମୋର ବନ୍ଧୁବାନ୍ଧବ ମାନେ ଏ ସଂସାରରେ ମୋର ଲୀଳାଖେଳା ସରିବା ଦିନ ପାଖେଇ ଆସିଲା ମନେକରି ମୋତେ ଦେଖିବାକୁ ଆସିଲେ। ସେ ସମସ୍ତଙ୍କୁ ନିରାଶ ନ କରି ମୁଁ ଶୀର୍ଣ୍ଣତର ହେଲି ।

ମୋ ଦେହ ଖରାପ ହେବା ଶୁଣି ମୋ ଝିଅ ରାନୁ ମୋତେ ଦେଖିବାକୁ ଆସିଥାଏ । ଯଥାଯୋଗ୍ୟ ଦୁଃଖ କରିସାରିଲା ପରେ ସେଦିନ ମା' ଝିଅ ସିନେମା ଦେଖି ଯିବାପାଇଁ ବାହାରିଥାଆନ୍ତି । ମା'ଙ୍କର ନୂଆ ଶାଢ଼ୀ ଦେଖି ଝିଅ ବିଶେଷ ପସନ୍ଦକଲା - ଶୁଣିଲା ଦୋକାନରେ ଏବେ ବି ଆଉ ଖଣ୍ଡିଏ ସେମିତି ଶାଢ଼ୀ ଅଛି, କିନ୍ତୁ ତା' ପାଖରେ ପଇସା କାହିଁ ?

ସେମାନେ ସେ ଘରେ ଲୁଗା ପାଲଟୁଥାଆନ୍ତି, ଆଉ ମୁଁ ଏ ଘରୁ ସବୁ ଶୁଣୁଥାଏ । ରାନୁମା' କହିଲେ - 'ବାପାଙ୍କୁ କହୁନୁ... ତୋ ଜନ୍ମଦିନରେ ତ ଶାଢ଼ୀ ଦେଇନାହାନ୍ତି - ଏବେ କିଣିଦେବେ ?'

ଝିଅ କହିଲା - ନାଇଁ, ବାପାଙ୍କର ଏବେ ପଇସାପତ୍ରର ଅଭାବ ଥିଲା... ବିରକ୍ତ ହେବେ ।' ରାନୁ - ମା' କହିଲେ - ଅଭାବ କେବେନାହିଁ ଯେ ? ତା' ବୋଲି ଭଲ ଶାଢ଼ୀ ଖଣ୍ଡିଏ ପିନ୍ଧିବାରେ...'

ସେଇଠି ସେ କଥା ବନ୍ଦକରି ଦେଇ ମୋ ଘରକୁ ଛୁଟିଆସିଲେ । ନୂଆଶାଢ଼ୀର କୁଞ୍ଚ ସଜାଡୁ ସଜାଡୁ କହିଲେ - 'ଏ ଶୁଣୁଛ... ଝିଅ କହୁଛି, ଗଲା ମାସର ତମ ଲେଖା କୁଆଡ଼େ ଭାରି ବଢ଼ିଆ ହୋଇଛି - ଆଉ ସମସ୍ତେ ପ୍ରଶଂସା କରୁଛନ୍ତି ।

(ବଦ୍‌ହଜମି ପରେ ଭଲ ଏଉଡ଼ିଟିଏ ଆସିଲେ ଛାତି ଯେମିତି ହାଲୁକା ଲାଗେ ମୋତେ ସେମିତି ଲାଗିଲା ।)

ତା'ପରେ ଟିକିଏ ରହି ସେ ଥଙ୍ଗେଇଲା କହିଲେ - 'ରାନୁ ମୋର ଏ ଶାଢ଼ୀକୁ ବହୁତ ପ୍ରଶଂସା କରୁଛି । ତା' ଜନ୍ମଦିନରେ ତ ତାକୁ ଶାଢ଼ୀ ଦିଆହୋଇନି - ମୋର ଏ ଶାଢ଼ୀ ସେ ପିନ୍ଧୁ ।'

ଟିକିଏ ହାଲୁକା ମନ ନେଇ ମୁଁ କହିଲି - ତମର ଶାଢ଼ୀ ସେ କାହିଁକି ନେବ ତା' ପାଇଁ ଖଣ୍ଡିଏ ସେମିତି ଶାଢ଼ୀ କିଣିଦେଲେ ହେବନି ।' ନୂଆ ଶାଢ଼ୀଟି ସତରେ ରାନୁମା'ଙ୍କୁ ବେଶ୍ ମାନୁଥିଲା । ମୁଁ ତାଙ୍କୁ ଏଥର ଭଲକରି ଅନାଇ ପଚାରିଲି - 'ଆଛା, ତମେ କାହିଁକି ସେଦିନ ମୋ ଗୀତକୁ ଅକ୍ଷୟ ମହାନ୍ତି, ପ୍ରଫୁଲ୍ଲ କର, ସିକନ୍ଦର ଆଲାମ୍‌ଙ୍କ ସଂଗରେ ତୁଳନା କରୁଥିଲ ?'

ମୁଁ ଭାବୁଥିଲି ସେ ଆଶ୍ଚର୍ଯ୍ୟ ହେବେ - ସତେ ଯେମିତି ଏ ପ୍ରଶ୍ନ ଶୁଣିବାକୁ ସେ ବହୁତ ଦିନୁ ଅପେକ୍ଷା କରିଥିଲେ । ସାମାନ୍ୟ ହସିଦେଇ କହିଲେ - 'କଣ ହେଲା କି ?'

ମୁଁ କହିଲି - 'କଣ ଆଉ ହୁଅନ୍ତା ? ମୁଁ ସତକୁସତ ଭଲଗାଏ ବୋଲି ଭାବି ସେଦିନ କଲେଜଛାତ୍ର ଫଙ୍କସନ୍‌ରେ ଗୀତ ଗାଇ ଲୋକହସା ହେଲି ।'

ସେ ପଚାରିଲେ ... 'କୋଉ ଗୀତ ଗାଇଲ ?'

ମୁଁ କହିଲି - ସାବରିଆ... ନହିଁ ପରତ ମେରେ ଚୈନ୍ ...'

ମନେହେଲା ଉତ୍ତର ଶୁଣି ସେ ସତରେ ଆଶ୍ଚର୍ଯ୍ୟ ହେଲେ । କହିଲେ - 'ସେଇଟା ତ ରାଗ ଭୈରବୀ - ପାହାନ୍ତିଆ ବେଳେ ଗାଇଲେ ଭଲ - ତମେ ତାକୁ ସନ୍ଧ୍ୟାବେଳେ ଗାଉଥିଲ କାହିଁକି ?'

ଏଥର ମୁଁ ପାଟି ମେଲାକରି ତାଙ୍କୁ ଅନାଇଲି । କହିଲି, 'କ'ଣ ହେଲା ? ଏମିତି କଣ କେଉଁ ରାଗ କେତେବେଳେ ବୋଲାହେବ ତାର କିଛି ଧରାବନ୍ଧା ନିୟମ ଅଛି ?'

ସେ କହିଲେ - 'ନିୟମ ନାହିଁ ଯେ, ପ୍ରତ୍ୟେକ ରାଗର ଗୋଟିଏ ଗୋଟିଏ ପ୍ରଶସ୍ତ ସମୟ ଅଛି - ଯେମିତି ଆଶାବରୀ ପାଇଁ ମଧ୍ୟରାତ୍ର ।'

ମୁଁ ପଚାରିଲି - 'ସନ୍ଧ୍ୟା ପାଇଁ ?'

'ସନ୍ଧ୍ୟା ପାଇଁ ରାଗ ବିହାଗ ଭଲ... ଏଇ ଯେଉଁ 'ପିୟାବିନ୍ କୈସେ ରହୁଁ ଗୀ ସଜନୀ...'

ମୁଁ କହିଲି - 'ହେ ଭଗବାନ ! ମୁଁ ପୁଣି କଲେଜ ପିଲାଙ୍କ ସାମନାରେ ଗାଇବି ପିୟା ବିନା କୈସେ ...'

ରାନୁ ମା ହସିଉଠିଲେ । କହିଲେ - 'ରାଗ ବିହାଗ ବି ତମ ଗଳାରେ ଭଲ ଶୁଭିବନି - ତମ ଗଳା ପାଇଁ ରାଗ ଆଶାବରୀ ହିଁ ସବୁଠୁ ଭଲ ।'

ମୁଁ କହିଲି - 'ରାଗ ଆଶାବରୀ ? ମଧ୍ୟରାତ୍ରରେ ? କିଏ ଶୁଣିବ ?'

ସିନେମା ଯିବାପାଇଁ ବାହାରି ଯାଉ ଯାଉ ସେ କହିଲେ - 'କାହିଁକି ? ମଧ୍ୟରାତ୍ରରେ ତମ ଗୀତ ଶୁଣିବା ପାଇଁ କଣ ଏ ଘରେ ଲୋକ ନାହାନ୍ତି ?'

ରାନୁ ଆଉ ରାନୁ-ମା' ସିନେମା ଚାଲିଗଲେ । ମୁଁ ହଠାତ୍ ଅନୁଭବ କଲି ମୋର ଛାତି ପୁରାପୁରି ହାଲୁକା ହୋଇଯାଇଛି ଏବଂ ସେ ରୁନ୍ଧିହେଲା ଭାବ ଆଉ ନାହିଁ । କିଛି ଗୋଟାଏ ଦୋଷ କରିଥିଲେ ସେ ଦୋଷଟିକୁ ଅନ୍ୟ ଆଗରେ ପ୍ରକାଶ କରିଦେଲେ ପାପ କ୍ଷୟ ହୋଇଯାଏ ବୋଲି ମୁଁ ଶୁଣିଥିଲି, କିନ୍ତୁ ମନ ଭିତରେ ଏମିତି ଦୁଃଖ ଜମାଟ ବାନ୍ଧିଯାଇଥିଲେ, ସେ ଦୁଃଖର କାରଣଟିକୁ ଖୋଲାଖୋଲି ପ୍ରକାଶ କରିଦେଲେ ଦୁଃଖଟି ଯେ ଏମିତି ତରଳି କେଉଁବାଟ ଦେଇ ବାହାରକୁ ନିଗିଡ଼ିଯାଏ ସେ କଥା ମୁଁ ଏଥର ପ୍ରଥମ ଜାଣିଲି ।

# ମୂଷିକମାରଣ : ଏକ ଅନୁଶୀଳନ

ରକ୍ତମାଂସର ଶରୀର ବହି ଏ କ୍ଷଣଭଙ୍ଗୁର ଏବଂ ଅନିତ୍ୟ ସଂସାରରେ ଏପରି କେହି ନାହିଁ ଯିଏ ଗୋଟିଏ ଅଧେ ମୂଷା ନ ମାରିଛି, ଅଥାବ ମୂଷା ମାରିବାରେ ଯାହାର କିଛି ଅଭିଜ୍ଞତା ନାହିଁ । ଯଦି ବା କେହି ଅଛନ୍ତି, ମୁଁ ସେମାନଙ୍କ ଭିତରୁ ଜଣେ ନୁହେଁ । ମୂଷିକ ମାରଣ ବିଶେଷଜ୍ଞ ନ ହେଲେ ମଧ୍ୟ ସେ ସମ୍ବନ୍ଧରେ ମୋର ଯଥେଷ୍ଟ ଅଭିଜ୍ଞତା ରହିଛି ଏବଂ ସେହି ଅଭିଜ୍ଞତା ନେଇ ମୁଁ ନିଶ୍ଚିତ ଭାବେ ତଥା ଦୃଢ଼ତାର ସହିତ କହିପାରେ ଯେ, ବହୁଲୋକରେ ମଧ୍ୟ ମୂଷା ମରେ । ଯେଉଁ ଅଭିଜ୍ଞ ପଣ୍ଡିତମାନେ କହନ୍ତି ଯେ, ବହୁଲୋକରେ ନିଶ୍ଚୟ ଆର୍ଷ ପ୍ରୟୋଗ କରୁଛନ୍ତି । ଲୋକସଂଖ୍ୟା ସାଙ୍ଗରେ ମୂଷା ମରିବାର ବିଶେଷ ସମ୍ପର୍କ ନାହିଁ । ମର୍ମସ୍ଥାନରେ ଯଦି ପାହାର ବାଜିଛି, ଯେତେ ଲୋକ ଥାଆନ୍ତୁ ନା କାହିଁକି, ମୂଷିକର ମୃତ୍ୟୁ ସୁନିଶ୍ଚିତ ।

କିନ୍ତୁ 'ବହୁଲୋକରେ ମଧ୍ୟ ମୂଷା ମରେ' ବୋଲି କହିବା ଅର୍ଥନୁହେଁ, ଯେ କୌଣସି ସ୍ଥାନରେ, ଯେ କୌଣସି ପରିସ୍ଥିତିରେ ଓ ଯେ କୌଣସି ପରିବେଶରେ ବହୁଲୋକଙ୍କ ସମାଗମ ହେବାମାତ୍ରକେ ହିଁ ମୂଷିକର ହୃଦ୍‌ଯନ୍ତ୍ରକ୍ରିୟା ବନ୍ଦ ହୋଇଯିବ । କଦାଚ ନୁହେଁ । ମୂଷିକ ଏକ ଦୁଃସାହସିକ ପ୍ରାଣୀ। ତାକୁ ଭୀରୁ ଅଥବା କା-ମୂଷିକ ବୋଲି ଭାବିବା ଭ୍ରମାତ୍ମକ ହେବ । ଏକଥା ଜଣାଶୁଣା ଯେ, ସେତୁବନ୍ଧ ବନ୍ଧାବେଳେ ଲକ୍ଷ ଲକ୍ଷ ମାଙ୍କଡ଼ ଓ ଭାଲୁଙ୍କ ଆଖି ଆଗରେ ତଥା ଯୂଥପତିମାନଙ୍କ ସମ୍ମୁଖରେ ମୂଷାଟିଏ ଦେଖାଦେଇଥିଲା ଏବଂ ଶ୍ରୀରାମଚନ୍ଦ୍ରଙ୍କ ପାଖରୁ ସାବାସୀ ନେଇଥିଲା ।

ମୂଷିକମାରଣ ଅତ୍ୟନ୍ତ କଠିନ ଏବଂ କଷ୍ଟସାଧ୍ୟ । ସେଥିପାଇଁ ସୁଚିନ୍ତିତ ପ୍ରସ୍ତୁତ ଏବଂ ସୁକଳ୍ପିତ ତଥା ବିଧିବଦ୍ଧ ଯୋଜନା ଲୋଡ଼ା । ଅଭିମନ୍ୟୁଙ୍କୁ କୌରବ ସପ୍ତମହାରଥୀ ଘେରିଯାଇ ମାରିଦେଲାପରି, ହାବୁଡ଼ରେ ପଡ଼ିଲେ, ମୂଷାକୁ ଚାରିଆଡୁ ଘେରିଯାଇ ସହଜରେ ମାରିଦେଇ ହେବ ବୋଲି ଭାବିବା ଭ୍ରମପୂର୍ଣ୍ଣ । ଉଦାହରଣ ସ୍ୱରୂପ କୁହାଯାଇପାରେ ଯେ, ରଥଯାତ୍ରାବେଳେ ପୁରୀ ବଡ଼ଦାଣ୍ଡରେ ଜଗନ୍ନାଥଙ୍କ ରଥ ଟାଣୁ ଟାଣୁ କେହି ଯଦି କୌଣସି ମୂଷିକକୁ ଆବିଷ୍କାର କରନ୍ତି ଓ 'ମାର ମାର' ବୋଲି ଚିତ୍କାର ମଧ୍ୟ କରନ୍ତି, ସେ ବହୁଲୋକଙ୍କ ମଧ୍ୟରେ ସେ ସେହି ବହୁଲୋକଙ୍କ ଦ୍ୱାରା ଉକ୍ତ

ମୂଷିକକୁ ମାରିଦେଇ ହେବନାହିଁ । ସେହିପରି ମହିଳା ସମ୍ମିଳନୀରେ କୌଣସି ମହିଳା ସମ୍ମିଳନୀରେ କେହି ଖ୍ୟାତନାମା ମହିଳା 'ସମାଜରେ ମହିଳାଙ୍କ ସ୍ଥାନ' ସମ୍ବନ୍ଧରେ ଭାଷଣ ଦେଉଥିଲାବେଳେ କେହି ଯଦି ସଭାପତିଙ୍କ ଆସନ ନିକଟରେ ଏକ ମୂଷିକକୁ ଆବିଷ୍କାର କରନ୍ତି ଓ 'ମୂଷା ମୂଷା' ବୋଲି ରଡ଼ିଛାଡ଼ନ୍ତି, ସେହି ମୂଷାକୁ ମଧ୍ୟ ସହଜରେ ମାରିହେବନାହିଁ । ଚୌକି ଓ ଟେବୁଲମାନଙ୍କ ଉପରେ ଠିଆହୋଇ ଯାଇଥିବା ଭଦ୍ରମହିଳାମାନଙ୍କ କୋଳାହଳ, ଆର୍ତ୍ତନାଦ ଓ ବିକଳ କ୍ରନ୍ଦନ ମଧ୍ୟରେ ମୂଷିକ ନିଶ୍ଚୟ ଖସି ପଳାଇଯିବ ଓ ସମ୍ମିଳନୀରେ ରାଣୀ ଦୁର୍ଗାବତୀ, ଲକ୍ଷ୍ମୀବାଈଙ୍କ ପରି ମହାୟସୀ ବୀରାଙ୍ଗନାମାନେ ଉପସ୍ଥିତ ଥିଲେ ମଧ୍ୟ ସେହି ମୂଷିକର କୌଣସି କ୍ଷୟକ୍ଷତି କରିପାରିବେନାହିଁ ।

ଉପରୋକ୍ତ ଉଦାହରଣ ସବୁ ଅନୁଧ୍ୟାନ କରି କେହି କେହି ମନ୍ତବ୍ୟ ଦେଇପାରନ୍ତି ଯେ, ବହୁଲୋକରେ ମୂଷା ନ ମରିବା ଉକ୍ତିରେ ଯଥାର୍ଥତା ରହିଛି । ପର୍ଯ୍ୟାଲୋଚନା କଲେ କିନ୍ତୁ ଦେଖିବାକୁ ମିଳିବ ଯେ, ସେପରି ଧାରଣା ଭ୍ରମପୂର୍ଣ୍ଣ ।

ପୂର୍ବୋକ୍ତ ଉଦାହରଣମାନଙ୍କରେ 'ବହୁଲୋକ' ଉପସ୍ଥିତ ଥିଲେ ମଧ୍ୟ ସେପରି ବହୁଲୋକ ଓ ମୂଷିକମାରଣ ସମ୍ବନ୍ଧୀୟ ବହୁଲୋକଙ୍କ ମଧ୍ୟରେ ଭାବଗତ ତଥା ଉଦ୍ଦେଶ୍ୟଗତ ପାର୍ଥକ୍ୟ ରହିଛି । ତେଣୁ ଆଲୋଚ୍ୟ ବିଷୟରେ ଅଧିକ ଅଗ୍ରସର ହେବା ପୂର୍ବରୁ ଉକ୍ତିରେ ଥିବା 'ବହୁଲୋକ' କହିଲେ ବିବାହ-ବ୍ରତ, ନାଟ-ତାମସା, ସଭା-ସମିତି ଓ ଶୋଭାଯାତ୍ରା ପ୍ରଭୃତି ଅନୁଷ୍ଠାନମାନଙ୍କରେ ଉପସ୍ଥିତ ଥିବା ମୂଷା ଦେଖାଦେଇଛି, ସେଇ ଘରେ କିମ୍ବା କୋଠରୀ ଭିତରେ ମୂଷା ମାରିବା ଉଦ୍ଦେଶ୍ୟ ନେଇ ଠେଙ୍ଗା, ବାଡ଼ି, କାଠଫାଳିଆ ଓ ହକିଷ୍ଟିକ୍, ଝାଡ଼ୁ ଓ ବାଟା ସ୍ଲିପର୍ ତଥା ଲେବୋରେଟରୀ ନୋଟ୍ ବୁକ୍ ଏବଂ କାର୍ଡ଼ବୋର୍ଡ଼ବନ୍ଧା ପୁସ୍ତକ ପ୍ରଭୃତି ମାରଣାସ୍ତ୍ର ଦ୍ୱାରା ସୁସଜ୍ଜିତ ସିଧାସଳଖ ସାବଧାନ ଭଙ୍ଗୀରେ ଠିଆହୋଇଥିବା, ଅଥବା ଅଣ୍ଟା ବଙ୍କେଇ ଛକି ରହିଥିବା ଭଦ୍ରବ୍ୟକ୍ତି, ଭଦ୍ରମହିଳା, ତାଙ୍କ ଚାକର-ବାକର ଓ ସେମାନଙ୍କ ପୁତ୍ର ପୌତ୍ରାଦିଙ୍କ ସମଷ୍ଟିଗତ ସଂଖ୍ୟାକୁ ହିଁ ବୁଝାଯିବ ।

ଛତ୍ରପତି ଶିବାଜୀଙ୍କୁ କେହି କେହି ଐତିହାସିକ 'ଡ଼େକାନ୍ ର୍ୟାଟ୍' ବୋଲି କହନ୍ତି । ମହାତ୍ମା ଗାନ୍ଧୀଙ୍କୁ ଶ୍ରୀମତୀ ସରୋଜିନୀ ନାଇଡୁ 'ମିକି ମାଉସ୍' ବୋଲି କହୁଥିଲେ । ଗୁଣ ମୁଗ୍ଧ କେହି କେହି କଲେଜ ଛାତ୍ର ବେଳେବେଳେ ତାଙ୍କର କୌଣସି ଶିକ୍ଷକଙ୍କୁ ଅଥବା କେହି ସାଙ୍ଗସାଥୀଙ୍କୁ ଚୁଚୁନ୍ଦ୍ରା ବୋଲି ସମ୍ବୋଧନ କରନ୍ତି । ଆଲୋଚ୍ୟ ବିଷୟ ପାଇଁ ମୂଷା କହିଲେ ଏପରି କୌଣସି ମୂଷିକ ନବୁଝାଇ କେବଳ ସଲାଞ୍ଜ (ଲାଞ୍ଜ ସହିତ ବର୍ତ୍ତମାନ ଯଥା ସ୍ୟାତ୍ ତଥା) ମୂଷିକ ହିଁ ବୁଝାଇବ । ଆଉ ମରେନାହିଁ

କହିଲେ ଉପରୋକ୍ତ ବହୁଲୋକଙ୍କ ଦ୍ୱାରା ମୂଷିକର ମୃତ୍ୟୁ ହୁଏନାହିଁ ବୋଲି ହିଁ ବୁଝିବାକୁ ହେବ ।

ମୂଷିକମାରଣ ନିମନ୍ତେ ପୂର୍ବବର୍ଣ୍ଣିତ ଭଦ୍ରବ୍ୟକ୍ତି, ଭଦ୍ରମହିଳା ପ୍ରଭୃତିଙ୍କ ସମଷ୍ଟିଗତ ସଂଖ୍ୟାରେ କୌଣସି ସର୍ବୋଚ୍ଚ ସୀମାରହିଛି ନା ନାହିଁ ତାହାହିଁ ଏଠାରେ ବିବାଦୀୟ ପ୍ରଶ୍ନ ଏବଂ ସେହି ପ୍ରଶ୍ନର ଉତ୍ତରରେ କୁହାଯାଉଅଛି ଯେ, ସେପରି କୌଣସି ନିଧାର୍ଯ୍ୟ ସୀମା ନାହିଁ ।

ବହୁ ଶବ୍ଦ ବହୁବଚନବ୍ୟଞ୍ଜକ । 'ବହୁଲୋକ' କହିଲେ ସାଧାରଣ ଭାବରେ 'ଅନେକ ଲୋକ' ବୋଲି ହିଁ ବୁଝାଏ । 'ନ ଏକ' ହେଲା ଅନେକ, ତେଣୁ ଏକରୁ ଅଧିକ ଲୋକଙ୍କୁ ବହୁଲୋକ ବୋଲି କହିବା ଯୁକ୍ତିଯୁକ୍ତ । ବହୁଲୋକରେ ଯଦି ମୂଷା ମରେନାହିଁ, ତେବେ କ'ଣ ଏକରୁ ଅଧିକ ଲୋକ ହେଲେ ମୂଷା ମରିବ ନାହିଁ? ଅର୍ଥାତ୍ କେବଳ ଜଣେ ମାତ୍ର ଲୋକଦ୍ୱାରା ହିଁ ମୂଷିକର ମୃତ୍ୟୁ ସମ୍ଭବ? ଆଖିକୁ ଅତ୍ୟନ୍ତ ସରଳ ଦିଶୁଥିବା ପ୍ରଶ୍ନଟି ଏହିପରି ଭାବରେ ଜଟିଳତା ଧାରଣ କରେ ।

ଅଭିଜ୍ଞତାରୁ କିନ୍ତୁ ଦେଖିବାକୁ ମିଳେ ଯେ, ବହୁଲୋକଙ୍କ ଦ୍ୱାରା ମୂଷା ମାରିବା ଯେପରି କଠିନ, ଏକମାତ୍ର ଘାତକଦ୍ୱାରା ମୂଷା ମାରିବା ସେହିପରି କଠିନ । 'ସୁଚରିତା'ରେ ବର୍ଣ୍ଣିତ ଶ୍ରୀମତୀ ବସନ୍ତ କୁମାରୀ ପଟ୍ଟନାୟକଙ୍କ 'ଭଗାରୀ' ତହିଁର ଏକ ଜ୍ୱଳନ୍ତ ନିଦର୍ଶନ । ତାଙ୍କ ସୁମିତା କ'ଣ କରି ନଥିଲେ? ଗୋଡ଼ଆଡୁ ହାତେଲେଖା ଲୁଗା ଟେକି, କାନିକୁ କଷିକରି ଅଣ୍ଟାରେ ଭିଡ଼ି, ମୁଣ୍ଡବାଳକୁ ଖୋଷାକରି ବାନ୍ଧି, ବାଡ଼ି ହାତରେ ସେ ଧରିଥିଲେ ରଣରଙ୍ଗିନୀର ବେଶ । ସିନ୍ଦୂର କୁଆଡ଼େ ନେସି ହୋଇଯାଇ ଲଙ୍କାତାରା ପରି ଦିଶୁଥିଲା - ଦେହ ମୁହଁ ହୋଇଥିଲା ଝାଳରେ ସରସର୍ - ଆଉ ସେ ସଁ ସଁ ଫଁ ଫଁ କରୁଥିଲେ। ତଥାପି ସେ କ'ଣ ମୂଷାର କିଛି କ୍ଷତି କରିପାରିଲେ? ତାଙ୍କର ସେ ଅପରୂପ ବେଶ ଦେଖି ମୂଷାଗୁଡ଼ିକ ନିଶ ହଲାଉଥିଲେ ଯାହା!

ଅବଶ୍ୟ ଅନ୍ୟଦିଗରେ ହାମେଲିନ୍ ସହରର ପାଇଡ୍ ପାଇପର୍‌ଙ୍କ ଦୃଷ୍ଟାନ୍ତ ରହିଛି । ମୂଷାଙ୍କ ଦୌରାତ୍ମ୍ୟରୁ ସହରକୁ ରକ୍ଷାକରିବା ପାଇଁ ହାମେଲିନ୍ ସହରର ମେୟର୍ ଯେତେବେଳେ ସେହି କେନ୍ଦେରା ବାଦକକୁ ଅନେକ ପୁରସ୍କାରର ଲୋଭ ଦେଖାଇ ସହରରୁ ମୂଷିକବଂଶ ଲୋପ କରିବା ପାଇଁ ଅନୁରୋଧ କଲେ, ସେତେବେଳେ ମଣିଷ ସମାଜର ଶଠତାକୁ ମନେପକାଇ ବାଦକ ପ୍ରଥମେ ଦୋ-ଦୋପାଞ୍ଚ ହେଉଥିଲା । ତା'ପରେ ଆରମ୍ଭ ହେଲା ସେ ତାର କେନ୍ଦରା ସଂଗୀତ । ଗାଇଲା - 'ଆସ ଆସ ମୂଷା ଯେତେ ଗାତପଶା/ଯିବା ନଈ ସେପାରି ।' ପୁଣି ଗୀତ ମେଲିଦେଲା : 'ଛୋଟ ମୂଷା ବଡ଼ ମୂଷା/ସରୁ ମୂଷା/ଗେଡ଼ା ମୂଷା/ ଡ଼େଙ୍ଗା ମୂଷା/କଳା ମୂଷା/ଧଳା ମୂଷା/ପିଲାମୂଷା/

ବୁଢ଼ାମୂଷା/ଚୁଟିଆ ମୂଷା/ପଟିଆ ମୂଷା ଆସ ସଭିଏଁ ଆସ ।’ ଆଉ ମୂର୍ଚ୍ଛନା ତୋଳି ବଖାଣିଲା, ‘ନଈ ସେ ପାରିର ସେହି ସ୍ୱର୍ଗପୁରୀ/ଛେନା ଦୁଧସର ରହିଛି ଭରି, ଚଣା, ଚିନାବାଦାମ ଯାହାର ଯେତେ ଶୁଖୁଆ ଚିଙ୍ଗୁଡ଼ି ଖାଇବ କେତେ ।’ ମୂଷାସବୁ ବାହାରି ଆସିଲେ ଗାତ ଭିତରୁ, ଛାତ ଉପରୁ, ଗଳିକନ୍ଦିରୁ, ଘରସନ୍ଧିରୁ ବାଦକ ପଛରେ ଢ଼େଇଁଢ଼େଇଁକା ଚାଲିଲେ । ଆଉ ବାଦକ ସେ ସମସ୍ତଙ୍କୁ କଢ଼ାଇ ନେଲା ନଈର ସୁଅ ମଝିକୁ ।

ତା’ପରେ ଯାହାହେଲା ତ ସମସ୍ତଙ୍କୁ ଜଣା । କାମ ଫତେ ହୋଇଗଲା ପରେ ପୁରସ୍କାର କଥା ତ ଛାଡ଼, ବାଦକକୁ କେହି ଆଉ ଚିହ୍ନିବି ପାରିଲେନାହିଁ। ତେଣୁ ଆଜିକାଲି ଯେତେ ଅନୁରୋଧ କଲେ ମଧ ମୂଷା ମାରିବା ଉଦ୍ଦେଶ୍ୟରେ କିଏ ଆଉ ବାଜା ବଜେଇବା ପାଇଁ ବାହାରିବ ?

ତା’ବୋଲି କେହି ଯେପରି ସିଦ୍ଧାନ୍ତ ନ କରନ୍ତି ଯେ, ଆଜିର ପରିସ୍ଥିତିରେ ଜଣେ ମାତ୍ର ଘାତକଦ୍ୱାରା ମୂଷା ମାରିବା ଅସମ୍ଭବ । ମରିବ, ଅଲବତ ମରିବ ମାରି ଜାଣିଲେ ହେଲା । ସେଥିପାଇଁ ବିଜ୍ଞାନସମ୍ମତ ପନ୍ଥାସବୁ ରହିଛି । ତନ୍ମଧ୍ୟରୁ ଏକ ସୂକ୍ଷ୍ମ ଅଥଚ ସରଳ ପନ୍ଥା ଏଠାରେ ପ୍ରଦତ୍ତ ହେଲା ।

ମୂଷିକମାରଣର ଉଦ୍‌ଯୋଗ ପର୍ବରେ ମୂଷା ରହିଥିବା କୋଠରିକୁ ଘାତକ ଖଣ୍ଡିଏ ଚୌକି ନେଇ କୋଠରିର ମଧ୍ୟସ୍ଥଳରେ ସ୍ଥାପନ କରିବେ । ତା’ପରେ ଅସ୍ତ୍ରରୂପରେ ବ୍ୟବହୃତ ହେବାକୁ ଯାଉଥିବା ଯୋତା କିମ୍ବା ଚପଲକୁ ହାତରେ ଧରି ‘ଷ୍ଟେଚ୍ୟୁ ଅଫ୍ ଲିବର୍ଟି’ ପରି ହଲଚଲ୍ ନହୋଇ ଚୌକି ଉପରେ ଚୁପ୍‌ଚାପ୍ ବସିରହିବେ । ଯଥା ସମୟରେ ମୂଷିକଟି ଚୌକିରେ ଆସୀନ ବସ୍ତୁ ‘ଷ୍ଟେଚ୍ୟୁ ଅଫ୍ ଲିବେର୍ଟି’ନା ନୁହେଁ ଜାଣିବା ଉଦ୍ଦେଶ୍ୟରେ କୋଠରିର କୌଣସି ଏକ କୋଣରେ ଦେଖାଦେବ । ସେତେବେଳେ ଘାତକ କିଛି କହିବେ ନାହିଁ, ଯେହେତୁ ଓଡ଼ିଆରେ ‘ହେଇ, ଶୟତାନ୍ ଆସିଗଲା’ କାହିଁକି, ଇଂରାଜୀରେ ‘ହିଅର୍ କମ୍‌ସ୍ ଦି ସ୍କାଉଣ୍ଡ୍ରେଲ୍’ କହିଲେ ମଧ ମୂଷା ତାର ଅର୍ଥ ବୁଝିଯିବ । ତେଣୁ ମୌନବ୍ରତ ଅବଲମ୍ବନ ଏକାନ୍ତ ବାଞ୍ଛନୀୟ । ତା’ପରେ ଏକାଗ୍ରଚିତ୍ତରେ ମନ ଓ ପ୍ରାଣକୁ ଦୁଇ ଭ୍ରୂମଧ୍ୟରେ ସ୍ଥାପନକରି, ଅର୍ଦ୍ଧନିମୀଳିତ ନୟନରେ ଫାଳେ ଦୃଷ୍ଟିକୁ ନାସାଗ୍ରରେ ରଖି ଅନ୍ୟ ଫାଳଟି ମୂଷିକ ଆଡ଼କୁ ଢ଼ାଳିବେ । ମୂଷା ଧିରେ ଧିରେ ପାଖକୁ ଆସିବ । ଘାତକ ମହାଶୟ ଯେଉଁ ଗୋଡ଼ର ଯୋତା ବା ଚପଲ ହାତରେ ଧରିଛନ୍ତି, ସେହି ପାଦର କାଣି ଆଙ୍ଗୁଳିକୁ ଅଥବା ଅନ୍ୟ ଯେକୌଣସି ଅଙ୍ଗୁଳିକୁ ସେ ତା’ର ତୀକ୍ଷ୍ଣ ଦାନ୍ତଦ୍ୱାରା ପରୀକ୍ଷା କରିପାରେ । ତହିଁରେ ଡ଼ରିଯିବେ

ନାହିଁ କିମ୍ବା ବିଚଳିତ ହେବେ ନାହିଁ । ହସ୍ତଚାଳନାର ସାମାନ୍ୟ ଇଙ୍ଗିତ ପାଇଲାକ୍ଷଣି ମୂଷା ବିଦ୍ୟୁତ୍ ବେଗରେ ପଳାଇଯାଇ ଟିକିଏ ଦୂରରେ ବସି ଦାନ୍ତ ଦେଖାଇବ ଓ ନିଶ ହଲାଇବ । ଏଥିରେ ମୂଷା ବ୍ୟଙ୍ଗକରୁଛି ଅଥବା ହସୁଛି ବୋଲି ଭାବି ରାଗିବେ ନାହିଁ । କ୍ରୋଧରହିତ ତଥା ନିଶ୍ଚଳ ଓ ଧୀରଚିତ୍ତ ହୋଇ ଠିକ୍ ପୂର୍ବ ଅବସ୍ଥାରେ ବସିରହିବେ ଓ ଯଥା ସମୟରେ ଘାତକଙ୍କ ଆଣ୍ଠୁ ଉପରକୁ ଚଢ଼ିବ । ଆଣ୍ଠୁଗଣ୍ଠି ଉପରେ ସେ ଯେତେବେଳେ ପହଞ୍ଚିଯିବ ଠିକ୍ ସେତିକିବେଳେ ଓ ସେତିକିବେଳେ ହିଁ - ବାସ୍ !

ବାଘ ମାରିଲା ପରେ ଶିକାରୀମାନେ ଯେପରି ମଲା ବାଘ ଉପରେ ଗୋଟିଏ ଗୋଡ଼ ଲଦି ଡ଼ାହାଣ ହାତରେ ବନ୍ଧୁକ ଧରି ଫଟୋ ଉଠାଇଥାନ୍ତି, ମୂଷା ମଲା ପରେ ସେହିପରି ତାକୁ ବାଁ ହାତରେ ଝୁଲାଇ ଡ଼ାହାଣ ହାତରେ ଚପଲ ଧରି ନିଜର ଫଟୋ ଉଠାଇବେ ନାହିଁ - ଯେହେତୁ ତାହା ଆତ୍ମାଭିମାନ ସୃଷ୍ଟିକରେ । ମୂଷା ମରିବା ପରିବର୍ତ୍ତେ ଚପଲ ତାଡ଼ନାରେ ଆଣ୍ଠୁକୁ ଯଦି ସାମାନ୍ୟ ଆଘାତ ଆସେ, ସେଥିରେ ମ୍ରିୟମାଣ ହେବେନାହିଁ, ଯେହେତୁ ଯେକୌଣସି ଅସାଧ୍ୟ ସାଧନାରେ ବାରମ୍ବାର କଷ୍ଟ ସ୍ୱୀକାର କରିବାକୁ ପଡ଼ିଥାଏ ।

ତଥାପି ଏହା ସ୍ୱୀକାର୍ଯ୍ୟ ଯେ, ଜଣେ ଲୋକରେ ମୂଷା ମାରିବା କଠିନ - ବେଶୀ ଲୋକରେ ମୂଷା ଅପେକ୍ଷାକୃତ ସହଜରେ ମରେ । 'ଦୁର୍ବାର' ହତ୍ୟାରହସ୍ୟ ତହିଁର ଏକ ଜ୍ୱଳନ୍ତ ଉଦାହରଣ । କେବଳ ମାତ୍ର ଆଚାର୍ଯ୍ୟପ୍ରବର ଶାନ୍ତନୁକୁମାର କାହିଁକି, ସେ ଓ ତାଙ୍କ ସ୍ତ୍ରୀ ମିଳି ମଧ ଦୁର୍ବାର ସଂହାର କରି ପାରିଲେନି । ଶେଷରେ ସେହି ମୂଷିକମାରଣରେ କଲେଜ ଛାତ୍ରମାନଙ୍କ ହସ୍ତକ୍ଷେପ କରିବାକୁ ପଡ଼ିଥିଲା ।

ସେମାନେ ଯେତେବେଳେ ଏ ମାରଣା ଅଭିଯାନରେ ଯୋଗ ଦେଲେ, ଅବସ୍ଥାର ତାତ୍କାଳୀକ ପରିବର୍ତ୍ତନ ଘଟିଲା । ଶାନ୍ତନୁବାବୁ ଅବଶ୍ୟ ଜଣେ ମାତ୍ର ଛାତ୍ରକୁ ଡ଼ାକିଥିଲେ ବୋଲି ଦର୍ଶାଇବାକୁ ଚେଷ୍ଟାକରିଛନ୍ତି, କିନ୍ତୁ କଲେଜ ଛାତ୍ରଙ୍କ ପ୍ରୋସେସନ୍ ଯାଉଥିଲା ବେଳେ ସେ ଭିତରୁ କେବଳ ଜଣକୁ ମୂଷା ମାରିବା ନିମନ୍ତେ ଡ଼ାକରା ଦିଆଯାଇପାରେ କି ? ମୂଷା ମାରିବା ଡ଼ାକରା ଶୁଣିସାରିଲା ପରେ ଅନ୍ୟ ଛାତ୍ରମାନେ କଣ ସେମାନଙ୍କ ପୋଷ୍ଟର ଓ ପୋଷ୍ଟରବାଡ଼ି ସବୁ ଧରି କସ୍ମିନ୍‌କାଳେ କଲେଜକୁ ପାଠ ପଢ଼ିବାକୁ ଯାଇପାରନ୍ତି ? ସମସ୍ତେ ନିଶ୍ଚୟ ସେ ସମସ୍ତ ଅସ୍ତ୍ର ଓ ଶସ୍ତ୍ର ସହ କୋଠରି ଭିତରେ ପ୍ରବେଶ କରିଥିବେ। ସେ ଯାହା ହେଉନା କାହିଁକି, ସେ ସମସ୍ତେ ମିଶି ଯେ, ବହୁଲୋକ ହୋଇଥିବେ ସେଥିରେ ସନ୍ଦେହ ନାହିଁ ଓ ସେ ସମସ୍ତଙ୍କ ସମଷ୍ଟିଗତ ପ୍ରଚେଷ୍ଟା ଦ୍ୱାରା ହିଁ ମୂଷିକଟି ଶେଷରେ ତା'ର ମୂଷିକ ଲୀଳା ସମ୍ବରଣ କରିଥିଲା ।

ଏଠାରେ ଯୁକ୍ତିଯୁକ୍ତ ଭାବରେ ପ୍ରଶ୍ନ ଉଠିପାରେ ଯେ, ତାହେଲେ ବାମାଚରଣ ବାବୁ, ତାଙ୍କ ସ୍ତ୍ରୀ ଓ ତାଙ୍କ ପୁତ୍ରଗଣ ମୂଷା ମାରିପାରିଲେ ନାହିଁ କାହିଁକି ? ଯଥାର୍ଥ ପ୍ରଶ୍ନ; କିନ୍ତୁ ସେହି ବିଫଳତା ପାଇଁ କ'ଣ ବହୁଲୋକଙ୍କ ଦୋଷ ? ସ୍ୱର୍ଗୀୟ ବାମାଚରଣ ମିତ୍ର ତାଙ୍କ ଜୀବଦ୍ଦଶାରେ କସ୍ମିନ୍‌କାଳେ ମୂଷା ମାରିପାରିନଥାନ୍ତେ । ଘାତକ ସେନାପତିଙ୍କ ମନରେ ଯଦି ଠିକ୍ ପାହାର ଉଠାଇଲାବେଳକୁ ଦୟାର ଉଦ୍ରେକ ହେଲା ଓ ସେ 'ନ ହନ୍ୟତେ ହନ୍ୟମାନେ ଶରୀରେ' ବୋଲି ନ ଭାବି 'ଆହାହା ... କି ସୁନ୍ଦର ମୂଷାଟିଏ - କେମିତି ଡ଼େଉଁଛି ଦେଖିଲ !' ବୋଲି ଭାବି ଭଗବାନଙ୍କ ସୃଷ୍ଟିଲୀଳାର ବୈଚିତ୍ର୍ୟ ସମ୍ବନ୍ଧରେ ଚିନ୍ତାକରି ବସନ୍ତି, ତାଙ୍କ ହାତରେ କେବେ ମୂଷା ମରିବ ? କଦାପି ନୁହେଁ ।

ମୂଷିକମାରଣରେ ଦୟାର ଅପକାରିତା ସମ୍ବନ୍ଧରେ ଏକ ଜଣାଶୁଣା ଉଦାହରଣ ଦିଆଯାଇପାରେ । ମୁନି ଠିକ୍ ତାଙ୍କ ଧ୍ୟାନରେ ବସିବାକୁ ଯାଉଛନ୍ତି, କୁଆ ଥଣ୍ଟରୁ ମୂଷାଛୁଆଟିଏ ତାଙ୍କ ମୁହଁ ଆଗରେ ଖସିପଡ଼ିଲା । ସେ ତାକୁ ମାରିଦେବେ କ'ଣ, ଦୁଧ ପିଆଇ ପୋଷିବାକୁ ଆରମ୍ଭ କରିଦେଲେ । ଯଥା ସମୟରେ ମୂଷା ଟିକିଏ ବଡ଼ହେଲା ଓ ବିଲେଇକୁ ଡ଼ରିଲା । ବିଲେଇକୁ କାହିଁକି ଡ଼ରିବ ବୋଲି ମୁନି ସେହି ମୂଷାଟିକୁ ବିଲେଇ କରିଦେଲେ । ପରେ ସେହି ବିଲେଇ ପୁଣି କୁକୁରକୁ କାହିଁକି ଡ଼ରିବ ବୋଲି ତାକୁ କୁକୁର କଲେ, ଆଉ ଶେଷରେ କୁକୁର ହୋଇ ସେ ବାଘକୁ କାହିଁକି ଡ଼ରିବ ବୋଲି ମୁନି ତାକୁ ବାଘ କରିଦେଲେ ତା'ପରେ ଯାହା ହେବା କଥା । 'ମୁଲୁ ମାଇଲେ ଯିବ ସରି' ନକରିଥିବା ଫଳରେ ସେ ବାଘ ଯେତେବେଳେ ମୁନିଙ୍କୁ ଖାଇବାକୁ ବସିଲା, ମୁନି ତାକୁ 'ପୁନର୍ମୂଷିକୋ ଭବ' ବାଣୀ ଶୁଣାଇଦେଲେ । ସେ ସିନା ମୁନି ବୋଲି ଏମିତି ଖସିଗଲେ, ନହେଲେ ତ ତାଙ୍କ କଥା ସରିଥିଲା । ଆଜିର ଏହି ଯୁଗରେ ବାଘ ହାବୁଡ଼ରେ ପଡ଼ିଲା ପରେ ଆମ ଭିତରୁ କେହି ଯଦି ବାଘକୁ 'ପୁନର୍ମୂଷିକୋ ଭବ' ବୋଲି କହିଦିଏ, ବାଘ କ'ଣ ସେ କଥା ଶୁଣିବ ? ସେଥିପାଇଁ ମୂଷାକୁ ଦେଖିଲାକ୍ଷଣି ସେ ବାଘ ହେବା ପୂର୍ବରୁ ହିଁ ତା'ର ମରଣ ସମ୍ବନ୍ଧରେ ଯତ୍ନବାନ୍ ହେବା ବିଧେୟ ।

ଏଥର ମୂଷିକ ମାରଣାରେ ମୋର ବ୍ୟକ୍ତିଗତ ଅଭିଜ୍ଞତାରୁ ପଦେ କହେ । ଜ୍ୟୋତିବିହାରରେ ଆମ୍ଭର ଲୀଳାଖେଳା ସରିବା ଦିନ ପାଖେଇଆସିଲା ଜାଣି ମୁଁ ତାଙ୍କୁ କହିଲି, 'ହଇ ହେ, ଆମେ ତ 'ସଂସାର ବିଷୟ ବିଷେ ଜର୍ଜରିତ ହୋଇ, ସାରସ୍ୱତ ପାସୋରିଣ ସାରିଲୁ ଆୟୁଷ' - ଏଥର ହେଲେ ପ୍ରତିଦିନ ଭାଗବତ ସାନନ୍ଦରେ ଗ୍ରହଣ କଲେ ଓ ମୋ ପ୍ରଶ୍ନର ଉତ୍ତର ଦେଇ ସୂଚାଇଦେଲେ ଯେ, ଶେଷ କୋଠରିର କାନ୍ଥ ଆଲମାରି ତଳଥାକରେ ମହାଭାରତ ସେଟ୍ ରହିଛି । 'ଶୁଭସ୍ୟ ଶୀଘ୍ରଂ' ମନେପକାଇ

ମୁଁ ମହାଭାରତ ସେଟ୍ ଆଣିବାକୁ ଗଲି । ଆଲମାରି ତଳଥାକରେ ମହାଭାରତ ସେଟ୍ ଯେପରି ଭାବରେ ସଜାଇ ରଖାଯାଇଥିଲା - ବାଛିବାକୁ ଡ଼େରିଲାଗିଲାନି । ଆଦ୍ୟ, ମଧ୍ୟ, ସଭା, ବନ ଓ ବିରାଟ ପର୍ବ ଯୋଗପର୍ବ ବେଳକୁ ମନେହେଲା ବହିର ଫାଳେ ନାହିଁ। ଗୋଟାଏ ପାଖରୁ କେହି ଜଣେ ସତେ ଯେମିତି କଇଁଚିରେ କିଛି କାଟିନେଇଛି । ତା'ପରେ ଭୀଷ୍ମ ପର୍ବ ପାଇଁ ଯେତେବେଳେ ହାତ ବଢ଼ାଇଲି, ବହି ନଆସି ଛୋଟ ଛୋଟ କାଗଜଖଣ୍ଡ କେତେ ହାତରେ ଆସିଲା । ଖଣ୍ଡିଏ ଟୁକୁଡ଼ା କାଗଜରେ ଦେଖିଲି ଛପା ଅକ୍ଷର । ପଢ଼ିଲି -

'ଯଷ୍ଟିର ଆଘାତ ପ୍ରାପ୍ତେ ଯେହ୍ନେ ହୁଏ ସର୍ପ
ଶିଖଣ୍ଡୀର ଶରେ ଭୀଷ୍ମ ହେଲେ ସେହି
ହୃଦୟ ପଞ୍ଜର କର ଚରଣ ଅ
ଅଙ୍ଗ ଶିଶୁମୁନା ଘେନି ସର୍ବ'

ଆଉ ଖଣ୍ଡିକରେ - 'ଅର୍ଜ୍ଜୁନ ବୋଇଲେ ତୁମ୍ଭେ ଶୁଣ ଚକ୍ରଧର ।
ବଡ଼ ଦୁରାପଦ ଆସି ପଡ଼ିଲା ଏଥର ।।
ଇଁ କାହାକୁ ମୁଁ ଶର ।
ସେହିମାନେ ମୋହର ସୋଦର ।
ଭୀଷ୍ମ ଅଛନ୍ତି ଅସ୍ତ୍ର ଶସ୍ତ୍ର ଧରି ।
ପିତାମହ ଗୁରୁଦେବ ଅଟନ୍ତି ମୋହରି ।।'

ମନରେ ଆଶଙ୍କା ଜନ୍ମିଲା । ଏକା ସାଙ୍ଗରେ ପୁଳାଏ କାଗଜ ଟାଣିଆଣିଲି । ସେ ପୁଳାକର ମଝିରେ ଯାହା ଦେଖିଲି ସେଥିରେ ଆଖି ତାଳୁରେ ଖୋସି ହୋଇଗଲା । ଠିକ୍ ଇଉରୋପୀଏନ୍‌ମାନଙ୍କ ପରି ଗୋରା ତକ୍‌ତକ୍ ଚେହେରାର ପାଞ୍ଚ ମୂର୍ତ୍ତି, ଟିକିଏ ଟିକିଏ ଲାଞ୍ଜମୁଣ୍ଡ ଥରାଇ ଥରାଇ ଆଗକୁ ଗୁରୁଣ୍ଡିଯିବାକୁ ଚେଷ୍ଟା କରୁଛନ୍ତି, କିନ୍ତୁ ପାରୁନାହାନ୍ତି । ସେ ଭିତରୁ ଡ଼ିଆଁମାରି ଛୋଟକଳା ଶରୀରଟିଏ ବହି ଭିତରେ କେଉଁଠି ଲୁଚିଗଲା । ଗୋଟିଏ ଚୁଟିଆ ମୂଷା, ଏ ଛୁଆମାନଙ୍କର ମା' ନିଶ୍ଚୟ । ରାଗରେ ଦେହରେ ନିଆଁ ଲାଗିଲା । ଏ ମୂଷାକୁ ଆଉ କାଗଜ ମିଳିଲାନି ଯେ, ଭୀଷ୍ମପର୍ବ କାଟି ନିଜ ଅନ୍ତୁଡ଼ିଶାଳ କରିଛି, ଆଉ ଆଜନ୍ମ ବ୍ରହ୍ମଚାରୀ ଭୀଷ୍ମ ପିତାମହଙ୍କୁ ତାଙ୍କ ଶରଶଯ୍ୟାରେ ମଧ୍ୟ ଟିକିଏ ଶାନ୍ତି ନଦେଇ ହନ୍ତସନ୍ତ କରୁଛି । ଅମ୍ୱାତ କୁଆଡ଼େ ଶିଖଣ୍ଡୀ ହୋଇ ଜନ୍ମିଥିଲେ । ସେଇ ଶିଖଣ୍ଡୀ ବୋଧହୁଏ ଏଇ ମୂଷାରୂପରେ ଜନ୍ମନେଇ ପୁଣି ଭୀଷ୍ମଙ୍କ ଉପରେ ଦାଉ ସାଧିବାକୁ ଆରମ୍ଭ କଲାଣି । ଆଜି ସୂର୍ଯ୍ୟାସ୍ତ ପୂର୍ବରୁ ଏଇ

ମୂଷାକୁ ମାରିବି, ନହେଲେ କଣ କରିବି ସେ ନିଷ୍ପତ୍ତି ନେବା ପୂର୍ବରୁ ଆଲମାରିର ସବୁ ବହି ଟାଣିଲି । ମଝିଥାକ ସରିଛି – ଦେଖିଲି ଉପରଥାକର ଗୋଟିଏ କୋଣରୁ ଶୟତାନ୍ ଉଙ୍କିମାରୁଛି – ତା' ଛୁଆମାନଙ୍କୁ ଅନାଉଛି ବୋଧହୁଏ । ସାମାନ୍ୟ ଜ୍ଞାନୋଦୟ ହେଲା । ଛାତି ଭିତରେ ଫୋଟକାଟିଏ ସୃଷ୍ଟି ହେଲାପରି ମନେହେଲା। ଭାବିଲି, ମୂଷାକୁ ମାରିବି – ସ୍ତ୍ରୀ ହତ୍ୟା ହେବ । ମୂଷା ମଲେ ତ ଏ ଛୁଆଗୁଡ଼ାକ ମଧ୍ୟ ମରିବେ – ତେଣୁ ବାଳହତ୍ୟା ମଧ୍ୟ । କଂସପରି ଲୋକ ତ ଏସବୁ ଭାବି ଶେଷରେ ଦେବକୀଙ୍କ ବାଳ ଛାଡ଼ିଦେଇଥିଲା । ମୁଁ କ'ଣ ତେବେ ....

ପୁଣି ଭାବିଲି । ମୂଷା ଛୁଆମାନେ କୁଆଡ଼େ ଦୁଇମାସରେ ନିଜେ ଛୁଆ ଦେବାକୁ ଆରମ୍ଭ କରିଦିଅନ୍ତି । ଏମାନେ ବଞ୍ଚିରହିଲେ ଦୁଇମାସରେ ଛୁଆ ଦେବେ । ଆଉ ଦୁଇମାସରେ ପୁଣି ସେହି ଛୁଆଗୁଡ଼ାକ ଆହୁରି ନିଜ ନିଜ ଛୁଆଦେବେ । ଆଉ ଦୁଇମାସ ପୁଣି ଦୁଇମାସ । ସେପରି ହେଲେ ତା' ଦୁଇ ତିନିବର୍ଷ ଭିତରେ ଜ୍ୟୋତିବିହାର ପୁରାପୁରି ମୂଷକବିହାରରେ ପରିଣତ ହେବ । ଠିକ୍ କଲି ଏପର ତାଡ଼କା ରାକ୍ଷସୀକୁ ମାଇଲେ କିଛି ଦୋଷ ନାହିଁ । ମିନିମା'ଙ୍କୁ ଡ଼ାକଦେଲି, ଆଉ ସେ ସଙ୍ଗରେ ବାସୁକୁ ଡ଼ାକିଲି ବାଡ଼ି ଦି'ଟା ନେଇ ଚଞ୍ଚଳ ଆସିବାକୁ ଭାବର ସାମାନ୍ୟ କିଛି ଆଦାନ-ପ୍ରଦାନ ପରେ ପାଞ୍ଚ ମିନିଟ୍ ଭିତରେ କୋଠରିରେ ଛାଉଣୀ ପଡ଼ିଗଲା । ଆଲମାରିର ବାଁ ପାଖରେ ବାଉଁଶ ବାଡ଼ିଟିଏ ଧରି ମୁଁ ଜଗିଲି । ପ୍ରାୟ ପାଞ୍ଚଫୁଟ ଦୂରରେ କାଠଫାଳିଆ ଧରି ଠିଆହେଲା ଟୁନା, ଟିକିଏ ଡ଼ାହାଣକୁ ଚଟୁଟିଏ ଧରି ଜଗିରହିଲା ବାସୁ । ରବର ଚଟି ଧରି ଠିଆହେଲେ ମିନି ମା' ଆଉ ଠିକ୍ ତା' ପଛକୁ ଆମ ତିନିବର୍ଷର ନାତୁଣୀ 'ମୂଚା ମୂଚା ବୋଲି ଚିତ୍କାର କରି ଗୋଟିଏ ସ୍କେଲ୍ ହାତରେ ଘରଯାକ ପଇଁତରା ଦେଉ ଦେଉ ମୂଷାଛୁଆଙ୍କୁ ଦେଖି ଖୁସିରେ ସେ ପାଖରେ ବସିପଡ଼ି ସେମାନଙ୍କ ସାଙ୍ଗରେ ଗପ ଆରମ୍ଭ କରିଦେଲା । ମିନିମା'ଙ୍କ ଭାଗରେ ପଡ଼ିଲା ସେ ବହିଥାକ କେଞ୍ଚି ମୂଷାକୁ ବାହାରକରିବେ ।

ବାଉଁଶ ବାଡ଼ି ଧରି ମିନିମା' ଉପର ଥାକର ସବୁ ବହିସନ୍ଧି ଭିତରେ କେଞ୍ଚି ସାରିଲା ପରେ ମଝିଥାକର ଡ଼ାହାଣ କୋଣକୁ କେଞ୍ଚୁଥାନ୍ତି, ମୂଷାଟି ତାଙ୍କ ଶାଢ଼ୀ ଉପରକୁ ଡ଼େଇଁପଡ଼ିଲା । ଆର୍ତ୍ତନାଦ ସହ ସେ ମୂଷାଟିକୁ ଛିଞ୍ଚାଡ଼ିଲା ବେଳେ ଯେଉଁ ଅଙ୍ଗଭଙ୍ଗୀ କଲେ, ମିନିମା' ନହୋଇ ଅନ୍ୟ କେହି ହୋଇଥିଲେ ତାଙ୍କର ସେତେବେଳର ଅଙ୍ଗଭଙ୍ଗୀ ଓ ମୁଦ୍ରାକୁ ଭାରତନାଟ୍ୟମ୍ ସଙ୍ଗରେ ସହଜରେ ତୁଳନା ଓ ...' ରଡ଼ି ସାଙ୍ଗକୁ ଓ ଟୁନା, ବାସୁ ପ୍ରଭୃତି ବୀରପୁଙ୍ଗବଙ୍କ ମାରଣାସ୍ତ୍ର ସମୂହ ସମୁତ୍‌ତିଥ ହେବା ପୂର୍ବରୁ ହିଁ ମୂଷା ସେ କୋଠରି ଡ଼େଇଁ ବାରଣ୍ଡାକୁ ଚାଲିଗଲା ଓ ଅଦୃଶ୍ୟ ହୋଇଗଲା ।

ରୁଷ ଆକ୍ରମଣରେ ପରାଭୂତ ନେପୋଲିୟନଙ୍କ ସୈନ୍ୟବାହିନୀ ଫ୍ରାନ୍ସକୁ ଫେରିଲାବେଳେ ମୁହଁ ସବୁ କେମିତି କରିଥିଲେ କେଜାଣି, ଆମେ କିନ୍ତୁ ବସିବା କୋଠରିକୁ ଫେରିଆସିଲାବେଳେ ମୁହଁ ସବୁ ତଳକୁ ପୋତିଥିଲୁ ।

ପରାଜୟ ଗ୍ଲାନିର ଦାରୁଣତା ଲାଘବ ନିମନ୍ତେ ମୁଁ ଖଣ୍ଡିଏ ମେଗାଜିନ୍ ଧରି ବସିଲି, କିନ୍ତୁ ମେଗାଜିନ୍‌ର ପ୍ରତ୍ୟେକ ପୃଷ୍ଠାରେ ଅନେକ ରକମର ମୂଷା ନାନା ଢ଼ଙ୍ଗରେ ନାନା ଭଙ୍ଗୀରେ ଦେଖାଦେଲେ । କିଛିକ୍ଷଣ ପରେ ହିଁ ବାସୁ ରନ୍ଧାଘର ଭିତରୁ ତାର ଉଜ୍ଜ୍ୱଳ ମୁଖମଣ୍ଡଳରେ ବିସ୍ତାରିତ ହସନେଇ ପହଞ୍ଚିଗଲା - ମନେହେଲା ସେ ଗୋଟାଏ କିଛି ଅସାଧ ସାଧନ କରିଛି । ତା' ଡ଼ାହାଣ ହାତରେ ଥିଲା ରୁଟି ବେଲଣା ଏବଂ ବାଁ ହାତରେ ଝୁଲୁଥିଲା ବିଜେତାର ଟ୍ରଫି - ମୃତ ଚୁଟିଆ ମୂଷା ।

ଆନନ୍ଦ କୋଳାହଳ ଭିତରେ ବାସୁ ବଖାଣୁଥିଲା ତା'ର ବୀରତ୍ୱର କାହାଣୀ ଗୋଟିଏ ଛୋଟ ମାଟିହାଣ୍ଡି ଭିତରେ ପଡ଼ିଯାଇ ମୂଷାଟି କେମିତି ଆଉ ପଳାଇଯାଇ ପାରିଲାନି, ଆଉ ତା'ପରେ ...

ପିତାମହଙ୍କ ଅପମାନର ଯଥୋଚିତ ପ୍ରତିଶୋଧ ମିଳିଛି ଜାଣି ମୁଁ ମଧ୍ୟ ଆନନ୍ଦିତ ହେଲି - କିନ୍ତୁ ପରେ ପରେ ହିଁ ମୂଷାଛୁଆଙ୍କ କଥା ମନେପଡ଼ିଯିବାରୁ ମାନସିକ ଦ୍ୱନ୍ଦ୍ୱ ଦେଖାଦେଲା । ସେମାନଙ୍କୁ ବାହାରେ ଫିଙ୍ଗିଦେବା ଯାହା, ମାରିଦେବା ତାହା । ମନର ସେହି ଦ୍ୱନ୍ଦ୍ୱ ନେଇ ପୂର୍ବର ସେହି କୋଠରିକୁ ଆଉ ଥରେ ଗଲି - ଆଉ ଯାହା ଦେଖିଲି ...

ଚୁଟିଆ ମୂଷା ତାର ଗୋଟିଏ ଛୁଆକୁ ପାଟିରେ ଧରି ଆଲମାରି ଭିତରକୁ ପଶିଯାଉଥିଲା । ବିଶ୍ୱାସ କରିନପାରି ଭଲକରି ଆଖି ମଳି ଚାହିଁଲି । ତିନୋଟି ଛୁଆଙ୍କୁ ନେଇଗଲା ପରେ ଏବେ ଚତୁର୍ଥ ଛୁଆକୁ ନେଉଛି - ପଡ଼ିରହିଛି କେବଳ ତାର ପଞ୍ଚମ ସନ୍ତାନ ।

ବସିବା କୋଠରିକୁ ଫେରିଯାଇ ବିରକ୍ତିରେ ବାସୁକୁ ଜେରାକଲି - ସେ କାହାକୁ ମାରିଛି । ବାସୁ ଡ଼ରିଯାଇ ଉତ୍ତର ଦେଲା ଯେ, ସେ କାହାକୁ ମାରିନି । ତା' ସାଙ୍ଗକୁ ଯୋଡ଼ିଲା ଯେ, କେହି ଯଦି ତା' ବିରୁଦ୍ଧରେ କୌଣସି ଅଭିଯୋଗ କରିଛି - ସେ ଅଭିଯୋଗଟି ସଂପୂର୍ଣ୍ଣ ମିଥ୍ୟା ଓ ଭିତ୍ତିହୀନ । ମଲା ମୂଷାଟି ତା' ହାତରୁ ଯାଇ ଟୁନାର ବାଁ ହାତରେ ଝୁଲୁଥିଲା । ମଲାମୂଷାକୁ ଦେଖାଇ ମୁଁ ବାସୁକୁ ପଚାରିଲି କାହିଁକି ସେ ସେହି ମୂଷାଟିକୁ ମାରିଛି । ବାସୁ ଛେପ ଢ଼ୋକିଲା । କହିଲା - 'ମହାଭାରତ କାଟିଥିଲା ନା କ'ଣ ବୋଲି ତ... ।' ମିନିମା' ଆଶ୍ଚର୍ଯ୍ୟ ହୋଇ ମୋ ଆଡ଼ିକି

ଅନାଇଥିଲେ । ମୁଁ ତାଙ୍କୁ ବୁଝାଇଦେଲି ଯେ, ଭୀଷ୍ମପର୍ବ କାଟିଥିବା ମୂଷା ନ ମରି ଆଉ ଗୋଟିଏ ନିରୀହ ମୂଷା ମରିଛି । ଘୋର ଅନ୍ୟାୟ ! ଦୋଷ କଲା କିଏ, ଆଉ ଦଣ୍ଡ ପାଇଲା କିଏ !

ଟୁନା ଆସ୍ପର୍ଦ୍ଧା କରି କହୁଥିଲା ଯେ - ଏ ମୂଷାକୁ ଏଥର ସେ ମାରିବ । ମୁଁ କିନ୍ତୁ ଆଉ କୌଣସି ଅଭିଯାନ ଆରମ୍ଭ କରିବା ପାଇଁ କଠୋର ସ୍ୱରରେ ପୁରାପୁରି ମନାକରିଦେଲି । କିଏ ଜାଣେ ଏଥର ପୁଣି ଆଉ ଗୋଟିଏ ନିର୍ଦ୍ଦୋଷ ମୂଷା ନ ମରିବ !

ମିନି ଭୂରୁ କୁଞ୍ଚାଇ ଟିପ୍ପଣୀ ଦେଲା - 'ମୂଷା ମାତ୍ରକେ ତ ମରିଯିବା କଥା - ଏମିତି ଦୋଷୀ ନିର୍ଦ୍ଦୋଷ ବାଛି ବସିଲେ ତ... !' ମୁଁ ପ୍ରଶ୍ନକଲି, କାହିଁକି ? ମିନି ଏପରି ପ୍ରଶ୍ନ ପାଇଁ ପ୍ରସ୍ତୁତ ନଥିଲା । ଥତମତ ହୋଇ କହିବାକୁ ଚେଷ୍ଟାକଲା - 'ମୂଷାମାନଙ୍କ ଯୋଗୁଁ ପ୍ଲେଗ୍ ରୋଗ ହୁଏ, ଭାରତରେ ଖାଦ୍ୟାଭାବ ଘଟେ ।' ମୁଁ କିନ୍ତୁ ତାକୁ ଭଲକରି ବୁଝାଇଦେବା ଅବସ୍ଥାରେ ନଥିଲି । 'ପ୍ଲେଗ୍ ? ପ୍ଲେଗ୍ ହେଲେ କ୍ଷତି କ'ଣ ? ଲୋକସଂଖ୍ୟା ବେଶ୍ କମିଯିବ । ଲୋକସଂଖ୍ୟା କମାଇବା ପାଇଁ ପରା ଫେମିଲି ପ୍ଲାନିଂ ଚାଲିଛି, ଆଉ କେଉଁ କେଉଁଠି ଭ୍ରୂଣହତ୍ୟାକୁ ମଧ୍ୟ ପ୍ରଶ୍ରୟ ଦିଆଯାଉଛି । ଲୋକସଂଖ୍ୟା କମାଇବା ପାଇଁ ପ୍ଲେଗ୍ ତ ଏକ ସହଜ ଆଉ ନିଷ୍ପାପ ଉପାୟ । ମୂଷାଙ୍କ ପାଇଁ ଖାଦ୍ୟଭାବ, ଫୁଃ ... ଆଉ ଯେଉଁମାନେ ଜାଣିଶୁଣି ଖାଦ୍ୟାଭାବ ଘଟାଉଛନ୍ତି, ସେମାନଙ୍କୁ କ'ଣ ଏମିତି ମୃତ୍ୟୁଦଣ୍ଡ ଦିଆଯାଉଛି ? ଧରି ମଧ୍ୟ ନିଆଯାଉ ଯେ, ଖାଦ୍ୟାଭାବ ଘଟାଉଥିବା କଳାବଜାରୀମାନଙ୍କର ମୃତ୍ୟୁଦଣ୍ଡ ହିଁ ପ୍ରାପ୍ୟ । ତେବେ କ'ଣ ସେପରି କେତେଜଣଙ୍କ ପାଇଁ ସାରା ମନୁଷ୍ୟ ଜାତି ଦଣ୍ଡିତ ହେବେ ? କେହି ଜଣେ କେଉଁଠି ଦୋଷ କଲା ବୋଲି ଆମକୁ ଅନ୍ୟମାନେ ଲୁହାଛଡ଼ରେ କେଞ୍ଚିବେ ? ବାଟା ସ୍ଲିପରରେ ପ୍ରହାର କରିବେ ? କି ନ୍ୟାୟ !'

ମିନିମା' କହିଲେ, 'ତେବେ କ'ଣ ତମେ କହୁଛ ଯେ, ମୂଷାମାନେ ଏମିତି ମନଇଚ୍ଛା ନିଜ ସଂଖ୍ୟା ବୃଦ୍ଧିକରିବେ, ଆଉ ଆମ ପ୍ରିୟ ଜ୍ୟୋତିବିହାରକୁ....'

ତାଙ୍କ କଥା ଛିଣ୍ଡାଇଆଣି ମୁଁ କହିଲି, 'ନା, ବେଶୀ ସଂଖ୍ୟାରେ ମୂଷା ହୋଇଗଲେ ତାଙ୍କର ବି କ'ଣ କ୍ଷତି ହେବନାହିଁ ? ସେମାନେ ବି ତାଙ୍କର ଫେମିଲି ପ୍ଲାନିଂ କରିବେ । ଆମେ କାହିଁକି ଧରିନେଉଛେ ଯେ, ଏ ସୃଷ୍ଟିରେ ଆମର କେବଳ ବୁଦ୍ଧି ଅଛି ? ବାମାଚରଣ ବାବୁଙ୍କ ମୂଷା ମଲା କେମିତି ? ସାପ ଗିଳିଲା ତ ! ଏମାନଙ୍କୁ ବି ସାପ ଗିଳିବ, ବିଲେଇ ଖାଇବ । ଆମେ ଯେତେ ମୂଷା ମାରୁଛୁ ସେଥିରେ କ'ଣ ତାଙ୍କ ସଂଖ୍ୟାରେ ବିଶେଷ ଫରକ୍ ପଡୁଛି ? ପ୍ରକୃତି ହିଁ ଏ ସବୁଥିରେ ଭାରସାମ୍ୟ

ରକ୍ଷାକରେ । ଯିଏ ଏ ସମସ୍ତଙ୍କୁ ସୃଷ୍ଟି କରିଛି, ସେ ଏମାନଙ୍କୁ ନେଇ କ'ଣ କରିବ ତା'ର ମୁଣ୍ଡ ଖେଳାଉ - ଆମେ କାହିଁକି ଏଥିରେ ଆଉ ମୁଣ୍ଡ ଘୁରାଇବା ?'

ମିନିମା' ତାଙ୍କ ନାରଙ୍ଗୀ ବନାରସୀ ପାଟ ଆଉ ମୋ କାଶ୍ମୀରୀ ଶାଲ ସମ୍ବନ୍ଧରେ କ'ଣ କହିବାକୁ ଯାଉଥିଲେ, ଏତିକିବେଳେ ବାସୁ ଚା' ନେଇ ଆସିଲା । ଆମ ଆଲୋଚନା ସେଥିରେ ହିଁ ବନ୍ଦ ହୋଇଯାଇଛି ।

ହଁ, ଯିଏ ଯାହା କହନ୍ତୁ ପଛକେ, ମୁଁ ନିଶ୍ଚୟ କହିବି ଯେ, ବନ୍ଧୁଲୋକରେ ମଧ୍ୟ ମୂଷା ମରେ, କିନ୍ତୁ କୌଣସି ମୂଷିକକୁ ମୃତ୍ୟୁଦଣ୍ଡ ଦେବା ପୂର୍ବରୁ ସେ ଦୋଷୀ ନା ନିର୍ଦ୍ଦୋଷ ସେ ସମ୍ବନ୍ଧରେ ବିଚାର ବିବେଚନା କରିବା ନ୍ୟାୟତଃ ପ୍ରୟୋଜନ । ଯଦି ପ୍ରମାଣିତ ହୁଏ ଯେ, ସେ ଦୋଷୀ, ତେବେ ସେ ଦୋଷ ୩୦୨ ଦଫାରେ ଯିବ ନା ନାହିଁ ଏବଂ ଯଦି ଯାଏ ସେଥିପାଇଁ ଆଜିର ଏହି ଯୁଗରେ ତାକୁ ମୃତ୍ୟୁଦଣ୍ଡ ଦିଆହେବ ନା ଆଜୀବନ କାରାଦଣ୍ଡ ଦିଆଯିବ, ତହିଁରେ ଯଥୋଚିତ ମୀମାଂସା ମଧ୍ୟ ହେବା ଦରକାର । ତା' ନହେଲେ ବିନାଅପରାଧରେ ଜଣକୁ ମୃତ୍ୟୁଦଣ୍ଡ ଦେଇଥିବାରୁ ଅଥବା ନିଜପାଇଁ ଗୋଟିଏ ନିୟମ ଓ ଅନ୍ୟପାଇଁ ଆଉ ଗୋଟିଏ ନିୟମ କରି ଦୋମୁହାଁ ନୀତି ପୋଷଣ କରୁଥିବା ଯୋଗୁଁ ମଣିଷ ଓ ମୂଷାମାନଙ୍କୁ ସମାନ ଆଖିରେ ଦେଖୁଥିବା କୌଣସି ଉଚ୍ଚ ନ୍ୟାୟାଳୟରେ ଦିନେ ନା ଦିନେ ବିପଦ ଦେଖାଦେଇପାରେ ।

# ବୁଢ଼ାବାବୁଙ୍କୁ ପତ୍ରେ

ମଣିଷ କୁଆଡ଼େ ଆଶା ଓ ନିରାଶା ମଧ୍ୟରେ ଘଣ୍ଟାର ପେଣ୍ଡୁଲମ୍ ପରି ଏପଟ ସେପଟ ହେଉଥାଏ । ଏହି ପେଣ୍ଡୁଲମ୍‌ଟି ଆଶା ପଟୁ ଯାଇ ନିରାଶା ପଟେ ପୁରାପୁରି ଲାଖିରହିଗଲେ ଯେଉଁ ଅବସ୍ଥା ହୁଅନ୍ତା, ସେଦିନ 'ଝଙ୍କାର'ର ପୂଜା ସଂଖ୍ୟାରେ 'ଅଗ୍ରଜ' ବସନ୍ତ କୁମାର ଶତପଥୀଙ୍କ 'ବୁଢ଼ାବାବୁ' ପଢୁ ପଢୁ ସେ ନିଜେ ଏବେ ବୁଢ଼ାବାବୁ ପାଲଟିଗଲେଣି ଜାଣି ମୋ ମନର ଅବସ୍ଥା ଠିକ୍ ସେପରି ଢ଼ଙ୍ଗ ନେଇଥିଲା ।

ରାଜଦ୍ୱାରେ ଓ ଶ୍ମଶାନରେ ଯେଉଁମାନେ ପାଖରେ ଠିଆହୁଅନ୍ତି ସେମାନେ ଯେ, ବନ୍ଧୁ ସେ କଥା ଅସ୍ୱୀକାର କରିହେବନି । ତଥାପି ଶ୍ମଶାନକୁ ଯିବା ପୂର୍ବରୁ ଓ ରାଜକର୍ମରୁ ଅବ୍ୟାହିତ ନେଲା ପରେ 'ପାଖରେ ନଥାଏ ଧନ' ଭଲ ଖାଇବାକୁ ମନ ଅବସ୍ଥାରେ ଦୁର୍ଲଭ ପେନ୍‌ସନ୍ ଅର୍ଥରୁ ଟଙ୍କାଟିଏ ଆଉ ଛିଣ୍ଡା ମୁଣିଟିଏ ଧରି କିଛି ସରୁଚାଉଳ, ସାମାନ୍ୟ ମୁଗଡ଼ାଲି, ଗୁଆଘିଅରୁ ଚାମୁଚେ, ରୋହି ହେଉ ବା ଭାକୁର ହେଉ ତଟକା ମାଛରୁ କେଇଖଣ୍ଡ, ବାଇଗଣ ଟମାଟରୁ ଦୁଇ ଚାରିଟା, ସଜନା ଛୁଇଁ ଓ ପୋଇଡ଼ଙ୍କରୁ କିଛି ଓ ଭଲ ଶାଗ ବିଡ଼ାଏ ଆଣିବା ଉଦ୍ଦେଶ୍ୟରେ ବଜାରକୁ ଗଲାବେଳେ ବୁଲାଷଣ୍ଢ ଆଉ ପୋକଡ଼ା କୁକୁର ମଧ୍ୟ ଯେତେବେଳେ ବାଟ ଛାଡ଼ନ୍ତିନି, ସେତିକିବେଳେ ପାଖରେ 'ଯଃ ତିଷ୍ଠତି' ସିଏ ହିଁ ପ୍ରକୃତରେ 'ବାନ୍ଧବ'। ଏପରି

---

(ଝଙ୍କାରର ୧୯୭୩ ପୂଜା ସଂଖ୍ୟାରେ ଶ୍ରୀ ବସନ୍ତକୁମାର ଶତପଥୀଙ୍କ 'ବୁଢ଼ାବାବୁ' ଗଳ୍ପ ପ୍ରକାଶ ପାଇଥିଲା । ଗଳ୍ପର ସାରାଂଶ ହେଲା ଯେ, ବୁଢ଼ା ହୋଇଗଲେଣି ବୋଲି ବୁଢ଼ାବାବୁ ନିଜେ ଜାଣିପାରିନାହାନ୍ତି । ସବୁଦିନ ପରି ସେଦିନ ସେ ତଟକା ଶାଗ କିଣିବା ଆଶାରେ ଶାଗବିକାଳି ବୁଢ଼ୀ ପାଖକୁ ଯାଇଛନ୍ତି । ଆଇବୁଢ଼ୀ ବଦଳରେ ଜୁଆଙ୍ଗ ନାତୁଣୀ ବସିଛି । ପାଞ୍ଚ ପଇସାରେ ବିଡ଼ାଏ ଶାଗ କହି କୋଡ଼ିଏ ପଇସାରେ ଚାରିବିଡ଼ା ଦେବାକୁ ମନାକରିଦେବାରୁ ବାବୁ ଫେରିଆସୁଛନ୍ତି, ଆଉ ଶାଗବିକାଳି ପଛରୁ ଡ଼ାକିଛି, 'ନେଇଯା, ଏ ବୁଢ଼ାବାବୁ'। ବାବୁ ଏପାଖ ସେପାଖ ଅନେଇଲା ପରେ ବୁଝିପାରିଛନ୍ତି ଯେ, ନାତୁଣୀ ତାଙ୍କୁ ହିଁ 'ବୁଢ଼ାବାବୁ' ବୋଲି ଡ଼ାକୁଛି । ସେ ପ୍ରଥମକରି ବୁଝିଛନ୍ତି ଯେ, ସେ ବୁଢ଼ା ହୋଇଗଲେଣି । - ଲେଖକ)

ଘଡ଼ିସନ୍ଧି ବେଳରେ ତେଣୁ ବସନ୍ତବାବୁଙ୍କ ପାଖରେ ଆମ୍ଭମାନଙ୍କୁ ଠିଆହେବାକୁ ପଡ଼ିବ ।

ଆମେ ସବୁ ରେଭେନ୍ସା କଲେଜରେ ପଢୁଥିଲାବେଳେ ବସନ୍ତ ବାବୁ ପୂର୍ବଦିଗ ଛାତ୍ରାବାସରେ ରହୁଥିଲେ । ସେ ଦିନର କଥା ମନେପଡ଼ିଲେ ତାଙ୍କର ଚହଟ-ଚିକ୍କଣ ମୁହଁର ସରୁନିଶ ଓ ମଠା ପଞ୍ଜାବି ମନେପଡ଼େ । ବସନ୍ତବାବୁ ଯେ, ଏବେ ଜୀବନର ପଶ୍ଚିମ ଦିଗଆଡ଼କୁ ମୁହାଁଇ ସାରିଲେଣି, ସେକଥା ଜଣାଥିଲା, କିନ୍ତୁ ଆଶା ଥିଲା ଯେ, ଶିକ୍ଷକତା କରିଥିବା ଭୁଲଯୋଗୁ କୌଣସି ସୁରମ୍ୟ ଦ୍ୱିତଳ ପ୍ରାସାଦସ୍ଥିତ ଡ୍ରଇଁରୁମ୍‌ର ସୌଖିନ ସୋଫା ଉପରେ ଆସୀନହେବା ସୌଭାଗ୍ୟରୁ ବଞ୍ଚିତ ହୋଇଥିଲେ ମଧ୍ୟ ଅବସର ଗ୍ରହଣ ପରେ ସେ ଅନ୍ତତଃ କୌଣସି ଟାଇଲି ଘର ବାରନ୍ଦାରେ ପଡ଼ିଥିବା କାଠ ଚୌକିଟିରେ ବସି ମାଷ୍ଟରିଆ ଟେବୁଲ୍ ଉପରେ ଗୋଡ଼ ଲଦି ଗରମ ମୁଢ଼ି ପାଛିଆରୁ ମୁଠିଏ ମୁଠିଏ ପାଟିରେ ପକାଉଥିବେ, ଆଉ ଚାରମିନାର୍ ସିଗାରେଟ୍ ନ ହେଲେ ବି ମେଘନା ବିଡ଼ିଟିଏ ମଝିରେ ମଝିରେ ଫୁଙ୍କୁଥିବେ ।

କିଏ ଆଶଙ୍କା କରିଥିଲା ସେ ବସନ୍ତବାବୁ ଅଣଓସାରିଆ ନୀଳ ଲୁଙ୍ଗିଟିଏ ପିନ୍ଧି, ଛିଣ୍ଡାଚପଲ ହଳେ ଘୋଷାରି ଘୋଷାରି କେବେ ଦିନେ ଧଳା ଦିଶୁଥିବା ବ୍ୟାଗ୍‌ଟିଏ ଧରି ଆଶା-ଭାଣ୍ଡର ବୋଝରେ ଟିକିଏ ନଇଁପଡ଼ି ହାଟଆଡ଼କୁ ମୁହାଁଇଥିବେ, ଆଉ ଗୋଟିଏ ଶାଗବିଡ଼ା ପାଇଁ କୁଆଁଙ୍ଗ ନାତୁଣୀ ସାଙ୍ଗରେ ଖୋଲା ବଜାରରେ ଭିଡ଼ାଓଟରା ଲଗାଉଥିବେ ?

ହାୟରେ ନିୟତି !

ଏ ଅଦ୍ଭୁତ ସଂସାରରେ ବେଳେ ବେଳେ କୁଆଡ଼େ ଏପରି ଘଟେ । ଅବସ୍ଥା ଚକ୍ରରେ ପଡ଼ି ରାଜେନ୍ଦ୍ରାସନରେ ବସିଥିବା କେଉଁ ଜଣେ ଭଦ୍ରଲୋକ (ଠିକ୍ କିଏ ମନେପଡୁନି) ଫକୀର ହୋଇ କ'ଣ ସବୁ ନକରିବା ପାଇଁ କରିବସିଥିଲେ ବୋଲି ଶୁଣାଯାଏ । ସେହି ସଂସାର ଯେହେତୁ ବଦଳି ନାହିଁ, ବସନ୍ତବାବୁ ଶାଗବିକାଳିକୁ ଆଉ ଗୋଟିଏ ବିଡ଼ା ଶାଗ ମାଗିଥାଇପାରନ୍ତି । ଏଥିରେ 'ରସିକ ନାଗର' ବୋଲି ସମ୍ବୋଧନ ନକଲେ ମଧ୍ୟ 'ବୁଢ଼ାବାବୁ' ବୋଲି ଲାଞ୍ଛନା ଦେବାରେ ସେ ନାତୁଣୀର କି ଅଧିକାର ଥିଲା ? କଣାକୁ 'କଣାବାବୁ' ଟେରାକୁ 'ଟେରାବାବୁ' ବୋଲି ଡ଼ାକିବା ଯେପରି ଅସଙ୍ଗତ, ବସନ୍ତବାବୁ ସତକୁ ସତ ବୁଢ଼ା ହୋଇସାରିଥିଲେ ମଧ୍ୟ ତାଙ୍କ ବୁଢ଼ାବାବୁ ବୋଲି ଡ଼ାକିବା କଦାପି ସମୀଚୀନ ହୋଇନପାରେ । ବସନ୍ତ ବାବୁ ଅବଶ୍ୟ ତାଙ୍କ ମହାନ୍ ଉଦାରତା ଯୋଗୁ କଥାଟିକୁ ଏତେ ସାଧାରଣ ଭାବରେ ନେଇଯାଇଛନ୍ତି, କିନ୍ତୁ

ବିଷୟଟିର ଗୁରୁତ୍ୱ ସମ୍ବନ୍ଧରେ ଅନୁଧ୍ୟାନ କଲେ ମନରେ କ୍ଷୋଭ ଆସେ, ବିରକ୍ତି ଜନ୍ମେ, ଶିଥିଳ ରକ୍ତ ଗରମ ହୋଇଉଠେ ।

ପୁଅ ବାପକୁ 'ବୁଢ଼ା' ବୋଲି ଡ଼ାକୁଥିବା ବେଳେ ଛାତ୍ର ଶିକ୍ଷକକୁ ବୁଢ଼ା ବୋଲି ସମ୍ବୋଧନ କରୁଥିବା ସମୟରେ ଏ ଶାଗବିକାଳିର 'ବୁଢ଼ାବାବୁ' ଡ଼ାକ କୌଣସି ଖିଆଲି ଡ଼ାକ ବୋଲି ଧରିନିଆଯାଇନପାରେ । ଏ ଡ଼ାକ ପଛରେ ଯେ, ସମଗ୍ର ନାତିନାତୁଣୀ ସମାଜର ପ୍ରଚ୍ଛନ୍ନ ହସ୍ତ, ସମ୍ମିଳିତ ଶକ୍ତି ଓ ବିରାଟ ଷଡ଼ଯନ୍ତ୍ର ଲୁଚିରହିଛି, ଏଥିରେ ସନ୍ଦେହ ନାହିଁ । ତେଣୁ ଏ ଲାଞ୍ଛନା ଓ ଅପମାନ କେବଳ ଯେ ବ୍ୟକ୍ତିଗତ ଭାବରେ ବସନ୍ତବାବୁଙ୍କ ପାଇଁ ଉଦ୍ଦିଷ୍ଟ ତା' ନୁହେଁ, ଆଜି ଏହାଦ୍ୱାରା ବିଶାଳ ଉତ୍କଳର ସମଗ୍ର ପକ୍ୱ, ପରିପକ୍ୱ, ଦରପକ୍ୱ ଓ ଅପକ୍ୱ ବୃଦ୍ଧକୁଳ ଲାଞ୍ଛିତ । ବୃଦ୍ଧଙ୍କର ଗୁରୁ ଡ଼କ୍ଟର ପରଶୁରାମ ମିଶ୍ର, ଗୁରୁଙ୍କର ଗୁରୁ ଡ଼କ୍ଟର ପ୍ରାଣକୃଷ୍ଣ ପରିଜା, ପ୍ରବୀଣ ବୃଦ୍ଧ ଡ଼କ୍ଟର ହରେକୃଷ୍ଣ ମହତାବ, ତଦୁପରି ବୃଦ୍ଧ ଶ୍ରୀ ବିଶ୍ୱନାଥ ଦାସ ଓ ଏପରିକି ବୃଦ୍ଧକୁଳତିଳକ ମାଓ ସେ ତୁଙ୍ଗ ମଧ୍ୟ ଏତଦ୍ୱାରା ଅପମାନିତ ।

ଜୁଆଙ୍ଗ ନାତୁଣୀର ଚାପଲ୍ୟ ମାଧ୍ୟମରେ ପରିବ୍ୟକ୍ତ ସମସ୍ତ ନାତିନାତୁଣୀଙ୍କ ଏହି 'ଯୁଦ୍ଧଂ ଦେହି' ଆହ୍ୱାନ ବୃଦ୍ଧକାଳକୁ ଗ୍ରହଣ କରିବାକୁ ପଡ଼ିବ । ଏ କୋମଳ ତନୁ ଓ ତନ୍ୱୀମାନଙ୍କୁ ସେମାନଙ୍କର ଉଚିତ୍ ସ୍ଥାନ ଦର୍ଶାଇ ଦେବାକୁ ହେବ ।

ଆଜି ବୃଦ୍ଧକାଳର ଏ ଦୁର୍ଦ୍ଦିନରେ ଭୀଷ୍ମ, ଦ୍ରୋଣ ଓ ଭୂରିଶ୍ରବାଙ୍କୁ ମନେପଡ଼େ । ସେମାନେ ଥାଆନ୍ତେ କି ? ଜଣେ ଯୁବକଙ୍କ ଷଡ଼ଯନ୍ତ୍ର ଫଳରେ ହିଁ ସେଦିନ ବୃଦ୍ଧକୁଳର ସର୍ବନାଶ ହୋଇଥିଲା । ଜୁଆଙ୍ଗ ନାତୁଣୀକୁ ଦେଖି ବସନ୍ତବାବୁ ଶାଗବିଡ଼ା ଛାଡ଼ିଦେଲା ପରି, ଆହା ସେଦିନ ଶିଖଣ୍ଡୀକୁ ଦେଖି ପିତାମହ ଭୀଷ୍ମ ଧନୁଶର ଛାଡ଼ିଦେଇଥିଲା ।

ଏପରି ଅବସ୍ଥାରେ କ୍ରୋଧ ଜନ୍ମିବା ସ୍ୱାଭାବିକ୍, କିନ୍ତୁ ଏହା କ୍ରୋଧରେ ଜଳିଯିବା ସମୟ ନୁହେଁ । କ୍ରୋଧଦ୍ୱାରା କୌଣସି ମହତ୍ କାର୍ଯ୍ୟ ସାଧନ କରାଯାଇପାରେ ନାହିଁ ବୋଲି କିଏ ଜଣେ କହିଛନ୍ତି । କ୍ରୋଧରୁ କୁଆଡ଼େ ସମ୍ମୋହ ହୁଏ, ସମ୍ମୋହରୁ ସ୍ମୃତି-ବିଭ୍ରମ, ଆଉ ସ୍ମୃତି-ବିଭ୍ରମରୁ ବୁଦ୍ଧି ନାଶ, ତା'ପରେ କୁଆଡ଼େ 'ପ୍ରଣଶ୍ୟତି' । ତେଣୁ ଏପରି ଘଡ଼ିସନ୍ଧି ବେଳେ କ୍ରୋଧକୁ ଦମନ କରିବାକୁ ପଡ଼ିବ ଓ ପ୍ରସନ୍ନଚିତ୍ତ ହୋଇ ଉପାୟ ଚିନ୍ତା କରିବାକୁ ହେବ । ପ୍ରସନ୍ନଚିତ୍ତ ହେଲେ ଏପରି ସବୁ ଦୁଃଖର ଲାଘବ ହୁଏ । ଆଉ ପ୍ରସନ୍ନଚିତ୍ତବାଲାଙ୍କ ମୁଣ୍ଡରେ ବୁଦ୍ଧି ସବୁ ଗଜୁରି ଉଠେ ବୋଲି କହନ୍ତି ।

ହାତାହାତି ଯୁଦ୍ଧ ଯେ ଆମ ପାଇଁ ଅନୁକୂଳ ନୁହେଁ ଏକଥା ସ୍ୱତଃସିଦ୍ଧ ।

ଏଠାରେ ତେଣୁ କେତୋଟି ବିକଳ୍ପ ପନ୍ଥା ମନକୁ ଆସେ ।

ଏମାନଙ୍କ ବିରୁଦ୍ଧରେ ଅହିଂସା ଧର୍ମଘଟ କରାଯାଇପାରେ । ସେପାରିକି ଯିବାପାଇଁ ମହିଷ ପିଠିରେ ବସିଥିବା ଭଦ୍ରଲୋକ ଯେତେବେଳେ ଡ଼ାକରା ଦେବେ, ଆମେ ସମସ୍ତେ ବୃଦ୍ଧକୁଳ ମୌନବ୍ରତ ଆଚରଣକରି ଜାବବ୍ ମଧ୍ୟ ଦେଇନପାରୁ । ସମସ୍ତେ ଏକଜୁଟ୍ ହୋଇ ସତ୍ୟାଗ୍ରହ କରି ସେପାରିକୁ ଯିବାପାଇଁ ଯଦି ମନାକରିଦେଉ, ତେବେ ଯଥା ସମୟରେ ସାରା ସଂସାର ବୃଦ୍ଧଙ୍କ ଦ୍ୱାରା ଛାଇ ହୋଇଯିବ । ରାସ୍ତାଘାଟ, କଫି ହାଉସ୍, ସିନେମା ହଲ୍, ପାନଦୋକାନ ସବୁଠେଇଁ ବୁଢ଼ା ଓ ପରମ ବୁଢ଼ା ସାଲୁବାଲୁ ହେବା ଫଳରେ ଏ ନାତିନାତୁଣୀ ସମୂହ ସିନେମା ଦେଖି ଯାଇପାରିବେନି ଓ ଶେଷରେ ସାବାଡ଼ ହୋଇଯିବେ ।

ତେବେ ଆମର ଗୋଟିଏ ଶୃଙ୍ଖଳାଜ୍ଞାନ ଅଛି । ଏମିତି ଷ୍ଟ୍ରାଇକ୍ ଫ୍ରାଇକ୍ କିଛି ଭଲକଥା ନୁହେଁ । ଆଗ ଯେମିତି କ୍ଲାସ୍‌ରେ ନାମ ଡ଼ାକରା ପଡ଼ିଲେ, 'ପ୍ରେଜେଣ୍ଟ ସାର୍' କିମ୍ବା 'ୟେସ୍ ସାର୍' କହୁଥିଲୁ, ଏବେ ମଧ୍ୟ ସେ ମହିଷବାଲା ଡ଼ାକିଲେ 'ୟେସ୍ ସାର୍' କହିବା କଥା । ମହିଷକୁ ଘେରାଉ କରିବା ମଧ୍ୟ ଆମ୍ଭମାନଙ୍କ ପରି ପ୍ରାଜ୍ଞଙ୍କ ପକ୍ଷରେ ସମୀଚୀନ ହୋଇନପାରେ । ତେଣୁ ଅନ୍ୟ କୌଣସି ସହଜ ଓ ସରଳପନ୍ଥା ସ୍ଥିର କରିନେବାକୁ ହେବ ।

ଆଚ୍ଛା, ଆମ୍ଭମାନଙ୍କ ମୁଣ୍ଡ ବିଗିଡ଼ାଇ ଦେବାପାଇଁ ଏମାନେ ଜାଣିଶୁଣି ଏପରି କରୁନାହାନ୍ତି ତ ? ଆମେ ଯଦି ଏଇ ତରୁଣ ତରୁଣୀମାନଙ୍କୁ ଆଉ ତାଙ୍କ ଟୀକା-ଟିପ୍ପଣୀ ସବୁକୁ ପୁରାପୁରି ଇଗ୍‌ନୋର୍ କରିଦେଉ - ଶୁଣି ନଶୁଣିଲା ପରି ହେଉ, ବେପରବାଏ ଭାବରେ ହାତ ଛିଞ୍ଚାଡ଼ି ଉଡ଼ାଇଦେଉ !

ମନ୍ଦ ହୁଅନ୍ତାନି । ସେପରି ହେଲେ ବସନ୍ତ ବାବୁ ବୁଢ଼ାହୋଇ ସାରିଥିଲେ ମଧ୍ୟ ଆଉ ଜୁଆଇଁ ନାତୁଣୀ 'ବୁଢ଼ାବାବୁ' ବୋଲି ଯେତେ କୁହାଟ ଛାଡ଼ିଲେ ବି ତାଙ୍କୁ ବୁଢ଼ା ନହେଲା ପରି ବ୍ୟବହାର କରିବାକୁ ହେବ । ଦର୍ପଣରେ ନିଜ ମୁହଁ ଦେଖି ତାଙ୍କୁ ଆଉଥରେ 'ସବୁଜ' ହେବାକୁ ପଡ଼ିବ ।

ଏ ସମ୍ବନ୍ଧରେ କେତୋଟି ଦର୍ଶିତ ପଥ ଦୃଷ୍ଟିଗୋଚର ହୁଏ । ୧୯୭୩ 'ମାନସ'ର ପୂଜାସଂଖ୍ୟାରେ ଶ୍ରୀ ମନୋଜ ଦାସ ଦର୍ଶାଇଥିବା ପଥ ସେ ଭିତରୁ ଗୋଟିଏ । ସେ ଅନୁସାରେ ବସନ୍ତବାବୁଙ୍କୁ ଜୁଆଇଁ ନାତୁଣୀର ଆଖିକୁ ହରଣଚାଳ କରିନେଇ ମେଘାସନ ପର୍ବତ ଉପରକୁ ଉଠିସାରିଲା ପରେ ପଛରୁ ଗୋଡ଼ାଇଥିବା ନାତି ନାତୁଣୀମାଙ୍କ ଆଡ଼କୁ ପଥରଖଣ୍ଡମାନ ଗଡ଼ାଇବାକୁ ପଡ଼ିବ ।

ନହେବା କଥା । ଆବୁ ବିଶାରଦ ମନୋଜବାବୁ ନିଜେ ତ ଦରବୁଢ଼ା ବି ନୁହଁନ୍ତି - ବୁଢ଼ାମାନଙ୍କୁ ବିପଦରେ ପକାଇବା ବୁଦ୍ଧି ।

ଶ୍ରୀ ବାମାଚରଣ ମିତ୍ର ବତାଇଥିବା ଉପାୟଟା ଅପେକ୍ଷାକୃତ ସହଜ ବୋଲି ମନେହୁଏ । ସେ ଅନୁସାରେ ବସନ୍ତବାବୁଙ୍କୁ ଅବସର ଗ୍ରହଣ ପରେ ଛୋଟପିଲାଙ୍କ ପରି ବ୍ୟବହାର କରିବାକୁ ପଡ଼ିବ । କୁଆଡ଼େ ଦାୟିତ୍ୱହୀନ ସ୍ୱାଧୀନତା । ତେବେ ସ୍ଥାନ-ପାତ୍ର ବିଚାର ନକରି ବସନ୍ତ ବାବୁ ଯଦି କାହା କୋଳରେ ବସିପଡ଼ନ୍ତି, ବିପଦ ।

ବିଭୂତି ଭୂଷଣ ତ୍ରିପାଠୀଙ୍କ 'ଝଙ୍କାର'ରେ 'ଥ୍ୟାଙ୍କ ୟୁ' ଉପାୟ ମନ୍ଦ ନୁହେଁ । ଏଥିରେ ବସନ୍ତ ବାବୁଙ୍କ ପାଖରେ ବସିଥିବା ତନ୍ୱୀଙ୍କର ଗୋଡ଼ ନିରୀକ୍ଷଣ କରି ସୁବିଧା ଅନୁସାରେ 'ଥ୍ୟାଙ୍କ ୟୁ' କହିବାକୁ ପଡ଼ିବ । ବସନ୍ତ ବାବୁ ପାରିବେ ।

କିନ୍ତୁ ଗୋଟିଏ କଥା - ଏତେବେଳକୁ ଯାଇ ଖିଆଲ ହେଉଛି । ବସନ୍ତ ବାବୁ ପରା ଶିକ୍ଷକ ଥିଲେ ? ଆଜିଯାଏ ବୁଢ଼ା ନହୋଇ କ'ଣ କରୁଥିଲେ ? ଆମେ 'ଅନୁଜ' ସବୁତ କେଉଁକାଳରୁ ବୁଢ଼ା ହୋଇସାରିଲୁଣି ।

ସତର ବର୍ଷ ତଳର କଥା । ରାସ୍ତାରେ ଘେରାଏ ବୁଲିଆସିବାକୁ ମୁଁ ସନ୍ଧ୍ୟାବେଳେ ବାହାରିଥାଏ । ଛକ ପାଖରେ ଡ଼ାହାଣ ଦିଗରୁ କେତେଜଣ କଲେଜ ପିଲା ମାଡ଼ି ଆସୁଥିବା ଦେଖି ଟିକିଏ ଖୁସିଗପ କରିବାକୁ ପ୍ରସ୍ତୁତ ହେଲାବେଳକୁ ସେମାନେ ହଠାତ୍ ଦୂରରେ ଥମିଗଲେ । ଜଣେ କହିଲା - "ହେଇ ବୁଢ଼ା ଆସୁଛି ରେ !" ପରେ ପରେ ହିଁ ସମସ୍ତେ ଅଦୃଶ୍ୟ ହୋଇଗଲେ । ମୁଁ ଆଗ ପଛ କେତେ ଅନାଇଲି - କେଉଁ ବୁଢ଼ାକୁ ଏମାନେ ଏମିତି ଏଡ଼ାଇଛନ୍ତି ଜାଣିବା ଉଦ୍ଦେଶ୍ୟରେ । ବୁଢ଼ା କିଏ ଜାଣିବା ପାଇଁ ବେଶୀଦିନ କିନ୍ତୁ ଲାଗିଲାନି । ପରେ ପରେ ଅନେକ ଶୁଣିଛି ... କେହି ନମସ୍କାରଟିଏ କରିଦେଲେ ଅନ୍ୟ କାହାରି 'ବୁଢ଼ାକୁ ତେଲ ମାଲିସ୍...' ଠାରୁ ଆରମ୍ଭ କରି ଆଉ କେତେ କଣ ଟିପ୍ପଣୀ । ତେଣୁ ବସନ୍ତ ବାବୁ ଏପର୍ଯ୍ୟନ୍ତ ବୁଢ଼ା ନହୋଇଥିବା ପଛରେ କୌଣସି ଗୁଢ଼ ରହସ୍ୟ ନିହିତ ଥିଲା ପରି ମନେହୁଏ । ଏବେ ଏସବୁ ଆଲୋଚନା କରି ବସିଲେ ଆମ୍ଭ ଭିତରେ ଗୃହବିବାଦ ସୃଷ୍ଟି ହେବାର ଆଶଙ୍କା ରହିଛି । କିଛି ଗୋଟିଏ ପଦକ୍ଷେପ ନ ନେଲେ ମଧ୍ୟ ଏମାନେ ତାକୁ ଆମର ଦୁର୍ବଳତା ବୋଲି ମନେକରିପାରନ୍ତି । ତେଣୁ ସବୁଦିଗ ବିବେଚନା କରି ସାରିଲା ପରେ ଶେଷ ସିଦ୍ଧାନ୍ତରେ ଉପନୀତ ହୋଇ ବୃଦ୍ଧକୁଳର ଚିରାଚରିତ ଏହି ଅଭିଶାପଟି ଦେବା ହିଁ ବାଞ୍ଛନୀୟ ହେବ।

"ହେ ବିଶାଳ ଉତ୍କଳର ଦୁର୍ବାର ନାତି ନାତୁଣୀଦଳ ! ବସନ୍ତ ବାବୁଙ୍କ ମାଧ୍ୟମରେ ବୃଦ୍ଧକୁଳକୁ ଯେଉଁ ଅପମାନ ଦେଇଛ, ସେଥିପାଇଁ ଅଭିଶାପ ଘେନ; ତୁମ୍ଭେ ସମସ୍ତେ ବୁଢ଼ା ବୁଢ଼ୀ ହୁଅ । ୧୨୧ କି ୧୨୨ ବର୍ଷ ଯାଏ ବଞ୍ଚ, ତମ ଅଣ୍ଟା ବଙ୍କାଇଯାଉ,

ଆଉ "ମଉସା ରାସ୍ତାରେ କ'ଣ ଖୋଜୁଛ" ବୋଲି ଟୋକାଏ ଥଟ୍ଟା କରନ୍ତୁ । ପଞ୍ଚାବନ ବର୍ଷରେ ତୁମେମାନେ ବି ଚାକିରୀରୁ ଅବସର ନିଅ (୫୮ରେ ନୁହେଁ) ଓ ଉତ୍କୋଚ ଗ୍ରହଣ ନ କରିଥିବା ଯୋଗୁ ତମର ମଧ୍ୟ ଅର୍ଥ ଅଭାବ ପଡୁ । ଚାକରବାକର ରଖିନପାରି ତୁମେ ବି ବ୍ୟାଗ୍ ଧରି ଶାଗ କିଣିବାକୁ ଯାଅ । ଆମ୍ଭମାନଙ୍କୁ ଅନେକ କାଳ ତିଳତର୍ପଣ ଦେବା ଫଳରେ ତମର କ୍ୱିଣ୍ଟାଲ କ୍ୱିଣ୍ଟାଲ ତିଳ ଓ ଚାଉଳ ନଷ୍ଟ ହେଉ । ଶେଷରେ ଗାଈ ଲାଙ୍ଗୁଳ ଧରି ତାତିଲା ନଈ ପାରିହୋଇ ସେ ପାରିରେ ଆମକୁ ଭେଟ । ଆମେସବୁ ସେତେବେଳେ ବସନ୍ତ ବାବୁଙ୍କ ସହ ସୁଧର୍ମା ସଭାରେ ରତ୍ନ ସିଂହାସନମାନଙ୍କରେ ବସି ନିଶ ମୋଡୁଥିବୁ - ଦୁନ୍ଦୁଭି ବାଜୁଥିବ, ନୃତ୍ୟ ଚାଲିଥିବ - ବୈଜୟନ୍ତିମାଳା - ଫାଳାଙ୍କର ନୁହେଁ, ଖାସ୍ ମେନକା ଉର୍ବଶୀଙ୍କର । ପାରିଜାତ ମାଳା ଖଣ୍ଡିଏ ଲେଖାଏଁ ଟେରିଲିନ୍ ସାର୍ଟମାନଙ୍କରେ ପଡ଼ିଥିବ, ଆଉ ବାସନା ଖିଲିପାନ... (ପାନ ସେଇଠି ମିଳେ ତ ?)

ତମ ଦଳ ଯେତେବେଳେ ସେଇଠି ପହଞ୍ଚିବ, ରତ୍ନ ଝରିପଡ଼ିଥିବା ମୁରୁକି ହସ ଖଣ୍ଡିଏ ହସି ବସନ୍ତ ବାବୁ ଭାଷିବେ - "ହେ ପ୍ରାଚୀନ ଉତ୍କଳର ନୂତନ ବୃଦ୍ଧକୁଳ, ଆସିଲ ? ଆସ - ସେଇଠି ବସ ।" ଆଉ ତା'ପରେ ତଳେ ପଡ଼ିଥିବା ଛିଣ୍ଡାଦରି ଆଡ଼କୁ ତର୍ଜନି ଅଙ୍ଗୁଷ୍ଠି ଦେଖାଇ ଦେବେ । ତମେ ସେତେବେଳେ 'ଆମେ ଅତ୍ୟନ୍ତ ଦୁଃଖିତ' ବୋଲି କହିଲେ ମଧ୍ୟ ଆମେ ସମସ୍ତେ ଅନ୍ୟମନସ୍କ ହୋଇଯିବୁ ।

ଦୁନ୍ଦୁଭି ଆହୁରି ଜୋର୍‌ରେ ବାଜିଉଠିବ ।



ପ୍ରବନ୍ଧରେ ସେ ଯେତିକି କୁଶଳୀ, ତାଠୁଁ ବଳି କୁଶଳୀ ନିଜର ଗଳ୍ପ ସଙ୍କଳନରେ ଏବଂ ଭ୍ରମଣ କାହାଣୀରେ । ଗଲି, ଦେଖିଲି, ଏ ସବୁ ଶୁଷ୍କ ତାଲିକା ନୁହେଁ, ବ୍ୟକ୍ତିଗତ ଅବବୋଧର, ନିଜ ଆଖି, ନିଜ ହୃଦୟ ଦେଇ ଦେଖିଥିବା, ବୁଝିଥିବା ବିଦେଶର ଆଲେଖ୍ୟ ହିଁ ସେଠି ମୁଖ୍ୟ।

ସେ ଓଡ଼ିଆ ସାହିତ୍ୟକୁ ଯାହା ଦାନ କରି ସାରିଛନ୍ତି ସେଥିପାଇଁ ସବୁକାଳେ ସ୍ମରଣୀୟ ହୋଇ ରହିବେ । ତାଙ୍କର ବହୁମୁଖୀ ପ୍ରତିଭା ନୂତନ ଯୁଗର ଯୁବକ ଯୁବତୀଙ୍କ ପାଇଁ ଏକ ଉଜ୍ଜ୍ୱଳ ଆଦର୍ଶ ହୋଇ ରହିବ ।

ପଦ୍ମବିଭୂଷଣ ସୀତାକାନ୍ତ ମହାପାତ୍ର

କିଏ କହେ ଆପଣ ଇଂଜିନିୟର, ଆପଣ ଜଣେ ନିଛକ ଶିଳ୍ପୀ, କେବଳ ଶିଳ୍ପୀ, ଯାହାଙ୍କ ଶିଳ୍ପୀ-ସତ୍ତା ଏଇ ଲେଖାର ପ୍ରତି ଛତ୍ରେ ଛତ୍ରେ ପରିସ୍ଫୁଟିତ ।

କବି ଦୀପକ ମିଶ୍ର

ଏ ବିଜନପ୍ରାନ୍ତରେ ପରିତ୍ୟକ୍ତ ପ୍ରସୂନଟି ଏ ଦୃଶ୍ୟ ସାଗରର ଅତଳରେ ଯେତେ ଯେତେ ବୁଡ଼ିଛି, ପ୍ରଶାନ୍ତ ନୀଳ ଆକାଶର ବ୍ୟାପ୍ତିରେ ବି ସେତେ ସେତେ ଉଡ଼ିଛି । ଅଥଚ ସୁଦୃଢ଼ ରହିଛି ପାଦ ଦେଇ ଆପଣା ମାଟିରେ ଯେଉଁ ପାଦ ଏକ ଯାଯାବର ବୈଷ୍ଣବର ପାଦ, ଯାହା ଭୂମିଭୂମି ପ୍ରକୃତିର ପ୍ରଜନର ମୌଳତାର ଆନନ୍ଦୋପଲବ୍ଧି କରୁଛି, ମଣିଷର ହୃଦୟ ହୃଦୟରେ ସଂଚରି ଯାଉଛି । ଚିରରେ ପ୍ରୀତି, ସ୍ନେହ ସୋହରଧରର ପ୍ରମାଣ ବନ୍ୟା, ପ୍ରଫେସର ଭୁବନେଶ୍ୱର ବେହେରା, ସେଭଳି ଏକ ବିଶାଳ ଚିତ୍ତର ଅଧିକାରୀ ।

ଶ୍ରୀନିବାସ ଉଦଗାତା

ତାଙ୍କ ସ୍ଥପତିବିଦ୍ୟା ତଥା ଅମ୍ଳାନ ଚରିତ୍ରବଳରେ ସେ ଜଣେ ବିଶ୍ୱେଶ୍ୱରାୟା; ସ୍ନେହ ଓ ଉଚ୍ଚ ମୂଲ୍ୟବୋଧରେ ସେ ଜଣେ ବିଷ୍ଣୁ ଶର୍ମା ଯିଏ ଛାତ୍ରମାନଙ୍କୁ ମନ୍ତ୍ରମୁଗ୍ଧ କରି ରଖନ୍ତି; କ୍ଷମାଶୀଳତା ଓ କରୁଣାରେ ସେ ଜଣେ ବୁଦ୍ଧ; ତଥା ଗୁରୁଦେବ ରବୀନ୍ଦ୍ରନାଥଙ୍କ ଭଳି ସେ ଦୁଇଟି ଶାନ୍ତିନିକେତନ ତିଆରି କରିଛନ୍ତି, ଆର୍.ଇ.ସି. ରାଉରକେଲା ଓ ଜ୍ୟୋତିବିହାର । ପ୍ରଫେସର ବେହେରା ଥିଲେ ଜଣେ ଅନୁଷ୍ଠାନ, ଏକ ଜୀବନ୍ତ କିମ୍ବଦନ୍ତୀ ।

ଡ଼. ନଳିନୀ ରଞ୍ଜନ ମହାନ୍ତି, ପୂର୍ବତନ ଚେୟାରମ୍ୟାନ
ହିନ୍ଦୁସ୍ତାନ ଏରୋନଟିକ୍ସ ଲିମିଟେଡ୍, ବାଙ୍ଗାଲୋର